# ଶ୍ରୀମଦ୍ଭାଗବତ

## ସଚିତ୍ର

# ସପ୍ତମ ସ୍କନ୍ଧ

---

ସଂସ୍କୃତଶ୍ଳୋକ, ଗଦ୍ୟାନୁବାଦ

ଭକ୍ତକବି ଜଗନ୍ନାଥ ଦାସଙ୍କ ପଦ୍ୟାନୁବାଦ

ଓ

ଟୀକା ସମ୍ବଳିତ

ସ ମ୍ପା ଦ କ—

ରାୟବାହାଦୂର ଶ୍ରୀ ଚନ୍ଦ୍ରମଣି ଆଚାର୍ଯ୍ୟ ଏମ୍. ଏ, ବି, ଏଲ୍

ପ୍ରଥମ ସଂସ୍କରଣ

ପ୍ର କା ଶ କ—

ଅ ରୁ ଣୋ ଦ ୟ ପ୍ରେ ସ, କ ଟ କ

୧୯୪୭

ମୂଲ୍ୟ ୬ ୩୫

# ସୂଚୀପତ୍ର

| (ଅଧ୍ୟାୟ) | (ବିଷୟ) | (ପୃଷ୍ଠା) |
|---|---|---|



# ଚିତ୍ରସୂଚୀ



☛ ପ୍ରହ୍ଲାଦଙ୍କ ଓ ନୃସିଂହଙ୍କର ରଙ୍ଗିନ୍ ଛବି ପାଇଁ କଲିକତା ଲେଖିଥିଲୁ । କଲିକତାର ଗଣ୍ଡଗୋଳ ହେତୁ ଛବି ଆସି ପାରିଲା ନାହିଁ । ତେଣୁ ବହି ବାହାରିବାରେ ବିଳମ୍ବ ହେଲା । ଏଣେ ଗ୍ରାହକମାନେ ଶ୍ରୀମଦ୍ଭାଗବତର ସପ୍ତମସ୍କନ୍ଧ ପାଇଁ ବାରଂବାର ପତ୍ର ଲେଖିବାରୁ ସପ୍ତମ ସ୍କନ୍ଧ ପ୍ରକାଶ କଲୁ । ଅନ୍ୟ ସଂଖ୍ୟାରେ ଛବିଟି ଦେବୁ । ଗ୍ରାହକମାନେ ଯଥା ସ୍ଥାନରେ ସଂଯୋଗ କରିଦେବେ ।

—ପ୍ରକାଶକ—

## ସପ୍ତମସ୍କନ୍ଧର ସଂକ୍ଷିପ୍ତ ବିବରଣ :—

ସପ୍ତମସ୍କନ୍ଧ ପନ୍ଦର ଅଧ୍ୟାୟରେ ଲିଖିତ । ପ୍ରହ୍ଲାଦ ଚରିତ ଏଥିରେ ପ୍ରଧାନ ବର୍ଣ୍ଣିତ ବିଷୟ; ହିରଣ୍ୟ କଶିପୁ ସପ୍ତର୍ଷିଙ୍କର ଅଭିଶାପ ହେତୁ ମର୍ତ୍ତ୍ୟରେ ଜନ୍ମଗ୍ରହଣ କରିଥିଲା । ସେ ବ୍ରହ୍ମାଙ୍କଠାରୁ ବରଲାଭ କରି ଅତ୍ୟନ୍ତ ଦର୍ପୀ ହୋଇଥିଲା । ତାହାର ଦର୍ପରେ ଦେବତା, ମନୁଷ୍ୟ ସମସ୍ତେ ଭୀତ ଓ ତ୍ରସ୍ତ ହେଉଥିଲେ, ପ୍ରହ୍ଲାଦ ହିରଣ୍ୟକଶିପୁର ପୁତ୍ରରୂପେ ଜାତ ହୋଇଥିଲେ । ସେ ଆଜନ୍ମରୁ ଭଗବତ୍ ଭକ୍ତ ଏବଂ ପୂର୍ବେ ଦେବର୍ଷି ନାରଦଙ୍କଠାରୁ ତତ୍ତ୍ୱଜ୍ଞାନ ଉପଦେଶ ଲାଭ କରିଥିଲେ ଅର୍ଥାତ୍ ଯେତେବେଳେ ହିରଣ୍ୟକଶିପୁ ତପସ୍ୟାଚରଣ କରିବା ନିମିତ୍ତ ମନ୍ଦର ପର୍ବତକୁ ଗମନ କରିଥିଲେ ସେତେବେଳେ ଇନ୍ଦ୍ର ହିରଣ୍ୟ କଶିପୁର ପତ୍ନୀଙ୍କୁ ବଳପୂର୍ବକ ଘେନି ଯାଉ ଥିବାର ଦେଖି ନାରଦ ଘୋର ପ୍ରତିବାଦ କରିଥିଲେ ଏବଂ ହିରଣ୍ୟକଶିପୁର ପତ୍ନୀଙ୍କୁ ନିଜର ଆଶ୍ରମରେ ରଖାଇ ଥିଲେ । ସେତେବେଳେ ହିରଣ୍ୟ କଶିପୁଙ୍କର ପତ୍ନୀ ଗର୍ଭବତୀ । ସେହିଠାରେ ନାରଦ ମାତାଙ୍କୁ ଯେଉଁ ଉପଦେଶ ଦେଇଥିଲେ, ତଦ୍ଦ୍ୱାରା ଗର୍ଭସ୍ଥିତ ଶିଶୁ ପ୍ରହ୍ଲାଦର ତତ୍ତ୍ୱଜ୍ଞାନ ଜନ୍ମିଥିଲା । ଅତି ଶୈଶବାବସ୍ଥାରେ ପ୍ରହ୍ଲାଦର ବିଦ୍ୟାଶିକ୍ଷା ନିମିତ୍ତ ଅସୁରଗୁରୁ ଶୁକ୍ରାଚାର୍ଯ୍ୟଙ୍କର ପୁତ୍ର ଷଣ୍ଡାମର୍କ ପ୍ରହ୍ଲାଦର ଶିକ୍ଷାଗୁରୁ ରୂପେ ନିଯୁକ୍ତ ହୋଇଥିଲେ । ପ୍ରହ୍ଲାଦ ବିଦ୍ୟାଶିକ୍ଷା ନ କରି ଗୁରୁଙ୍କ ନିକଟରେ ଓ ତାହାଙ୍କର ଅନୁପସ୍ଥିତି ସମୟରେ ସହପାଠୀ ଛାତ୍ରଗଣଙ୍କୁ ହରିଭକ୍ତି ତତ୍ତ୍ୱ ଶୁଣାଉ ଥିଲେ । ଏ ବିଷୟ ହିରଣ୍ୟ କଶିପୁଙ୍କର କର୍ଣ୍ଣ ଗୋଚର ହୁଅନ୍ତେ ସେ ପ୍ରହ୍ଲାଦର ମତିଗତି ପରିବର୍ତ୍ତନ ନିମିତ୍ତ ବିବିଧ ଚେଷ୍ଟା କରିଥିଲେ । ମାତ୍ର ତାହା ବିଫଳ ହେଲା । ହିରଣ୍ୟକଶିପୁ ସର୍ବଦା ହରିଙ୍କୁ ପରମ ଶତ୍ରୁ ବୋଲି ମଣୁଥିଲା । ତେଣୁ ସେ ହରିନାମ ଉଚ୍ଚାରଣ କରିବାରୁ ପୁତ୍ରକୁ ମଧ୍ୟ ଶତ୍ରୁ ବୋଲି ମଣୁଥିଲା । ହିରଣ୍ୟକଶିପୁ ଭାବୁଥିଲା ଈଶ୍ୱର ଅନ୍ୟ କେହି ନାହିଁ, ସେ ନିଜେ ଈଶ୍ୱର । ସେ ଦିନେ ରାଜ ସଭାରେ ପ୍ରହ୍ଲାଦର ବିଦ୍ୟା ପରୀକ୍ଷା କରିବାକୁ ପ୍ରଶ୍ନ କରନ୍ତେ, ପ୍ରହ୍ଲାଦ ପିତାଙ୍କ ନିକଟରେ ହରିଭକ୍ତି ତତ୍ତ୍ୱ ବ୍ୟାଖ୍ୟା କରିଥିଲେ । ଇତିପୂର୍ବେ ପୁତ୍ରକୁ ହରିନାମ ଉଚ୍ଚାରଣରୁ ନିବୃତ୍ତ କରାଇବା ନିମିତ୍ତ ହିରଣ୍ୟକଶିପୁ ବହୁ ଚେଷ୍ଟା—ଏପରିକି ନାନା ଉପାୟରେ ତାହାର ପ୍ରାଣ ବଧ କରିବାକୁ ମଧ୍ୟ ଉଦ୍ୟମ କରିଥିଲା । କେତେବେଳେ ଶିଳା ଉପରେ କଚାଡ଼ି, କେତେବେଳେ ଅଗ୍ନିରେ ଦହନ କରି, କେତେବେଳେ ବା ଜଳରେ ବୁଡ଼ାଇ, କେତେବେଳେ ବା ବିଷ ପ୍ରୟୋଗ କରି ଏହିପରି ବିବିଧ ଉପାୟ ଦ୍ୱାରା ପ୍ରହ୍ଲାଦର ପ୍ରାଣନାଶର ଚେଷ୍ଟା କରିଥିଲେ ମଧ୍ୟ ସେ ସମସ୍ତ ଚେଷ୍ଟା ବ୍ୟର୍ଥ ହୋଇଥିଲା । ଆଜି ପୁଣି ହିରଣ୍ୟକଶିପୁ ନିକଟରେ ରାଜସଭାରେ ଶିଶୁ ପ୍ରହ୍ଲାଦ ସେହି ଅଶ୍ରାବ୍ୟ ନାମ ଉଚ୍ଚାରଣ କରି ପିତାଙ୍କ ହୃଦୟରେ ତୀବ୍ର ଯାତନା ଜନ୍ମାଇ ଥିଲା । କ୍ରୋଧାନ୍ଧ ପିତା ଖଡ୍ଗ ଉତ୍ତୋଳନ କରି କହିଲେ ରେ ଅବୋଧ ଶିଶୁ ! ମୁଁ ଏକମାତ୍ର ଈଶ୍ୱର । ତୁ କହୁଅଛୁ "ତୋର ଈଶ୍ୱର ସର୍ବତ୍ର ବିଦ୍ୟମାନ । ଏହି ସ୍ତମ୍ଭ ମଧ୍ୟରେ ତୋର ଈଶ୍ୱର ଯଦି ଥାଏ ତେବେ ତୁ ତାଙ୍କୁ ଦେଖା ।" ଏହା କହିବା ମାତ୍ରକେ ସଭାସ୍ଥଳରେ ଭୀଷଣ ଗର୍ଜ୍ଜନ ହେଲା । ସେହି ଗର୍ଜ୍ଜନର କାରଣ ଆଲୋଚନା କରୁ କରୁ ସେହି ସ୍ତମ୍ଭ ହଠାତ୍ ବିଦୀର୍ଣ୍ଣ ହୋଇ ତହିଁ ମଧ୍ୟରୁ ନୃସିଂହ ମୂର୍ତ୍ତି ଆବିର୍ଭୂତ ହେଲେ । ବ୍ରହ୍ମାଙ୍କ ବରରେ 'ହିରଣ୍ୟକଶିପୁ ଦିବସରେ ବା ରାତିରେ,' ଗୃହରେ ବା ଗୃହର ବାହାରେ, ଜଳରେ, ସ୍ଥଳରେ ବା ଆକାଶରେ ବା କୌଣସି ଅସ୍ତ୍ର ଶସ୍ତ୍ରରେ ନିହତ ହୋଇ ପାରନ୍ତା ନାହିଁ କିମ୍ବା ମନୁଷ୍ୟ, ପଶୁ ପକ୍ଷୀ, କୀଟ ପତଙ୍ଗ କୌଣସି ସାଧାରଣ ସୃଷ୍ଟ ଜୀବ ତାହାର ପ୍ରାଣନାଶ କରି ପାରନ୍ତେ ନାହିଁ । ତେଣୁ ଶ୍ରୀହରି ଅଶେଷ ପରାକ୍ରମ ଶାଳୀ ସିଂହ ବପୁ ଧାରଣ କରି ତାହାକୁ ନିଜର ଜାନୁ ଉପରେ ସ୍ଥାପନ କରି ନିଜର ନଖଦ୍ୱାରା ତାହାର ହୃଦୟ ବିଦାରଣ କରି ତାହାକୁ ବଧ କରିଥିଲେ ।

ନୃସିଂହଙ୍କର କୋପଶାନ୍ତି ନିମିତ୍ତ ଦେବଗଣ, ଗନ୍ଧର୍ବ, କିନ୍ନର, ସିଦ୍ଧ, ବିଦ୍ୟାଧର, ଋଷି ସମସ୍ତେ ସ୍ତବ କଲେ ମଧ୍ୟ ସେହି କୋପ ଶାନ୍ତ ହେଲା ନାହିଁ, ସମସ୍ତେ ଭୀତ ହୋଇଥିଲେ । ଏପରି କି ହରିପ୍ରିୟା ଲକ୍ଷ୍ମୀଦେବୀ ମଧ୍ୟ ନୃସିଂହଙ୍କ ନିକଟକୁ ଗମନ କରିବାକୁ ସାହସୀ ହୋଇ ନ ଥିଲେ । ମାତ୍ର ଭଗବାନ୍ ଭକ୍ତ ପ୍ରତି ସର୍ବଦା ପ୍ରସନ୍ନ । ଭକ୍ତ ପ୍ରହ୍ଲାଦ ନୃସିଂହଙ୍କର ସମୀପବର୍ତ୍ତୀ ହୋଇ ପ୍ରାର୍ଥନା କରନ୍ତେ ସେ ପ୍ରହ୍ଲାଦର ମସ୍ତକରେ ଅଶେଷ ଭୀତି ଅପନୋଦକ ସର୍ବାପବର୍ଗ ପ୍ରଦାୟକ କର କମଳ ସ୍ଥାପନ କରିଥିଲେ । ସେହି କର କମଳ ସ୍ପର୍ଶରେ ପ୍ରହ୍ଲାଦର ହୃଦୟରେ ଅପୂର୍ବ ଭାବ ଜାତ ହୋଇଥିଲା । ସେ ନୃସିଂହଙ୍କୁ ସ୍ତବ କରିଥିଲା । ନୃସିଂହ ତାହାର ସ୍ତବ ଗାନରେ ପ୍ରସନ୍ନ ହୋଇ ପ୍ରହ୍ଲାଦକୁ ପ୍ରାର୍ଥିତ ବର ପ୍ରଦାନ କରିଥିଲେ । ସ୍ଥୂଳତଃ ପ୍ରଥମ ଅଧ୍ୟାୟଠାରୁ ଦଶମ ଅଧ୍ୟାୟ ପର୍ଯ୍ୟନ୍ତ ଏହି ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ଏହି ପ୍ରହ୍ଲାଦ ପ୍ରସଙ୍ଗର ବକ୍ତା ଦେବର୍ଷି ନାରଦ ଏବଂ ଶ୍ରୋତା ରାଜସୂୟଯଜ୍ଞ କାଳରେ ଧର୍ମରାଜ ଯୁଧିଷ୍ଠିର । ତଦନନ୍ତର ଯୁଧିଷ୍ଠିରଙ୍କର ପ୍ରଶ୍ନାନୁସାରେ ମହର୍ଷି ନାରଦ ମାନବଧର୍ମ, ସ୍ତ୍ରୀଧର୍ମ, ବର୍ଣ୍ଣାଶ୍ରମଧର୍ମ, ବିଭିନ୍ନ ଆଶ୍ରମପ୍ରସଙ୍ଗ, ଯତିଧର୍ମ, ସିଦ୍ଧାବସ୍ଥା, ଗୃହସ୍ଥଧର୍ମ ଏବଂ ସର୍ବଧର୍ମର ସାରସଂଗ୍ରହ ଧର୍ମରାଜ ଯୁଧିଷ୍ଠିରଙ୍କୁ ଶୁଣାଇଥିଲେ ।

---

ଆଜି ସନ ୧୩୫୪ ସାଲ ମାଘ ଦି ୧୬ ନ ମୁଃ ଇଂରାଜୀ ୧୯୪୭ ମସିହା ଜାନୁଆରୀ
ତା ୨୯ ରିଖ ବୁଧବାର ମାଘ ଶୁକ୍ଳ ସପ୍ତମୀରେ ଭକ୍ତକବି ଜଗନ୍ନାଥ ଦାସଙ୍କ
ତିରୋଧାନ ଦିବସରେ ଏ ସପ୍ତମସ୍କନ୍ଧ ପ୍ରକାଶିତ ହେଲା ।

ଏତତ୍ ଶ୍ରୀକୃଷ୍ଣାର୍ପଣମସ୍ତୁ ।

---

## ( ଶ୍ରୀକୃଷ୍ଣ କର୍ଣ୍ଣାମୃତ ସ୍ତୋତ୍ରଂ )

( ୰ବିଲ୍ୱମଙ୍ଗଳ କୃତ )

ହେ ଦେବ ହେ ଦୟିତ ହେ ଜଗଦେକବନ୍ଧୋ
ହେ କୃଷ୍ଣ ହେ ଚପଳ ହେ କରୁଣୈକ-ସନ୍ଧୋ ।
ହେ ନାଥ ହେ ରମଣ ହେ ନୟନାଭିରାମ
ହାହା କଦାନୁ ଭବିତାସି ପଦଂ ଦୃଶୋର୍ମେ । ୧ ।

ଅଂସାଲମ୍ବିତ ବାମକୁଣ୍ଡଳଭରଂ ମନ୍ଦୋନ୍ନତଭ୍ରୂଲତଂ
କିଞ୍ଚିତ୍ କୁଞ୍ଚିତକୋମଳାଧରପୁଟଂ ସାଚିପ୍ରସାରେକ୍ଷଣମ୍ ।
ଆଲୋଲାଙ୍ଗୁଳିପଲ୍ଲବୈର୍ମୁରଳିକାମାପୂରୟନ୍ତଂ ମୁଦା
ମୂଳେ କଳ୍ପତରୋସ୍ତ୍ରିଭଙ୍ଗଲଳିତଂ ଜାନେ ଜଗନ୍ମୋହନମ୍ । ୨ ।

ହେ ଗୋପାଳକ ହେ କୃପାଜଳନିଧେ ହେ ସିନ୍ଧୁକନ୍ୟାପତେ
ହେ କଂସାନ୍ତକ ହେ ଗଜେନ୍ଦ୍ର କରୁଣାପାରୀଣ ହେ ମାଧବ ।
ହେ ରାମାନୁଜ ହେ ଜଗତ୍ତ୍ରୟଗୁରୋ ହେ ପୁଣ୍ଡରୀକାକ୍ଷ ମାଂ ।
ହେ ଗୋପୀଜନନାଥ ପାଳୟ ପରଂ ଜାନାମ ନ ତ୍ୱାଂ ବିନା । ୩ ।

କସ୍ତୁରୀତିଳକଂ ଲଲାଟଫଳକେ ବକ୍ଷସ୍ଥଳେ କୌସ୍ତୁଭମ୍
ନାସାଗ୍ରେ ନବମୌକ୍ତିକଂ କରତଳେ ବେଣୁଂ କରେ କଙ୍କଣମ୍ ।
ସର୍ବାଙ୍ଗେ ହରିଚନ୍ଦନଞ୍ଚ କଳୟନ୍ କଣ୍ଠେ ଚ ମୁକ୍ତାବଳୀମ୍ ।
ଗୋପସ୍ତ୍ରୀପରିବେଷ୍ଟିତୋ ବିଜୟତେ ଗୋପାଳଚୂଡ଼ାମଣିଃ । ୪ ।

ଲୋକାନନ୍ଦୟନ୍ ଶ୍ରୁତୀଂ ମୁଖରୟନ୍ କ୍ଷୌଣୀରୁହାନ୍ ହର୍ଷୟନ୍
ଶୈଳାନ୍ ବିଦ୍ରବୟନ୍ ମୃଗାନ୍ ବିବଶୟନ୍ ଗୋବୃନ୍ଦମାନନ୍ଦୟନ୍ ।
ଗୋପାନ୍ ସଂଭ୍ରମୟନ୍ ମୁନୀନ୍ ମୁକୁଳୟନ୍ ସପ୍ତସ୍ୱରାନ୍ ଜୃମ୍ଭୟନ୍
ଓଁକାରାର୍ଥ ମୁଦୀରୟନ୍ ବିଜୟତେ ବଂଶୀନିନାଦଃ ଶିଶୋଃ । ୫ ।

ସନ୍ଧ୍ୟାବନ୍ଦନ ଭଦ୍ରମସ୍ତୁ ଭବତେ ଭୋ ସ୍ନାନ ତୁଭ୍ୟଂ ନମୋ
ଭୋ ଦେବାଃ ପିତରଶ୍ଚ ତର୍ପଣବିଧୌ ନାହଂ କ୍ଷମଃ କ୍ଷମ୍ୟତାମ୍ ।
ଯତ୍ର କ୍ୱାପି ନିଷଦ୍ୟ ଯାଦବକୁଳୋତ୍ତଂସସ୍ୟ କଂସଦ୍ୱିଷଃ
ସ୍ମାରଂ ସ୍ମାରମଘଂ ହରାମି ତଦଳଂ ମନ୍ୟେ କିମନ୍ୟେନ ମେ । ୬ ।



# ଶ୍ରୀମଦ୍ଭାଗବତ

## ସପ୍ତମ ସ୍କନ୍ଧ





### ପ୍ର ଥ ମ ଅ ଧ୍ୟା ୟ ।

ତତ୍ରତୁ ପ୍ରଥମୋଽଧ୍ୟାୟେ ହିରଣ୍ୟକଶିପୋଃ ସୁତେ ।
ବିଷ୍ଣୁଭକ୍ତେ ବିରୋଧନ୍ତୁ ବିପ୍ରଶାପଜଣ୍ଣର୍ଯ୍ୟତେ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀ ରାଜୋବାଚ ।

ସମଃ ପ୍ରିୟଃ ସୁହୃଦ୍‌ବ୍ରହ୍ମନ୍ ଭୂତାନାଂ ଭଗବାନ୍ ସ୍ୱୟମ୍ ।
ଇନ୍ଦ୍ରସ୍ୟାର୍ଥେ କଥଂ ଦୈତ୍ୟାନବଧୀଦ୍‌ବିଷମୋ ଯଥା । ୧ ।

---

### ହିରଣ୍ୟ କଶ୍ୟପୁ ଓ ପ୍ରହ୍ଲାଦ ପ୍ରସଙ୍ଗ ।

ପ୍ରଥମ ଅଧ୍ୟାୟରେ ହିରଣ୍ୟ କଶିପୁର ବିଷ୍ଣୁଭକ୍ତ ପ୍ରହ୍ଲାଦଙ୍କ ସହିତ ବିରୋଧଭାବ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀ ରାଜା ପରୀକ୍ଷିତ କହିଲେ :—

ହେ ବ୍ରହ୍ମନ୍ ! ଯେ ସର୍ବଭୂତରେ ସମାନ ଭାବରେ ପ୍ରିୟ ଓ ସୁହୃତ୍ ସେ କପରି ବୈଷମ୍ୟ ଯୁକ୍ତ ହୋଇ ଅର୍ଥାତ୍ ଇନ୍ଦ୍ରଙ୍କ ପ୍ରତି ଅନୁଗ୍ରହ ଦେଖାଇ ଓ ଦାନବ ମାନଙ୍କ ପ୍ରତି ଦ୍ୱେଷ ସମ୍ପନ୍ନ ବ୍ୟକ୍ତି ତୁଲ୍ୟ ଦିତିଙ୍କର ପୁତ୍ରମାନଙ୍କୁ ବଧ କରିଥିଲେ ? । ୧ ।

କୃଷ୍ଣ ଚରଣେ ଦେଇ ଚିତ୍ତ
ବୋଲନ୍ତି ବ୍ୟାସଙ୍କର ସୁତ ;
ଏବେ ହେ ଶୁଣ ନୃପମଣି
ହରି ଚରିତ ସୁଧା ବାଣୀ ।
ଜନ୍ମ ବାସନା କର୍ମଫଳେ
ପ୍ରାଣୀ ଭ୍ରମନ୍ତି ଏ ଚାର୍ୟ୍ୟେ
ସପ୍ତମ ସ୍କନ୍ଧେ ଉପଦେଶ
କହିବା ଅଧ୍ୟା ପଞ୍ଚଦଶ ।
କର୍ମ ବାସନା ରୂପଧରେ
ନାନା ପ୍ରକାରେ ସେ ସଞ୍ଚରେ
ଶୁଭ ଅଶୁଭ ନାନା ପଦେ
ପ୍ରକାଶ କରେ ହେତୁ ଭେଦେ
ମହାନ୍ତ ଅପମାନ କୋପେ
ଅଶୁଭ ଜନ୍ମ ଲଭେ ପାପେ
ପୁଣି ମହାନ୍ତ ଅନୁଗ୍ରହେ
ସେ କର୍ମ ଶୁଭ ଫଳ ବହେ ।
ଶୁଣ କହିବା ପ୍ରିୟ ଭାବେ
ଯେ ଯହିଁ ଯେମନ୍ତ ପ୍ରସ୍ତାବେ
ବୈକୁଣ୍ଠେ ହରି ଦ୍ୱାରପାଳ
ଜୟ ବିଜୟ ମହାବଳ
ସେ ଦୁହେଁ ଥାଇ ହରିଦ୍ୱାରେ
ଖଟନ୍ତି ସେବା ଅନୁସାରେ
ଚତୁଃସନକ କୋପ ଫଳେ
ଜନ୍ମିଲେ ଅସୁରଙ୍କ କୁଳେ
ବ୍ରାହ୍ମଣେ ଅପରାଧ କରି
ମର୍ତ୍ତ୍ୟେ ଜନ୍ମିଲେ ଦେହ ଧରି
ଅସୁର ବଂଶେ ଅବତାର
ହିରଣ୍ୟ ହିରଣାକ୍ଷ ଯାର
ସେ ପ୍ରହ୍ଲାଦ ତା ତନୟେ
ନାରଦ ମୁନି ଅନୁଗ୍ରହେ

କୃଷ୍ଣର ଚରଣ କମଳେ
ନିଶ୍ଚଳ ଭକ୍ତି ଯୋଗବଳେ
ଜନ୍ମ ବାସନା ହେତୁ ସ୍ମରି
କୃଷ୍ଣ ଭକତ ଦୃଢ଼ ଧରି
ବିଷ୍ଣୁ ଭକତ ହୋଇ ଯେବେ
ତାହାଙ୍କୁ ଅପରାଧେ ଭାବେ
ତାହାଙ୍କୁ ରଖେ ଭଗବାନ
ନ ସହେ ଭକ୍ତ ଅପମାନ
ଜୟ ବିଜୟ ଦୁହେଁଭାଇ ;
ଅସୁର ଅଂଶେ ଜନ୍ମ ହୋଇ
ହରିଙ୍କି ଅପରାଧ କଲେ
ଭକ୍ତିଯୋଗ ଜନ୍ମେ ନିସ୍ତରିଲେ ।
ଏଣୁ ପଣ୍ଡିତ ପ୍ରାଣୀ ଯେତେ
ମହାନ୍ତ ଅନୁଗ୍ରହ ଅର୍ଥେ
ଯତ୍ନ କରନ୍ତି ନିରନ୍ତରେ
ଆତ୍ମାକୁ ଆପଣେ ଉଦ୍ଧରେ
ଯେ ଭାବ ମୁନିଗଣେ ଚିନ୍ତି
ମହାନ୍ତ ଲକ୍ଷଣ ବୋଲନ୍ତି
ଏ ଆଦି ଅନ୍ତ ତୋତେ କହି
ଶୁଣ ପରୀକ୍ଷି ମନ ଦେଇ
ଅସୁରକୁଳେ ଦେହ ବହି
ଜୟ ବିଜୟ ଦୁହେଁ ଭାଇ
ବିଷ୍ଣୁ ହିଂସନ ନିରନ୍ତରେ
କରନ୍ତି ଅସୁର ଦେହରେ
ତାହାଙ୍କ କୁଳେ ପ୍ରହଲ୍ଲାଦ
ହରି ବିଷୟେ ଭକ୍ତିଭେଦ
ଏ ପିତାପୁତ୍ର ମଧ୍ୟ ଗତେ
ପୂର୍ବ ବାସନା ଅନୁମତେ
ମହାନ୍ତଙ୍କ କୋପ ଅନୁଗ୍ରହ
ବାସନା ଭେଦ ଏ ନିଶ୍ଚୟ

ବାସନା ବଳେ କର୍ମ ଜାତ
ଦଶ ଅଧ୍ୟାୟ ଏ ଚରିତ
ପଞ୍ଚ ପ୍ରସ୍ତାବେ ଶେଷେ ଜାଣ
ଧର୍ମର ନିର୍ଣ୍ଣୟ ଲକ୍ଷଣ ।
ପ୍ରଥମ ଅଧ୍ୟାର ପ୍ରସ୍ତାବେ
କହିବା ପିତା ପୁତ୍ର ଭାବେ
ହିରଣ୍ୟକଶିପୁ କୁମାର
କୃଷ୍ଣ ଭକତ ମଧ୍ୟେ ବର
ବ୍ରାହ୍ମଣ ଶାପେ ଦୁହେଁ ଭାଇ
ଅସୁର ଅଂଶେ ଜାତ ହୋଇ
ଇନ୍ଦ୍ରର ଅର୍ଥେ ଭଗବାନ
ଅସୁର କରନ୍ତି ନିଧନ ।
ଏମନ୍ତ ଶୁକ ବାକ୍ୟ ଶୁଣି
ପୁଚ୍ଛେ ପାଣ୍ଡବ ଚୂଡ଼ାମଣି

ଶ୍ରୀରାଜୋବାଚ—

ହେ ମୁନି ! ଶୁଣ ମୋ ବଚନ
ଯେ ହରି ସର୍ବ ଘଟେ ସମ
ପ୍ରିୟ ସୁହୃଦ ପ୍ରାଣୀଙ୍କର
ବିଶେଷେ ଶରଣ ସୋଦର
ସେ କିମ୍ପା ଇନ୍ଦ୍ର ପକ୍ଷଧରେ
ନିର୍ଦ୍ଦୟେ ଅସୁର ସଂହାରେ
ବିଷମ ମତ ଏ ତାହାର
ଯେ ହରି ଜଗତ ସୋଦର
ସୁରଗଣଙ୍କ ପକ୍ଷଧରେ
ନିଷ୍ଠୁରେ ଅସୁର ସଂହାରେ ।୧।

ନ ହ୍ୟସ୍ୟାର୍ଥଃ ସୁରଗଣୈଃ ସାକ୍ଷାନ୍ନିଃଶ୍ରେୟସାତ୍ମନଃ ।
ନୈବାସୁରେଭ୍ୟୋ ବିଦ୍ୱେଷୋ ନୋଦ୍‌ବେଗଶ୍ଚାଗୁଣସ୍ୟ ହି । ୨ ।
ଇତି ନଃ ସୁମହାଭାଗ ନାରାୟଣଗୁଣାନ୍ ପ୍ରତି ।
ସଂଶୟଃ ସୁମହାନ୍ ଜାତସ୍ତଦ୍‌ଭବାଂଶ୍ଛେତ୍ତୁମର୍ହତି । ୩ ।

ଶ୍ରୀ ଋଷିରୁବାଚ ।

ସାଧୁ ପୃଷ୍ଟଂ ମହାରାଜ ହରେଶ୍ଚରିତମଦ୍‌ଭୁତମ୍ ।
ଯଦ୍‌ଭାଗବତମାହାତ୍ମ୍ୟଂ ଭଗବଦ୍‌ଭକ୍ତିବର୍ଦ୍ଧନମ୍ । ୪ ।
ଗୀୟତେ ପରମଂ ପୁଣ୍ୟମୃଷିଭିର୍ନାରଦାଦିଭିଃ ।
ନତ୍ୱା କୃଷ୍ଣାୟ ମୁନୟେ କଥୟିଷ୍ୟେହରେଃ କଥାମ୍ । ୫ ।

---

ହେ ମୁନେ ! ଭଗବାନ୍ ବିଷ୍ଣୁ ସାକ୍ଷାତ୍ ପରମେଶ୍ୱର, ପରମାନନ୍ଦ ସ୍ୱରୂପ । ତେଣୁ ତାହାଙ୍କର ଦେବତା ମାନଙ୍କ ଦ୍ୱାରା କୌଣସି କାର୍ଯ୍ୟ ସାଧିତ ହୁଅନ୍ତା ଏପରି ନୁହେଁ ଏବଂ ସେ ସ୍ୱୟଂ ନିର୍ଗୁଣ ବୋଲି ତାହାଙ୍କର କୌଣସି ଭୟ ମଧ ନ ଥିଲା । ଦୈତ୍ୟମାନଙ୍କୁ ଭୟକରି ବିଦ୍ୱେଷ ପୋଷଣ କରିବାର ମଧ କାରଣ ନ ଥିଲା । ୨ ।

ହେ ମହାଭାଗ ! ଏହି କାରଣରୁ ନାରାୟଣଙ୍କର ଅନୁଗ୍ରହ ଓ ନିଗ୍ରହ ଗୁଣ ବିଷୟରେ ମୋର ସୁଦୃଢ ସଂଶୟ ଉପସ୍ଥିତ ହୋଇଅଛି, ଆପଣ ତାହା ଛେଦନ କରନ୍ତୁ । ୩ ।

ଶ୍ରୀ ଶୁକଦେବ କହିଲେ :—

ମହାରାଜ ! ଆପଣଙ୍କ ପ୍ରଶ୍ନ ଅତି ଉତ୍ତମ, ଭଗବାନ୍ ବିଷ୍ଣୁଙ୍କ ଚରିତ୍ର ଅତ୍ୟନ୍ତ ଅଦ୍ଭୁତ । ଭଗବତ ମହିମା ଭଗବଦ୍ ଭକ୍ତି ବର୍ଦ୍ଧନ କରିଥାଏ ଏବଂ ତାହା ଅତି ପବିତ୍ର ବୋଲି ନାରଦାଦି ଋଷିମାନେ କୀର୍ତ୍ତନ କରିଥାନ୍ତି, ମୁଁ ଭଗବାନ୍ ବ୍ୟାସଙ୍କୁ ନମସ୍କାର କରି ଏହି ବୃତ୍ତାନ୍ତ ବର୍ଣ୍ଣନା କରୁଅଛି । ୪-୫ ।

---

ଯେ ହରି ସର୍ବ ଜୀବ ଗତି
ସେ କମ୍ପା ଆଚରେ ଅନୀତି
ଅଶେଷ ଜନ୍ତୁ ହୃଦେ ଥାଇ
ଅନ୍ତରେ ସର୍ବ ସେ ଦେଖଇ
ଆତ୍ମାର ନିସ୍ତାରଣ କରେ
ସେ କମ୍ପା ଭେଦ ବୁଦ୍ଧି ଧରେ
ଦେବ ଅସୁର ତାର ଦେହି
ସମ ବିଷମ ତାର କାହିଁ
ସ୍ୱଭାବେ ନିର୍ଗୁଣ ଶରୀର
ଯେ ନିରଞ୍ଜନ ନିର୍ବିକାର

ଏଣୁ ଗୋବିନ୍ଦ ଗୁଣଗ୍ରାମେ
ସଂଶୟ ମୋର ମନେ ଭ୍ରମେ
ପୂଜଇ ତୁମ୍ଭର ଚରଣ
ସଂଶୟ ଛେଦ ମୋ ବଚନ ।୨,୩।

ଶ୍ରୀ ଋଷିରୁବାଚ—

ହେ ନୃପ ସାଧୁ ତୋର ବାଣୀ
ତୁ ଯେ ପଚାରୁ ପରମାଣି
ଅଦ୍ଭୁତ କୃଷ୍ଣର ମହିମା
କେ ଜାଣିପାରେ ଗୁଣ ସୀମା ?

ଏ ଗ୍ରନ୍ଥ ଭାଗବତ ଶୁଣ
କୃଷ୍ଣର ଭକତି ଲକ୍ଷଣ
ପରମ ପୁଣ୍ୟ ଏହୁ ବାଣୀ
ଯେ ଶୁଣେ ଯେବା ମୁଖେ ଭଣି
ନାରଦ ଆଦି ମୁନିଗଣେ
ଯାହା ଗାବନ୍ତି ଅନୁକ୍ଷଣେ
ବ୍ୟାସଚରଣ ସେବି ମୁହିଁ
କହିବି ମୁଁ ଯାହା ଜାଣଇ ।୪,୫

ନିର୍ଗୁଣୋଽପି ହ୍ୟଜୋଽବ୍ୟକ୍ତୋଭଗବାନ୍ ପ୍ରକୃତେଃ ପରଃ ।
ସ୍ୱମାୟାଗୁଣମାବିଶ୍ୟ ବାଧ୍ୟବାଧକତାଂ ଗତଃ । ୬ ।
ସତ୍ତ୍ୱଂ ରଜସ୍ତମ ଇତି ପ୍ରକୃତେର୍ନାତ୍ମନୋ ଗୁଣାଃ ।
ନ ତେଷାଂ ଯୁଗପଦ୍ରାଜନ୍ ହ୍ରାସ ଉଲ୍ଲାସ ଏବ ବା । ୭ ।
ଜୟକାଳେ ତୁ ସତ୍ତ୍ୱସ୍ୟ ଦେବର୍ଷୀନ୍ ରଜସୋଽସୁରାନ୍ ।
ତମସୋ ଯକ୍ଷରକ୍ଷାଂସି ତତ୍କାଳାନୁଗୁଣୋଽଭଜତ୍ । ୮ ।

---

ହେ ମହାରାଜ । ଭଗବାନ୍ ବିଷ୍ଣୁ ତ୍ରିଗୁଣାତୀତ, ସେ ଜନ୍ମ ରହିତ, ଅବ୍ୟକ୍ତ ଅର୍ଥାତ୍ ରାଗ ଦ୍ୱେଷାଦି କାରଣସ୍ୱରୂପ ଦେହର ଇନ୍ଦ୍ରିୟ ପ୍ରଭୃତି ସମ୍ବନ୍ଧ ଶୂନ୍ୟ ଏବଂ ନିର୍ଗୁଣ ବୋଲି ନିଜର ଶକ୍ତି ସ୍ୱରୂପା ମାୟା ଗୁଣରେ ଅଧିଷ୍ଠାନ କରି ବାଧ୍ୟ ବାଧକତା ପ୍ରାପ୍ତ ହୋଇ ଥାଆନ୍ତି, (ଅର୍ଥାତ୍ ତାହାଙ୍କର ନିଜର କୌଣସି ଗୁଣ ନ ଥିଲେ ମଧ୍ୟ, ସେ ଗୁଣର ଅଧିଷ୍ଠାତା ବୋଲି ଗୁଣର କାର୍ଯ୍ୟ ତାହାଙ୍କଠାରେ ଆରୋପିତ ହୋଇଥାଏ) ।୬।

ସତ୍ତ୍ୱ, ରଜଃ, ତମଃ, ଏହି ତ୍ରିଗୁଣ—ପ୍ରକୃତିର ଗୁଣ ଆତ୍ମାର ନୁହେଁ, ଏହି ସମସ୍ତ ଗୁଣ ସ୍ୱକୀୟ ନୁହେଁ ବୋଲି ଭଗବାନଙ୍କୁ ପ୍ରାକୃତ ପୁରୁଷ ବୋଲିଯାଏ ନାହିଁ, ଏହି ଗୁଣମାନଙ୍କର ଏକାବେଳକେ ହ୍ରାସ ବା ବୃଦ୍ଧି ହୁଏ ନାହିଁ ପରନ୍ତୁ କ୍ରମେ ହ୍ରାସ ବୃଦ୍ଧି ହୋଇଥାଏ । ୭ ।

ସତ୍ତ୍ୱଗୁଣ ବୃଦ୍ଧି ସମୟରେ ଦେବତା ବା ଋଷିମାନଙ୍କୁ ଭଜନା କରେ । ଅର୍ଥାତ୍ ସେମାନଙ୍କର ଦେହରେ ପ୍ରବିଷ୍ଟ ହୋଇ ସେମାନଙ୍କୁ ବର୍ଦ୍ଧିତ କରେ, ରଜୋଗୁଣ ବୃଦ୍ଧି କାଳରେ ଅସୁର ମାନଙ୍କ ଏବଂ ତମୋ ଗୁଣରେ ବୃଦ୍ଧି କାଳରେ ଅନୁକୂଳ ହୋଇ ଯକ୍ଷ ରାକ୍ଷସମାନଙ୍କୁ ଅବଲମ୍ବନ କରେ । ୮ ।

---

ସେ ହରି ସ୍ୱଭାବେ ନିର୍ଗୁଣ
ଅଜନ୍ମା ଅବ୍ୟକ୍ତ କାରଣ
ସ୍ୱଭାବେ ପ୍ରକୃତିରୁ ପର
ବ୍ରହ୍ମା ଶଙ୍କରେ ଅଗୋଚର
ସେ ମାୟା ପୁଣି ଆଶ୍ରେକରି
ବାଧ୍ୟ ବାଧକ ଭାବ ଧରି । ୬ ।
ସେ ସତ୍ତ୍ୱ ରଜ ତମୋଗୁଣ
ପ୍ରକୃତି ଏହାର କାରଣ
ଆତ୍ମାର ଗୁଣ ଏ ନୁହନ୍ତି
ପ୍ରକୃତି ରୂପେ ପ୍ରକାଶନ୍ତି
ଉଦୟ ଅସ୍ତ ଏକାବେଳେ
ନୁହନ୍ତି ଗୁଣ କାଳବଳେ । ୭ ।
ସୃଷ୍ଟି ପାଳନ କାଳେ ହରି
ସତ୍ତ୍ୱ ଗୁଣକୁ ଆଶ୍ରେକରି
ଦେବତା ଋଷି ରୂପେ ହୋଇ
ସ୍ୱଧର୍ମେ ସୃଷ୍ଟି ସେ ପାଳଇ
ରଜଗୁଣକୁ ଆଶ୍ରେକରି
ଅସୁରମାନଙ୍କୁ ବିସ୍ତାରି
ଯକ୍ଷ ରାକ୍ଷସ ତମୋଗୁଣେ
ସୃଜଇ କାଳର ପ୍ରମାଣେ । ୮ ।

ଜ୍ୟୋତିରାଦିରିବାଭାତି ସଂଘାତାନ୍ନ ବିବିଚ୍ୟତେ ।
ବିଦନ୍ତ୍ୟାତ୍ମାନମାତ୍ମସ୍ଥଂ ମଥିତ୍ୱା କବୟୋଽନ୍ତତଃ ।୯।
ଯଦା ସିସୃକ୍ଷୁଃ ପୁର ଆତ୍ମନଃ ପରୋ ରଜଃ ସୃଜତ୍ୟେଷ ପୃଥକ୍ ସ୍ୱମାୟୟା ।
ସତ୍ତ୍ୱଂ ବିଚିତ୍ରାସୁ ରିରଂସୁରୀଶ୍ୱରଃ ଶୟିଷ୍ୟମାଣସ୍ତମ ଈରୟତ୍ୟସୌ ।୧୦।

---

କାଷ୍ଠରେ ଯେପରି ଅଗ୍ନି, ପାତ୍ରରେ ଯେପରି ଜଳ, ଘଟାଦିରେ ଯେପରି ଆକାଶ, କ୍ଷୁଦ୍ରରେ କ୍ଷୁଦ୍ରପଣ ଓ ବୃହତ୍‌ରେ ବୃହତ୍‌ପଣ ପ୍ରତୀତ ହେଲେ ମଧ୍ୟ ତାହାର କୌଣସି ବୈଷମ୍ୟ ନ ଥାଏ, ସେହିପରି ସତ୍ତ୍ୱାଦି ଗୁଣାଧିକ୍ୟରେ ଯେଉଁ ଦେବାଦି ଦେହ ପ୍ରସ୍ତୁତ ହୁଏ ତହିଁରେ ଅବସ୍ଥିତ ହୋଇ ବାଧ୍ୟ ଓ ବାଧକ ବୋଲି ପ୍ରତୀତ ହେଲେ ମଧ୍ୟ ଯଥାର୍ଥରେ ତାହାର ବାଧ୍ୟତ୍ୱ ବା ବାଧକତ୍ୱ ରୂପ ବୈଷମ୍ୟ ହୁଏ ନାହିଁ । ସାଧାରଣତଃ କାଷ୍ଠାଦିରୁ ଯେପରି ଜ୍ୟୋତି ପ୍ରଭୃତିକୁ ପୃଥକ ବୋଲି ଜଣାଯାଏ, ସେହିପରି ସାଧାରଣ ଦୃଷ୍ଟିରେ ଦେବାଦି ଦେହଠାରୁ ତାହାକୁ ପୃଥକ ରୂପେ ଉପଲବ୍ଧି କରାଯାଏ ନାହିଁ । ପକ୍ଷାନ୍ତରେ ଯେଉଁମାନେ ନିର୍ଗୁଣ ତତ୍ତ୍ୱଦର୍ଶୀ ବିଜ୍ଞବ୍ୟକ୍ତି ସେମାନେ ଆତ୍ମସ୍ଥ ପରମାତ୍ମା ଭଗବାନ୍ ବିଷ୍ଣୁଙ୍କୁ କାର୍ଯ୍ୟ ଦର୍ଶନ ଲିଙ୍ଗଦ୍ୱାରା ବିଶେଷ ବିଚାର କରି ସ୍ୱଭାବ କର୍ମାଦି ବାଦ ନିଷେଧ ପୂର୍ବକ ଜାଣିଥାନ୍ତି । ଏହି କାରଣରୁ ଭଗବାନ୍ ବିଷ୍ଣୁ ସୁରାଦି ଦେହକୁ ଅଧିଷ୍ଠାନରୂପେ ଆଶ୍ରୟ କରନ୍ତି ଏହା ବୋଲି ଯାଇଅଛି ।୯।

(ଭଗବାନ୍ ଏପରି ବୈଷମ୍ୟ ମାୟାଗୁଣ ନିବନ୍ଧନ ହୋଇଥାନ୍ତି, ତାହା ସ୍ୱାଭାବିକ ନୁହେଁ । ତେବେ ଗୁଣ ପରତନ୍ତ୍ର ବୋଲି ତାହାଙ୍କର ଅନୀଶ୍ୱରତ୍ୱ କାହିଁକି ହେବ ନାହିଁ ଏହାର ଉତ୍ତରରେ କୁହାଯାଉଅଛି)—

ଭଗବାନ୍ ବିଷ୍ଣୁ ଯେତେବେଳେ ଜୀବର ଭୋଗ ନିମିତ୍ତ ଶରୀର ସୃଷ୍ଟି କରିବାକୁ ଇଚ୍ଛା କରନ୍ତି, ସେତେବେଳେ ସେ ନିଜର ମାୟା ପ୍ରଭାବରେ ସମରୂପେ ଅବସ୍ଥିତ ରଜୋଗୁଣ ସୃଷ୍ଟି କରିଥାନ୍ତି । ପୁଣି ଯେତେବେଳେ ସେହି ବିଚିତ୍ର ଶରୀରରେ କ୍ରୀଡ଼ା କରିବାକୁ ଇଚ୍ଛା କରନ୍ତି ସେତେବେଳେ ସତ୍ତ୍ୱଗୁଣ ସୃଷ୍ଟି କରିଥାନ୍ତି । ସଂହାର ଇଚ୍ଛାବେଳେ ତମୋଗୁଣ ସୃଷ୍ଟି କରନ୍ତି ।୧୦।

---

ଜ୍ୟୋତି ସ୍ୱରୂପେ ପ୍ରକାଶଇ
ବହ୍ନିରେ କାହିଁ ନ ମିଶଇ
କାଷ୍ଠ ସଂଯୋଗେ ଅଗ୍ନି ଯେହ୍ନେ
ଜଳ ଯେସନେ ପାତ୍ରସ୍ଥାନେ
ଆକାଶ ଯେହ୍ନେ ଜଳଘଟେ
ତେସନ ପ୍ରକାରେ ପ୍ରକଟେ
ମାୟାରେ ନାନାରୂପ ହୋଇ
ସେ ମାୟା ତାକୁ ନ ଲାଗଇ

ଏହା ବିଚାରି ମୁନିଜନେ
ଆତ୍ମାକୁ ଆତ୍ମା ଅନୁମାନେ
ସଂଶୟ ନ କରନ୍ତି ମନେ
ହରି ବିଷୟେ କ୍ରୀଡ଼ା ସ୍ଥାନେ ।୯।
ସେ କାଳ ମାୟା ଯୋଗଯୁତେ
ପୂରି ସର୍ଜ୍ଜଇ ଏ ଜଗତେ
ରଜ ଗୁଣରେ ସୃଷ୍ଟି କରେ
କାରଣ ବ୍ରହ୍ମ ରୂପଧରେ।

ବସଇ ସତ୍ତ୍ୱ ଅନୁବାଦେ
ଦେବାଧିଦେବ ଦେହମଧ୍ୟେ
ରମିବା ଅର୍ଥେ ଭବଗ୍ରାହ୍ୟ
ଅଶେଷ ଜନ୍ତୁ ହୃଦେ ଥାଇ
କ୍ରୀଡ଼ାର ଅନ୍ତେ ସେ କାରଣେ
ସୃଷ୍ଟି ସଂହରେ ତମୋଗୁଣେ ।୧୦।

କାଳଂ ଚରନ୍ତଂ ସୃଜତୀଶ ଆଶ୍ରୟଂ ପ୍ରଧାନ ପୁଂଭ୍ୟାଂ ନରଦେବ ସତ୍ୟକୃତ୍ ।
ଯ ଏଷ ରାଜନ୍ନପି କାଲ ଈଶିତା ସତ୍ତ୍ୱଂ ସୁରାନୀକ ମିବୈଧୟତ୍ୟତଃ ।
ତତ୍ପ୍ରତ୍ୟନୀକାନସୁରାନ୍ ସୁରପ୍ରିୟୋ ରଜସ୍ତମସ୍କାନ୍ ପ୍ରମିଣୋତ୍ୟୁରୁଶ୍ରବାଃ ।୧୧।
ଅତ୍ରୈବୋଦାହୃତଃ ପୂର୍ବମିତିହାସଃ ସୁରର୍ଷିଣା ।
ପ୍ରୀତ୍ୟାମହାକ୍ରତୌ ରାଜନ୍ ପୃଚ୍ଛତେଽଜାତଶତ୍ରବେ । ୧୨ ।
ଦୃଷ୍ଟ୍ୱା ମହାଦ୍ଭୁତଂ ରାଜନ୍ ରାଜସୂୟେ ମହାକ୍ରତୌ ।
ବାସୁଦେବେ ଭଗବତି ସାୟୁଜ୍ୟଂ ଚେଦିଭୂଭୁଜଃ । ୧୩ ।
ତତ୍ରାସୀନଂ ସୁରଋଷିଂ ରାଜା ପାଣ୍ଡୁସୁତଃ କ୍ରତୌ ।
ପପ୍ରଚ୍ଛ ବିସ୍ମିତମନା ମୁନୀନାଂ ଶୃଣ୍ୱତାମିଦମ୍ । ୧୪ ।

---

(ସେହି ପରମାତ୍ମା କାଳ ଓ ପ୍ରକୃତି ପୁରୁଷର ଅଧୀନ ନୁହନ୍ତି ଏହି ଶ୍ଳୋକ ଦ୍ୱୟରେ କୁହାଯାଇଅଛି) ହେ ରାଜନ ! ଅମୋଘ କାର୍ଯ୍ୟକାରୀ ଭଗବାନ୍ ବିଷ୍ଣୁ ପ୍ରକୃତି ଓ ପୁରୁଷ ନିମିତ୍ତ ଆଶ୍ରୟଭୂତ ବର୍ତ୍ତମାନ କାଳକୁ ଆପେ ସୃଜନ କରନ୍ତି ସୁତରାଂ କାଳ ତାହାଙ୍କର ଚେଷ୍ଟା ସ୍ୱରୂପ । ଏହି କାଳହିଁ ସେହି ଈଶ୍ୱର । ସତ୍ତ୍ୱଗୁଣ ପ୍ରଧାନ ଦେବତାମାନଙ୍କୁ ସେ ବର୍ଦ୍ଧିତ କରିଥାନ୍ତି, ସୁତରାଂ ସତ୍ତ୍ୱଗୁଣ ପ୍ରିୟ ସେହି ପରମେଶ୍ୱର ଦେବତାମାନଙ୍କ ବିରୋଧୀ ଓ ରଜୋଗୁଣ ଓ ତମୋଗୁଣ ପ୍ରଧାନ ଅସୁରଗଣଙ୍କୁ ବିନାଶ କରିଥାନ୍ତି । ୧୧ ।

ହେ ରାଜନ୍ ! ରାଜସୂୟ ମହାଯଜ୍ଞରେ ପ୍ରୀଣିତ ମହାରାଜା ଯୁଧିଷ୍ଠିରଙ୍କର ପ୍ରଶ୍ନର ଉତ୍ତରରେ ଦେବର୍ଷି ନାରଦ ଏ ବିଷୟରେ ଅର୍ଥାତ୍ ଭଗବାନଙ୍କର ଦୈତ୍ୟବଧ ପ୍ରସଙ୍ଗରେ ଯାହା କହିଥିଲେ ତହିଁରୁ ଜଣାଯାଏ ଯେ ଏଥିରେ ଭଗବାନଙ୍କର ଦେବତାମାନଙ୍କ ପ୍ରତି ପ୍ରୀତିଭାବ ବା ଅସୁରମାନଙ୍କ ପ୍ରତି ବିଦ୍ୱେଷ ଭାବ ନାହିଁ । ଏ ସମ୍ବନ୍ଧେ ଗୋଟିଏ ଇତିହାସ କହିଥିଲେ । ୧୨ ।

ହେ ରାଜନ୍ ! ରାଜସୂୟ ଯଜ୍ଞ କାଳରେ ଚେଦି ଦେଶାଧିପତି ଶିଶୁପାଳର ସାଯୁଜ୍ୟ ମୁକ୍ତି ଲାଭରେ ଯେଉଁ ଅଦ୍ଭୁତ ବ୍ୟାପାର ଘଟିଥିଲା ତାହା ଦର୍ଶନ କରି ସେହି ଯଜ୍ଞସ୍ଥଳରେ ଉପବିଷ୍ଟ ଦେବର୍ଷି ନାରଦଙ୍କୁ ପାଣ୍ଡୁନନ୍ଦନ ଯୁଧିଷ୍ଠିର ପ୍ରଶ୍ନ କରିଥିଲେ । ୧୩,୧୪ ।

---

ଯେ ସୃଷ୍ଟି ଆଦ୍ୟକାଳେ ହରି
ଜୀବ ପ୍ରକୃତି ରୂପ ଧରି
ପ୍ରଧାନ ପୁରୁଷ ଏ ବେନି
ନିମିତ୍ତ ମାତ୍ର ସଙ୍ଗେ ଘେନି
ତାଙ୍କ ଆଶ୍ରୟ ସଙ୍ଗ ମେଳି
ଜଗତ ବୁଝାଇଲ କାଳି
କାଳ ଚଳନ୍ତେ ଆଜ୍ଞା ଘେନି
ପ୍ରଧାନ ପୁରୁଷ ଏ ବେନି
ଉଭୟ ମତେ ନାନାଗୁଣେ
ହୋଇଲେ ସଂସାର କାରଣେ ।୧୧
ସେ ମଧ୍ୟ କାଳରୂପ ଧରେ
ସାତ୍ତ୍ୱିକେ ଦେବଙ୍କୁ ଉଦ୍ଧରେ
ଦେବଙ୍କ ପ୍ରିୟ କର୍ମ କରେ
ଅସୁର ବଳକୁ ସଂହାରେ ।
ଏଣୁ ସେ ପ୍ରଭୁ ଭଗବାନ
ବହିଲେ ସୁର ପ୍ରିୟ ନାମ
ରଜ ତାମସ ଗୁଣ ଯେତେ
ତାକୁ ସଂହାରେ ଅବିରତ ।୧୨।
ଏବେ ହେ ଶୁଣ ନରନାଥ
ହରି ଚରିତ ଭାଗବତ
ତାହାର ମହିମା ବିଶେଷେ
ଶୁଣ କହିବା ଇତିହାସେ । ୧୩ ।
ରାଜସୂୟ ଯଜ୍ଞ ସଭା ଅନ୍ତେ
ଧର୍ମ-ନନ୍ଦନର ଅଗ୍ରତେ

ଶ୍ରୀ ଯୁଧିଷ୍ଠିର ଉବାଚ ।
ଅହୋ ଅତ୍ୟଦ୍ଭୁତଂ ହ୍ୟେତଦ୍ଦୁର୍ଲଭୈକାନ୍ତିନାମପି ।
ବାସୁଦେବେ ପରେ ତତ୍ତ୍ୱେ ପ୍ରାପ୍ତିଶ୍ଚୈଦ୍ୟସ୍ୟ ବିଦ୍ୱିଷଃ । ୧୫ ।
ଏତଦ୍ବେଦିତୁମିଚ୍ଛାମଃ ସର୍ବ ଏବ ବୟଂ ମୁନେ ।
ଭଗବନ୍ନିନ୍ଦୟା ବେଣୋ ଦ୍ୱିଜୈସ୍ତମସି ପାତିତଃ । ୧୬ ।
ଦମଘୋଷସୁତଃ ପାପ ଆରଭ୍ୟ କଳଭାଷଣାତ୍ ।
ସମ୍ପ୍ରତ୍ୟମର୍ଷୀ ଗୋବିନ୍ଦେ ଦନ୍ତବକ୍ରଶ୍ଚ ଦୁର୍ମତିଃ । ୧୭ ।

---

ଯୁଧିଷ୍ଠିର କହିଲେ :—

ଓହୋ ! ଏକ ଅଦ୍ଭୁତ ବ୍ୟାପାର ସମ୍ଭବ ହେଲା ! ଯେଉଁ ଚେଦିରାଜ ଶିଶୁପାଳ ଚିରଦିନ ଭଗବାନ୍ ଶ୍ରୀକୃଷ୍ଣଙ୍କ ପ୍ରତି ବିଦ୍ୱେଷ ବୁଦ୍ଧି ପୋଷଣ କରିଥିଲା, ସେ ପୁଣି ପରମତତ୍ତ୍ୱ ବାସୁଦେବଙ୍କର ସାଯୁଜ୍ୟ ମୁକ୍ତି ଲାଭ କଲା ଯାହା ଏକାନ୍ତ ଭଗବତ୍ ଭକ୍ତମାନଙ୍କ ପକ୍ଷରେ ମଧ୍ୟ ଅସମ୍ଭବ । ୧୫ ।

ହେ ମହର୍ଷେ ! ରାଜା ବେଣ ଥରେ ଭଗବାନଙ୍କର ନିନ୍ଦା କରିବାରୁ ବ୍ରାହ୍ମଣମାନେ କ୍ରୁଦ୍ଧ ହୋଇ ତାହାକୁ ନରକରେ ପକାଇଥିଲେ । ସୁତରାଂ ଆମ୍ଭେମାନେ ସମସ୍ତେ ଏହି ଶିଶୁପାଳର ମୁକ୍ତିର କାରଣ ଜାଣିବାକୁ ଇଚ୍ଛୁକ ଅର୍ଥାତ୍ ଭଗବାନଙ୍କର ନିନ୍ଦା କରି ବେଣ ଯେପରି ନରକଗାମୀ ହେଲା ଶିଶୁପାଳ ପକ୍ଷରେ ତହିଁର ବିପରୀତ ଘଟିଲା କାହିଁକି ? । ୧୬ ।

ପାପାତ୍ମା ଦମଘୋଷ ପୁତ୍ର ଶିଶୁପାଳ ଯେଉଁଦିନ ଅବ୍ୟକ୍ତ ସ୍ୱରରେ କଥା କହିବାକୁ ଆରମ୍ଭ କଲା ଅର୍ଥାତ୍ ବାଲ୍ୟ କାଳରୁ ଅଦ୍ୟାପି ସେ ଭଗବାନ୍ ବାସୁଦେବଙ୍କ ପ୍ରତି ବିଦ୍ୱେଷ ପୋଷଣ କରି ତାହାଙ୍କର ନିନ୍ଦା କରିଅଛି । ଦୁଷ୍ଟମତି ଦନ୍ତବକ୍ର ମଧ୍ୟ ସେହିପରି ଭଗବାନଙ୍କ ପ୍ରତି ବିଦ୍ୱେଷ ବୁଦ୍ଧି ପୋଷଣ କରିଥିଲା ସୁତରାଂ ଏମାନଙ୍କର ପାପଗତି ହେଲା ନାହିଁ କାହିଁକି ? । ୧୭ ।

---

ନାରଦ ମୁନି ତାହା କହି
ସେ ସଭା ମଧ୍ୟେ ପାଇଁଥାଇ
ଦେବକୀ-ନନ୍ଦନର ଭୁଲେ
ଧର୍ମ୍ମ-ନନ୍ଦନ ପଚାରିଲେ ।
ସେ ସଭା ମଧ୍ୟେ ଧର୍ମ୍ମବଳା
ଅଦ୍ଭୁତ ନୟନେ ଦେଖିଲା
ଶିଶୁପାଳର ପଥି ପ୍ରାଣ
ଗୋବିନ୍ଦେ ପଶିଲା ଶରଣ
ସଭାଜନଙ୍କ ଦୃଷ୍ଟି ଆଗେ
ବିଜୁଳି ଯେହ୍ନେ ନୀଳ ମେଘେ
। ୧୪, ୧୫ ।

ଯୁଧିଷ୍ଠିର ଉବାଚ—
ହେ ମୁନି ! ଅଦ୍ଭୁତ ଏ କଥା
ଦେଖି ମୋ ମନେ ଗରୁ ଚିନ୍ତା
ଅଷ୍ଟାଙ୍ଗ ଯୋଗେ ମୁନିଗଣେ
ଚିନ୍ତନ୍ତି ଯାହାର ଚରଣେ
ଏକାନ୍ତ ଭକ୍ତିଯୋଗେ ଚିନ୍ତି
ଯା ରୂପ କେହି ନ ଦେଖନ୍ତି
ଦେବ-ଦାନବେ ଅଗୋଚର
ଏମନ୍ତ ମହିମା ଯାହାର
ଏ ଦମଘୋଷର କୁମର
ସ୍ୱଭାବେ ଅଟେ ଦୁରାଚାର

କୃଷ୍ଣେ ଅନେକ ନିନ୍ଦା କଲା
ଏ କିପାଁ କୃଷ୍ଣଙ୍କୁ ପାଇଲା ?
ଏ ସଭାଜନ ସଙ୍ଗେ ମୁହିଁ
ତୁମ୍ଭ ସମ୍ମୁଖେ ପଚାରଇ
କହ ହେ କେବଣ କାରଣେ
ଶୁଣନ୍ତୁ ସକଳେ ଶ୍ରବଣେ ।୧୬,୧୭

ଶପତୋ ରସକୃଦ୍‌ବିଷ୍ଣୁଂ ଯଦ୍‌ବ୍ରହ୍ମ ପରମବ୍ୟୟମ୍ ।
ଶ୍ୱିତ୍ରୋ ନ ଜାତୋ ଜିହ୍ୱାୟାଂ ନାନ୍ଧଂ ବିବେଶ ଭୁସ୍ତମଃ । ୧୮
କଥଂ ତସ୍ମିନ୍ ଭଗବତି ଦୁରବଗ୍ରାହ୍ୟଧାମନି ।
ପଶ୍ୟତାଂ ସର୍ବଲୋକାନାଂ ଲୟମୀୟତୁରଞ୍ଜସା । ୧୯ ।
ଏତଦ୍‌ଭ୍ରାମ୍ୟତି ମେ ବୁଦ୍ଧିର୍ଦୀପାର୍ଚ୍ଚିରିବ ବାୟୁନା ।
ବ୍ରୂହ୍ୟେତଦଦ୍‌ଭୁତତମଂ ଭଗବାନ୍ ହ୍ୟତ୍ର କାରଣମ୍ । ୨୦ ।

ଶ୍ରୀ ବାଦରାୟଣିରୁବାଚ ।

ରାଜ୍ଞସ୍ତଦ୍‌ବଚ ଆକର୍ଣ୍ଣ୍ୟ ନାରଦୋ ଭଗବାନୃଷିଃ ।
ତୁଷ୍ଟଃ ପ୍ରାହ ତମାଭାଷ୍ୟ ଶୃଣ୍ୱତ୍ୟାସ୍ତତ୍‌ସଦଃ କଥାଃ । ୨୧ ।

---

ଯେଉଁ ଭଗବାନ୍ ବିଷ୍ଣୁ ପରାତ୍ପର, ଅବିନଶ୍ୱର, ବ୍ରହ୍ମ ପଦାର୍ଥ ସ୍ୱରୂପ ସେହି ବିଷ୍ଣୁଙ୍କୁ ଯେଉଁ ଶିଶୁପାଳ ଓ ଦନ୍ତବକ୍ର ବାରମ୍ବାର୍ ନିନ୍ଦା କରିଅଛନ୍ତି ସେମାନଙ୍କର ସେହି ନିନ୍ଦା ପ୍ରଧାନ ସାଧକ ଜିହ୍ୱାରେ ଶ୍ୱେତ କୁଷ୍ଠ ରୋଗ ଉତ୍ପନ୍ନ ହେଲ ନାହିଁ କାହିଁକି ? କିମ୍ବା ସେମାନେ ଘୋର ତମସାଚ୍ଛନ୍ନ ନରକରେ ପ୍ରବେଶ କଲେ ନାହିଁ କାହିଁକି ? ଏହା ଅପେକ୍ଷା ଆଉ ଆଶ୍ଚର୍ଯ୍ୟ ବିଷୟ କଣ ହୁଅନ୍ତା ? । ୧୮ ।

ଯେଉଁ ଭଗବାନଙ୍କର ମହିମା ଦୁର୍ଲଭ ସେହି ଭଗବାନଙ୍କର ସ୍ୱରୂପରେ, ସର୍ବସମକ୍ଷରେ ଶିଶୁପାଳ ଓ ଦନ୍ତବକ୍ର କିପରି ଅନାୟାସରେ ଲୟପ୍ରାପ୍ତ ହେଲେ ? ।୧୯ ।

ହେ ଭଗବନ୍ ! ଶିଶୁପାଳ ଓ ଦନ୍ତବକ୍ର ପାପୀହୋଇ ମଧ୍ୟ କିପରି ଭଗବାନଙ୍କର ସାଯୁଜ୍ୟ ଲଭିକଲେ ଏ ବିଷୟରେ ମୋର ବୁଦ୍ଧି ବାୟୁ ଆନ୍ଦୋଳିତ ଦୀପ ଶାଖା ତୁଲ୍ୟ ଭ୍ରାମ୍ୟମାନ ହେଉଅଛି । ମୁଁ ସ୍ଥିର ଭାବରେ କୌଣସି କାରଣ ନିର୍ଣ୍ଣୟ କରି ପାରୁନାହିଁ, ଆପଣ ସର୍ବଜ୍ଞ, ମୋର ଭ୍ରମ ଦୂର କରନ୍ତୁ । ୨୦ ।

ଶ୍ରୀଶୁକଦେବ କହିଲେ :—

ଦେବର୍ଷି ନାରଦ ଯୁଧିଷ୍ଠିରଙ୍କର ପ୍ରଶ୍ନ ଶ୍ରବଣ କରି ଅତ୍ୟନ୍ତ ସନ୍ତୁଷ୍ଟ ହୋଇଥିଲେ ଏବଂ ସଭାସ୍ଥ ସମସ୍ତ ବ୍ୟକ୍ତିଙ୍କର ଶ୍ରବଣ ଗୋଚରରେ ଯୁଧିଷ୍ଠିରଙ୍କୁ କହିଲେ । ୨୧ ।

---

ବିଷ୍ଣୁଙ୍କୁ ବିଷ୍ଣୁ-ଜନ ମେଳେ
ଯେବା ନିନ୍ଦନ୍ତି ଜ୍ଞାନହେଳେ
ସେ ପ୍ରାଣୀ ନରକେ ପଡ଼ନ୍ତି
ମହାନ୍ତ ଏହା କହିଛନ୍ତି ।
ଏ ଦମଘୋଷ-ସୁତ-ବାଣୀ
ସଭାରେ ଦନ୍ତବକ୍ର ପୁଣି
ସେହି ଅନେକ ନିନ୍ଦା କଲେ
ସେ କିପାଁ କୃଷ୍ଣଙ୍କୁ ପାଇଲେ ?
ଏ ବେନି ଜନେ ନିନ୍ଦା କଲେ
ସଭାର ମଧ୍ୟେ ଏକମେଳେ
କୁଷ୍ଠ ନୋହିଲ କିପାଁ ତୁଣ୍ଡେ
କିପାଁ ନ ଗଲେ ଯମକୁଣ୍ଡେ ।୧୮,୧୯
କେବଣ ହେତୁ ବେନି ଶରୀରେ
ପଶିଲେ କୃଷ୍ଣର ଶରୀରେ ?
ଏଣେ ଭ୍ରମଇ ମୋର ମନ
ପବନେ ଯେସନେ ହୁତାଶନ
କାରଣ କହ ମୁନି ମୋତେ
ଶୁଣିଲେ ଯିବ ନା ସନ୍ଦେହ ।୨୦,୨୧

**ଶ୍ରୀ ନାରଦ ଉବାଚ ।**

**ନିନ୍ଦନସ୍ତବ ସତ୍କାର ନ୍ୟକ୍କାରାର୍ଥଂ କଳେବରମ୍ ।**
**ପ୍ରଧାନପରୟୋ ରାଜନ୍ନବିବେକେନ କଳ୍ପିତମ୍ । ୨୨ ।**
**ହିଂସା ତଦଭିମାନେନ ଦଣ୍ଡପାରୁଷ୍ୟୟୋର୍ଯଥା ।**
**ବୈଷମ୍ୟମିହ ଭୂତାନାଂ ମମାହମିତି ପାର୍ଥିବ । ୨୩ ।**
**ଯନ୍ନିବଦ୍ଧୋଽଭିମାନୋଽୟଂ ତଦ୍ବଧାତ୍ପ୍ରାଣିନାଂ ବଧଃ ।**
**ତଥା ନ ଯସ୍ୟ କୈବଲ୍ୟାଦଭିମାନୋଽଖିଳାତ୍ମନଃ ।**
**ପରସ୍ୟ ଦମକର୍ତ୍ତୁର୍ହି ହିଂସା କେନାସ୍ୟ କଳ୍ପ୍ୟତେ । ୨୪ ।**
**ତସ୍ମାଦ୍ବୈରାନୁବନ୍ଧେନ ନିର୍ବୈରେଣ ଭୟେନ ବା ।**
**ସ୍ନେହାତ୍ କାମେନ ବା ଯୁଞ୍ଜ୍ୟାତ୍ କଥଞ୍ଚିନ୍ନେକ୍ଷତେ ପୃଥକ୍ । ୨୫ ।**

---

ଶ୍ରୀନାରଦ କହିଲେ :—

ହେ ରାଜନ୍ ! ନିନ୍ଦା, ସ୍ତୁତି, ସତ୍କାର ତିରସ୍କାର ଏହି ଜ୍ଞାନ ନିମିତ୍ତ ପ୍ରକୃତି ଓ ପୁରୁଷର ଅବିବେକ ପ୍ରଯୁକ୍ତ ଦେହ ନଷ୍ଟ ହୋଇଥାଏ ୨୨ ।

ଯେ ପାର୍ଥିବ ସେହିଦେହରେ ଅଭିମାନ ହେତୁ ପ୍ରାଣୀମାନଙ୍କର "ମୁଁ ଓ ମୋର" ଏହି ବୈଷମ୍ୟ ଦେଖାଯାଏ ଏବଂ ତାର ନାମ ନିନ୍ଦା ହେତୁ ହିଂସା ହୋଇଥାଏ । ୨୩ ।

ସାଧାରଣଙ୍କର ଏହି ଦେହରେ ଅଭିମାନ ଥାଏ । ଏହି ଦେହର ବିନାଶରେ ପ୍ରାଣୀ ବଧ ହୋଇଥାଏ କିନ୍ତୁ ଅଖିଳ ଆତ୍ମା ପରମେଶ୍ୱରଙ୍କର ଅଦ୍ୱିତୀୟତା ହେତୁ ତାହାଙ୍କର ଅଭିମାନ ନାହିଁ ସୁତରାଂ ବୈଷମ୍ୟ ବା ହିଂସା ନାହିଁ । ଯେ ପରଂବ୍ରହ୍ମ ସମଭାବାପନ୍ନ ତାହାଙ୍କର ଏହି ସମୀକରଣାର୍ଥେ ଦଣ୍ଡ ପ୍ରୟୋଗରେ ହିଂସାର କଳ୍ପନା ଆସିଲା କାହୁଁ ? । ୨୪ ।

ଅତଏବ ଶତ୍ରୁଭାବରେ ହେଉ ବା ଅଶତ୍ରୁ ଭାବରେ ହେଉ ଅର୍ଥାତ୍ ଭକ୍ତିଯୋଗ କିମ୍ବା ସ୍ନେହ, ଅଥବା ଭୟ କିମ୍ବା କାମ ଯେ କୌଣସି ଉପାୟରେ ଭଗବାନଙ୍କଠାରେ ଚିତ୍ତ ସମର୍ପଣ କଲେ ସେ କୌଣସି ପ୍ରକାରେ ପୃଥକ ବୋଲି ଦେଖାଯାନ୍ତି ନାହିଁ । ୨୫ ।

---

ଶ୍ରୀଶୁକଉବାଚ—
ଏମନ୍ତେ ଧର୍ମ୍ମ ସୂତ-ବାଣୀ
ଆନନ୍ଦେ ଶୁଣି ବ୍ରହ୍ମ-ମୁନି
କହିଲେ ରାଜାର ଅଗ୍ରତେ
ସମସ୍ତେ ଶୁଣନ୍ତି ଯେମନ୍ତେ ।୨୨।
ନାରଦଉବାଚ—
ଏ ଯେତେ ନିନ୍ଦା ସ୍ତୁତି ଅର୍ଥେ
ମନୁଷ୍ୟ ଶରୀର ଜଗତେ
ପ୍ରକୃତି ପୁରୁଷ ସଂଯୋଗେ
କଳ୍ପିତ ଅବିବେକ ଭାବେ
ବହଇ ହିଂସା ଅଭିମାନ
ଦଣ୍ଡ ପାରୁଷ୍ୟ ସାବଧାନ
"ମୁହିଁ""ମୋହର"ବୋଲି ଜାଣେ
ଯାବତ ବଶ ତିନିଗୁଣେ
ଶରୀର ସ୍ୱଭାବ ଏମନ୍ତେ
ସଂସାର ମଧ୍ୟେ ଛନ୍ତି ଯେତେ
ଆତ୍ମାଭିମାନେ ସବୁ ଦେଖି
ତା ବଧେ ପ୍ରାଣୀ ବଧ ହୋଇ
ଏ ଯେଣୁ କୈବଲ୍ୟର ସ୍ଥାନେ
ନ ଘଟେ ଅର୍ଥ ଅଭିମାନେ
ହିଂସ ବିଷୟେ କିସ ଯେତେ
କୈବଲ୍ୟ ଲଭେ ପ୍ରାଣୀଅନ୍ତେ
। ୨୩- ୨୪ ।

ଯଥା ବୈରାନୁବନ୍ଧେନ ମର୍ତ୍ତ୍ୟସ୍ତନ୍ମୟତାମିୟାତ୍ ।
ନ ତଥା ଭକ୍ତିଯୋଗେନ ଇତି ମେ ନିଶ୍ଚିତା ମତିଃ । ୨୬ ।
କୀଟଃ ପେଶସ୍କୃତା ରୁଦ୍ଧଃ କୁଡ୍ୟାୟାଂ ତମନୁସ୍ମରନ୍ ।
ସଂରମ୍ଭଭୟଯୋଗେନ ବିନ୍ଦତେ ତତ୍ସ୍ୱରୂପତାମ୍ । ୨୭ ।
ଏବଂ କୃଷ୍ଣେ ଭଗବତି ମାୟାମନୁଜ ଈଶ୍ୱରେ ।
ବୈରେଣ ପୂତପାପ୍ମାନସ୍ତମାପୁରନୁଚିନ୍ତୟା । ୨୮ ।
କାମଦ୍ୱେଷାଦ୍ଭୟାତ୍ ସ୍ନେହାତ୍ ଯଥା ଭକ୍ତ୍ୟେଶ୍ୱରେ ମନଃ ।
ଆବେଶ୍ୟ ତଦଘଂ ହିତ୍ୱା ବହବସ୍ତଦ୍‌ଗତିଂ ଗତାଃ । ୨୯ ।

---

(ଭଗବାନ୍‌ଙ୍କର ନିନ୍ଦା ସ୍ତୁତିରେ ବୈଷମ୍ୟଭାବ ନ ଥିବାରୁ ତାହାଙ୍କୁ ଯେ କୌଣସି ଉପାୟରେ ଯାହା ନ କଲେ ମଧ୍ୟ ନିନ୍ଦାଜନିତ ପାପ ଧ୍ୱଂସ ହୋଇ ସାଯୁଜ୍ୟ ଲାଭ ହୋଇପାରେ) । ୨୫ ।

ହେ ରାଜନ୍ ! ମର୍ତ୍ତ୍ୟବାସୀମାନେ ଶତ୍ରୁଭାବ ପୋଷଣ କଲେ ଶତ୍ରୁପ୍ରତି ଯେପରି ତନ୍ମୟତା ଧାରଣ କରନ୍ତି ଭକ୍ତି ଯୋଗରେ ସେପରି ତନ୍ମୟତା ଲାଭ ହୁଏନାହିଁ । ଏହା ମୁଁ ନିଶ୍ଚୟ କରି ଜାଣେ । ଅର୍ଥାତ୍ ଭକ୍ତିଯୋଗ ଅପେକ୍ଷା ଶତ୍ରୁଭାବ ଶ୍ରେୟସ୍କର । ୨୬ ।

ପେଷକୃତ କୀଟ (କୁମ୍ଭକାର କୀଟ) କୁ ଭ୍ରମର ଗର୍ତ୍ତ ମଧ୍ୟକୁ ନେଇ ତାହାପ୍ରତି ଦ୍ୱେଷ ଓ ଭୟଭାବ ଦେଖାଇ ଦେଖାଇ ସେ ଏକାଗ୍ର ଚିତ୍ତରେ ଭ୍ରମରକୁ ସ୍ମରଣ କରୁ କରୁ ସେହି ଭ୍ରମରର ସ୍ୱରୂପ ଲାଭ କରିଥାଏ । ୨୭ ।

ସେହିପରି ମାୟା ମନୁଷ୍ୟଧାରୀ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଶତ୍ରୁଭାବରେ ଚିନ୍ତା କରି କରି ତାହାଙ୍କର ସେହି ଚିନ୍ତାରେ ସମସ୍ତ ପାପ ବିଲୀନ ହୋଇ ପବିତ୍ରତା ଲାଭ କରି ସେ ଭଗବାନଙ୍କୁ ଲାଭ କରିଥିଲା । ୨୮ ।

ପୂର୍ବେ ଏହିପରି ବହୁ ବ୍ୟକ୍ତି ଭକ୍ତି ତୁଲ୍ୟ କାମ, ଦ୍ୱେଷ, ଭୟ ଓ ସ୍ନେହ ବଶତଃ ଭଗବାନ୍ ପରମେଶ୍ୱର ବାସୁଦେବଙ୍କଠାରେ ଏକାନ୍ତ ଚିତ୍ତ ନିବେଶ କରି ରାଗ ଦ୍ୱେଷ ଜନିତ ପାତକରୁ ମୁକ୍ତ ହୋଇ ତାଙ୍କର ଗତି ଓ ତାଙ୍କର ସାରୂପ୍ୟ ଲାଭ କରିଥିଲେ । (ସୁତରାଂ ଶିଶୁପାଳ ବ୍ୟାପାରରେ ବିସ୍ମୟ ଜନକ କିଛି ନାହିଁ) । ୨୯ ।

---

କେ ଭଜେ ରିପୁ ଅନୁବନ୍ଧେ
କେ ଅବା ମିତ୍ର ଭାବ ସନ୍ଧେ
କେବା ଭଜଇ ତାଙ୍କୁ ଡରେ
କେ ଅବା ବାନ୍ଧବ ବେଭାରେ
କେ କାମ ଭାବେ ଅନୁସରେ
କେ ଅବା ସ୍ନେହେ ଚିନ୍ତା କରେ
ଏ ସର୍ବ ଜନ ଅନ୍ତକାଳେ
ପଶନ୍ତି ଚରଣ-କମଳେ । ୨୬ ।

ନିତ୍ୟେ ବଇରଭାବେ ଚିନ୍ତି
ହରିଙ୍କି ଯେମନ୍ତେ ଲଭନ୍ତି
ନିଶ୍ଚଳ ଚିତ୍ତେ ନିତ୍ୟେ ଧ୍ୟାଇ
ଯୋଗୀଏ ଲଭିବେ ତା କାହିଁ
ଏ ଭାବ ନିଶ୍ଚେ ମୋର ମନେ
ଏବେ ହୋ ଶୁଣ ସାବଧାନେ । ୨୭
କୁମ୍ଭଳ କୀଟ କୀଟ ମାରେ
ନେଇ ସ୍ଥାପଇ ନିଜ ଘରେ

ସେ କୀଟ ପ୍ରାଣ ଯିବା ବେଳେ
ସଭୟେ ଦେଖିଥାଇ ଭୋଳେ
ସ୍ୱଭାବେ ଭୟ ଯୋଗେ ମରେ
ତାର ଶରୀର ଅନ୍ତେ ଧରେ । ୨୮ ।
ଏମନ୍ତେ କୃଷ୍ଣର ବିଷୟେ
ସେ ମାୟା-ମନୁଷ୍ୟର ଦେହେ
ବଇରି ପଣେ ତାକୁ ଚିନ୍ତି
ନିର୍ମଳ ହୃଦୟେ ପଶନ୍ତି । ୨୯ ।

ଗୋପ୍ୟଃ କାମାଦ୍‌ଭୟାତ୍‌କଂସୋ ଦ୍ୱେଷାଚ୍ଚୈଦ୍ୟାଦୟୋ ନୃପାଃ ।
ସମ୍ବନ୍ଧାଦ୍‌ବୃଷ୍ଣୟଃ ସ୍ନେହାଦ୍‌ଯୂୟଂ ଭକ୍ତ୍ୟା ବୟଂ ବିଭୋ । ୩୦ ।
କତମୋଽପି ନ ବେଣଃ ସ୍ୟାତ୍ ପଞ୍ଚାନାଂ ପୁରୁଷଂ ପ୍ରତି ।
ତସ୍ମାତ୍‌କେନାପ୍ୟୁପାୟେନ ମନଃ କୃଷ୍ଣେ ନିବେଶୟେତ୍ । ୩୧ ।
ମାତୃଷ୍ୱସ୍ରେୟୋ ବଶ୍ଚୈଦ୍ୟୋ ଦନ୍ତବକ୍ରଶ୍ଚ ପାଣ୍ଡବ ।
ପାର୍ଷଦପ୍ରବରୌ ବିଷ୍ଣୋର୍ବିପ୍ରଶାପାତ୍ ପଦଚ୍ୟୁତୌ । ୩୨ ।

ଶ୍ରୀ ଯୁଧିଷ୍ଠିର ଉବାଚ ।

କୀଦୃଶଃ କସ୍ୟ ବା ଶାପୋ ହରିଦାସାଭିମର୍ଶନଃ ।
ଅଶ୍ରଦ୍ଧେୟ ଇବାଭାତି ହରେରେକାନ୍ତିନାଂ ଭବଃ । ୩୩ ।

---

ହେ ରାଜନ୍ ! ଗୋପୀମାନେ କାମ ହେତୁ, କଂସ ଭୟ ହେତୁ, ଶିଶୁପାଳ ଦ୍ୱେଷ ହେତୁ ତୁମ୍ଭେମାନେ (ପାଣ୍ଡବମାନେ ଓ ଯାଦବମାନେ) ସ୍ନେହବନ୍ଧନ ହେତୁ ଓ ଆମ୍ଭେମାନେ (ନାରଦାଦି ଋଷିମାନେ) ତାଙ୍କର ଗତି ପ୍ରାପ୍ତ ହୋଇ ଅଛୁ । ୩୦ ।

ପୂର୍ବେ ଯେଉଁ ପାଞ୍ଚୋଟି ଭାବରେ ଭଗବାନଙ୍କର ଚିନ୍ତାକାରୀ ମାନଙ୍କ କଥା କହିଲି ବେଣରାଜା ତନ୍ମଧ୍ୟରୁ କୌଣସି ପ୍ରକାରରେ ଭଗବତ୍ ଚିନ୍ତା କରି ନ ଥିଲା । ୩୧ ।

ହେ ପାଣ୍ଡୁନନ୍ଦନ ! ତୁମ୍ଭମାନଙ୍କର ମାତୃଷ୍ୱସା (ମାଉସୀ) ଙ୍କ ପୁତ୍ର ଶିଶୁପାଳ ଏ ଦୁହେଁ ଭଗବାନ୍ ବିଷ୍ଣୁଙ୍କର ଶ୍ରେଷ୍ଠ ପାର୍ଷଦ ହୋଇ ମଧ୍ୟ ବ୍ରାହ୍ମଣମାନଙ୍କ ଅଭିଶାପରେ ବୈକୁଣ୍ଠରୁ ବିଚ୍ୟୁତ ହୋଇ ସେମାନେ ମର୍ତ୍ତ୍ୟକୁ ଆସିଥିଲେ । ୩୨ ।

ଯୁଧିଷ୍ଠିର କହିଲେ :—

ହେ ଭଗବାନ୍ ! ଯେଉଁମାନେ ବିଷ୍ଣୁଙ୍କର ଦାସ ଭାବ ପ୍ରାପ୍ତ ହୋଇଥିଲେ ସେମାନଙ୍କ ପରେ ଏହି ଅଭିଶାପ ଫଳ କିପରି କାର୍ଯ୍ୟକାରୀ ହେଲା, ସେହି ଅଭିଶାପ କିପରି, କିଏବା ଅଭିଶାପ ଦେଇଥିଲା ? କାରଣ ଯେଉଁମାନେ ଭଗବଦ୍‌ଭକ୍ତ ସେମାନଙ୍କର ଜନ୍ମ ସମ୍ଭବ ହେଲା କିପରି ? । ୩୩ ।

---

ଏ ଯେଉଁ କାମ କ୍ରୋଧ ଭୟେ
ଯେବା ଭଜନ୍ତି ମିତ୍ର ସ୍ନେହେ
କୃଷ୍ଣ ଚରଣେ ମନ ଦେଇ
ଅନେକ ଗଲେ ମୋକ୍ଷ ହୋଇ । ୩୦
ଏବେ କହିବା ତୋର ଆଗେ
ଯେବା ତରିଲେ ଯେଉଁ ଭାବେ
ଗୋପ ନଗରେ ଗୋପୀ ଯେତେ
କୃଷ୍ଣ ଭଜିଲେ କାମ ଚିତ୍ତେ
କଂସ ଯେ ନିତ୍ୟେ ଭୟ କଲା
ଅନ୍ତେ ସେ ଗୋବିନ୍ଦେ ପଶିଲା

କ୍ଷତ୍ରିୟ ଶିଶୁପାଳ ଆଦି
କୃଷ୍ଣ ବିଷୟେ ହୋଇ ବାଦୀ
ସମ୍ବନ୍ଧେ ବୃଷ୍ଣି ବଂଶ ଯେତେ
ତୁମ୍ଭେ ଯେ ଜ୍ଞାତି ସ୍ନେହମତେ
ମୁଁ ତାର ଚରଣକମଳେ
ଭକତି କରଇ ନିଶ୍ଚଳେ । ୩୧ ।
ପୂର୍ବେ ଯେ ବେଣ ସତ୍ୟ ଯୁଗେ
ନିରନ୍ତେ ନ ଭଜି ଏ ମାର୍ଗେ
ବ୍ରାହ୍ମଣ ଶାପୁଁ ନାଶ ଗଲା
ଅନ୍ତେ ସେ ନରକେ ପଡ଼ିଲା

ଏଣୁ ହରିଙ୍କି ନାନା ମତେ
ଯେ ଭଜି ପାରେ ଦୃଢ଼ଚିତ୍ତେ
ନିର୍ଭୟେ ଗୋବିନ୍ଦେ ପଶନ୍ତି
ଜନ୍ମ ମରଣୁଁ ନିସ୍ତରନ୍ତି । ୩୨ ।
ଯେ ଦମଘୋଷର କାମିନୀ
ତୋହର ମାତାର ଭଗିନୀ
ତାର ଉଦରୁ ବେନି ବାଳ
ଯେ ଦନ୍ତବକ୍ର ଶିଶୁପାଳ
ପୂର୍ବେ ଏ ହରି ଦ୍ୱାରେ ଥିଲେ
ବ୍ରାହ୍ମଣେ ଅପରାଧ କଲେ

ଦେହେନ୍ଦ୍ରିୟାସୁହୀନାନାଂ ବୈକୁଣ୍ଠପୁରବାସିନାମ୍ ।
ଦେହସମ୍ବନ୍ଧସମ୍ବଦ୍ଧମେତଦାଖ୍ୟାତୁମର୍ହସି । ୩୪ ।
ଶ୍ରୀ ନାରଦ ଉବାଚ ।
ଏକଦା ବ୍ରହ୍ମଣଃ ପୁତ୍ରା ବିଷ୍ଣୁଲୋକଂ ଯଦୃଚ୍ଛୟା ।
ସନନ୍ଦନାଦୟୋ ଜଗ୍ମୁଶ୍ଚରନ୍ତୋ ଭୁବନତ୍ରୟମ୍ । ୩୫ ।
ପଞ୍ଚ ଷଡ୍‌ଢାୟନାର୍ଭାଭାଃ ପୂର୍ବେଷାମପି ପୂର୍ବଜାଃ ।
ଦିଗ୍‌ବାସସଃ ଶିଶୂନ୍ ମତ୍ୱା ଦ୍ୱାଃସ୍ଥୌ ତାନ୍ ପ୍ରତ୍ୟଷେଧତାମ୍ । ୩୬ ।

---

ଯେଉଁ ଭଗବଦ୍ ଭକ୍ତମାନେ ବୈକୁଣ୍ଠପୁରରେ ବାସ କରନ୍ତି ସେମାନଙ୍କର ପ୍ରାକୃତ ଦେହ, ଇନ୍ଦ୍ରିୟ ଓ ପ୍ରାକୃତ ପ୍ରାଣ ନାହିଁ । ତେବେ ସେମାନଙ୍କର ଏପରି ଦେହ ସମ୍ବନ୍ଧ ସମ୍ଭବ ହେଲା କିପରି ? ଏ ବିଷୟ ଆପଣ ବିଶଦରୂପେ ବର୍ଣ୍ଣନା କରନ୍ତୁ । ୩୪ ।

ଶ୍ରୀମହର୍ଷି ନାରଦ କହିଲେ :—

ଥରେ ବ୍ରହ୍ମାଙ୍କର ପୁତ୍ର ସନନ୍ଦ ପ୍ରଭୃତି ମହର୍ଷିମାନେ ଯଦୃଚ୍ଛାକ୍ରମେ ତ୍ରିଭୁବନରେ ଭ୍ରମଣ କରୁ କରୁ ବିଷ୍ଣୁଲୋକରେ ଉପସ୍ଥିତ ହେଲେ । ୩୫ ।

ସନନ୍ଦ ପ୍ରଭୃତି ମହର୍ଷିମାନେ ମରୀଚ୍ୟାଦି ପ୍ରାଚୀନ ଋଷିମାନଙ୍କର ଅଗ୍ରଜାତ । କିନ୍ତୁ ଦେଖିବାକୁ ସେମାନେ ପାଞ୍ଚ ଛଅବର୍ଷ ବାଳକ ତୁଲ୍ୟ ଏବଂ ଦିଗମ୍ବର ଏବଂ ସେମାନଙ୍କ ଅତ୍ୟନ୍ତ ବାଳକ ମନେ କରି ବୈକୁଣ୍ଠ ପୁରର ଦ୍ୱାରପାଳ ଜୟ ବିଜୟ ଭିତରକୁ ପ୍ରବେଶ କରିବାକୁ ନିଷେଧ କରିଥିଲେ । ୩୬ ।

---

ଏ ବେନି ଭାଇ ସହୋଦର
କୃଷ୍ଣ ସେବକ ମଧ୍ୟେ ବର
ମହାନ୍ତ ଅପରାଧ ଫଳେ
ଜନ୍ମିଲେ ଅସୁରର କୁଳେ
ଏ ଜନ୍ମ ମନୁଷ୍ୟ ଶରୀରେ
ଏବେ ମିଳିଲେ ହରିଦ୍ୱାରେ ।୩୩।
ନାରଦ ମୁଖୁଁ ଏ ଚରିତ
ଶୁଣି ବୋଲନ୍ତି ଧର୍ମସୁତ
ଯେ ହରିନାମ ଉଚ୍ଚାରନ୍ତି
ସର୍ବ ସଙ୍କଟୁଁ ତରିଯାନ୍ତି
ସେ ହରି ଦ୍ୱାରପାଳ ପଣେ
ପାଶେ ଖଟନ୍ତି ଅନୁକ୍ଷଣେ
ତାହାଙ୍କୁ କେ ବା ଶାପ ଦେଲା
ମୋତେ ତ ସନ୍ଦେହ ଲାଗିଲା

ଯେ ବଇକୁଣ୍ଠ ପୁରେ ଥାନ୍ତି
ସେ ତ ସଂସାରେ ନ ପଡ଼ନ୍ତି
ଦେହ ସମ୍ବନ୍ଧ ଯହିଁ ନାହିଁ
ସେ କିମ୍ପା ମର୍ତ୍ତ୍ୟ ଦେହ ପାଇ
କିପାଁ ହୋଇଲେ ଦୁରାଚାର
ଏଣୁ ସଂଶୟ ଚିତ୍ତେ ମୋର
ହେ ମୁନି ନମୁଁ ତୋ ଚରଣେ
କହ ଏ କେବଣ କାରଣେ ।୩୪।
ଶ୍ରୀନାରଦ ଉବାଚ—
ଶୁଣ ରାଜନ ସାବଧାନେ
ଦିନେକ ବୈକୁଣ୍ଠ ଭୁବନେ
ବ୍ରହ୍ମାର ପୁତ୍ରେ ବେଦବାଦୀ
ସନକ ସନାତନ ଆଦି
ସେ ଚାରିଭାଇ ଏକଦିନେ
ଭ୍ରମନ୍ତି ଏ ତିନି ଭୁବନେ

ପୁଣି ସେ ଅନ୍ତରୀକ୍ଷେ ଗଲେ
ବିଷ୍ଣୁର ଭୁବନେ ମିଳିଲେ
ପ୍ରବେଶ ହରି ଦ୍ୱାର ଦେଶେ
ବିଷ୍ଣୁର ଦର୍ଶନ ଲାଳସେ । ୩୫ ।
ପାଞ୍ଚ ଷଷ୍ଠ ବରଷ ପ୍ରାୟେ
ସର୍ବେ ଦିଶନ୍ତି ଏକ ଦେହେ
ବାଳ ସ୍ୱଭାବେ ଦିଗମ୍ବର
ସ୍ୱଭାବେ ବ୍ରହ୍ମାର କୁମର
ମରୀଚି ଆଦି ମୁନିଗଣେ
ସେବନ୍ତି ଯାହାର ଚରଣେ
ତାହାଙ୍କୁ ବାଳ ପ୍ରାୟେ ଚାହିଁ
ଜୟ ବିଜୟ ବେନି ଭାଇ
ଉଲଗ୍ନ ଦେଖି ଦ୍ୱାରପାଳେ
ଦ୍ୱାର ନିଷେଧ କଲେ ବଳେ ।୩୬।

ଅଶପନ୍ କୁପିତା ଏବଂ ଯୁଵାଂ ଵାସଂ ନ ଚାର୍ହଥଃ ।
ରଜସ୍ତମୋଭ୍ୟାଂ ରହିତେ ପାଦମୂଲେ ମଧୁଦ୍ଵିଷଃ ।
ପାପିଷ୍ଠାମାସୁରୀଂ ଯୋନିଂ ବାଲିଶୌ ଯାତମାଶ୍ଵତଃ । ୩୭ ।
ଏବଂ ଶପ୍ତୌ ସ୍ୱଭବନାତ୍ ପତନ୍ତୌ ତୌ କୃପାଳୁଭିଃ ।
ପ୍ରୋକ୍ତୌ ପୁନର୍ଜନ୍ମଭିର୍ଵାଂ ତ୍ରିଭିର୍ଲୋକାୟ କଳ୍ପତାମ୍ । ୩୮ ।
ଜଜ୍ଞାତେ ତୌ ଦିତେଃ ପୁତ୍ରୌ ଦୈତ୍ୟଦାନବବନ୍ଦିତୌ ।
ହିରଣ୍ୟକଶିପୁର୍ଜ୍ୟେଷ୍ଠୋ ହିରଣ୍ୟାକ୍ଷୋଽନୁଜସ୍ତତଃ । ୩୯ ।

---

ତଦନନ୍ତର୍ ଏହି ମହର୍ଷିମାନେ କୁପିତ ହୋଇ ଏମାନଙ୍କ ପ୍ରତି ଅଭିଶାପ ଦେଲେ, "ରେ ମୂର୍ଖ ! ତୁମ୍ଭେମାନେ ରଜ ଓ ତମଗୁଣ ଶୂନ୍ୟ ଭଗବାନ ବିଷ୍ଣୁଙ୍କର ପାଦ ମୂଳରେ ଅବସ୍ଥାନ କରିବା ଉଚିତ ନୁହେଁ । ସୁତରାଂ ତୁମ୍ଭେମାନେ ଅବିଳମ୍ବେ ପାପ ବହୁଳ ଅସୁର୍‌ଯୋନି ଲଭ୍‌କର" । ୩୭ ।

ସନନ୍ଦାଦିଙ୍କ କର୍ତ୍ତୃକ ଏହିପରି ଅଭିଶପ୍ତ ହୋଇ ଏହି ଦ୍ୱାରପାଳମାନେ ନିଜବାସ ବୈକୁଣ୍ଠରୁ ବିଚ୍ୟୁତ ହୋଇ ଥିଲେ । ସେତେବେଳେ କୃପାପରବଶ ଋଷିମାନେ କହିଲେ, "ତିନିଜନ୍ମ ଅସୁର୍‌ଯୋନିରେ ଜନ୍ମ ହୋଇ ତୁମ୍ଭେମାନେ ଏହି ପୁଣି ଲଭ୍ କରିବ" । ୩୮ ।

ତଦନନ୍ତର୍ ହିରଣ୍ୟକଶିପୁ ଜ୍ୟେଷ୍ଠ, ହିରଣ୍ୟାକ୍ଷ କନିଷ୍ଠ ଏହିପରି ଦୁଇଦୈତ୍ୟ ଦିତିଙ୍କ ଗର୍ଭରେ ଜନ୍ମ ଗ୍ରହଣ କରିଥିଲେ । ସେମାନଙ୍କର୍ ଅସୀମ ପ୍ରଭାବ ହେତୁ ଦୈତ୍ୟ ଓ ଦାନବ ସେମାନଙ୍କ ବନ୍ଦନା କରିଥିଲେ । ୩୯ ।

---

ମୁନିଙ୍କ ମନ ହରିସାଦେ
ପଶି ନ ପାରି ପରମାଦେ
ଦ୍ୱାରପାଳଙ୍କ ମୁଖ ଚାହିଁ
କୋପେ ବୋଇଲେ ଗର୍ଜାଇ
ତୁମ୍ଭେରେ ଦୁଷ୍ଟ ବେନି ଭାଇ
ଏ ପୁରେ ଥିବା ନ ଯୋଗାଇ
ଏ ବିଷ୍ଣୁ ବଇକୁଣ୍ଠ ଧାମ
ଏଥେ ନ ପଶେ ରଜ ତମ
ଏଥେ ନ ଥାଅ ବେନି ଭାଇ
ମର୍ତ୍ତ୍ୟେ ଜନମ ଦେହ ବହି ।୩୭।

ଅତି ପାପିଷ୍ଠ ତୁମ୍ଭ ଦେହ
ଅସୁର କୁଳେ ଜନ୍ମ ହୁଅ
ତକ୍ଷଣେ ବିପ୍ର ଶାପ ପାଇ
ଦ୍ୱାରୁ ଖସିଲେ ବେନି ଭାଇ
ଊର୍ଦ୍ଧ୍ୱ ଚରଣ ଅଧୋମୁଖ
ତକ୍ଷଣେ ଦେଖି ତାଙ୍କ ଦୁଃଖ
ଦୟାସାଗର ତାଙ୍କ ଦେଖି
ସ୍ନେହେ ବୋଇଲେ ଗର୍ଜାଇ
ଅସୁର ଦେହେଁ ତିନି ଜନ୍ମ
ନିତ୍ୟେ କରିବ ଦୁଷ୍କପଣ

ଭୂମିଷ୍ଠ ଜନ୍ମେ ନର ହୋଇ
ଶାପୁଁ ତରିବ ବେନି ଭାଇ
ବିଷ୍ଣୁଙ୍କୁ ଚିନ୍ତି ଅପରାଧ
ପୁଣ ଲଭିବ ନିଜ ପଦ
ପ୍ରଥମେ କଶ୍ୟପର ଘରେ
ଜନ୍ମିଲେ ଦିତିର ଉଦରେ
ହିରଣ୍ୟ ହିରଣ୍ୟକଶିପୁ
ବଜ୍ରହୁଁ ଆଣ୍ଟ ବେନି ବପୁ
ଦୈତ୍ୟ ଦାନବ ତାଙ୍କ ପାଦେ
ଖଟନ୍ତି ନିତ୍ୟେ ଅପବାଦେ ।୩୮,୩୯

ହତୋ ହିରଣ୍ୟକଶିପୁର୍ହରିଣା ସିଂହରୂପିଣା ।
ହିରଣ୍ୟାକ୍ଷୋ ଧରୋଦ୍ଧାରେ ବିଭ୍ରତା ଶୌକରଂ ବପୁଃ । ୪୦ ।
ହିରଣ୍ୟକଶିପୁଃ ପୁତ୍ରଂ ପ୍ରହ୍ଲାଦଂ କେଶବପ୍ରିୟମ୍ ।
ଜିଘାଂସୁରକରୋନ୍ନାନା ଯାତନା ମୃତ୍ୟୁହେତବେ । ୪୧ ।
ତଂ ସର୍ବ ଭୂତାତ୍ମଭୂତଂ ପ୍ରଶାନ୍ତଂ ସମଦର୍ଶନଂ ।
ଭଗବତ୍ତେଜସା ସ୍ପୃଷ୍ଟଂ ନାଶକ୍ନୋଦ୍ଧନ୍ତୁମୁଦ୍ୟମୈଃ । ୪୨ ।
ତତସ୍ତୌ ରାକ୍ଷସୌ ଜାତୌ କେଶିନ୍ୟାଂ ବିଶ୍ରବାସୁତୌ ।
ରାବଣଃ କୁମ୍ଭକର୍ଣ୍ଣଶ୍ଚ ସର୍ବଲୋକୋପତାପନୌ । ୪୩ ।

---

ଭଗବାନ ବିଷ୍ଣୁ ନୃସିଂହାବତାର ଧାରଣ କରି ହିରଣ୍ୟକଶ୍ୟପୁକୁ ବଧ କରିଥିଲେ ଏବଂ ପ୍ରଳୟ ପୟୋଧି ଜଳମଗ୍ନା ପୃଥିବୀକୁ ଉଦ୍ଧାର କଲାବେଳେ ବରାହରୂପ ଧାରଣ କରି କନିଷ୍ଠ ଭ୍ରାତା ହିରଣ୍ୟାକ୍ଷକୁ ବଧ କରିଥିଲେ । ୪୦ ।

ହିରଣ୍ୟକଶ୍ୟପୁ ଦୈତ୍ୟ ନିଜର ଭ୍ରାତୃ ବୈରୀ ବିଷ୍ଣୁଙ୍କର ପରମ ଭକ୍ତ ନିଜ ପୁତ୍ର ପ୍ରହ୍ଲାଦ ପ୍ରତି ଜିଘାଂସା ବୃତ୍ତି ଅବଲମ୍ବନ କରି ତାହାର ମରଣ ନିମିତ୍ତ ନାନାପ୍ରକାର କଷ୍ଟ ଦେଇଥିଲା । ୪୧ ।

ପରନ୍ତୁ ସେହି ହିରଣ୍ୟ କଶିପୁ ସର୍ବଭୂତରେ ପରମାତ୍ମା ବୁଦ୍ଧିଧାରୀ ପ୍ରଶାନ୍ତ, ସର୍ବତ୍ର ସମଦୃଷ୍ଟି ସମ୍ପନ୍ନ ନିଜପୁତ୍ର ପ୍ରହ୍ଲାଦକୁ ବିବିଧଚେଷ୍ଟା ଦ୍ୱାରା ବଧ କରି ପାରିଲା ନାହିଁ କାରଣ ପ୍ରହ୍ଲାଦ ଭଗବାନଙ୍କର ପରମ ଭକ୍ତ । ସେ ତାହାକୁ ନିଜ ପ୍ରଭାବରେ ବ୍ୟାପ୍ତ କରି ରଖିଥିଲେ । ୪୨ ।

ବିଷ୍ଣୁ, ହିରଣ୍ୟାକ୍ଷ ଓ ହିରଣ୍ୟକଶ୍ୟପକୁ ବଧ କରିବା ପରେ ସେମାନେ ବିଶ୍ରବା ନନ୍ଦନ ରୂପେ କେଶିନୀ ଗର୍ଭରେ ରାବଣ ଓ କୁମ୍ଭକର୍ଣ୍ଣ ରାକ୍ଷସ ରୂପେ ଜନ୍ମଗ୍ରହଣ କରି ସମସ୍ତ ଭୁବନରେ ଉତ୍ପାତ କରିଥିଲେ । ୪୩ ।

---

ବିଷ୍ଣୁ ନୃସିଂହ ରୂପ ଧରି
ହିରଣ୍ୟ କଶିପୁ ବିଦାରି
ଗୋବିନ୍ଦ କଲେ ତାଙ୍କ ପାରି
ପାତାଳେ ହିରଣ୍ୟାକ୍ଷ ସ୍ଥିରି
ସେ ପୁଣି ଧରଣୀ ଉଦ୍ଧାରେ
ହରିଙ୍କି ବରୁଣ ପୁରରେ
ବରାହ ରୂପ ଦେଖି କୋପେ
ମିଳିଲା ଗୋବିନ୍ଦ ସମୀପେ
ଅନେକ ଗଦା ଯୁଦ୍ଧ କଲା
ଶବଦେ ଭୁବନ କମ୍ପିଲା
ଗୋବିନ୍ଦ ଗଦାଘାତ ବଳେ
ପ୍ରାଣ ଛାଡ଼ିଲା ରସାତଳେ । ୪୦ ।
ହିରଣ୍ୟକଶିପୁର ସୁତ
ପ୍ରହ୍ଲାଦ ଗୋବିନ୍ଦ ଭକତ
ତାକୁ ଅନେକ ଦୁଃଖ ଦେଇ
କୃଷ୍ଣ ଭଜନ ନ ସହଇ
ସେ ପୁଣି କୃଷ୍ଣ-ତତ୍ତ୍ୱ ବଳେ
ଅଜନ୍ମ ଅବନୀ ମଣ୍ଡଳେ
ତାକୁ ଅନେକ ଦୁଃଖ ଦେଲା
କେବେହେଁ ମାରି ନ ପାରିଲା
ଲୀଳାଏ ହରି ତାକୁ ମାରି
ପୁଣି ଜନ୍ମିଲେ ଦେହ ଧରି । ୪୧, ୪୨
ପୁଣି ରାକ୍ଷସୀ କୋଳେ ଯାଇ
ବିଶ୍ରବା ଗୃହେ ବେନି ଭାଇ
କେଶିନୀ ଗର୍ଭେ ଲଭି ଜନ୍ମ
ଅନେକ କଲେ ଦୁଷ୍ଟ କର୍ମ
ରାବଣ କୁମ୍ଭକର୍ଣ୍ଣ ରୂପେ
ତ୍ରିଲୋକ ବଶ କଲେ ତାପେ
ତାହାଙ୍କୁ ରାମ କୋପେ ମାରି
ରାକ୍ଷସ ଜନ୍ମରୁ ଉଦ୍ଧରି

ତତ୍ରାପି ରାଘବୋ ଭୂତ୍ୱା ନ୍ୟହନଚ୍ଛାପମୁକ୍ତୟେ ।
ରାମବୀର୍ଯ୍ୟଂ ଶ୍ରୋଷ୍ୟସି ତ୍ୱଂ ମାର୍କଣ୍ଡେୟମୁଖାତ୍ ପ୍ରଭୋ । ୪୪ ।
ତାବତ୍ କ୍ଷତ୍ରିୟୌ ଜାତୌ ମାତୃଷ୍ୱସ୍ରାତ୍ମଜୌ ତବ ।
ଅଧୁନା ଶାପନିର୍ମୁକ୍ତୌ କୃଷ୍ଣଚକ୍ରହତାଂହସୌ । ୪୫ ।
ବୈରାନୁବନ୍ଧତୀବ୍ରେଣ ଧ୍ୟାନେନାଚ୍ୟୁତସାତ୍ମତାମ୍ ।
ନୀତୌ ପୁନର୍ହରେଃ ପାର୍ଶ୍ୱଂ ଜଗ୍ମତୁର୍ବିଷ୍ଣୁପାର୍ଷଦୌ । ୪୬ ।
ଯୁଧିଷ୍ଠିର ଉବାଚ । ବିଦ୍ୱେଷୋ ଦୟିତେ ପୁତ୍ରେ କଥମାସୀନ୍ମହାତ୍ମନି ।
ବ୍ରୂହି ମେ ଭଗବାନ୍ ଯେନ ପ୍ରହ୍ଲାଦସ୍ୟାଚ୍ୟୁତାତ୍ମତା । ୪୭ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ
ଯୁଧିଷ୍ଠିରନାରଦୋକଥନଂ ନାମୈକୋପ୍ରଥମୋଽଧ୍ୟାୟଃ । ୧୯ ।

---

ହେ ରାଜନ୍ ! ଏମାନଙ୍କର ଏହି ଜନ୍ମରେ ମଧ୍ୟ ଭଗବାନ୍ ରଘୁବଂଶରେ ଶ୍ରୀରାମଚନ୍ଦ୍ର ରୂପେ ଅବତୀର୍ଣ୍ଣ ହୋଇ ସନକାଦି ପ୍ରଦତ୍ତ ପାପ ମୁକ୍ତି ନିମିତ୍ତ ସେମାନଙ୍କୁ ବଧ କରିଥିଲେ । ଶ୍ରୀରାମଚନ୍ଦ୍ରଙ୍କର ସେହି ପ୍ରଭାବ ତୁମ୍ଭେ ମାର୍କଣ୍ଡେୟ ଋଷିଙ୍କ ମୁଖରୁ ଶ୍ରବଣ କରିବ । ୪୪ ।

ଏହି ଜନ୍ମରେ ଏ ଦୁହେଁ ତୁମ୍ଭର ମାତୃଷ୍ୱସା ଶ୍ରୁତଶ୍ରବାଙ୍କ ଗର୍ଭରେ କ୍ଷତ୍ରିୟ ରୂପେ ଶିଶୁପାଳ ଓ ଦନ୍ତବକ୍ର ରୂପେ ଜନ୍ମ ଗ୍ରହଣ କରିଅଛନ୍ତି ଏବଂ ରାଜସୂୟ ଯଜ୍ଞକାଳରେ ସମ୍ପ୍ରତି ଶ୍ରୀକୃଷ୍ଣ ଚକ୍ରପାତରେ ମୁକ୍ତିଲଭି କରି ଶାପ ବିନିର୍ମୁକ୍ତ ହେଲେ । ୪୫ ।

ବିଷ୍ଣୁଙ୍କର ପାର୍ଷଦ ସେହି ଜୟ ବିଜୟ ବିଷ୍ଣୁଙ୍କ ପ୍ରତି ଦ୍ୱେଷଭାବ ପୋଷଣ କରି ତୀବ୍ର ଧ୍ୟାନ ଯୋଗରେ ତାହାଙ୍କ ସହିତ ସଦ୍‌ଭାବ କରି ବିଷ୍ଣୁଙ୍କ ନିକଟକୁ ଗମନ କରିଥିଲେ । ୪୬ ।

ଶ୍ରୀ ଯୁଧିଷ୍ଠିର କହିଲେ—ହେ ଭଗବନ୍ ! ପ୍ରହ୍ଲାଦ ମହାତ୍ମା ଏବଂ ହିରଣ୍ୟକଶିପୁର ସ୍ନେହର ପୁତ୍ର । ତାହାପ୍ରତି କିହେତୁ ହିରଣ୍ୟକଶିପୁ ବିଦ୍ରୋହ ଭାବ ପୋଷଣ କରିଥିଲି ଏବଂ କି କାରଣରୁ ପ୍ରହ୍ଲାଦ ନାରାୟଣଙ୍କୁ ଏକମାତ୍ର ଦେବତା ବୋଲି ପୂଜା କରିଥିଲି ତାହା ମୋତେ କହନ୍ତୁ । ୪୭ ।

---

ସେ ରାମ ଚରିତ ତୁ ମୁଖେ
ଶୁଣିବୁ ମାରକଣ୍ଡ ମୁଖେ ।୪୩,୪୪
ପୁଣ ସେ ମହୀତଳେ ଜାତ
ତୋ ମାତା ଭଗିନୀର ସୁତ
ଏବେ ଏ ଯଜ୍ଞ ସଭାମଧ୍ୟେ
କୃଷ୍ଣଙ୍କୁ ନିନ୍ଦି ଅପରାଧେ
ଗୋବିନ୍ଦ ଚକ୍ରେ ଛେଦି ହୋଇ
ମୋକ୍ଷ ହୋଇଲେ ବେନିଭାଇ ।୪୫
ବୈରାନୁବନ୍ଧେ କରି ଧ୍ୟାନ
ହେତେ ପାଇଲେ ଦିବ୍ୟଜ୍ଞାନ

ମୁଣି ମିଳିଲେ ନିଜ ପୁରେ
ବିଷ୍ଣୁର ବଇକୁଣ୍ଠ ଦ୍ୱାରେ ।୪୬
ଏମନ୍ତେ ଶୁଣି ଧର୍ମସୁତ
ମୁନି ଚରଣେ ଦେଇ ହସ୍ତ
ଭାବେ ପୁଲକ ତାର ଦେହ
ବୋଲେ ନାରଦ ମୁଖ ଚାହିଁ
ହିରଣ୍ୟ କଶିପୁର ସୁତ
ସେବଇ ଗୋବିନ୍ଦ ଭକତ
ତାହାଙ୍କ ପୁତ୍ର ଭାବ ଛାଡ଼ି
ନିଷ୍ଠୁରମାର୍ଗେ କପାଁ ବଡ଼ି

ଅପୂର୍ବ ପୁତ୍ର ପ୍ରହଲଦ
କପାଁ ଭଜିଲି କୃଷ୍ଣପାଦ ।୪୭
ବୋଲଇ ଦାସ ଜଗନ୍ନାଥ
ନାରଦ ଆଗେ କୁନ୍ତିସୁତ
ସଭାରେ ମଧ୍ୟେ ପଚାରିଲି
ଯେ ଭାଗବତ କୃଷ୍ଣ ଲୀଳା
ସପ୍ତମ ସ୍କନ୍ଧେ ହରିବାଣୀ
ଶୁଣି ସଂସାରୁ ତରପ୍ରାଣୀ
ଯେ ଭାବେ ପାର ଦୃଢେ ଧରି
ପାର କରିବେ ଚକ୍ରଧର

**ବିଶଦାର୍ଥ—**

ଏହି ଅଧ୍ୟାୟରେ ଭକ୍ତ ପ୍ରବର ପ୍ରହ୍ଲାଦ ଉପାଖ୍ୟାନ ବର୍ଣ୍ଣନା ପୂର୍ବରୁ ତହିଁର ସୂଚନା ଦିଆଯାଇଅଛି । ଷଷ୍ଠ ସ୍କନ୍ଧରେ ଶ୍ରୀ ଶୁକଦେବ ମହାରାଜ ପରୀକ୍ଷିତଙ୍କୁ ଇନ୍ଦ୍ରଙ୍କ ସମ୍ବନ୍ଧେ ଯାହା କହିଥିଲେ ସେଥିରୁ ସାଧାରଣ ବ୍ୟକ୍ତି ଅନୁମାନ କରିବ ଯେ ଭଗବାନ୍ ବିଷ୍ଣୁ ଯେପରି ଇନ୍ଦ୍ରଙ୍କ ପ୍ରତି ପକ୍ଷପାତ । ସୁତରାଂ ରାଜା ପରୀକ୍ଷିତଙ୍କ ମନରେ ସେହି ସନ୍ଦେହ ଉପସ୍ଥିତ ହୋଇଥିଲା, ତାହା ଦୂରୀକରଣ ନିମିତ୍ତ ସେ ଶ୍ରୀ ଶୁକଦେବଙ୍କୁ କେତେଗୁଡ଼ିଏ ପ୍ରଶ୍ନ କରିଥିଲେ । ସେହି ସନ୍ଦେହ ଦୂର କରିବା ଉଦ୍ଦେଶ୍ୟରେ ଶ୍ରୀ ଶୁକଦେବ କହିଲେ, ଦୈତ୍ୟ ଗଣଙ୍କୁ ବଧ କରିବା ଦ୍ୱାରା ବିଷ୍ଣୁ ଇନ୍ଦ୍ରଙ୍କ ପ୍ରତି କୌଣସି ପକ୍ଷପାତ ଦେଖାଇ ନାହାନ୍ତି କିମ୍ବା ଏହିପରି ବଧ ସାଧନରେ ବିଷ୍ଣୁଙ୍କର କୌଣସି ବିଦ୍ୱେଷ ବୁଦ୍ଧି ନ ଥିଲା । ଭୟ ଓ ବିଦ୍ୱେଷ ଏହା ଗୁଣର ଧର୍ମ କିନ୍ତୁ ଭଗବାନ ଗୁଣାତୀତ, ସୁତରାଂ ତାଙ୍କଠାରେ ଗୁଣଜ ଭୟ ଓ ବିଦ୍ୱେଷ ଅସମ୍ଭବ । ଭଗବାନ୍ ସ୍ୱୟଂ ସର୍ବଶକ୍ତିମାନ୍ । ସୁତରାଂ ଅସୁରମାନଙ୍କୁ ଭୟକରିବା ବା ଭୟ ହେତୁ ବିଦ୍ୱେଷ ଭାବ ପୋଷଣ କରିବା ସମ୍ଭବ ନୁହେଁ । ତାହାହେଲେ ସେ କି ହେତୁ ଇନ୍ଦ୍ରଙ୍କ ପ୍ରତି ଅଧିକ ଅନୁଗ୍ରହ ପ୍ରଦର୍ଶନ କରି ଅସୁରମାନଙ୍କ ଅନିଷ୍ଟ ସାଧନ କରିବେ । ଏହାହିଁ ପରୀକ୍ଷିତଙ୍କ ପ୍ରଶ୍ନ ।

ଏହି ପ୍ରଶ୍ନ ଶୁଣି ଶ୍ରୀ ଶୁକଦେବ ପରମ ଆପ୍ୟାୟିତ ହୋଇଥିଲେ ଏବଂ କହିଲେ, ଏ ପ୍ରକାର ସନ୍ଦେହ ସ୍ୱାଭାବିକ । ଯେଉଁ ମନୀଷୀଗଣ ଭଗବାନଙ୍କର ଶ୍ରେଷ୍ଠ ଭକ୍ତରୂପେ ପରିଚିତ, ସେମାନଙ୍କର ମଧ୍ୟ ଏହି ପ୍ରକାର ସନ୍ଦେହ ହୋଇଥିଲା । ଭଗବାନଙ୍କର ଚରିତ୍ର ଅତ୍ୟନ୍ତ ଅଦ୍ଭୁତ । ନାରଦାଦି ଋଷିଗଣ ଭଗବାନଙ୍କର ଚିର ସହଚର । ଭଗବାନ୍ ସେମାନଙ୍କୁ ସର୍ବଦା ପ୍ରେମ ଚକ୍ଷୁରେ ଦେଖିଥାଆନ୍ତି, ସେମାନଙ୍କ ମୁଖରୁ ଏହି ସଂଶୟ ଛେଦନ ବିଷୟରେ ଯାହା ନିଃସୃତ ହୋଇଥିଲା, ତାହା ମୁଁ କହୁଅଛି । ସେ ପ୍ରକୃତିର ଅତୀତ, ଅବ୍ୟକ୍ତ ହେଲେ ମଧ୍ୟ ରାଗ ଦ୍ୱେଷାଦି ହେତୁ ଦେହ ଇନ୍ଦ୍ରିୟାଦି ସମ୍ବନ୍ଧ ଶୂନ୍ୟ, ସେ ଅନାଦି ଏବଂ ନିର୍ଗୁଣ ହେଲେ ମଧ୍ୟ ତାହାଙ୍କୁ ଯେ ବାଧ୍ୟବାଧକ ବୋଲି ଦେଖାଯାଏ ତାହା ଯଥାର୍ଥ ନୁହେଁ, ଯଥାର୍ଥରେ ସେ କାହାରି ବାଧ୍ୟ ବା ବାଧକ ନୁହଁନ୍ତି । ତାହାଙ୍କର ମାୟାଶକ୍ତି ସତ୍ତ୍ୱ, ରଜଃ, ତମଃ ଏହି ତ୍ରିଗୁଣାତ୍ମିକ ମାୟାଗୁଣର ଅଧିଷ୍ଠାନ ହେତୁ ମାୟାର ଧର୍ମହିଁ ତାହାଙ୍କଠାରେ ଆରୋପିତ ହୋଇଥାଏ, ଏହି ତ୍ରିଗୁଣାତ୍ମିକା ଶକ୍ତି ଆତ୍ମାର ଗୁଣ ନୁହେଁ । ସୁତରାଂ ତୁମ୍ଭେ ଯେ ତାହାଙ୍କୁ ସଗୁଣ ବୋଲି ନିର୍ଦ୍ଧାରଣ କରୁଅଛ, ତାହା ସୁଯୁକ୍ତ ନୁହେଁ । ଏହି ତ୍ରିଗୁଣ ସମଭାବରେ ଅବସ୍ଥାନ କରେ ନାହିଁ । ଗୋଟିକର ବିଶେଷ ନ୍ୟୁନତା ବା ଆଧିକ୍ୟ ହେତୁ, ବିଭିନ୍ନ ଉପାଦାନ ବିଶିଷ୍ଟ ବ୍ୟକ୍ତି ବା ବସ୍ତୁ ସୃଷ୍ଟ ହୋଇଥାଏ । ସତ୍ତ୍ୱଗୁଣାଧିକ ହେତୁ, ସତ୍ତ୍ୱ ଗୁଣ ପ୍ରଧାନ, ଦେବ ଶରୀର ସୃଷ୍ଟହୁଏ, ଏବଂ ରଜୋଗୁଣ ପ୍ରଧାନ ହେତୁ, ଅପର ଦୁଇଟି ଗୁଣ ନ୍ୟୁନ ଭାବ ଧାରଣ କରେ । ସେତେବେଳେ ଅସୁର ଦେହ ସୃଷ୍ଟ ହୁଏ । ସେହିପରି ତମୋଗୁଣାଧିକ୍ୟ ହେତୁ ଯକ୍ଷ ରାକ୍ଷସ ଆଦି ଆବିର୍ଭୂତ ହୁଅନ୍ତି । ସେହି ଦେହରେ ଅବସ୍ଥିତ ଗୁଣ ମଧ୍ୟରେ ଯେତେବେଳେ ଦେବ ଦେହରେ ସତ୍ତ୍ୱଗୁଣ ଅପେକ୍ଷା ଆସୁରୀ ଭାବ ରଜୋଗୁଣ ପ୍ରବଳ ହୁଏ, ସେତେବେଳେ ସେହି ଅସୁର ଦେହରେ ପ୍ରବିଷ୍ଟ ହୋଇ ଭଗବାନ୍ ଦେବ ଦେହକୁ ପରାଜିତ କରନ୍ତି । ସେହିପରି ଅସୁର ଦେହର ରଜୋଗୁଣ ଅପେକ୍ଷା ଦେବ ଦେହର ସତ୍ତ୍ୱଗୁଣ ପ୍ରବଳ ହେଲେ ଭଗବାନ୍ ଏହି ଦେବ ଦେହରେ ଅଧିଷ୍ଠିତ ହୋଇ ଅସୁରଗଣଙ୍କ ପ୍ରତି ବ୍ୟାଘାତ ଜନ୍ମାଇ ଥାଆନ୍ତି । ତହିଁରେ ତାହାଙ୍କର କୌଣସି ସ୍ୱାତନ୍ତ୍ର୍ୟ ନାହିଁ, ଗୁଣର ହ୍ରାସ ବୃଦ୍ଧି ଅନୁସାରେ ଏହିପରି ହୋଇଥାଏ । ଗୁଣ ଗୁଡ଼ିକ ଜଡ଼ ପ୍ରକୃତି, ଏଣୁ ଭଗବାନଙ୍କର ଅଧିଷ୍ଠାନ ହେତୁ ଏସବୁ କାର୍ଯ୍ୟମାନ ହୁଏ, ନିର୍ଗୁଣ ଭଗବାନ୍ ସାକ୍ଷୀରୂପେ ଅବସ୍ଥାନ କରିବାରୁ, ଏ ସକଳ ନିମିତ୍ତ ମାତ୍ର, ଭଗବାନ୍ ବିଷ୍ଣୁ ଜଗତର ସୃଷ୍ଟି ସ୍ଥିତି ପ୍ରଳୟ, ତେଣୁ ସର୍ବ

ଶକ୍ତିମାନ୍ ଏବଂ ଏହି ଉଭୟ କାର୍ଯ୍ୟ ଲାଗି, ତାହାଙ୍କର ଉଲ୍ଲିଖିତ ତିନୋଟି ଗୁଣ ପ୍ରୟୋଜନ, ଏହି ପ୍ରସଙ୍ଗରେ ଜୟ ବିଜୟଙ୍କ ଅଭିଶାପ ପ୍ରାପ୍ତି ଓ ତହିଁର ଫଳରେ ସେମାନଙ୍କର ହିରଣ୍ୟକଶିପୁ, ଓ ହିରଣ୍ୟାକ୍ଷ ରୂପେ ଜାତ ହୋଇ ନୃସିଂହ ଓ ବରାହରୂପୀ ଭଗବାନଙ୍କ ଦ୍ୱାରା ନିହତ ହେବା ଓ ରାବଣ କୁମ୍ଭକର୍ଣ୍ଣ ରୂପେ ଜାତ ହୋଇ, ଶ୍ରୀରାମଚନ୍ଦ୍ରଙ୍କ କର୍ତ୍ତୃକ ନିହତ ହେବା ଏବଂ ଶିଶୁପାଳ ଓ ଦନ୍ତବକ୍ର ରୂପେ ଜାତ ହୋଇ ଶ୍ରୀକୃଷ୍ଣଙ୍କ କର୍ତ୍ତୃକ ନିହତ ହେବା ବର୍ଣ୍ଣିତ ହୋଇଅଛି । ଏହି ପ୍ରସଙ୍ଗ ଯୁଧିଷ୍ଠିରଙ୍କ ସମ୍ପାଦିତ ରାଜସୂୟ ଯଜ୍ଞ କାଳରେ ଦେବର୍ଷି ନାରଦ ତାହାଙ୍କୁ ଶୁଣାଇଥିଲେ । ଏହି ହିରଣ୍ୟ କଶିପୁର ପୁତ୍ର ଭକ୍ତ ପ୍ରହ୍ଲାଦ ସେ ପିତ୍ରାଦେଶ ଲଘଂନ କରି ବିଷ୍ଣୁ ନାମ କୀର୍ତ୍ତନ କରିବାରୁ ହିରଣ୍ୟ କଶିପୁ ତାହାର ପ୍ରାଣନାଶ ନିମିତ୍ତ ନାନାପ୍ରକାର ଉପାୟ ଅବଲମ୍ବନ କରିଥିଲେ ମଧ୍ୟ କୃତକାର୍ଯ୍ୟ ହେଲେ ନାହିଁ । ଅବଶେଷରେ ପ୍ରହ୍ଲାଦ କର୍ତ୍ତୃକ ପ୍ରଦର୍ଶିତ ସ୍ତମ୍ଭ ମଧ୍ୟରୁ ଭଗବାନ୍ ନୃସିଂହ ବହିର୍ଗତ ହୋଇ ପ୍ରହ୍ଲାଦଙ୍କୁ ଅଭୟ ଦାନ କରିଥିଲେ ଏବଂ ହିରଣ୍ୟ କଶିପୁକୁ ବଧ କରିଥିଲେ ।



## ଦ୍ୱିତୀୟ ଅଧ୍ୟାୟ ।

ଦ୍ୱିତୀୟେ ବଷ୍ଟ୍ରରେଷେଣ ଲୋକଂ ବପ୍ଲାବ୍ୟ ଦାନବୈଃ ।
ତତ୍ତ୍ୱତୋ ଭ୍ରାତୃ ପୁତ୍ରାଦୀନତହାପୈରସାନ୍ତ୍ୱୟତ୍ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀ ନାରଦ ଉବାଚ ।

ଭ୍ରାତର୍ୟେବଂ ବନହତେ ହରଣା କ୍ରୋଡ଼ମୂର୍ତ୍ତିନା ।
ହିରଣ୍ୟକଶିପୁ ରାଜନ୍ ପର୍ଯ୍ୟତପ୍ୟଦ୍ରୁଷା ଶୁଚା । ୧ ।
ଆହ ଚେଦଂ ରୁଷା ପୂର୍ଣ୍ଣଃ ସନ୍ଦଷ୍ଟଦଶନଚ୍ଛଦଃ ।
କୋପୋଜ୍ଜ୍ୱଲଦ୍ଭ୍ୟାଂ ଚକ୍ଷୁର୍ଭ୍ୟାଂ ନରୀକ୍ଷନ୍ ଧୂମ୍ରମମ୍ବରମ୍ । ୨ ।

---

### ହିରଣ୍ୟାକ୍ଷ ବଧହେତୁ ହିରଣ୍ୟକଶିପୁର ତ୍ରିଭୁବନ ବପ୍ଲାବନ ଆଦେଶ ।

ଦ୍ୱିତୀୟ ଅଧ୍ୟାୟରେ ହିରଣ୍ୟକଶିପୁ ହିରଣାକ୍ଷ ବଧ ହେତୁ କ୍ରୋଧ ହୋଇ ରାକ୍ଷସଙ୍କ ଦ୍ୱାରା ତ୍ରିଭୁବନ ବପ୍ଲାବନ ପୂର୍ବକ ଭ୍ରାତୃବଧୂ ପ୍ରଭୃତିଙ୍କୁ ତତ୍ତ୍ୱୋପଦେଶ ଦ୍ୱାରା ଶାନ୍ତ କରିଅଛି ।

ଶ୍ରୀନାରଦ କହିଲେ :—

ହେ ମହାରାଜ ! ନାରାୟଣ ବରାହ ମୂର୍ତ୍ତିଧାରଣ କରି ଦେବତାମାନଙ୍କ ପ୍ରତି ଅନୁଗ୍ରହ ବଶତଃ ହିରଣ୍ୟ କଶିପୁର ଭ୍ରାତା ହିରଣ୍ୟାକ୍ଷଙ୍କୁ ବଧ କରନ୍ତେ ହିରଣ୍ୟକଶିପୁ ଭ୍ରାତୃହନ୍ତା ବିଷ୍ଣୁଙ୍କ ପ୍ରତି କ୍ରୋଧ ଓ ଭ୍ରାତୃ ବିୟୋଗ ହେତୁ ଶୋକରେ ଅତ୍ୟନ୍ତ ଅର୍ଦ୍ଦିତ ହୋଇଥିଲା । ୧ ।

ହିରଣ୍ୟକଶିପୁ କ୍ରୋଧାନ୍ୱିତ ହୋଇ, ଅଧର କାମୁଡ଼ି, ଅତିଶୟ ପ୍ରଜ୍ୱଳିତ ଚକ୍ଷୁରେ ଧୂମ୍ରବର୍ଣ୍ଣ ଆକାଶକୁ ଅନାଇ ଅସୁରମାନଙ୍କୁ କହିଲା । ୨ ।

---

ହିରଣ୍ୟ କଶିପୁ ଅସୁର, ଭଇମରଣେ ଖେଦଭର । ଜ୍ଞାତିମାନଙ୍କ କଲ ଶାନ୍ତ, ଦ୍ୱିତୀୟ ଅଧ୍ୟାୟ ଚରିତ । ° ।

ଶ୍ରୀ ନାରଦ ଉବାଚ—

କହନ୍ତି ବ୍ରହ୍ମାଙ୍କ ନନ୍ଦନ
ରାଜନ ହୁଅ ସାବଧାନ
ଅସୁର କୁଳେ ଜନ୍ମ ହୋଇ
ଜୟ ବିଜୟ ବେନି ଭାଇ
ହିରଣ୍ୟ ହିରଣାକ୍ଷ ନାମ
ତପେ ତୋଷିଲେ ବେଦବର
ତିନି ଭୁବନେ ମହାତେଜ
ଅସୁର କୁଳ ଘେନି ରାଜ
ଲୋକ ବିପ୍ଳବ ଭୟଙ୍କର
ତ୍ରାସେ କମ୍ପିଲେ ସୁରନର

ତାର ଅନୁଜ ହିରଣାକ୍ଷ
ଗଦା ସଂଗ୍ରାମେ ମହାଦକ୍ଷ
ଦେବେ ମନୁଷ୍ୟେ ତାର ଭୁଲେ
ଗଦା ସଂଗ୍ରାମେ ଭାଙ୍ଗିଗଲେ
ଏ ତିନିଲୋକ ଜିଣି ବଳେ
ବିଜୟେ କଲା ସେ ପାତାଳେ
ବରୁଣ ପୁରେ ଯାଇ ମିଳି
ପ୍ରଚଣ୍ଡ ଗଦା ଊର୍ଦ୍ଧ୍ୱେ ତୋଳି
ବୋଇଲା ମୋତେ ଯୁଦ୍ଧ ଦିଅ
ନୋହିଲେ ପାତାଳେ ନ ଥାଅ
ମୋର ଏ ପାତାଳ ଭୁବନ
ଏମନ୍ତେ ଗଲା କେତେଦିନ

ଯଜ୍ଞ ବରାହ ରୂପ ଧରି
ଦନ୍ତାଗ୍ରେ ଧରଣୀ ଉଦ୍ଧରି
ସେ ହରି ଥିଲେ ତାର ପୁରେ
ତିନି ଭୁବନ ଉପକାରେ
ଅସୁର ଦେଖି ଗଦାଧର
ଗଦା ପ୍ରହାରେ କଲେ ଚୂର
ହିରଣ୍ୟକଶିପୁ ତା ଶୁଣି
କୋପେ କମ୍ପିଲା ଗର୍ଜ୍ଜି ଧ୍ୱନି । ୧ ।
ଅଧର ଦଶନେ କାମୋଡ଼ି
ହାହା ଶବଦେ ଶିର ତାଡ଼ି
ଭ୍ରାତୃ ନିଧନେ ସେ ବିକଳ
ଚାହିଁଲା ଆକାଶ ମଣ୍ଡଳ

**କରାଳଦଂଷ୍ଟ୍ରୋଗ୍ରଦୃଷ୍ଟ୍ୟା ଦୁଷ୍ପ୍ରେକ୍ଷ୍ୟଭ୍ରୁକୁଟୀମୁଖଃ ।**
**ଶୂଳମୁଦ୍ୟମ୍ୟ ସଦସି ଦାନବାନିଦମବ୍ରବୀତ୍ । ୩ ।**
**ଭୋ ଭୋ ଦାନବଦୈତେୟା ଦ୍ୱିମୂର୍ଦ୍ଧଂସ୍ତ୍ର୍ୟକ୍ଷ ଶମ୍ବର ।**
**ଶତବାହୋ ହୟଗ୍ରୀବ ନମୁଚେ ପାକ ଇଲ୍ୱଳ । ୪ ।**
**ବିପ୍ରଚିତ୍ତେ ମମ ବଚଃ ପୁଲୋମନ୍ ଶକୁନାଦୟଃ ।**
**ଶୃଣୁତାନନ୍ତରଂ ସର୍ବେ କ୍ରିୟତାମାଶୁ ମା ଚିରମ୍ । ୫ ।**
**ସପତ୍ନୈର୍ଘାତିତଃ କ୍ଷୁଦ୍ରୈ ର୍ଭ୍ରାତା ମେ ଦୟିତଃ ସୁହୃତ୍ ।**
**ପାର୍ଷ୍ଣିଗ୍ରାହେଣ ହରିଣା ସମେନାପ୍ୟପଧାବନୈଃ । ୬ ।**

---

ତଦନନ୍ତରଂ ସେହି ହିରଣ୍ୟକଶିପୁ କରାଳ ଦଂଷ୍ଟ୍ରା ଯୁକ୍ତ ଉଗ୍ରଦୃଷ୍ଟି ଦ୍ୱାରା ଅତି ଭୀଷଣ ଭ୍ରୂକୁଟି ମୁଖରେ ସଭାସ୍ଥଳରେ ଶୂଳ ଉତ୍ତୋଳନ କରି ଦାନବଗଣଙ୍କୁ କହିଲ । ୩ ।

ହେ ଦୈତ୍ୟଗଣ ! ହେ ଦ୍ୱିମୂର୍ଦ୍ଧନ ! ହେ ତ୍ରିନେତ୍ର ! ହେ ସମ୍ବର ! ହେ ଶତବାହୁ, ହୟଗ୍ରୀବ, ନମୁଚ, ପାକ, ଇଲ୍ୱଳ, ବିପ୍ର ଚିତ୍ତ, ପୁଲୋମନ୍ ଏବଂ ଶକୁନି ଆଦି ଦାନବଗଣ, ତୁମ୍ଭେମାନେ ସମସ୍ତେ ମୋ ବାକ୍ୟ ଶ୍ରବଣ କର ଏବଂ ତହିଁ ଉତ୍ତାରୁ ଯାହା କର୍ତ୍ତବ୍ୟ ତାହା ସ୍ଥିର କର । ୪-୫ ।

କ୍ଷୁଦ୍ରଶକ୍ତି, କ୍ଷୁଦ୍ର ଚିତ୍ତ, ଶତ୍ରୁ ଦେବତାଗଣ, ନାରାୟଣଙ୍କୁ ଉପାସନା ଦ୍ୱାରା ପାଇ ସେ ସର୍ବତ୍ର ସମଦର୍ଶୀ ହେଲେ ମଧ୍ୟ, ମୋର ପ୍ରିୟ ସୁହୃଦ ଭ୍ରାତ ହିରଣ୍ୟାକ୍ଷକୁ ବଧ କରିଅଛି । ୬ ।



ହିରଣ୍ୟକଶିପୁର ଅସୁରମାନଙ୍କୁ ଉପଦେଶ ।

---

ସଧୂମ ହତେଶ ଦଶଦିଶ
ତା ଦେଖି କଲ ମହାରୋଷ
କରାଳଦନ୍ତ ଊର୍ଦ୍ଧ୍ୱ ଦୃଷ୍ଟି
ଲଲାଟେ ନାଚଇ ଭ୍ରୂକୁଟି
ଶୂଳ ଉଠାଇ ସଭାମଧ୍ୟେ
ବୋଲଇଭ୍ରାତାଶୋକନାଦେ । ୨, ୩
ଭୋ ଭୋ ଦାନବ ଦୈତ୍ୟଗଣ
କହଇ ସାବଧାନେ ଶୁଣ

ଦ୍ୱିମୂର୍ଦ୍ଧ ତ୍ରିନେତ୍ର ଶମ୍ବର
ହେ ଶତବାହୁ ହୟଶିର
ନମୁଚେ ହେ ପାକ ଇଲ୍ୱଳ
ହେ ବିପ୍ରଚିତ୍ତ ଶୁଣ ବୋଲ
ପୁଲୋମ ଶକୁନି ଯେତେ
ଏ ମୋର ସଭାମଧ୍ୟେ ଯେତେ
ମୋହର ବୋଲ ବେଗେ କର
ଏ ଶୋକ ସାଗରୁ ଉଦ୍ଧର । ୪, ୫

ମୋର ବଇରୀ ଦେବଲୋକେ
ମନୁଷ୍ୟମଧ୍ୟେ ଛନ୍ତି ଥୋକେ
ହରିଙ୍କି ଭଜନ୍ତି ଯେ ନିତ୍ୟ
ବିଗ୍ରହ କରି ଏକ ମତେ
ହରିର ପକ୍ଷ ଆଶ୍ରେ କଲେ
ମୋର ଭ୍ରାତକୁ ସଂହରିଲେ । ୬ ।

ତସ୍ୟ ତ୍ୟକ୍ତସ୍ୱଭାବସ୍ୟ ଘୃଣେର୍ମାୟାବନୌକସଃ ।
ଭଜନ୍ତଂ ଭଜମାନସ୍ୟ ବାଳସ୍ୟେବାସ୍ଥିରାତ୍ମନଃ । ୭ ।
ମଚ୍ଛୂଳଭିନ୍ନଗ୍ରୀବସ୍ୟ ଭୂରିଣା ରୁଧିରେଣ ବୈ ।
ଅସୃକ୍‌ପ୍ରିୟଂ ତର୍ପୟିଷ୍ୟେ ଭ୍ରାତରଂ ମେ ଗତବ୍ୟଥଃ । ୮ ।
ତସ୍ମିନ୍ କୂଟେଽହିତେ ନଷ୍ଟେ କୃତ୍ତମୂଲେ ବନସ୍ପତୌ ।
ବିଟପା ଇବ ଶୁଷ୍ୟନ୍ତି ବିଷ୍ଣୁପ୍ରାଣା ଦିବୌକସଃ । ୯ ।
ତାବଦ୍ୟାତ ଭୁବଂ ଯୂୟଂ ବ୍ରହ୍ମକ୍ଷତ୍ରସମେଧିତାମ୍ ।
ସୂଦୟଧ୍ୱଂ ତପୋଯଜ୍ଞସ୍ୱାଧ୍ୟାୟବ୍ରତଦାନିନଃ । ୧୦ ।
ବିଷ୍ଣୁର୍ଦ୍ୱିଜକ୍ରିୟାମୂଲୋ ଯଜ୍ଞୋ ଧର୍ମମୟଃ ପୁମାନ୍ ।
ଦେବର୍ଷିପିତୃଭୂତାନାଂ ଧର୍ମସ୍ୟ ଚ ପରାୟଣମ୍ । ୧୧ ।

---

ହେ ଦାନବଗଣ ! ଏହି ନାରାୟଣ ପୂର୍ବେ ତେଜୋମୟ ଥିଲେ ମଧ୍ୟ ମାୟା ପରତନ୍ତ୍ର ହୋଇ ମତ୍ସ୍ୟ, କୂର୍ମ ଓ ବରାହ ରୂପ ଧାରଣ କରି, ନିଜ ସ୍ୱଭାବରୁ ଭ୍ରଷ୍ଟ ହୋଇଅଛି, ତାହାକୁ ଯେତେବେଳେ ଯେ ଉପାସନା କରେ, ସେତେବେଳେ ସେ ତାହା ପ୍ରତି ଆତ୍ମୀୟଭାବ ଦେଖାଏ, ଅତଏବ ତାହାର ଚିତ୍ତ ବାଳକର ଚିତ୍ତ ତୁଲ୍ୟ ଅସ୍ଥିର । ତାହାର ଚିତ୍ତର କୌଣସି ସ୍ଥିରତା ନାହିଁ, ଏସମସ୍ତ କାରଣରୁ ଏହି ହୀନ ସ୍ୱଭାବ ନାରାୟଣର ମସ୍ତକ ମୁଁ ମୋର ଶୂଳ ଦ୍ୱାରା ଛେଦନ କରିବି ଓ ମୋର ଅନ୍ତରର ବ୍ୟଥା ଦୂର କରିବି ।୭,୮।

ସେହି କପଟାଚାରୀ ନାରାୟଣ ବିନଷ୍ଟ ହେଲେ, ବିଷ୍ଣୁଗତ ପ୍ରାଣ ଦେବତାମାନେ ଅଚିରେ ବିନଷ୍ଟ ( ହେବେ ଯେପରି ବୃକ୍ଷର ମୂଳ ଛେଦନ କଲେ ତହିଁର ଶାଖା ପ୍ରଶାଖା ନଷ୍ଟ ହୋଇଯାଏ ) । ୯ ।

ତୁମ୍ଭେମାନେ ପ୍ରଥମେ ବ୍ରାହ୍ମଣ ଓ କ୍ଷତ୍ରିୟପୂର୍ଣ୍ଣ ପୃଥିବୀକୁ ଗମନ କରି, ସେଠାରେ ଯେଉଁମାନେ ତପସ୍ୟା, ଯଜ୍ଞ ବେଦାଧ୍ୟୟନ, ବ୍ରତାନୁଷ୍ଠାନ ଏବଂ ପବିତ୍ର ଦାନ କାର୍ଯ୍ୟାଦି ଦ୍ୱାରା କାଳାତିପାତ କରୁଅଛନ୍ତି, ସେମାନଙ୍କୁ ବଧ କର । ୧୦ ।

ଏହି ବିଷ୍ଣୁ ଧର୍ମମୟ, ଯଜ୍ଞ ପୁରୁଷ, ଦେବର୍ଷି ଓ ପିତୃଗଣ ଭୂତଗଣ, ଓ ଧର୍ମର ଏକମାତ୍ର ପ୍ରଧାନ ଆଶ୍ରୟ ସ୍ଥଳ । ବ୍ରାହ୍ମଣମାନେ ସେମାନଙ୍କ କ୍ରିୟା ଦ୍ୱାରା ଏମାନଙ୍କୁ ମୂଳୀଭୂତ କରି ଅଛନ୍ତି । ୧୧ ।

---

ଏ ହରି ମୋହର ବଇରୀ
ନିର୍ଦ୍ଦୟ ନିତ୍ୟେ ଅହଙ୍କାରୀ
ମାୟାରେ ନାନା ରୂପ ଧରେ
ଭକ୍ତଙ୍କ ସଙ୍ଗେ ସେ ବିହରେ
ବାଳକ ପ୍ରାୟେ ତାର ଗତି
ଏଣୁ ଅସ୍ଥିର ତାର ମତି
ଏ ଶୂଳ ମାରି ତା ଉପରେ
ତର୍ପଣ କରିବି ରୁଧିରେ

ମୋର ଭ୍ରାତର ପ୍ରିୟ ଅର୍ଥେ
କହିଲି ତୁମ୍ଭର ଅଗ୍ରତେ ।୭,୮।
ସେ କୂଟ ନଷ୍ଟ ଦୁରାଚାର
ତାର ବିଶ୍ୱାସ-ଲୋପ କରି
ସେ ମଲେ ମରିବେ ସକଳେ
ମୂଳ କାଟିଲେ ଯେହ୍ନେ ଡାଳେ ।୯।
ଯାବତ ନ ମରଇ ହରି
ତାବତ ଭ୍ରମ ବସୁନ୍ଧରୀ

ବ୍ରାହ୍ମଣ କ୍ଷତ୍ରି ବୈଶ୍ୟ ଯେତେ
କୃଷ୍ଣ ଭଜନ୍ତି ଅବିରତେ
ତପସ୍ୱୀଜନ ବେଗେ ମାରି
ଯଜ୍ଞର ଅଗ୍ନି ନାଶକରି
ସ୍ୱାଧ୍ୟାୟ ଅଗ୍ନି -ବ୍ରତୀ ଯେତେ
ତାହାଙ୍କୁ ମାରି ଅବିରତେ
ସେ ଧର୍ମ କ୍ରିୟା-ମୂଳ ହରି
ସେ ଥାଇ ତାଙ୍କ ଦେହେ ପୂରି

ଯତ୍ର ଯତ୍ର ଦ୍ୱିଜଃ ଗାବୋ ବେଦା ବର୍ଣ୍ଣାଶ୍ରମକ୍ରିୟାଃ ।
ତଂ ତଂ ଜନପଦଂ ଯାତ ସନ୍ଦୀପୟତ ବୃଶ୍ଚତ । ୧୨ ।
ଇତି ତେ ଭର୍ତ୍ତୃନିର୍ଦ୍ଦେଶମାଦାୟ ଶିରସା ଦୃତାଃ ।
ତଥା ପ୍ରଜାନାଂ କଦନଂ ବିଦଧୁଃ କଦନପ୍ରିୟାଃ । ୧୩ ।
ପୁରଗ୍ରାମବ୍ରଜୋଦ୍ୟାନକ୍ଷେତ୍ରାରାମାଶ୍ରମାକରାନ୍ ।
ଖେଟଖର୍ବଟଘୋଷାଂଶ୍ଚ ଦଦହୁଃ ପତ୍ତନାନି ଚ । ୧୪ ।
କେଚିତ୍ ଖନିତ୍ରୈର୍ବିଭିଦୁଃ ସେତୁପ୍ରାକାରଗୋପୁରାନ୍-
ଆଜୀବ୍ୟାଂଶ୍ଚିଚ୍ଛିଦୁର୍ବୃକ୍ଷାନ୍ କେଚିତ୍ ପରଶୁପାଣୟଃ ।
ପ୍ରାଦହନ୍ ଶରଣାନ୍ୟେକେ ପ୍ରଜାନାଂ ଜ୍ୱଲିତୋଲ୍ମୁକୈଃ । ୧୫ ।
ଏବଂ ବିପ୍ରକୃତେ ଲୋକେ ଦୈତ୍ୟେନ୍ଦ୍ରାନୁଚରୈର୍ମୁହୁଃ ।
ଦିବଂ ଦେବାଃ ପରିତ୍ୟଜ୍ୟ ଭୁବି ଚେରୁରଲକ୍ଷିତାଃ । ୧୬ ।

ହେ ଦାନବଗଣ ! ଯେଉଁଠାରେ ବ୍ରାହ୍ମଣଗଣ ଗୋ ସମୂହ ବେଦାଧ୍ୟୟନ, ବର୍ଣ୍ଣାଶ୍ରମଧର୍ମରେ ରହିଅଛନ୍ତି ସେହି ସେହିସ୍ଥାନକୁ ଗମନକରି ସେହି ଗ୍ରାମମାନଙ୍କୁ ଅଗ୍ନି ଦ୍ୱାରା ଦଗ୍ଧକରି ଏବଂ ତତ୍ରତ୍ୟ ବୃକ୍ଷାଦି ବିନାଶକର । ୧୨

ନିର୍ଯ୍ୟାତନ ପ୍ରିୟ ସେହି ଦାନବ ଗଣ ଆଦର ପୂର୍ବକ ସେମାନଙ୍କ ପ୍ରଭୁର ଆଦେଶ ଶିରୋଧାର୍ଯ୍ୟ କରି ସେହିପରି ପୃଥିବୀରେ ପ୍ରଜାମାନଙ୍କ ପ୍ରତି ଅତ୍ୟାଚାର କରିଥିଲେ । ୧୩ ।

ଦାନବମାନେ ହସ୍ତ୍ୟାଦିଯୁକ୍ତ ନଗର, ହସ୍ତ୍ୟାଦି ଶୂନ୍ୟଗ୍ରାମ, ଗୋଷ୍ଠ, କୃତ୍ରିମ ବନ (ଉଦ୍ୟାନ), ଶସ୍ୟ କ୍ଷେତ୍ର, ଅକୃତ୍ରିମ ବନ, ଋଷିମାନଙ୍କର ଆଶ୍ରମ, ରତ୍ନାଦି ଖଣି, କୃଷକମାନଙ୍କର ବାସଭୂମି, ପାର୍ବତ୍ୟଗ୍ରାମ, ଗୋପପଲ୍ଲୀ ଏବଂ ରାଜଧାନୀମାନ ଦଗ୍ଧ କରିଥିଲେ । ୧୪ ।

କେତେକ ଦାନବ ଖଣତି ଦ୍ୱାରା ସେତୁ, ପ୍ରାଚୀର, ତୋରଣ ଗୁଡ଼ିକୁ ଭାଙ୍ଗି ପକାଇଥିଲେ । କେତେକ ଦାନବ ପରଶୁ ହସ୍ତରେ ଧରି ତଦ୍ୱାରା ଆଶ୍ରୟ ଯୋଗ୍ୟ ବୃକ୍ଷମାନଙ୍କୁ ଛେଦନ କରି ପକାଇଥିଲେ । ଯେପରି ଜୀବଗଣ ସେଠାରେ ଆଶ୍ରୟ ନ ପାନ୍ତି ଏବଂ କେତେକ ଦାନବ ପ୍ରଜା ମାନଙ୍କର ଗୃହ ଗୁଡ଼ିକୁ ପୋଡ଼ି ଭସ୍ମସାତ୍ କରି ଦେଇଥିଲେ । ୧୫ ।

ଏହିପରି ହିରଣ୍ୟ କଶିପୁର ଅନୁଚରମାନେ ଜଗତରେ ଘନ ଘନ ନାନାପ୍ରକାର ଉପଦ୍ରବକରିବାରୁ ଦେବତାମାନେ ସ୍ୱର୍ଗ ତ୍ୟାଗ କରି ଅଲକ୍ଷିତ ଭାବରେ ଭୂତଳକୁ ଆସି ବିଚରଣ କରିଥିଲେ । ୧୬ ।

ଋଷି ଦେବତା ପିତୃଗଣେ
ଯେ ଥାନ୍ତି ଧର୍ମ ପରାୟଣେ
ଗୋରୁ ବ୍ରାହ୍ମଣ ଯହିଁ ଯହିଁ
ବେଦ ପଠନ ମନ୍ତ୍ର ଧ୍ୱନି
ଆଶ୍ରମ କିମ୍ବା ଯହିଁ ପାଅ
ବେଗେ ବିନାଶ ଅଗ୍ନି ଦିଅ । ୧୦-୧୨
ଏମନ୍ତେ ରାଜା ଆଜ୍ଞା ପାଇ
ଅସୁରେ ଗଲେ ସଜ ହୋଇ

ସ୍ୱଭାବେ ଅସୁର ନିର୍ଦ୍ଦୟ
ପ୍ରାଣି ମାରଣେ ବଡ଼ ପ୍ରିୟ
ତକ୍ଷଣେ ପଶି ପୁର ଗ୍ରାମେ
ଗିରି ବନସ୍ତ କ୍ଷେତ୍ରାଶ୍ରମେ
ଖେଟ ଖର୍ବଟ ନାନା ସ୍ଥାନେ
ଋଷି ଆଶ୍ରମ ତପୋବନେ

ଗୋରୁ ବ୍ରାହ୍ମଣ ଯଜ୍ଞସ୍ଥାନ
ଅନଳେ ଦହିଲେ ତକ୍ଷଣ । ୧୩,୧୪
ଖନିତ୍ର ହସ୍ତେ ମହାସୁରେ
ଭେଦିଲେ ପ୍ରାକାର ଗୋପୁରେ
ଜୀବିକା ବୃକ୍ଷ ଯେତେ ଥିଲେ
ପରଶୁହସ୍ତେ ତା ଛେଦିଲେ । ୧୫ ।
ଏମନ୍ତେ ଭାରତ ବରଷେ
ଧର୍ମ ନାଶିଲେ ମହାରୋଷେ

ହିରଣ୍ୟକଶିପୁର୍ଭ୍ରାତୁଃ ସମ୍ପରେତସ୍ୟ ଦୁଃଖିତଃ ।
କୃତ୍ୱା କଟୋଦକାଦୀନି ଭ୍ରାତୃପୁତ୍ରାନସାନ୍ତ୍ୱୟତ୍ । ୧୭ ।
ଶକୁନିଂ ଶମ୍ବରଂ ଧୃଷ୍ଟିଂ ଭୂତସନ୍ତାପନଂ ବୃକମ୍ ।
କାଳନାଭଂ ମହାନାଭଂ ହରିଶ୍ମଶ୍ରୁମଥୋତ୍କଚମ୍ । ୧୮ ।
ତନ୍ମାତରଂ ସ୍ନୁଷାଂ ଭାନୁଂ ଦିତିଞ୍ଚ ଜନନୀଂ ଗିରା ।
ଶ୍ଲକ୍ଷ୍ଣୟା ଦେଶକାଳଜ୍ଞ ଇଦମାହ ଜନେଶ୍ୱରଃ । ୧୯ ।

ଶ୍ରୀ ହିରଣ୍ୟକଶିପୁରୁବାଚ ।

ଅମ୍ବାମ୍ବ ହେ ବଧୂଃ ପୁତ୍ରା ବୀରମାର୍ହଥ ଶୋଚିତୁମ୍ ।
ରିପୋରଭିମୁଖେ ଶ୍ଲାଘ୍ୟଃ ବୀରାଣାଂ ବଧ ଈପ୍ସିତଃ । ୨୦ ।

---

ଭ୍ରାତୃ ଶୋକଗ୍ରସ୍ତ ହିରଣ୍ୟକଶିପୁ ମୃତ ହିରଣ୍ୟାକ୍ଷର ଉଦ୍ଦେଶ୍ୟରେ ତର୍ପଣ ଜଳାଞ୍ଜଳି ଦାନ କରି ଭ୍ରାତାଙ୍କର ପୁତ୍ରଗଣଙ୍କୁ ସାନ୍ତ୍ୱନା କରି କହିଥିଲି । ୧୭ ।

ଦେଶ ଓ କାଳ ବିଷୟରେ ଅଭିଜ୍ଞ ଦୈତ୍ୟେନ୍ଦ୍ର ହିରଣ୍ୟକଶିପୁ ଶକୁନି, ଶମ୍ବର, ଧୃଷ୍ଟି, ଭୂତ, ସନ୍ତାପକ, ବୃକ, କାଳନାଭ, ମହାନାଭ, ହରିଶ୍ମଶ୍ରୁ ଏବଂ ଉତ୍କଚ ନାମକ ଭ୍ରାତୃଷ୍ପୁତ୍ରମାନଙ୍କୁ ଏବଂ ସେମାନଙ୍କର ଜନନୀ ଭ୍ରାତୃବଧୂ ଭାନୁକୁ ନିଜ ଜନନୀ ଦିତିଙ୍କୁ ମୃଦୁବାକ୍ୟରେ ସମସ୍ତ କଥା କହିଥିଲେ ।୧୮,୧୯

ହିରଣ୍ୟ କଶ୍ୟପୁ କହିଲେ—

"ହେ ଜନନି ! ହେ ମା ! ହେ ଭ୍ରାତୃବଧୂ ! ହେ ଭ୍ରାତୃପୁତ୍ରମାନେ ତୁମ୍ଭେମାନେ ବୀର ହିରଣ୍ୟାକ୍ଷ ପାଇଁ ଶୋକ କରିବା ଉଚିତ ନୁହେଁ । ବୀରମାନେ ଶତ୍ରୁ ସହିତ ଯୁଦ୍ଧ କରି ସମ୍ମୁଖ ସମରରେ ନିହତ ହୁଅନ୍ତି, ଏହା ସେମାନଙ୍କ ପକ୍ଷରେ ଅତ୍ୟନ୍ତ ପ୍ରଶଂସାର ବିଷୟ ଏବଂ ସ୍ପୃହଣୀୟ । ୨୦ ।

---

ନିରତେ ପ୍ରାଣିନାଶ କଲେ
ଦେବେ ଆକାଶୁଁ ପଳାଇଲେ

ଲୁଚିଲେ ବନ ଗିରି ଦ୍ରୋଣେ
ସେତେକାନନେପଶୁଗଣେ ।୧୬,୧୭

ଭ୍ରାତ-ମରଣ-କ୍ରୋଧଭରି
ସାଧୁଜନଙ୍କୁ ହିଂସା କରି

ଭାଇର ପ୍ରେତ କାର୍ଯ୍ୟ କଲା
ଅନେକ ଅନ୍ନ ଦାନ ଦେଲା

ତର୍ପଣ ଶ୍ରାଦ୍ଧ କର୍ମ ସାରି
ଭ୍ରାତୃ ପୁତ୍ରଙ୍କୁ କୋଳେ ଧରି

ବସିଲା ଅନ୍ତଃପୁରେ ଯାଇ
ସୁହୃଦ ଅସୁରଙ୍କୁ ନେଇ
ଶକୁନି ଶମ୍ବର ଧୃଷ୍ଟିକ
ଭୂତ ସନ୍ତାପନ ଯେ ବୃକ
ଯେ କାଳନାଭ ମହାନାଭ
ହରିତ-ଶ୍ମଶ୍ରୁ ଭଇରବ
ଉତ୍କଚ ବିକଟ ବସାଇ
ଅନୁଜ ପତ୍ନୀକି ଡକାଇ
ତାହାର ବଧୂ ନାମ ଭାନୁ
ସ୍ୱାମୀ ମରଣେ କ୍ରୋଧ ତନୁ
ମାତା ସଙ୍ଗତେ ତାକୁ ଆଣି
ବସାଇ କହେ ମଞ୍ଜୁ ବାଣୀ।।୧୮,୧୯

ହିରଣ୍ୟକଶିପୁରୁବାଚ—

ହେ ମାତ ! ବଧୂ ! ପୁତ୍ରେ ! ଶୁଣ
ଏ ମାୟା ସଂସାର କାରଣ
ମଲା ପ୍ରାଣିଙ୍କି ନ ସୁମର
ଏ ଦେହ ନୁହଇ କାହାର
ବୀର ମରଣ ରିପୁମୁଖେ
ଲଭେ ଅକ୍ଷୟ ସ୍ୱର୍ଗ ସୁଖେ
ତାର ମରଣେ ଚିନ୍ତା ନାହିଁ
ସ୍ୱର୍ଗେ ବସିଲା ମୋର ଭାଇ ।୨୦।

ଭୂତାନାମିହ ସଂବାସଃ ପ୍ରପାୟାମିବ ସୁବ୍ରତେ ।
ଦୈବେନୈକତ୍ର ନୀତାନାମୁନ୍ନୀତାନ ସ୍ୱକର୍ମଭିଃ । ୨୧ ।
ନିତ୍ୟ ଆତ୍ମାବ୍ୟୟଃ ଶୁଦ୍ଧଃ ସର୍ବଗଃ ସର୍ବବିତ୍ ପରଃ ।
ଧତ୍ତେଽସାବାତ୍ମନୋଲିଙ୍ଗଂ ମାୟୟା ବିସୃଜନ୍ ଗୁଣାନ୍ । ୨୨ ।
ଯଥାମ୍ଭସା ପ୍ରଚଲତା ତରବୋଽପି ଚଳା ଇବ ।
ଚକ୍ଷୁଷା ଭ୍ରାମ୍ୟମାଣେନ ଦୃଶ୍ୟତେ ଚଲତୀବ ଭୂଃ । ୨୩ ।
ଏବଂ ଗୁଣୈର୍ଭ୍ରାମ୍ୟମାଣେ ମନସ୍ୟବିକଲଃ ପୁମାନ୍ ।
ଯାତି ତତ୍ସାମ୍ୟତାଂ ଭଦ୍ରେ ହ୍ୟଲିଙ୍ଗୋ ଲିଙ୍ଗବାନିବ । ୨୪ ।

---

ହେ ସୁବ୍ରତେ ! ପୂର୍ବକୃତ ଦୈବ ବଶରେ ଜୀବ ଗୋଟିଏ ସ୍ଥାନରେ ଜନ୍ମଗ୍ରହଣ କରିଥାଏ, ପୁଣି ପୂର୍ବଜନ୍ମର କର୍ମ ଓ ଅଦୃଷ୍ଟ ବଶରେ ସେ ଅନ୍ୟତ୍ର ନୀତ ହୁଏ । ସୁତରାଂ ଦେଖ, ଯେପରି ପଥିକମାନେ ଗନ୍ତବ୍ୟ ସ୍ଥାନରୁ ଯେଉଁ ଯେଉଁ ପାନ୍ଥଶାଳାରେ କ୍ଷଣକାଳ ରହି ଚାଲିଯାନ୍ତି, ଜୀବ ସେହିପରି ଜଗତରେ ନିଜ କର୍ମାନୁସାରେ ଦେହ ଧାରଣ କରି ପରେ ତାହା ତ୍ୟାଗ କରି ଚାଲିଯାଏ । ( ସୁତରାଂ ଜଗତର ଏହି ନୀତି ଦେଖି ଶୋକ କରିବାର ଆବଶ୍ୟକ କଅଣ ? )

ହେ ଭଦ୍ରେ ! ଆତ୍ମା ଉତ୍ପତ୍ତି ଓ ବିନାଶ ରହିତ, ନିର୍ମଳ, ସର୍ବବ୍ୟାପୀ, ସର୍ବ ସାକ୍ଷୀ ଏବଂ ଦେହାଦି ବ୍ୟତିରିକ୍ତ ପଦାର୍ଥ ବିଶେଷ । ଆତ୍ମା ନିଜର ଅବିଦ୍ୟା ବଶତଃ ସୁଖ ଦୁଃଖାଦି ବା ଦେହାଦି ଗୁଣମାନଙ୍କୁ ବିଶେଷରୂପେ ଉତ୍ପାଦନ କରି ଲିଙ୍ଗ ଦେହ ଆଶ୍ରୟରେ ସଂସାରୀ ତୁଲ୍ୟ ପ୍ରତୀୟମାନ ହୁଏ ( ସୁତରାଂ ଆତ୍ମାର ବିନାଶ ମନେ କରି ଶୋକ କରିବା ଉଚିତ ନୁହେଁ ) । ୨୨ ।

ହେ ଭଦ୍ରେ ! ଯେପରି ପ୍ରବହମାନ ଜଳରାଶି ଚଞ୍ଚଳ ହେଲେ ତହିଁରେ ପ୍ରତିବିମ୍ବିତ ବୃକ୍ଷାଦି ଚଞ୍ଚଳ ବୋଲି ପ୍ରତୀୟମାନ ହୁଏ, ଯେପରି ଚକ୍ଷୁର ମୋହନ ଉଦ୍‌ଭ୍ରାନ୍ତ ହେଲେ ପୃଥିବୀ ଭ୍ରମଣ କରୁଅଛି ବୋଲି ଜଣାଯାଏ, ସେହିପରି ମନ ଗୁଣାଦି ଦ୍ୱାରା ଚଞ୍ଚଳ ହେଲେ ପରିପୂର୍ଣ୍ଣ ଆତ୍ମା ମନ ତୁଲ୍ୟ ଚଞ୍ଚଳ ଓ ଦେହ ଶୂନ୍ୟ ହୋଇ ମଧ୍ୟ ଦେହ ବିଶିଷ୍ଟ ତୁଲ୍ୟ ପ୍ରତୀୟ ହୋଇଥାଏ । ବିକୃତି ଶୂନ୍ୟ ଆତ୍ମା ଲିଙ୍ଗଦେହ ନିମିତ୍ତମାନ ସୁଖ ଦୁଃଖାଦି ଶୂନ୍ୟ ହେଲେ ମଧ୍ୟ ଲିଙ୍ଗଦେହ ନିମିତ୍ତ ସୁଖ ଦୁଖାଦି ଯୁକ୍ତ ବୋଲି ପ୍ରତୀତ ହୋଇଥାଏ । (ସୁଖ ଦୁଃଖାଦି ମନର ଧର୍ମ, ଅତଏବ ଶୋକ କରିବା ଉଚିତ ନୁହେଁ) । ୨୩,୨୪ ।

---

ଏ ଭବ ସଂସାର ସାଗର
ବିଷ୍ଣୁର କ୍ରୀଡ଼ାର ମନ୍ଦିର
ବିଶ୍ୱରେ କେହି ନାହିଁ ସ୍ଥିରେ
ପଥେ ପଥିକଜନ ପ୍ରାୟେ
ପାନ୍ଥୀୟଶାଳେ ପ୍ରାଣିମାନେ
ଦଇବେ ମିଳନ୍ତି ଯେସନେ
ବସିଣ ତହିଁ ପାନ କରି
ତହୁଁ ଚଳନ୍ତି ଛାମ ସାରି

ସେ ଯେଉଁହେ ନୁହଇ କାହାର
ସଂସାର ଘଟେ ସେହିପରି । ୨୧-୨୨
ଉପାଧି ବସ୍ତୁ ନାଶ ଯାଇ
ଆତ୍ମା କେବେହେଁ ନ ମରଇ
ଏ ଆତ୍ମା ନିତ୍ୟ ସର୍ବଗତ
ଅବ୍ୟୟ ଶୁଦ୍ଧ ଗୁଣ ସତ୍ତ୍ୱ
ସର୍ବଜ୍ଞ ସର୍ବପରେ ରହେ
ଆତ୍ମାରୁ ଆତ୍ମା ରୂପ ବହେ । ୨୩

ବୃକ୍ଷର ଛାଇ ଜଳେ ଥିଲେ
ସେ ଜଳ ପବନେ ଚଳିଲେ
ବୃକ୍ଷ ଚଳନ୍ତି ପ୍ରାୟେ ଦିଶେ
ସେ ଯେଉଁଲେ ଉଦକେ ନ ମିଶେ
ବାଳକେ କ୍ରୀଡ଼ାରେ ଘୂରନ୍ତି
ଭ୍ରମିଣ ଭୂମିରେ ପଡ଼ନ୍ତି
ସ୍ୱାହାନ୍ତେ ଘୂରଇ ସଂସାର
ଏମନ୍ତେ ମାୟା କ୍ରୀଡ଼ା ଘର

ଏଷ ଆତ୍ମବିପର୍ଯ୍ୟାସୋ ହ୍ୟଲିଙ୍ଗେ ଲିଙ୍ଗଭାବନା ।
ଏଷ ପ୍ରିୟାପ୍ରିୟୈର୍ଯୋଗୋ ବିୟୋଗଃ କର୍ମସଂସୃତିଃ । ୨୫ ।
ସମ୍ଭବଶ୍ଚ ବିନାଶଶ୍ଚ ଶୋକଶ୍ଚ ବିବିଧସ୍ମୃତଃ ।
ଅବିବେକଶ୍ଚ ଚିନ୍ତା ଚ ବିବେକାସ୍ମୃତିରେବ ଚ । ୨୬ ।
ଅତ୍ରାପ୍ୟୁଦାହରନ୍ତୀମମିତିହାସ ପୁରାତନମ୍ ।
ଯମସ୍ୟ ପ୍ରେତବନ୍ଧୂନାଂ ସମ୍ବାଦଂ ତଂ ନିବୋଧତ । ୨୭ ।
ଉଶୀନରେଷ୍ୱଭୂଦ୍ରାଜା ସୁଯଜ୍ଞ ଇତି ବିଶ୍ରୁତଃ ।
ସପତ୍ନୈର୍ନିହତୋ ଯୁଦ୍ଧେ ଜ୍ଞାତୟସ୍ତମୁପାସତ । ୨୮ ।
ବିଶୀର୍ଣ୍ଣରତ୍ନକବଚଂ ବିଭ୍ରଷ୍ଟାଭରଣସ୍ରଜମ୍ ।
ଶରନିର୍ଭିନ୍ନହୃଦୟଂ ଶୟାନମସୃଗାବିଲମ୍ । ୨୯ ।

---

ଆତ୍ମା ଦେହ ଶୂନ୍ୟ ହେଲେ ମଧ୍ୟ ତାହାର ଦେହାଭିମାନ ଅର୍ଥାତ୍ 'ମୁଁ' ଓ 'ମୋର' ଏହି ଅଭିମାନ ଏହାହିଁ ଆତ୍ମାର ବିପର୍ଯ୍ୟୟ ଘଟାଇଥାଏ । ଏହି କାରଣରୁ ପ୍ରିୟବ୍ୟକ୍ତି ସହିତ ବିଚ୍ଛେଦ, ଅପ୍ରିୟ ସହିତ ଯୋଗ କର୍ମ ନାନା ଗର୍ଭରେ ପ୍ରବେଶ ହେତୁ ସଂସାର, ଜନ୍ମ, ମୃତ୍ୟୁ ନାନାପ୍ରକାର ଶୋକ, ଅବିବେକ, ଚିନ୍ତା ଓ ବିବେକ ବିସ୍ମୃତି ଘଟିଥାଏ । ଏହାହିଁ ଜ୍ଞାନମାନଙ୍କର ମତ । ୨୫, ୨୬ ।

ଏ ବିଷୟରେ ପ୍ରାଚୀନମାନେ ଯମ ଓ ଗୋଟିଏ ମୃତବ୍ୟକ୍ତି ସମ୍ବନ୍ଧେ ନିମ୍ନଲିଖିତ ଉପାଖ୍ୟାନ କହିଥାନ୍ତି । ୨୭ ।

ଉଶୀନର ଦେଶରେ ସୁଯଜ୍ଞ ନାମକ ଜଣେ ରାଜା ଥିଲେ । ସେ ଯୁଦ୍ଧରେ ଶତ୍ରୁମାନଙ୍କ କର୍ତ୍ତୃକ ନିହତ ହୁଅନ୍ତେ ତାହାଙ୍କର ଆତ୍ମୀୟମାନେ ଆସି ତାଙ୍କ ଶବ ନିକଟରେ ବେଢି ବସିଲେ, ମହିଷୀମାନେ ଶୋକକଲେ—। ୨୮ ।

ତାହାଙ୍କର ରତ୍ନମୟ କବଚ ଶୀର୍ଣ୍ଣ ହୋଇ ପଡ଼ିଅଛି । ଅଳଙ୍କାର ଓ ମାଲ୍ୟ ସ୍ଖଳିତ ହୋଇଅଛି, ବକ୍ଷରେ ବାଣ ବିଦ୍ଧ ହୋଇ ଅଛି । ତାହାଙ୍କର ସମସ୍ତ ଦେହ ଭୂତଳ ଶୟନରେ ରୁଧିରକ୍ତ ହୋଇଥିଲା । କେଶଗୁଚ୍ଛ ବିକ୍ଷିପ୍ତ, ଚକ୍ଷୁଦ୍ୱୟ ବିଧ୍ୱସ୍ତ । ଯୁଦ୍ଧ କାଳରେ କ୍ରୋଧ ବଶତଃ ଅଧରକୁ ଦନ୍ତରେ ଯେ ଦଂଶନ କରିଥିଲେ, ସେ ସେହିପରି ରହିଅଛି । ଭୂତଳରେ ଧୂଳିକଣା ଦ୍ୱାରା ତାହାଙ୍କର ବଦନ ଆବୃତ । ତାହାଙ୍କର

---

ଏଣୁ ଏ ଗୁଣ ଭ୍ରମବଳେ
ମନ ନ ରହଇ ନିଶ୍ଚଳେ
ଅଦେହ ହୋଇ ଦେହବନ୍ତ
ଅଜ୍ଞାନଜନଙ୍କର ମତ
ଅର୍ଜିଲ କର୍ମଫଳ ବଳେ
ପ୍ରାଣୀ ଭ୍ରମନ୍ତି ମହୀତଳେ

ସଂସାରେ ସଂଯୋଗ ବିୟୋଗେ
ଶୋକହରଷବେକମାର୍ଗେ ୨୫, ୨୬
ଏ ଅର୍ଥେ ଇତିହାସେ କହି
ଶୁଣ ଜନକ ! ମନ ଦେଇ
ପୂର୍ବେ ଯେ ପ୍ରେତ ବନ୍ଧୁ ଭୁଲେ
ଯେବା ସଂବାଦ ଯମ କଲେ ।୨୭।

ଶୁଣ ଜନକ ! ମନ ତୋଷେ
ଯେ କଥା ଉଶୀନର ଦେଶେ
ସୁଯଜ୍ଞ ନାମେ ରାଜା ଥିଲ
ଶତ୍ରୁ ସଂଗ୍ରାମେ ପ୍ରାଣ ଦେଲ
ତା ଦେଖି ତାର ପୁରଜନେ
ମିଳିଲେ ମୃତ ପିଣ୍ଡ ସ୍ଥାନେ

ପ୍ରକୀର୍ଣ୍ଣକେଶଂ ଧ୍ୱସ୍ତାକ୍ଷଂ ରଭସା ଦଷ୍ଟଦଚ୍ଛଦମ୍ ।
ରଜଃକୁଣ୍ଠମୁଖାମ୍ଭୋଜଂ ଛିନ୍ନାୟୁଧଭୁଜଂ ମୃଧେ । ୩୦ ।
ଉଶୀନରେନ୍ଦ୍ର ବିଧିନା ତଥା କୃତଂ ପତିଂ ମହିଷ୍ୟଃ ପ୍ରସମୀକ୍ଷ୍ୟ ଦୁଃଖିତାଃ ।
ହତାଃ ସ୍ମ ନାଥେତି କରୈରୁରୋ ଭୃଶଂ ଘ୍ନନ୍ତ୍ୟୋ ମୁହୁଃସ୍ତତ୍‌ପଦୟୋରୁପାପତନ୍ ।୩୧
ରୁଦତ୍ୟ ଉଚ୍ଚୈର୍ଦୟିତାଙ୍ଘ୍ରିପଙ୍କଜଂ ସିଞ୍ଚନ୍ତ୍ୟ ଅସ୍ରୈଃ କୁଚକୁଙ୍କୁମାରୁଣୈଃ ।
ବିସ୍ରସ୍ତକେଶାଭରଣାଃ ଶୁଚଂ ନୃଣାଂ ସୃଜନ୍ତ୍ୟ ଆକ୍ରନ୍ଦନୟା ବିଲେପିରେ । ୩୨ ।
ଅହୋ ବିଧାତ୍ରାଽକରୁଣେନ ନଃ ପ୍ରଭୋ ଭବାନ୍ ପ୍ରଣୀତୋ ଦୃଗଗୋଚରାଂ ଦଶାମ୍ ।
ଉଶୀନରାଣାମସି ବୃତ୍ତିଦଃ ପୁରା କୃତୋଽଧୁନା ଯେନ ଶୁଚାଂ ବିବର୍ଦ୍ଧନଃ । ୩୩ ।

ଆୟୁଧ ଓ ଭୁଜ ଶତ୍ରୁର ଶସ୍ତ୍ରରେ ଖଣ୍ଡିତ ହୋଇଥିଲା । ଦୈବ ପ୍ରତିକୂଳ ହେବାରୁ ଯୁଦ୍ଧରେ ତାଙ୍କର ଏପରି ଅବସ୍ଥା ଘଟିଥିଲା । ଏହା ଦେଖିରାଣୀମାନେ ଅତ୍ୟନ୍ତ ଦୁଃଖିତ ହୋଇ ଥିଲେ ଏବଂ ନିଜ ନିଜ ବକ୍ଷସ୍ଥଳରେ କରାଘାତ କରି ରୋଦନ କଲେ "ହେ ନାଥ ! ଆମ୍ଭେମାନେ ନ ମଲୁ"—ଏହା କହି ସ୍ୱାମୀଙ୍କ ଚରଣରେ ପତିତ ହେଲେ । ୨୯,୩୧ ।

ମହିଷୀମାନେ ଅତି ଉଚ୍ଚସ୍ୱରରେ ରୋଦନ କରୁ କରୁ ସ୍ତନ-କୁଙ୍କୁମରେ ଅରୁଣବର୍ଣ୍ଣ ନେତ୍ରାଶ୍ରୁ ପ୍ରବାହରେ ସ୍ୱାମୀଙ୍କର ଚରଣକମଳ ଧୌତ କରିଥିଲେ । ସେମାନଙ୍କ କେଶପାଶ ଓ ଆଭରଣମାନ ବିଶୃଙ୍ଖଳ ଭାବରେ ବିକ୍ଷିପ୍ତ ହୋଇଥିଲା । ସେମାନଙ୍କର କ୍ରନ୍ଦନ ଯେ ଶୁଣିଥିଲା, ତାହାର ହୃଦୟ ଶୋକରେ ଦ୍ରବୀଭୂତ ହେଲା, ସେମାନେ ଏହିପରି ଉଚ୍ଚ କ୍ରନ୍ଦନ କରିଥିଲେ । ୩୨ ।

ହେ ପ୍ରଭୋ ! ନିର୍ମମ ବିଧାତା ତୁମ୍ଭଙ୍କୁ ଆମ୍ଭମାନଙ୍କର ଚକ୍ଷୁର ଅଗୋଚର ଅବସ୍ଥାରେ ନେଇଗଲା, (ଆଉ ତୁମ୍ଭଙ୍କୁ ଦେଖିବୁ ନାହିଁ) । ଯେଉଁ ବିଧାତା ତୁମ୍ଭଙ୍କୁ ସମଗ୍ର ଉଶୀନର ଦେଶବାସୀଙ୍କର ବୃତ୍ତିଦାତା ପିତା ସ୍ୱରୂପ କରିଥିଲା, ସେ ପୁଣି ତୁମ୍ଭଙ୍କୁ ଏଦଶା ଦେଲା, ତୁମ୍ଭର ମୃତ୍ୟୁରେ ଉଶୀନର ଦେଶର ଶୋକ ବୃଦ୍ଧି ପାଇଅଛି ।୩୩

ଦେଖିଲେ ରାଜାର ଶରୀର
ରୁଧିରେ ଧୂଳିରେ ଧୂସର
ରତ୍ନ କବଚ ଖଣ୍ଡ ଖଣ୍ଡ
ବିଭ୍ରମ ଅଳଙ୍କାର ପିଣ୍ଡ
ଶରେ ବିଚ୍ଛିନ୍ନ କଳେବର
ଶୟନ ଶ୍ମଶାନ ଭୂମିର
ବିବର୍ଣ୍ଣ କେଶ ତାର ମୁଣ୍ଡେ
ବହେ ରୁଧିର ଧାର ତୁଣ୍ଡେ
ଲଲାଟେ ଲୁଚନ୍ତି ନୟନ
ଅଧର କାମୋଡ଼େ ଦଶନ
ରଜ କୁଣ୍ଠିତ ନାସା ଦ୍ୱାର
ଛିନ୍ନ ଆୟୁଧ ଭୁଜ ତାର ।୨୮-୩୦

ଏମନ୍ତେ ମିଳି ତା ସମୀପେ
କାମିନୀଗଣେ ଶୋକ ତାପେ
ବନ୍ଧୁ ବାନ୍ଧବ ଭୁଲେ ଯାଇ
କାନ୍ଦନ୍ତି ତାର ମୁଖ ଚାହିଁ
ହେ ନାଥ ତୋହର ମରଣେ
ତୋର ସକଳ ବଧୂଗଣେ
ଜୀବନ ଥାଉଁ ଆମ୍ଭେ ମଲୁଁ
ବିଧି ଏମନ୍ତ ଭିଆଇଲୁ
ହୃଦରେ ବେନି କର ତାଡ଼ି
କାନ୍ଦନ୍ତି ମହୀତଳେ ପଡ଼ି
ଚରଣ ପୁଣ ପୁଣ ଧରି
ଉଚ୍ଚେ କାନ୍ଦନ୍ତି ତାର ନାରୀ

ଚରଣେ ସିଞ୍ଚି ଅଶ୍ରୁ ଜଳ
ଲୋତକେ ମିଶ୍ରିତ କଜ୍ଜ୍ୱଳ
କୁଚ କୁଙ୍କୁମ ଅଶ୍ରୁ ଜଳେ
ପଡ଼ଇ ରାଜା ପାଦତଳେ
କେଶ ବସନ ଅସମ୍ଭାଳ
ଶୁଭେରୋଦନମହାଗୋଳ ।୩୧,୩୨
ହା ହା ଦଇବ ତୁ ନିର୍ଦ୍ଦୟ
ଦୂରେ ଛେଦିଲୁ ଆମ୍ଭ ସ୍ନେହ
ଅଦୃଷ୍ଟ ଅଲୌକିକ କର୍ମ୍ମ
ଭିଆଇ କଲୁ ମତିଭ୍ରମ
ପୂର୍ବେ ଆମ୍ଭଙ୍କୁ ସୁଖ ଦେଲୁ
ଏବେ ତୁ ନିଷ୍ଠୁର ହୋଇଲୁ ।୩୩।

ତ୍ୱଯ୍ୟା କୃତଜ୍ଞେନ ବୟଂ ମହୀପତେ କଥଂ ଜନା ସ୍ୟାମ ସୁହୃତ୍ତମେନ ତେ ।
ତତ୍ରାନୁଯାନଂ ତବ ବୀର ପାଦୟୋଃ ଶୁଶ୍ରୂଷତୀନାଂ ଦିଶ ଯତ୍ର ଯାସ୍ୟସି । ୩୪ ।
ଏବଂ ବିଲପତୀନାଂ ବୈ ପରିଗୃହ୍ୟ ମୃତଂ ପତିମ୍ ।
ଅନିଚ୍ଛତୀନାଂ ନିର୍ହାରମର୍କୋଽସ୍ତଂ ସଂନ୍ୟବର୍ତ୍ତତ । ୩୫ ।
ତତ୍ର ହ ପ୍ରେତବନ୍ଧୂନାମାଶ୍ରୁତ୍ୟ ପରିଦେବିତମ୍ ।
ଆହ ତାନ୍ ବାଳକୋ ଭୂତ୍ୱା ଯମଃ ସ୍ୱୟମୁପାଗତଃ । ୩୬ ।
ଶ୍ରୀ ଯମ ଉବାଚ—ଅହୋ ଅମୀଷାଂ ବୟସାଧିକାନାଂ ବିପଶ୍ୟତାଂ ଲୋକବିଧିଂ ବିମୋହଃ ।
ଯତ୍ରାଗତସ୍ତତ୍ର ଗତଂ ମନୁଷ୍ୟଂ ସ୍ୱୟଂ ସଧର୍ମାପି ଶୋଚନ୍ତ୍ୟପାର୍ଥମ୍ । ୩୭ ।

---

ହେ ମହୀପତି ! ତୁମ୍ଭେ କୃତଜ୍ଞ, କେହି ତୁମ୍ଭର ସେବା କଲେ ତୁମ୍ଭେ ତାକୁ ଉପଯୁକ୍ତ ପୁରସ୍କାର ଦେଇ ଥାଅ । ତୁମ୍ଭେ ଆମ୍ଭମାନଙ୍କର ପରମବନ୍ଧୁ । ତୁମ୍ଭଙ୍କୁ ଛାଡ଼ି ଆମ୍ଭେମାନେ କିପରି ଦିନକଟାଇବୁ । ହେ ବୀର ! ତୁମ୍ଭେ ବୀର ଗତି ଲଭ କରିଅଛ । ତୁମ୍ଭର ଚରଣ ସେବିକା ମାନଙ୍କୁ କଥା କହ ଓ ତୁମ୍ଭର ପଥ ଅନୁସରଣ କରିବାକୁ ଆମ୍ଭମାନଙ୍କୁ ଅନୁମତି ଦିଅ । ୩୪ ।

ମୃତସ୍ୱାମୀ ଉଶୀନର ରାଜାଙ୍କୁ ବେଢି ରାଣୀମାନେ ବିଳାପ କରୁଥିଲେ । ରାଜାଙ୍କର ମୃତଦେହ ଦାହ କରିବାକୁ ସେମାନେ କୌଣସି ପ୍ରକାରେ ଛାଡ଼ିବେ ନାହିଁ । ଏମନ୍ତ ସମୟରେ ସୂର୍ଯ୍ୟ ଅସ୍ତମିତ ହେଲେ ।୩୫।

ମୃତ ଉଶୀନର ପତିଙ୍କ ବନ୍ଧୁମାନେ ଏପରି କ୍ରନ୍ଦନ କରୁଥିବାର ଦେଖି ଯମ ସ୍ୱୟଂ ବାଳକରୂପେ ସେଠାରେ ଆସି ଉପସ୍ଥିତ ହେଲେ, ଏବଂ ସେମାନଙ୍କୁ କହିଲେ । ୩୬ ।

ଶ୍ରୀଯମ କହିଲେ—ଏକ ଆଶ୍ଚର୍ଯ୍ୟ କଥା, ଏମାନେ ନିତ୍ୟ ଲୋକମାନଙ୍କର ଜନ୍ମ ମରଣ ଦେଖିସୁଦ୍ଧା ଏବଂ ଏମାନେ ମୋଠାରୁ ବୟସ୍କାଧିକ ହୋଇ ସୁଦ୍ଧା, ଅସାଧାରଣ ମୋହଗ୍ରସ୍ତ ହୋଇଅଛନ୍ତି । ମନୁଷ୍ୟ ଯେ ଅବ୍ୟକ୍ତ ବା ପ୍ରକୃତିରୁ ଉତ୍ପନ୍ନ, ପୁଣି ସେହି ପ୍ରକୃତିରେ ଲୀନ ହୁଏ, ଏମାନେ ସ୍ୱୟଂ ମରଣଶୀଳ । ତଥାପି ଏମାନେ କି ହେତୁ ନିରର୍ଥକ ଶୋକ କରୁଅଛନ୍ତି ? । ୩୭ ।

---

ପୁଣି ରାଜାର ପାଦ ଧରି
ଉଚ୍ଚେ କାନ୍ଦନ୍ତି ତାରି ନାରୀ
ଆମ୍ଭର ପ୍ରଭୁ ନାଥ ତୁହି
ମୁହୂର୍ତ୍ତେ ତୋ ମୁଖ ନ ରହି
କେମନ୍ତେ ଧରିବୁ ଜୀବନ
ଦିଶଇ ଦିଶ ଦିଶ ଶୂନ୍ୟ
ତୋର ଚରଣ ଆମ୍ଭେ ସେବୁ
କହ କେଉଣ ଦିଗେ ଯିବୁ ।୩୪।
ଏମନ୍ତେ ପତି ପାଦ ଧରି
ଉଚ୍ଚେ କାନ୍ଦନ୍ତି ତାରି ନାରୀ
ଦହନ କରି ନ ଦିଅନ୍ତି
ବୁକେ ରହିଲେ ସର୍ବ କ୍ଷତି

ଏମନ୍ତେ ରବି ଅସ୍ତ ଗଲା
ଘୋର ତିମିର ଆଚ୍ଛାଦିଲା
ଅତି ରୋଦନ ତାଙ୍କ ଦେଖି
ଶମନ ଭୁବନ ଉପେକ୍ଷି
ଶୋକ ନିବାରେ ଇଚ୍ଛା କରି
ଯମ ବାଳକ ରୂପ ଧରି
ମିଳିଲା ତାଙ୍କ ସନ୍ନିଧାନେ
କହଇ କୋମଳ ବଚନେ ।୩୫,୩୬

ଶ୍ରୀ ଯମ ଉବାଚ—

ଆହେ ଅଦ୍ଭୁତ କଥା ଦେଖ
ଏ ସର୍ବେ ବୟସେ ଅଧିକ
ବାଳକ ପ୍ରାୟେ ନ ଜାଣନ୍ତି
ଅଜ୍ଞାନେ ରୋଦନ କରନ୍ତି
ଯେ ପ୍ରାଣୀ ଯହୁଁ ଆସିଥିଲା
କର୍ମ ସଙ୍ଗତେ କରି ଖେଳା
ତହିଁକି ଗଲା କର୍ମ ଅନ୍ତେ
ଜାଣି ନ ଜାଣନ୍ତି କେମନ୍ତେ
ସକଳେ ତୁଲ୍ୟ ଧର୍ମ ବହି
କର୍ମ ସରିଲେ କେବା ରହି
ଯହୁଁ ଅଇଲା ତା ନ ଜାଣି
ଦେହକୁ ସତ୍ୟ ପ୍ରାୟେ ମଣି
ଅନ୍ତେ ଯହିଁକି ପ୍ରାଣୀ ଯିବ
ଏହା ନ ଜାଣେ ବ୍ରହ୍ମା ଶିବ ।୩୭।

ଅହୋ ବୟଂ ଧନ୍ୟତମା ଯଦତ୍ର ତ୍ୟକ୍ତାଃ ପିତୃଭ୍ୟାଂ ନ ବିଚିନ୍ତୟାମଃ ।
ଅଭକ୍ଷ୍ୟମାଣା ଅବଲା ବୃକାଦିଭିଃ ସ ରକ୍ଷିତା ରକ୍ଷତି ଯୋ ହି ଗର୍ଭେ । ୩୮ ।
ଯ ଇଚ୍ଛୟେଶଃ ସୃଜତୀଦମବ୍ୟୟୋ ଯ ଏବ ରକ୍ଷତ୍ୟବଲୁମ୍ପତେ ଚ ଯଃ ।
ତସ୍ୟାବଲାଃ କ୍ରୀଡ଼ନମାହୁରୀଶିତୁଶ୍ଚରାଚରଂ ନିଗ୍ରହସଂଗ୍ରହେ ପ୍ରଭୁଃ । ୩୯ ।
ପଥି ଚ୍ୟୁତଂ ତିଷ୍ଠତି ଦିଷ୍ଟରକ୍ଷିତଂ ଗୃହେ ସ୍ଥିତଂ ତଦ୍‌ବିହତଂ ବିନଶ୍ୟତି ।
ଜୀବତ୍ୟନାଥୋଽପି ତଦୀକ୍ଷିତୋ ବନେ ଗୃହେଽଭିଗୁପ୍ତୋଽସ୍ୟ ହତୋ ନ ଜୀବତି ।୪୦

ଅହୋ ! ମୁଁ ଧନ୍ୟ, ମୋର ପିତା ମାତା ମୋତେ ତ୍ୟାଗ କରି ପରଲୋକ ଗମନ କରିଅଛନ୍ତି ତଥାପି ମୁଁ ଚିନ୍ତିତ ନୁହେଁ । ମୁଁ ବଳହୀନ ବା ସହାୟହୀନ ହେଲେ ମଧ୍ୟ ବ୍ୟାଘ୍ରାଦି ହିଂସ୍ର ଜନ୍ତୁମାନେ ମୋତେ ଭକ୍ଷଣ କରିନାହାନ୍ତି, କାରଣ ବାଳକ ଯେତେବେଳେ ମାତୃ ଗର୍ଭରେ ଥାଏ, ସେତେବେଳେ ବିଶ୍ୱ ବିଧାତା ତାକୁ ରକ୍ଷା କରନ୍ତି, ସେ ସର୍ବତ୍ର ଜୀବର ରକ୍ଷକ । ୩୮ ।

ଅବଳାଗଣ ! ଅବ୍ୟୟମୂର୍ତ୍ତି ଭଗବାନ୍ ସ୍ୱେଚ୍ଛାରେ ଏହି ବିଶ୍ୱକୁ ସୃଷ୍ଟି କରନ୍ତି, ରକ୍ଷା କରନ୍ତି ଓ ସଂହାର କରନ୍ତି, ଏହି ଚରାଚର ବିଶ୍ୱ ସେହି ଭଗବାନଙ୍କର କ୍ରୀଡ଼ା ସାମଗ୍ରୀ ମାତ୍ର, ଏହାହିଁ ପଣ୍ଡିତମାନେ କହିଥାନ୍ତି । ସୁତରାଂ ସେହି ଭଗବାନହିଁ ବିଶ୍ୱର ସଂହାର ଓ ପାଳନ ବିଷୟରେ ସମର୍ଥ ।୩୯



## ଯମରାଜାଙ୍କର ହିରଣ୍ୟାକ୍ଷ ପତ୍ନୀମାନଙ୍କୁ ଉପଦେଶ

ଯେଉଁ ଲୋକ ରାସ୍ତାରେ ପଡ଼ିଥାଏ, ତାକୁ ଭଗବାନ ରକ୍ଷା କଲେ, ତାହାର ବିନାଶ ହୁଏ ନାହିଁ । ମାତ୍ର ଗୃହରେ ଥିଲେ ମଧ୍ୟ ତାକୁ ଭଗବାନ୍ ରକ୍ଷା ନ କଲେ ସେ ବିନଷ୍ଟ ହୁଏ । ବନ ମଧ୍ୟରେ ଯାହାର କେହି ରକ୍ଷକ ନାହିଁ, ତାହାପ୍ରତି ଈଶ୍ୱରଙ୍କର ଦୃଷ୍ଟି ପଡ଼ିଲେ, ସେ ରକ୍ଷା ପାଏ, ମାତ୍ର ଯେଉଁ ବ୍ୟକ୍ତି ଗୃହରେ ଥାଏ ଓ ତାହାକୁ ପରିଜନମାନେ ରକ୍ଷା କରୁଥାନ୍ତି, ତାହାପ୍ରତି ଈଶ୍ୱର ଦୃଷ୍ଟି ନ ହେଲେ, ସେ ବଞ୍ଚି ନ ପାରେ ।୪୦

ସଂସାର ମଧ୍ୟେ ଦେହ ବହି
ବାଳକ ମଧ୍ୟେ ଧନ୍ୟ ମୁହିଁ
ପିତା ଜନନୀ ମୋର ନାହିଁ
ବୁଲଇ ଅରକ୍ଷିତ ହୋଇ
ବନସ୍ତେ ବ୍ୟାଘ୍ର ବୃକ ଯେତେ
କେହିତ ନ ଭକ୍ଷିଲେ ମୋତେ
ଗର୍ଭେ ଯେ ରକ୍ଷା କଲା ମୋତେ
ଏବେହେଁ ଅଛଇ ସଙ୍ଗତେ ।୩୮।

ଈଶ୍ୱର ଇଚ୍ଛାରେ ସର୍ଜ୍ଜଇ
ପାଳଇ ପୁଣି ସଂହାରଇ
ତାହାର କ୍ରୀଡ଼ା ଏ ଜଗତ
କେ ବା ବାଳକ ତାତ ମାତ
ଯେ ପ୍ରାଣୀ ନିଜ ପଥ ଛାଡ଼େ
ନିୟତ କର୍ମ୍ମ ଯେବେ ଛାଡ଼େ
କର୍ମ୍ମ ତାହାକୁ କରେ ରକ୍ଷା
ଗୁରୁଙ୍କ ପ୍ରାୟେ ଦେଇ ଶିକ୍ଷା

ବାଳକ ଗୃହେ ଥାଏ ଯେବେ
କର୍ମ୍ମେ ନ ଥିବ ଭାଗ୍ୟ ଭୋଗେ
ରକ୍ଷକ ଥିଲେହେଁ ମରଇ
ଅତି ଯତନେ ଯେବେ ଥାଇ
ଯେ ବାଳ ବନେ ବିବର୍ଜ୍ଜିତ
ସ୍ୱଭାବେ ହୋଇ ଅରକ୍ଷିତ
ତାହାକୁ ଦଇବ ରଖଇ
ବେଦପୁରାଣେ ଏହା କହି ।୩୯,୪୦

**ଭୂତାନ ତୈସ୍ତୈର୍ନିଜଯୋନକର୍ମଭିର୍ଭବନ୍ତ କାଲେ ନ ଭବନ୍ତ ସର୍ବଶଃ ।**
**ନ ତତ୍ର ହାତ୍ମା ପ୍ରକୃତାବପି ସ୍ଥିତସ୍ତସ୍ୟା ଗୁଣୈରନ୍ୟତମୋ ହି ବଧ୍ୟତେ ।୪୧ ।**
**ଇଦଂ ଶରୀରଂ ପୁରୁଷସ୍ୟ ମୋହଜଂ ଯଥା ପୃଥଗ୍ ଭୌତିକମୀୟତେ ଗୃହମ୍ ।**
**ଯଥୌଦକୈଃ ପାର୍ଥିବତୈଜସୈର୍ଜନଃ କାଳେନ ଜାତୋ ବିକୃତୋ ବିନଶ୍ୟତି ।୪୨।**
**ଯଥାନଲୋ ଦାରୁଷୁ ଭିନ୍ନ ଈୟତେ ଯଥାନିଲୋ ଦେହଗତଃ ପୃଥକ୍ ସ୍ଥିତଃ ।**
**ଯଥା ନଭଃ ସର୍ବଗତଂ ନ ସଜ୍ଜତେ ତଥା ପୁମାନ୍ ସର୍ବଗୁଣାଶ୍ରୟଃ ପରଃ । ୪୩ ।**

---

ସମସ୍ତ ପ୍ରାଣୀ ନିଜ କୃତକର୍ମାନୁସାରେ କାଳକ୍ରମେ ଉତ୍ପନ୍ନ ଓ ବିନଷ୍ଟ ହୁଅନ୍ତି, ଆତ୍ମାର ଦେହ ସହିତ ବିଶେଷ ଭାବରେ ସମ୍ବନ୍ଧ ଥିଲେ ମଧ୍ୟ, ଦେହ ଆତ୍ମାଠାରୁ ପୃଥକ୍, ଆତ୍ମା ଜରା ମରଣାଦି ଦ୍ୱାରା ପୀଡ଼ିତ ହୁଏ ନାହିଁ । ୪୧ ।

ଅବିବେକୀ ବ୍ୟକ୍ତି ଯେପରି ମୋହ ବଶତଃ ଭୌତିକ ଗୃହକୁ ପ୍ରକୃତ ବୋଲି ମଣେ, ସେହିପରି ଆତ୍ମ-ସମ୍ବନ୍ଧୀ ଏହି ଦେହ ଭୌତିକ ଓ ପୃଥକ୍ ଭୂତ ହେଲେ ମଧ୍ୟ ମୋହବଶତଃ ତାହା ଆତ୍ମାରୂପ ଧାରଣ କରିଥାଏ । ଜଳୀୟ ପରମାଣୁ ଜାତ ଜଳ ବୁଦ୍‌ବୁଦ୍, ପାର୍ଥିବ ପରମାଣୁ ଜାତ ଘଟାଦି ଓ ତୈଜସ ପରମାଣୁ ଜାତ କୁଣ୍ଡଳାଦି ଅଳଙ୍କାର ଯେପରି କାଳକ୍ରମେ ବିକୃତ ଅବସ୍ଥା ପ୍ରାପ୍ତ ହୋଇ ବିନଷ୍ଟ ହୋଇଯାଏ ସେହିପରି ଜଳୀୟ, ପାର୍ଥିବ ଓ ତୈଜସ ପରମାଣୁ ସାହାଯ୍ୟରେ ଉତ୍ପନ୍ନ ଏହି ଦେହ କାଳକ୍ରମେ ବିକୃତ ହୋଇ ବିନାଶ ପ୍ରାପ୍ତ ହୋଇଥାଏ । କିନ୍ତୁ ଆତ୍ମା ଭୌତିକ ନୁହେଁ, ତେଣୁ କଦାପି କାଳେ ତାହାର ବିକୃତ ବା ବିନାଶ ନାହିଁ । ୪୨ ।

ଯେପରି ଅଗ୍ନି କାଷ୍ଠ ସହିତ ଅପୃଥକ୍ ଅବସ୍ଥାରେ ଥିଲେ ମଧ୍ୟ ତାହାର ଦାହକତ୍ୱାଦିଗୁଣ ହେତୁ ତାହାକୁ କାଷ୍ଠଠାରୁ ପୃଥକ୍ ବୋଲି ଜଣାଯାଏ, ଦେହସ୍ଥିତ ଶ୍ୱାସ ପ୍ରଶ୍ୱାସାଦି ବାୟୁ ଯେପରି ଦେହ ସହିତ ଅଭିନ୍ନ ଭାବରେ ଅବସ୍ଥିତ ରହି ମଧ୍ୟ ତାହା ଦେହଠାରୁ ପୃଥକ, ଆକାଶ ବା ଶୂନ୍ୟ ଯେପରି ମୂର୍ତ୍ତିମାନ୍ ପଦାର୍ଥଠାରୁ ଅଭିନ୍ନ ଭାବରେ ଅବସ୍ଥିତ ହୋଇ ମଧ୍ୟ ଯେପରି କୌଣସି ବସ୍ତୁ ସହିତ ତାର ସମ୍ବନ୍ଧ ନ ଥାଏ, ସେହିପରି ଦେହାଦି ଇନ୍ଦ୍ରିୟ ସହିତ ସମ୍ବନ୍ଧ ଥାଇଁ ମଧ୍ୟ ଆତ୍ମା ଅପୃଥକ୍ ଭାବରେ ଅବସ୍ଥିତ । ୪୩ ।

---

ଏ ଯେତେ ପ୍ରାଣୀ କର୍ମବଳେ
ହସି ନ ହସନ୍ତି ଶଯ୍ୟାକେ
ଆତ୍ମା ସକଳ ଦେହେ ଥାଇ
ପ୍ରାଣିଙ୍କ ଗୁଣେ ସେ ବାନ୍ଧଇ ।୪୧।
ଆତ୍ମାରୁ ଶରୀର ବିଖ୍ୟାତ
ମୋହ ଗହନେ ହୋଇ ଜାତ
ଗୃହସ୍ଥ ଗୃହେ ଥାଇ ଯେହ୍ନେ
ଆତ୍ମାକୁ ଗୃହ ଅନୁମାନେ

ମୃତ୍ତିକା ଯେହ୍ନେ ଜଳେ ମାଡ଼ି
ଚକେ ବସାଇ ରୂପ ଗଢ଼ି
ଅଗ୍ନି ସଂଯୋଗେ ଦୃଢ଼େ ଦହି
ନାନା ପ୍ରକାରେ ବସ୍ତୁ ବହି
ସେ ପୁଣି ପ୍ରୟୋଜନ ଅନ୍ତେ
ପୁଣି ପଡ଼ଇ ଭୂମିଗତେ । ୪୨ ।
ଅନଳ ଯେହ୍ନେ ଦାରୁ ମଧ୍ୟେ
ଭିନ୍ନେ ପ୍ରକାଶେ ବସ୍ତୁ ଭେଦେ

ପବନ ଦେହ ମଧ୍ୟେ ଥାଇ
ନାସିକା ରନ୍ଧ୍ରେ ସଞ୍ଚରଇ
ଦେହ ନ ଲଗେ ତାର ଦେହେ
ସର୍ବ ସଞ୍ଚରି ଭିନ୍ନେ ରହେ
ଆକାଶ ସର୍ବ ବ୍ୟାପି ରହେ
ସର୍ବ ସଙ୍ଗେ ସଙ୍ଗ ନୋହେ
ଏ ଜୀବ ପୁରୁଷ ତେମନ୍ତ
ସ୍ୱଭାବେ ତ୍ରିଗୁଣେ ଆଶ୍ରିତ । ୪୩ ।

**ସୁଯଜ୍ଞୋ ନନ୍ୱୟଂ ଶେତେ ମୂଢ଼ା ଯମନୁଶୋଚଥ ।**
**ଯଃ ଶ୍ରୋତା ଯୋଽନୁବକ୍ତେହ ସ ନ ଦୃଶ୍ୟେତ କର୍ହିଚିତ୍ । ୪୪ ।**
**ନ ଶ୍ରୋତା ନାନୁବକ୍ତାୟଂ ମୁଖ୍ୟୋଽପ୍ୟତ୍ର ମହାନସୁଃ ।**
**ଯସ୍ତ୍ୱିହେନ୍ଦ୍ରିୟବାନାତ୍ମା ସ ଚାନ୍ୟଃ ପ୍ରାଣଦେହୟୋଃ । ୪୫ ।**
**ଭୂତେନ୍ଦ୍ରିୟମନୋଲିଙ୍ଗାନ୍ ଦେହାନୁଚ୍ଚାବଚାନ୍ ବିଭୁଃ ।**
**ଭଜତ୍ୟୁତ୍ସୃଜତି ହ୍ୟନ୍ୟସ୍ତଚ୍ଚାପି ସ୍ୱେନ ତେଜସା । ୪୬ ।**
**ଯାବଲ୍ଲିଙ୍ଗାନ୍ୱିତୋ ହ୍ୟାତ୍ମା ତାବତ୍ କର୍ମନିବନ୍ଧନମ୍ ।**
**ତତୋ ବିପର୍ଯ୍ୟୟଃ କ୍ଲେଶୋ ମାୟାଯୋଗୋଽନୁବର୍ତ୍ତତେ । ୪୭ ।**

---

ହେ ନାରୀଗଣ ! ତୁମ୍ଭେମାନେ ଅତ୍ୟନ୍ତ ଅବୋଧ ! ଯେଉଁ ସୁଯଜ୍ଞ ପାଇଁ ତୁମ୍ଭେମାନେ ଶୋକ କରୁଅଛ, ସେ ତ ତୁମ୍ଭମାନଙ୍କ ସମ୍ମୁଖରେ ଶୋଇ ଅଛି । ଯଦି କୁହ ସେ ଶୁଣୁ ନାହିଁ ବା କଥା କହୁ ନାହିଁ ତାହାର ଉତ୍ତର ଏହି ଯେ ଶ୍ରବଣକାରୀ ବା ପ୍ରତି ବଚନଦାତାକୁ ଇହଲୋକରେ କେହି କଦ୍ପି କାଳେ ଦେଖି ପାରେ ନାହିଁ । ୪୪ ।

ସମସ୍ତ ଇନ୍ଦ୍ରିୟମାନଙ୍କର ଚେଷ୍ଟାର ହେତୁ ସ୍ୱରୂପପ୍ରାଣ ମୁଖ୍ୟ ହେଲେ ମଧ୍ୟ ସେ ବକ୍ତା ବା ଶ୍ରୋତା ନୁହେଁ ପରନ୍ତୁ ଦେହ ଇନ୍ଦ୍ରିୟାଦି ଯୁକ୍ତ ବୋଲି ଯେଉଁ ଆତ୍ମା ପ୍ରତୀତ ହୁଏ ସେହି ଆତ୍ମାହିଁ ବକ୍ତା ଓ ଶ୍ରୋତା । ସେହି ଆତ୍ମା ପ୍ରାଣ ଓ ଦେହଠାରୁ ବିଭିନ୍ନ । ୪୫ ।

ଦେହାଦି ବ୍ୟତୀତ ଆତ୍ମାହିଁ ନିଜର ପ୍ରଭାବ ବଳରେ ପଞ୍ଚଭୂତ, ଇନ୍ଦ୍ରିୟ ଓ ମନୋଲିଙ୍ଗ ଉତ୍କୃଷ୍ଟ ପ୍ରକୃଷ୍ଟ ଦେହ ଆଶ୍ରୟ କରେ ପୁଣି ନିଜ ପ୍ରଭାବ ବଳରେ ଯଥା ସମୟରେ ତାହା ପରିତ୍ୟାଗ କରେ । ୪୬ ।

ଯେତେକାଳ ପର୍ଯ୍ୟନ୍ତ ଲିଙ୍ଗ ଦେହ ସହିତ ଆତ୍ମାର ସମ୍ବନ୍ଧ ଥାଏ ସେତେକାଳ ପର୍ଯ୍ୟନ୍ତ କର୍ମବନ୍ଧର କାରଣ ହୁଏ । ତହିଁରୁ ବିପର୍ଯ୍ୟୟ ବା ଦେହ ଧର୍ମଭାଗୀତ୍ୱ ଏବଂ ମାୟା ବା ଅଭିମାନ ମୂଳକ ଦ୍ୱେଷ ଅନୁବର୍ତ୍ତନ କରିଥାଏ । ୪୭ ।

---

ସୁଯଜ୍ଞ ରାଜା ଏ ନୁହଇ
ରୋଦନ କର କାହିଁପାଇଁ
ଶ୍ରୋତା ବକତା ନାହିଁ ଏଥେ
ରୋଦନ ଶୁଣିବ କେମନ୍ତେ
ଏ ଦେହମଧ୍ୟେ ଆତ୍ମା ଥାଇ
ଇନ୍ଦ୍ରିୟ ସଙ୍ଗେ ପ୍ରକାଶଇ
ସେ ଏଥୁ ଗଲା ଅନ୍ତରୀକ୍ଷେ
ଦେଖ ଏ ମୃତ୍ତିକା ପ୍ରତ୍ୟକ୍ଷେ

ପୃଥିବୀ ବିକାର ଏ ଦେହୀ
ପୃଥିବୀ ସଙ୍ଗେ ଅଛି ଶୋଇ
ଯାହାକୁ ଶୋକ ତୁମ୍ଭେ କର
ଏପ୍ରାଣ ଦେହରୁ ସେ ପର । ୪୪, ୪୫
ଏ ପଞ୍ଚଭୂତ ଇନ୍ଦ୍ରିଗଣ
ମନଟି ଏହାଙ୍କ କାରଣ
ଆତ୍ମାଟି ଏହାଙ୍କର ସଙ୍ଗେ
ପ୍ରକାଶ ଉଚ୍ଚ ନୀଚ ଅଙ୍ଗେ

ସେ ନିଜ ତେଜେ ପ୍ରକାଶଇ
ଶରୀର ଘେନଇ ଛାଡ଼ଇ । ୪୬ ।
ଯାବତ ଆତ୍ମା ଦେହେ ଥାଇ
ତାବତ ଲିଙ୍ଗରୂପ ବହି
ତାବତ କର୍ମେ ଏ ବନ୍ଧନ
ଏହା ନ ଜାଣେ ମୂର୍ଖଜନ
ଏଣୁ ଏ ଗତାଗତ ପଥେ
କ୍ଲେଶ ଲଭଇ ଅବିରତେ । ୪୭ ।

**ବିତଥୋଽଭିଜ୍ଞବେଶୋଽୟଂ ଯଦ୍‌ଗୁଣେଷ୍ୱର୍ଥଦୃଗ୍‌ବଚଃ ।**
**ଯଥା ମନୋରଥଃ ସ୍ୱପ୍ନଃ ସର୍ବମୈନ୍ଦ୍ରିୟକଂ ମୃଷା । ୪୮ ।**
**ଅଥ ନିତ୍ୟମନିତ୍ୟଂ ବା ନେହ ଶୋଚନ୍ତି ତଦ୍‌ବିଦଃ ।**
**ନାନ୍ୟଥା ଶକ୍ୟତେ କର୍ତ୍ତୁଂ ସ୍ୱଭାବଃ ଶୋଚତାମିତି । ୪୯ ।**
**ଲୁବ୍‌ଧକୋ ବିପିନେ କଶ୍ଚିତ୍ ପକ୍ଷିଣାଂ ନିର୍ମିତୋଽନ୍ତକଃ ।**
**ବିତତ୍ୟ ଜାଲଂ ବିଦଧେ ତତ୍ର ତତ୍ର ପ୍ରଲୋଭୟନ୍ । ୫୦ ।**
**କୁଲିଙ୍ଗମିଥୁନଂ ତତ୍ର ବିଚରତ୍ ସମଦୃଶ୍ୟତ ।**
**ତୟୋଃ କୁଲିଙ୍ଗୀ ସହସା ଲୁବ୍‌ଧକେନ ପ୍ରଲୋଭିତା । ୫୧ ।**

---

ଗୁଣ, କାର୍ଯ୍ୟ, ସୁଖାଦି ପ୍ରତି ଯେଉଁ ପରମାର୍ଥ ଜ୍ଞାନ ଓ ପରମାର୍ଥଦୃ ବୋଧକ ବାକ୍ୟ ତାହା ସମସ୍ତ ନିଷ୍ଫଳ, ମିଥ୍ୟା । ସ୍ୱପ୍ନ ଯେପରି ମିଥ୍ୟା ବିଷୟରୁ ଉତ୍ପନ୍ନ ସାଂସାରିକ ପଦାର୍ଥ ମଧ୍ୟ ବିଷୟ ଆକାଙ୍‌କ୍ଷାରୁ ଉତ୍ପନ୍ନ । ଇନ୍ଦ୍ରିୟ ରାଜ୍ୟ ସମସ୍ତ ଜଗତ୍ ଅର୍ଥାତ୍ ଯେଉଁ ଜଗତକୁ ଇନ୍ଦ୍ରିୟଙ୍କ ଦ୍ୱାରା ଜଣାଯାଏ ତାହା ମିଥ୍ୟା ସତ୍ୟ ନୁହେଁ । ୪୮ ।

ଯେଉଁମାନେ ଏହି ପଦାର୍ଥ ନିତ୍ୟ ଓ ଏହି ପଦାର୍ଥ ଅନିତ୍ୟ ଏହା ଜାଣିପାରି ଅଛନ୍ତି ସେମାନେ କଦାପି ନିତ୍ୟ ଆତ୍ମା ଓ ଅନିତ୍ୟ ଦେହ ପାଇଁ ଶୋକ କରନ୍ତି ନାହିଁ । ଯେଉଁମାନେ ଶୋକ କରନ୍ତି ସେମାନେ ମାୟା ପ୍ରଭାବ ଦ୍ୱାରା ଆଚ୍ଛନ୍ନ । ସୁତରାଂ ସେମାନଙ୍କର ଏହି ଶୋକଶୀଳ ସ୍ୱଭାବ ପରିବର୍ତ୍ତିତ ହେବା ସହଜ ନୁହେଁ । ୪୯ ।

କୌଣସି ବନ ମଧ୍ୟରେ ବିଧାତା ଗୋଟିଏ ବ୍ୟାଧ ସୃଷ୍ଟି କରିଥିଲେ । ସେ ପକ୍ଷୀମାନଙ୍କ ବିନାଶ ସାଧନ କରୁଥିଲା । ଯେଉଁଠାରେ ପକ୍ଷୀ ଥାନ୍ତି ସେହିସ୍ଥାନରେ ଜାଲ ବିସ୍ତାର କରି ସେଥିରେ ଶସ୍ୟ ବୁଣି ସେମାନଙ୍କର ଲୋଭ ବଢାଇ ସେମାନଙ୍କୁ ଜାଲରେ ଧରୁଥିଲା । ୫୦ ।

ସେହି ବନରେ ଥରେ କୁଳିଙ୍ଗ ନାମକ ପକ୍ଷୀ ଓ ତାହାର ଭାର୍ଯ୍ୟା କୁଳିଙ୍ଗୀ ବିଚରଣ କରୁଥିବାର ଦେଖି ସେହି ବ୍ୟାଧ କୁଳିଙ୍ଗୀ ପକ୍ଷିଣୀକୁ ଅତ୍ୟନ୍ତ ପ୍ରଲୋଭିତ କରିଥିଲା ( କୁଳିଙ୍ଗୀ କନ୍ଦଭକ୍ଷୀ ପକ୍ଷୀ ବିଶେଷ ଇତି ଶ୍ରୀଧର ସ୍ୱାମୀ ) । ୫୧ ।

---

ଏଣୁ ଏ ମିଥ୍ୟା କଳେବରେ
ଅତଥ୍ୟ ତଥ୍ୟ ପ୍ରାୟେ ସ୍ଥୂଳେ ।
ଯେମନ୍ତେ ସ୍ୱପ୍ନ ମନୋରଥେ
ଭ୍ରମଇ ଇନ୍ଦ୍ରିୟଙ୍କ ପଥେ
ଦେଖଇ ସତ୍ୟ ପ୍ରାୟ ତାହା
ନିଦ୍ରାର ଅନ୍ତେ ହୁଏ ମାୟା
ଏହାଙ୍କୁ ନିତ୍ୟାନିତ୍ୟ ମତେ
ପଣ୍ଡିତେ ନ ଘେନନ୍ତି ଚିତ୍ତେ
କିମ୍ପା ଅନ୍ୟଥା କେ କରିବ
ଯାହାନମୁଁ ଯେଁ ବୁଦ୍ଧି ଶିବା ।୪୮,୪୯ ।

ଶୁଣ କହିବା ପୂର୍ବ ବାଣୀ
ମୁଁ ଯେ ବାଳକ ଅଛି ଶୁଣି
ଲୁବ୍ଧକ ପକ୍ଷିଙ୍କ ମାରଣେ
ବିପିନେ ପଶିଲା ଘୋରବନେ
ପକ୍ଷିଙ୍କି କାଳ ପ୍ରାୟ ହୋଇ
ବୁଲଇ ହସ୍ତେ ପାଶ ଲଇ
ଲତା ଗହନେ ସେ ପଶିଲା
ଅନ୍ତରେ ଜାଲ ପ୍ରସାରିଲା

ଆହାର ଜାଲତଳେ ଥୋଇ
ଲୁଚିଲା ଲତା ମଧ୍ୟେ ଯାଇ । ୫୦ ।
କୁଳିଙ୍ଗ ପକ୍ଷୀ ପତ୍ନୀ ମେଳେ
ବସି ଯେ ଥିଲା ବୃକ୍ଷଡାଳେ
ଆହାର ଦେଖି ଜାଲତଳେ
ପଶିଲା କ୍ଷୁଧାର ବିକଳେ ।
ଲୁବ୍ଧକ ଜାଲ ପାଶେ ଛନ୍ଦି
ତାର ପକ୍ଷିଣୀ ହେଲା ବନ୍ଦୀ ।୫୧।

ସାଽସଜ୍ଜତ ସିଚସ୍ତନ୍ତ୍ୟାଂ ମନ୍ଦଧୀ କାଳଯନ୍ତ୍ରିତା-
କୁଳିଙ୍ଗସ୍ତାଂ ତଥାପନ୍ନାଂ ନିରୀକ୍ଷ୍ୟ ଭୃଶଦୁଃଖିତଃ ।
ସ୍ନେହାଦକଳ୍ପଃ କୃପଣଃ କୃପଣାଂ ପର୍ଯ୍ୟଦେବୟତ୍ । ୫୨ ।
ଅହୋ ଅକରୁଣୋ ଦେବଃ ସ୍ତ୍ରିୟା କରୁଣୟା ବିଭୁଃ ।
କୃପଣଂ ମାନୁଶୋଚନ୍ତ୍ୟା ଦୀନୟା କିଂ କରିଷ୍ୟତି । ୫୩ ।
କାମଂ ନୟତୁ ମାଂ ଦେବଃ କିମର୍ଦ୍ଧେନାତ୍ମନୋ ହି ମେ ।
ଦୀନେନ ଜୀବତା ଦୁଃଖମନେନ ବିଧୁରାୟୁଷା । ୫୪ ।
କଥଂ ତ୍ୱଜାତପକ୍ଷାଂସ୍ତାନ୍ ମାତୃହୀନାନ୍ ବିଭର୍ମ୍ୟହମ୍ ।
ମନ୍ଦଭାଗ୍ୟାଃ ପ୍ରତୀକ୍ଷନ୍ତେ ନୀଡେ ମେ ମାତରଂ ପ୍ରଜାଃ । ୫୫ ।

---

ହେ ରାଜୀମାନେ ! ସେହି କୁଳିଙ୍ଗୀ କାଳକ୍ରମେ ନିୟନ୍ତ୍ରିତ ହୋଇ ବ୍ୟାଧର ଜାଲ ସୂତ୍ରରେ ବନ୍ଧ ହେଲା । କୁଳିଙ୍ଗ ପକ୍ଷୀ ନିଜ ସ୍ତ୍ରୀକୁ ବିପନ୍ନ ଦେଖି ଅତ୍ୟନ୍ତ ଦୁଃଖିତ ହେଲା ଏବଂ ସ୍ନେହ ବଶରେ କିଂକର୍ତ୍ତବ୍ୟ ବିମୂଢ଼ ହୋଇ ଦୀନ ଭାବରେ ସେହି କୁଳିଙ୍ଗୀ ଲାଗି ଶୋକ ପ୍ରକାଶ କଲା । ୫୨ ।

ହାୟ ! ମୋର ଏହି କରୁଣାମୟୀ ସ୍ତ୍ରୀ ଦୀନ ଭାବରେ ମୋ ପାଇଁ ଶୋକ କରୁଅଛି । ମୁଁ ଏହା ପାଇଁ ଅତ୍ୟନ୍ତ ଦୁଃଖ ଅନୁଭବ କରୁଅଛି । ସୁତରାଂ ପ୍ରଭାବଶାଳୀ ନିର୍ଦ୍ଦୟ ବିଧାତା ଏପରି କରି କି ଯଶ ପାଇଲା । ୫୩ ।

ବିଧାତା ! ମୋର ପତ୍ନୀକି ହରଣ କରି ମୋର ଦେହରୁ ଅଧେ ହରଣ କରିନେଲୁ । ବର୍ତ୍ତମାନ ତାହାର ବିରହରେ ଦୀନ ଭାବାପନ୍ନ ଅତି ଦୁଃଖରେ ଜୀବିତ ଏ ଅର୍ଦ୍ଧ ଶରୀରରେ ମୋର କି ଫଳ ? ଅତଏବ ହେ ବିଧାତା ! ମୋତେ ମଧ୍ୟ ଘେନି ଯା' । ୫୪ ।

ମୋର ଶିଶୁ ଗୁଡ଼ିକଙ୍କର ଏ ପର୍ଯ୍ୟନ୍ତ ପକ୍ଷୋଦ୍ଗମ ହୋଇନାହିଁ, ଏ ଅବସ୍ଥାରେ ସେମାନେ ମାତୃହୀନ ହେଲେ ମୁଁ ସେମାନଙ୍କୁ ପୋଷିବି କିପରି ? ରେ ମନ୍ଦଭାଗ୍ୟ ଶିଶୁଗଣ ! ତୁମ୍ଭେମାନେ ନୀଡ଼ରେ ରହି ମା'କୁ ଅପେକ୍ଷା କରୁଥିବ । ୫୫ ।

---

ପତ୍ନୀ ବନ୍ଧନ ପଡ଼ି ଦେଖି
ତତକ୍ଷଣେ ଆସନ ଉପେକ୍ଷି
ଉଚ୍ଚ ବୃକ୍ଷର ଡାଳେ ବସି
ନିଶ୍ୱାସ ନିର୍ଘାତେ ସାହାସି
ଅତି ବିକଳେ ଦୁଃଖମନେ
ଲୋତକ ବହଇ ନୟନେ
କର୍ମ୍ମ ଆଦରି ଶୂନ୍ୟ ଗୃହି
ବୋଲଇ ଶୂନ୍ୟକୁ ଅନାଇ ।୫୨।

ହାହା ଦଇବ ତୁ ନିର୍ଦ୍ଦୟୀ
ମୋର ବିଷୟେ କଲୁ ମାୟୀ
କିଷଣ କଲୁ ପତ୍ନୀହୀନେ
ଜୀବନ ଧରିବି କେସନେ
ଶରୀର ଅର୍ଦ୍ଧ ଅଙ୍ଗ ନାରୀ
ଅର୍ଦ୍ଧାଙ୍ଗେ କେବା ଆତ୍ମାଧରି
ବାଳକେ ଛନ୍ତି ମୋର ବାସେ
କି ଘେନି ଯିବି ତାଙ୍କ ପାଶେ

ତାହାଙ୍କ ଦେହେ ପକ୍ଷ ନାହିଁ
କେମନ୍ତେ ପୋଷିବଇଁ ମୁହିଁ
ବାଳକେ ମୋର ମାତୃହୀନେ
ଜୀବନ ଧରିବେ କେସନେ
ମାତାକୁ ଲୋଡ଼ିବେ ନିରତେ
ମୁଁ ତାହା ସହିବି କେମନ୍ତେ ।୫୩-୫୫

ଏବଂ କୁଲିଙ୍ଗଂ ବିଲପନ୍ତମାରାତ୍ ପ୍ରିୟାବିୟୋଗାତୁରମଶ୍ରୁକଣ୍ଠମ୍ ।
ସ ଏବ ତଂ ଶାକୁନିକଃ ଶରେଣ ବିବ୍ୟାଧ କାଳପ୍ରହିତୋ ବିଲୀନଃ । ୫୬ ।
ଏବଂ ଯୂୟମପଶ୍ୟନ୍ତ ଆତ୍ମାପାୟମବୁଦ୍ଧୟଃ ।
ନୈନଂ ପ୍ରାପ୍ସ୍ୟଥ ଶୋଚନ୍ତ୍ୟଃ ପତିଂ ବର୍ଷଶତୈରପି । ୫୭ ।

ଶ୍ରୀ ହିରଣ୍ୟକଶିପୁରୁବାଚ ।

ବାଲ ଏବଂ ପ୍ରବଦତି ସର୍ବେ ବିସ୍ମିତଚେତସଃ ।
ଜ୍ଞାତୟୋ ମେନିରେ ସର୍ବମନିତ୍ୟମୟଥୋତ୍ଥିତମ୍ । ୫୮ ।
ଯମ ଏତଦୁପାଖ୍ୟାୟ ତତ୍ରୈବାନ୍ତରଧୀୟତ ।
ଜ୍ଞାତୟୋଽପି ସୁୟଜ୍ଞସ୍ୟ ଚକ୍ରୁର୍ଯତ୍ ସାମ୍ପରାୟିକମ୍ । ୫୯ ।

---

ସେହି ବ୍ୟାଧ କାଳ ପ୍ରେରିତ ହୋଇ ପ୍ରଚ୍ଛନ୍ନ ଦେହରେ ଅବସ୍ଥିତ ରହି ପ୍ରିୟା ବିଚ୍ଛେଦ ଦୁଃଖ କାତର ବିଳାପ ପରାୟଣ ବାଷ୍ପରୁଦ୍ଧ କଣ୍ଠ ସେହି କୁଳିଙ୍ଗ ପକ୍ଷୀକୁ ଶରଦ୍ୱାରା ବଦ୍ଧ କଲା । ୫୬ ।

ଏହିପରି ତୁମ୍ଭେମାନେ ନିଜର ବିନାଶ ଲକ୍ଷ୍ୟ କରୁନାହଁ, ତୁମ୍ଭେମାନେ ଅଜ୍ଞାନ । ଏହିପରି ବହୁଶତ ବର୍ଷ କ୍ରନ୍ଦନ କରି ମଧ୍ୟ ତୁମ୍ଭେମାନେ ତୁମ୍ଭର ପତିକୁ ପାଇବ ନାହିଁ । ୫୭ ।

ଶ୍ରୀହିରଣ୍ୟ କଶିପୁ କହିଲେ :—

ସେହି ବାଳକ ରୂପଧାରୀ ଯମ ଏହିପରି କହନ୍ତେ ବିସ୍ମିତଚିତ୍ତ ଜ୍ଞାତିମାନେ ଜଗତକୁ ଅନିତ୍ୟ ଓ ମିଥ୍ୟା ବୋଲି ମନେ କରିଥିଲେ । ୫୮ ।

ବାଳକ ରୂପଧାରୀ ଯମ ଏ ବୃତ୍ତାନ୍ତ ବର୍ଣ୍ଣନା କରି ଅନ୍ତର୍ହିତ ହେଲେ । ସୁୟଜ୍ଞଙ୍କର ଜ୍ଞାତିମାନେ ପରଲୋକଗତ ବ୍ୟକ୍ତି ପ୍ରତି ନିଜ ନିଜ କର୍ତ୍ତବ୍ୟ ସମ୍ପାଦନ କରିଥିଲେ । ୫୯ ।

---

ଏମନ୍ତେ ବୃକ୍ଷ ଡାଳେ ଥାଇ
ବିକଳେ କୁଳିଙ୍ଗ କାନ୍ଦଇ
ପତ୍ନୀର ଦେହେ ଦେଇ ମନ
କ୍ଷଣ କ୍ଷଣକେ ଅଚେତନ
ଏମନ୍ତେ ବ୍ୟାଧ ବୃକ୍ଷମୂଳେ
ମିଳିଲ ଚରଣ କଣ୍ଟକେ
ଶର ସନ୍ଧାନେ ତାକୁ ମାରି
ତକ୍ଷଣେ ଭରିଲ ପଞ୍ଜୀରି

ତକ୍ଷଣେ ନିଜପୁର ଗଲ
ଶୁଣ ହେ ନୃପତି ଅବଳା । ୫୬ ।
ଶତେକ ବରଷ ଏହି ଠାବେ
ରୋଦନ କରୁଥିବ ଯେବେ
ତେବେ କି ଉଠିବ ଶରୀର
ଜ୍ଞାନ କି ବୁଡ଼ିଲ ତୁମ୍ଭର । ୫୭ ।
ବାଳକ ବଚନ ଏମନ୍ତେ
ଶୁଣି ସକଳ ଏକଚିତ୍ତେ

ମାୟା ଛାଡ଼ିଲେ ଜ୍ଞାନ ପାଇ
ଉଠିଲେ ଏକୁଁ ଆରେ ଚାହିଁ
ବୋଲନ୍ତି ମିଥ୍ୟା ଏ ସଂସାର
ଅନିତ୍ୟ ଏ ପ୍ରାଣ ଶରୀର । ୫୮ ।
ଯମ ଏ ଉପଦେଶ ଦେଇ
ତକ୍ଷଣେ ଅନ୍ତର୍ଦ୍ଧାନେ ଗଲ
ତହୁଁ ସେ ଗୋତ୍ର ଜ୍ଞାତିମେଳେ
ରାଜାର ପ୍ରେତ କାର୍ଯ୍ୟ କଲେ । ୫୯ ।

ଅତଃ ଶୋଚତ ମା ଯୂୟଂ ପରଞ୍ଚାତ୍ମାନମେବ ବା ।
କ ଆତ୍ମା କଃ ପରୋ ବାତ୍ର ସ୍ୱୀୟଃ ପାରକ୍ୟ ଏବ ବା । ୬୦ ।
ସ୍ୱପରାଭିନିବେଶେନ ବିନାଽଜ୍ଞାନେନ ଦେହିନାମ୍ ।

ଶ୍ରୀନାରଦ ଉବାଚ ।

ଇତି ଦୈତ୍ୟପତେର୍ବାକ୍ୟଂ ଦିତିରାକର୍ଣ୍ୟ ସସ୍ନୁଷା ।
ପୁତ୍ରଶୋକଂ କ୍ଷଣାତ୍ତ୍ୟକ୍ତ୍ୱା ତତ୍ତ୍ୱେ ଚିତ୍ତମଧାରୟତ୍ । ୬୧ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ
ଯୁଧିଷ୍ଠିରନାରଦସମ୍ବାଦେ ଦିତିଶୋକାପନୋଦନଂ ଦ୍ୱିତୀୟୋଽଧ୍ୟାୟଃ । ୨ ।

---

ସୁତରାଂ ତୁମ୍ଭେମାନେ ପରପାଇଁ ବା ନିଜପାଇଁ ଶୋକ କର ନାହିଁ । ମୁଁ ଓ ମୋର ଏହି ଅଜ୍ଞାନ ବ୍ୟତିରେକେ ଏ ଜଗତରେ ଦେହୀ ମାନଙ୍କର ଆତ୍ମାପର ବା କଅଣ ଅଛି ? । ୬୦ ।

ଶ୍ରୀନାରଦ କହିଲେ :—

ଦିତୀ ପୁତ୍ରବଧୂ ସହିତ ଦୈତ୍ୟପତି ହିରଣ୍ୟକଶିପୁଙ୍କର ଏହି ବାକ୍ୟ ଶ୍ରବଣ କରି କ୍ଷଣକାଳ ମଧ୍ୟରେ ପୁତ୍ରଶୋକ ପରିତ୍ୟାଗ କରି ପରମାତ୍ମ ତତ୍ତ୍ୱରେ ଚିତ୍ତ ନିବେଶ କରିଥିଲେ । ୬୧ ।

---

ଏବେ ମୋ ଅନୁଜ ମରଣେ
ଶୋକ କରିବା କି କାରଣେ
ଏମନ୍ତେ ମାୟା ଏ ସଂସାର
କେ ଆତ୍ମ କେବା ଅଛି ପର । ୬୦

ଶ୍ରୀନାରଦ ଉବାଚ ।

ଏମନ୍ତେ ଶୁଣି ପୁତ୍ର କଥା
ଶୋକ ଛାଡ଼ିଲା ରାଜମାତା
ପୁତ୍ରବଧୂଙ୍କୁ ଶାନ୍ତ କରି
ତତ୍ତ୍ୱ ବଚନ ମନେ ଧରି
ଦିତି ଛାଡ଼ିଲା ପୁତ୍ର ଶୋକ
ସ୍ୱଭାବେ ସୁଜ୍ଞାନ ବିବେକ । ୬୧ ।
କହିଲା ଦାସ ଜଗନ୍ନାଥ
ସପ୍ତମ-ସ୍କନ୍ଧେ ଭାଗବତ
ନାରଦ ମୁନି ଅନୁରାଗେ
କହିଲେ ଯୁଧିଷ୍ଠିର ଆଗେ
ଏ ଅବା ତତ୍ତ୍ୱ-ଜ୍ଞାନସାର
ଶୁଣନ୍ତେ ସଂସାରୁ ନିସ୍ତାର ।





ବିଶଦାର୍ଥ :—

ହିରଣାକ୍ଷ ବଧ ଉତ୍ତାରୁ ତାହାର ପତ୍ନୀମାନେ ଶୋକ କରୁଥିଲେ । ହିରଣ୍ୟ କଶ୍ୟପୁ ସେମାନଙ୍କୁ ଶୋକ କରିବାକୁ ନିଷେଧ କରି ଉପଦେଶ ଛଳରେ ଆତ୍ମାର ଅବିନାଶିତ୍ୱ ଏବଂ ଦେହର ନଶ୍ୱର ଭାବ ବୁଝାଇ ଥିଲା । ଶ୍ରୀମଦ୍ ଭାଗବତର ଏହି ଅଧ୍ୟାୟ ବର୍ଣ୍ଣିତ ପ୍ରସଙ୍ଗ ଶ୍ରୀମଦ୍‌ଭଗବତ ଗୀତାର ଦ୍ୱିତୀୟ ଅଧ୍ୟାୟ ବର୍ଣ୍ଣିତ ଆତ୍ମାତତ୍ତ୍ୱ ସହିତ ସମାନ । ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଏହି ତତ୍ତ୍ୱ ଶୁଣାଇଥିଲେ । ମୃତ ବା ଜୀବିତ ବ୍ୟକ୍ତି ପାଇଁ ଶୋକ କରିବା ଉଚିତ ନୁହେଁ । ଆତ୍ମା ଶୀତ, ଉଷ୍ଣ, ସୁଖ, ଦୁଃଖ ଏ ସମସ୍ତର ଅତୀତ । ଆତ୍ମା ନିତ୍ୟ, ଆତ୍ମା ସହିତ ଦେହର ସମ୍ବନ୍ଧ ଥାଇ ମଧ୍ୟ ସମ୍ବନ୍ଧ ଶୂନ୍ୟ । ଏହି ଆତ୍ମା ଶସ୍ତ୍ର ଦ୍ୱାରା ଛେଦିତ ହୁଏ ନାହିଁ, ଅଗ୍ନି ଦ୍ୱାରା ଦହ୍ୟ ହୁଏ ନାହିଁ, ଜଳଦ୍ୱାରା ଆର୍ଦ୍ର ହୁଏ ନାହିଁ, ପବନରେ ଶୁଷ୍କ ହୁଏ ନାହିଁ । ଦେହର ବିନାଶରେ ଆତ୍ମାର ବିନାଶ ଘଟେ ନାହିଁ ।

"ନ ଜାୟତେ ମ୍ରିୟତେ ବା କଦାଚିତ୍
ନାୟଂ ଭୂତ୍ୱା ଭବିତା ବା ନ ଭୂୟଃ
ଅଜୋନିତ୍ୟଃ ଶାଶ୍ୱତୋଽୟଂ ପୁରାଣୋ
ନ ହନ୍ୟତେ ହନ୍ୟମାନେ ଶରୀରେ ।
ବାସାଂସି ଜୀର୍ଣ୍ଣାନି ଯଥା ବିହାୟ
ନବାନି ଗୃହ୍ଣାତି ନରୋଽପରାଣି
ତଥା ଶରୀରାଣି ବିହାୟ ଜୀର୍ଣ୍ଣା
ନ୍ୟନ୍ୟାନି ସଂଯାତି ନବାନି ଦେହୀ ।"

ଶ୍ରୀମଦ୍ ଭାଗବତର ଏହି ଅଧ୍ୟାୟରେ ହିରଣ୍ୟକଶିପୁ ଉପାଖ୍ୟାନ ଛଳରେ ସୁଯଜ୍ଞଙ୍କର ମୃତ୍ୟୁରେ ବାଳରୂପୀ ଯମଙ୍କର ଆଗମନ ଓ ସୁଯଜ୍ଞଙ୍କର ସ୍ତ୍ରୀ ଓ ଆତ୍ମୀୟଗଣଙ୍କ ଉପଦେଶ ପ୍ରସଙ୍ଗ ମଧ୍ୟ ଉଲ୍ଲେଖ ହୋଇଅଛି । ଏହି ପ୍ରସଙ୍ଗରେ ଈଶ୍ୱର ସର୍ବ ନିୟନ୍ତା, ତାହାଙ୍କର ଇଚ୍ଛାରେ ପ୍ରାଣୀମାନଙ୍କର ଜନ୍ମ ମୃତ୍ୟୁ ଘଟୁଅଛି ଏହାମଧ୍ୟ ଉଲ୍ଲେଖ କରିଥିଲେ । ହିରଣ୍ୟ କଶିପୁ ନାସ୍ତିକ, ଈଶ୍ୱରଙ୍କର ଅସ୍ତିତ୍ୱରେ ବିଶ୍ୱାସ ଶୂନ୍ୟ । ତାହାଠାରୁ ଈଶ୍ୱର ପ୍ରସଙ୍ଗ ଶୁଣିବା ଅସାମଞ୍ଜସ୍ୟ ବୋଧ ହୁଏ । କିନ୍ତୁ ତଥାପି ଆମ୍ଭେମାନେ ଦେଖୁ ନାସ୍ତିକ ମଧ୍ୟ ଅଲକ୍ଷିତ ଭାବରେ ବେଳେ ବେଳେ ଈଶ୍ୱର ସତ୍ତା ସ୍ୱୀକାର କରିଥାଏ । ଦ୍ୱାପର ଯୁଗରେ କଂସ, ତ୍ରେତୟା ଯୁଗରେ ରାବଣ ମଧ୍ୟ ଏହିପରି ଅଦୃଷ୍ଟ ବିଧାତାଙ୍କ ପ୍ରସଙ୍ଗ ଭାବି ନିଜର ଜୀବନ ଆଶଙ୍କା ବୋଧ କରିଥିଲେ । ହିରଣ୍ୟକଶିପୁର ମଧ୍ୟ ସେହିପରି ଭାବ ଉଦିତ ହୋଇଥିଲା । ସେ ଶତ୍ରୁ ଦ୍ୱାରା ନିହତ ଭ୍ରାତା ପାଇଁ ଶୋକାର୍ତ୍ତ ହେବା ଉଚିତ ନୁହେଁ, ଶତ୍ରୁ ବିନାଶରେ ବ୍ରତୀ ହେବା ଉଚିତ ବୋଲି ପ୍ରଚାର କରି ଦୈତ୍ୟମାନଙ୍କୁ ଯୁଦ୍ଧରେ ନିମିତ୍ତ ପ୍ରବର୍ତ୍ତାଇ ଥିଲା ।

## ତୃ ତୀ ୟ ଅ ଧ୍ୟା ୟ ।

ତୃତୀୟେ ତସ୍ୟ ତପସା ତପ୍ତଂ ବୀକ୍ଷ୍ୟ ଜଗଦ୍‌ବିଧିଃ ।
ଆଗତ୍ୟ ବଣ୍ଣିତସ୍ତେନ ସଂସ୍ତୁତସ୍ତୁ ବରାନଦାତ୍ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀନାରଦଉବାଚ ।

ହିରଣ୍ୟକଶିପୁ ରାଜନ୍ନଜେୟମଜରାମରମ୍ ।
ଆତ୍ମାନମପ୍ରତିଦ୍ୱନ୍ଦ୍ୱମେକରାଜଂ ବ୍ୟଧିତ୍ସତ । ୧ ।
ସ ତେପେ ମନ୍ଦରଦ୍ରୋଣ୍ୟାଂ ତପଃ ପରମଦାରୁଣମ୍ ।
ଊର୍ଦ୍ଧ୍ୱବାହୁର୍ନଭୋଦୃଷ୍ଟିଃ ପାଦାଙ୍ଗୁଷ୍ଠାଶ୍ରିତାବନିଃ । ୨ ।
ଜଟାଦୀଧିତିଭୀରେଜେ ସମ୍ବର୍ତ୍ତାର୍କ ଇବାଂଶୁଭିଃ ।
ତସ୍ମିଂସ୍ତପସ୍ତପ୍ୟମାନେ ଦେବାଃ ସ୍ଥାନାନି ଭେଜିରେ । ୩ ।

---

### ହିରଣ୍ୟକଶିପୁର ଉଗ୍ର ତପସ୍ୟା ଓ ବ୍ରହ୍ମାଙ୍କ ଠାରୁ ବରଲାଭ ।

ତୃତୀୟ ଅଧ୍ୟାୟରେ ହିରଣ୍ୟକଶିପୁର ତପସ୍ୟା, ତପସ୍ୟା ଦ୍ୱାରା ଜଗତର ସନ୍ତାପ ଏବଂ ବ୍ରହ୍ମାଙ୍କର ବରଦାନ । ୦ ।

ଶ୍ରୀନାରଦ କହିଲେ;—ହେ ରାଜନ୍ ! ଦୈତ୍ୟରାଜ ହିରଣ୍ୟକଶିପୁ ଆପଣାକୁ ଅଜେୟ, ଅଜର ( ଜରା ଶୂନ୍ୟ ) ଅମର ଓ ଅପ୍ରତିଦ୍ୱନ୍ଦ୍ୱୀ ଏବଂ ଏକମାତ୍ର ଅଧିପତି ବୋଲି ପ୍ରଖ୍ୟାତ ହେବାର ଇଚ୍ଛା କରିଥିଲା । ୧ ।

ସେ ଊର୍ଦ୍ଧ୍ୱବାହୁ ହୋଇ ଆକାଶରେ ଦୃଷ୍ଟି ସ୍ଥାପନ କରି ପାଦାଙ୍ଗୁଳରେ ପୃଥିବୀକୁ ଆଶ୍ରୟ କରି ମନ୍ଦର ପର୍ବତର ଗହ୍ୱର ମଧ୍ୟରେ ଅତ୍ୟନ୍ତ ଉତ୍କଟ ତପସ୍ୟା ଅନୁଷ୍ଠାନ କରିଥିଲା । ୨ ।

ସେ ତାହାର ପିଙ୍ଗଳବର୍ଣ୍ଣ ଜଟାଜୁଟର ଦୀପ୍ତିରେ ପ୍ରଳୟକାଳୀନ ସୂର୍ଯ୍ୟ ତୁଲ୍ୟ ଉଦ୍ଦୀପ୍ତ ହୋଇଥିଲା ଏବଂ ସୂର୍ଯ୍ୟଙ୍କର ଦୀପ୍ତିପାନ କରି ନିଜେ ଦୀପ୍ତିମାନ ହେଲା । ହିରଣ୍ୟକଶିପୁ ତପଶ୍ଚରଣ କରନ୍ତେ ଦେବତାମାନେ ଶ୍ରୀଶୂନ୍ୟ ହୋଇ ନିଜ ନିଜର ପଦରେ ଅଧିଷ୍ଠିତ ହୋଇଥିଲେ । ୩ ।

---

ହିରଣ୍ୟକଶିପୁର ତପ,-ବଳେ ଜଗତ ପାଏ ତାପ । ଦେଖି ବିଧାତା ଦେଲେ ବର, ଏହି ଚରିତ ତୃତୀୟର ॥

ଶ୍ରୀନାରଦ ଉବାଚ—

ଶୁଣ ପାଣ୍ଡବ ଚୂଡ଼ାମଣି
ହିରଣ୍ୟକଶିପୁ କାହାଣୀ
ଅନୁଜ ମରଣର ତାପେ
ମନ ନିଶ୍ଚଳ କଲା ତପେ
ଅଜୟ ଅମର ଶରୀର
ପାଇଁ ସାଧିବ ବେଦବର
ଗୃହ ଉପେକ୍ଷି ତପ ଛଳେ
ମିଳିଲା ମନ୍ଦର ପର୍ବତେ
ବସି ପର୍ବତ ଗୁହା ମଧ୍ୟେ
ତପସ୍ୟା କଲା ଯୋଗ ସାଧେ
ହୋଇବି ତ୍ରିଭୁବନେ ରାଜା
ସର୍ବେ କରିବେ ମୋତେ ପୂଜା
ଏମନ୍ତ କଲ୍ପି ତାର ମନେ
ରିପୁ ନ ଥିବେ ତ୍ରିଭୁବନେ
ଊର୍ଦ୍ଧ୍ୱେ ସେ ବେନିକର ତୋଳି
ରହିଲା ଗଗନେ ନିରେଖି
ପାଦ ଅଙ୍ଗୁଷ୍ଠେ ମହୀ ରଖି
ଦେହ ରହିଲା ଶୂନ୍ୟେ ବ୍ୟାପି । ୧,୨ ।
ପିଙ୍ଗଳ ଜଟା ଶିରେ ସାଜେ
ପ୍ରଳୟ ରବି ପ୍ରାୟେ ତେଜେ
ତାହାର ଘୋର ତପ ରହି
ସ୍ୱର୍ଗେ ମିଳିଲେ ଦେବେ ଯାଇଁ
ଶତେ ବରଷ ଦେବମତେ
ତପେ ରହିଲା ଦୃଢ ଚିତ୍ତେ
କ୍ଷୁଧା ପିପାସା କରି ଦୂର
କେବଳ ପବନ ଆହାର । ୩ ।

ତସ୍ୟ ମୂର୍ଦ୍ଧ୍ନଃ ସମୁଦ୍‌ଭୂତଃ ସଧୂମୋଽଗ୍ନିସ୍ତପୋମୟଃ ।
ତୀର୍ଯ୍ୟଗୂର୍ଦ୍ଧ୍ୱମଧୋ ଲୋକାନ୍ ପ୍ରାତପଦ୍‌ବିଷ୍ୱଗୀରିତଃ । ୪ ।
ଚୁକ୍ଷୁଭୁର୍ନଦ୍ୟୁଦନ୍ୱନ୍ତଃ ସଦ୍ୱୀପାଦ୍ରିଶ୍ଚଚାଳ ଭୂଃ ।
ନିପେତୁଃ ସଗ୍ରହାସ୍ତାରା ଜଜ୍ୱଳୁଶ୍ଚ ଦିଶୋ ଦଶ । ୫ ।
ତେନ ତପ୍ତା ଦିବଂ ତ୍ୟକ୍ତା ବ୍ରହ୍ମଲୋକଂ ଯୟୁଃ ସୁରାଃ ।
ଧାତ୍ରେ ବିଜ୍ଞାପୟାମାସୁର୍ଦେବଦେବ ଜଗତ୍‌ପତେ । ୬ ।
ଦୈତ୍ୟେନ୍ଦ୍ରତପସା ତପ୍ତା ଦିବସ୍ଥାତୁଂ ନ ଶକ୍ନୁମଃ ।
ତସ୍ୟ ଚୋପଶମ ଭୂମନ୍ ବିଧେହି ଯଦି ମନ୍ୟସେ ।
ଲୋକା ନ ଯାବନ୍ନଙ୍କ୍ଷ୍ୟନ୍ତି ବଳିହାରାସ୍ତବାଭିଭୂଃ । ୭ ।

---

ସେହି ହିରଣ୍ୟ କଶିପୁର ଶିରରୁ ସମୁତ୍ପନ୍ନ ଧୂମଯୁକ୍ତ ତପୋମୟ ଅଗ୍ନି ଚାରିଆଡ଼େ ବିସ୍ତାରିତ ହୋଇ ବକ୍ରଭାବରେ ଉର୍ଦ୍ଧ୍ୱ ଓ ଅଧଲୋକରେ ଅସାଧାରଣ ତାପ ଉତ୍ପାଦନ କରିଥିଲା । ୪ ।

ନଦୀ ଓ ସମୁଦ୍ରମାନେ କ୍ଷୁଭିତ ହେଲେ, ଦ୍ୱୀପ ପର୍ବତମାନେ ଓ ପୃଥିବୀ କମ୍ପିତ ହେଲା । ଗ୍ରହ ନକ୍ଷତ୍ରମାନେ ସ୍ଥାନ ଭ୍ରଷ୍ଟ ହେଲେ ଦଶଦିଗରେ ଦାହ ଉପସ୍ଥିତ ହେଲା । ୫ ।

ଦେବତାମାନେ ଏହି ବ୍ୟାପାରରେ ଅତ୍ୟନ୍ତ ତାପଗ୍ରସ୍ତ ହୋଇ ସ୍ୱର୍ଗପୁରୀ ପରିତ୍ୟାଗ କରି ବ୍ରହ୍ମଲୋକକୁ ଗମନ କଲେ ଏବଂ ବ୍ରହ୍ମଙ୍କୁ ଯାଇଁ ଜଣାଇଲେ । ହେ ଦେବ ଦେବ ଜଗତ୍‌ପତି ! ଦୈତ୍ୟେନ୍ଦ୍ର ହିରଣ୍ୟକଶିପୁର ତପଃ ପ୍ରଭାବରେ ସନ୍ତପ୍ତ ହୋଇ ଆମ୍ଭେମାନେ ଆଉ ସ୍ୱର୍ଗଲୋକରେ ରହିବାକୁ ଅକ୍ଷମ । ହେ ଭୂମନ୍ ! ହେ ସର୍ବାଧିପତେ ! ଯଦି ତୁମ୍ଭେ କର୍ତ୍ତବ୍ୟ ମନେ କର ତେବେ ତୁମ୍ଭ ପ୍ରଜାବର୍ଗ ବିନଷ୍ଟ ହେବା ପୂର୍ବରୁ ତାହା ଉପଶମ କରିଅ । ୬,୭ ।

---

ତାର ମୂର୍ଦ୍ଧନ ମଧ୍ୟଗତ
ସଧୂମ ଅନଳ ସମ୍ଭୂତ
ତାପିଲା ଅଧ ଉର୍ଦ୍ଧ୍ୱ ବ୍ୟାପି
ଦେଖି ଭୁବନ ଲୋକେ କମ୍ପି
ନଦୀ ସାଗର ଦିଗ ଭୂମି
କମ୍ପିଲେ ମହାଭୟ ଘେନି
ଗଗନୁ ଗ୍ରହ ତାରା ଖସେ
ଭୟେ ଖସିଲେ ଦଶଦିଶେ
ଦେବେ କମ୍ପିଲେ ତାହା ଦେଖି
ସ୍ୱଭୟେ ଭୁବନ ଉପେକ୍ଷି

ଭୟେ ପଳାଇ ଏକେ ଏକେ
ସର୍ବେ ମିଳିଲେ ବ୍ରହ୍ମଲୋକେ
ଅନେକ ମତେ ସ୍ତୁତି କଲେ
ବ୍ରହ୍ମା ଚରଣେ ଜଣାଇଲେ । ୪-୬ ।

ଶ୍ରୀଦେବାଊଚୁଃ—

ହେ ଧାତା ଜଗତ ଈଶ୍ୱର
ଆମ୍ଭେ ଯେ ଶରଣ ତୋହର
ଦୈତ୍ୟେନ୍ଦ୍ର ତପ ତେଜ ସହିଁ
ଭୁବନେ ନ ପାରୁଁ ରହି

ଭୟେ ଅଇଲୁଁ ତୋର ପୁର
ଦେବଙ୍କୁ ରଖ ବେଦବର
ତୋର ସର୍ଜିତ ସର୍ବଲୋକ
ଏହାଙ୍କୁ ମହାପ୍ରଭୁ ରଖ
ଯେମନ୍ତ ଲୋକ ନାଶ ନୋହେ
ତେମନ୍ତ କର ତୁ ଉପାୟେ । ୭ ।

**ତସ୍ୟାୟଂ କିଲ ସଙ୍କଳ୍ପଶ୍ଚରତୋ ଦୁଶ୍ଚରଂ ତପଃ ।**
**ଶ୍ରୂୟତାଂ କିଂ ନ ବିଦିତସ୍ତବାଥାପି ନିବେଦିତମ୍ ।୮।**
**ସୃଷ୍ଟ୍ୱା ଚରାଚରମିଦଂ ତପୋଯୋଗସମାଧିନା ।**
**ଅଧ୍ୟାସ୍ତେ ସର୍ବଧିଷ୍ଣ୍ୟେଭ୍ୟଃ ପରମେଷ୍ଠୀ ନିଜାସନମ୍ ।୯।**
**ତଦହଂ ବର୍ଦ୍ଧମାନେନ ତପୋଯୋଗସମାଧିନା ।**
**କାଲାତ୍ମନୋଶ୍ଚ ନିତ୍ୟତ୍ୱାତ୍ ସାଧୟିଷ୍ୟେ ତଥାତ୍ମନଃ ।୧୦।**
**ଅନ୍ୟଥେଦଂ ବିଧାସ୍ୟେଽହମୟଥାପୂର୍ବମୋଜସା ।**
**କିମନ୍ୟୈଃ କାଲନିର୍ଦ୍ଧୂତୈଃ କଳ୍ପାନ୍ତେ ବୈଷ୍ଣବାଦିଭିଃ ।୧୧।**
**ଇତି ଶୁଶ୍ରୁମ ନିର୍ବନ୍ଧଂ ତପଃ ପରମମାସ୍ଥିତଃ ।**
**ବିଧତ୍ସ୍ୱାନନ୍ତରଂ ଯୁକ୍ତଂ ସ୍ୱୟଂ ତ୍ରିଭୁବନେଶ୍ୱର ।୧୨।**

---

ସେହି ହିରଣ୍ୟକଶିପୁର ଦୁସ୍ତର ତପସ୍ୟାର ଉଦ୍ଦେଶ୍ୟ ଆମ୍ଭେମାନେ ପରେ ବର୍ଣ୍ଣନ କରିବୁ । ତୁମ୍ଭେ କଣ ତାହା ବିଦିତ ନାହଁ ? ତଥାପି ଆମ୍ଭେମାନେ କହୁଅଛୁ ଶ୍ରବଣ କର ।୮।

ବିଧାତା ସମାଧି ଯୋଗ ଦ୍ୱାରା ସମସ୍ତ ଜଗତ ସୃଷ୍ଟି କରି, ସମସ୍ତ ସ୍ଥାନ ଅପେକ୍ଷା ଶ୍ରେଷ୍ଠ ସତ୍ୟଲୋକରେ ଅଧିଷ୍ଠିତ ହୋଇଅଛନ୍ତି ।୯।

ସୁତରାଂ ମୁଁ କାଳ ଓ ଆତ୍ମାର ନିତ୍ୟତ୍ୱ ହେତୁ କ୍ରମେ ବୃଦ୍ଧି ପ୍ରାପ୍ତ ତପୋଯୋଗ ସମାଧି ଦ୍ୱାରା ନିଜର ସେହିପରି ପଦ ଜନ୍ମାଇବି ।୧୦।

ଯଦି ସତ୍ୟଲୋକ ଲଭି ନ କରିପାରେ ତେବେ ନିଜ ଶକ୍ତିବଳରେ ଏହି ଜଗତକୁ ଅନ୍ୟ ପ୍ରକାର କରି ପକାଇବି । ଅଥାତ୍ ଏହି ଜଗତରେ ଯେଉଁମାନେ ବ୍ରହ୍ମଚର୍ଯ୍ୟାଦି କଷ୍ଟଭୋଗୀ ସେମାନେ ମଧ୍ୟ ପରଲୋକରେ କଷ୍ଟଭୋଗ କରିବେ, ପୁଣି ଯେଉଁମାନେ ଇହଲୋକରେ ନାନାପ୍ରକାର ଅସତ୍ କାର୍ଯ୍ୟ ଦ୍ୱାରା ସୁଖଭୋଗ କରନ୍ତି ପରଲୋକରେ ପୁଣି ସୁଖଭୋଗ କରିବେ । ଏହିପରି ଭାବରେ ମୁଁ ପାପ ପୁଣ୍ୟର ବିପର୍ଯ୍ୟୟ ଘଟାଇବି ଯେଉଁ ବୈଷ୍ଣବମାନେ ଧ୍ରୁବଲୋକରେ ଅଛନ୍ତି ସେମାନେ କଳ୍ପାନ୍ତ କାଳରେ ବିଧ୍ୱଂସିତ ହେଲେ ମଧ୍ୟ ମୋର ସେହି ବିନଶ୍ୱର ପଦରେ ପ୍ରୟୋଜନ ନାହିଁ । ମୋର ସତ୍ୟଲୋକହିଁ କାମ୍ୟ ।୧୧।

ତାହାଙ୍କର ପଦଲାଭ ନିମିତ୍ତ ଏହିପରି ଆତ୍ୟନ୍ତିକ ଆଗ୍ରହ ବିଷୟ ଶୁଣାଯାଏ । ତେଣୁ ଯେ କୌଣସି ବ୍ୟକ୍ତି କଠୋର ତପଶ୍ଚରଣ କରିଥାନ୍ତି । ତୁମ୍ଭେ ତ୍ରିଲୋକର ଅଧିପତି । ତଦନନ୍ତର ଯାହା କର୍ତ୍ତବ୍ୟ ତାହା ତୁମ୍ଭେ ବିବେଚନା କରି ଅନୁଷ୍ଠାନ କର ।୧୨।

---

ଦୁସ୍ତର ତପ ତୋର ଧ୍ୟାନେ
କି ବା ସଂକଳ୍ପ ତାର ମନେ
ଏ କଥା ତୋତେ ନୋହେ ଦୂର
ଆମ୍ଭେ ଯେ କିଙ୍କର ତୋହର
ତଥାପି ତୋର ପାଦଗତେ
କହୁଛୁଁ ମହାଭୟ-ଚିତ୍ତେ

ତୁମ୍ଭେ ଯେ ଘୋର ତପ କରି
ପୂର୍ବେ ତୋଷିଲ ନରହରି
ତେଣୁ ଏ ବ୍ରହ୍ମଲୋକେ ସ୍ଥିତ
ପ୍ରଜା ଭିଆଣେ ପ୍ରଜାପତି
ଏ ବଳବନ୍ତ ଯୋଗବଳେ
ଯୋଗ ସମାଧି ସୁନିଶ୍ଚଳେ

ଅନେକ ଜନ୍ମେ ସାଧି ତପ
ସାଧ କରିବ ସର୍ବ-ଲୋକ
ଏତେ ବିଚାରେ ସତ୍ୟଲୋକେ
ବସିବ ତପେ ଆତ୍ମସୁଖେ
ବ୍ରହ୍ମାଣ୍ଡ ସର୍ଜ୍ଜିବାର ଅର୍ଥେ
ଘେନିବ ବହୁତ କ୍ଷେମ ଯୁକ୍ତେ

ତଦାସନଂ ଦ୍ୱିଜଗବାଂ ପାରମେଷ୍ଠ୍ୟଂ ଜଗତ୍ପତେ ।
ଭବାୟ ଶ୍ରେୟସେ ଭୂତ୍ୟୈ କ୍ଷେମାୟ ବିଜୟାୟ ଚ । ୧୩ ।
ଇତି ବିଜ୍ଞାପିତୋ ଦେବୈର୍ଭଗବାନାତ୍ମଭୂର୍ନୃପ ।
ପରିତୋ ଭୃଗୁଦକ୍ଷାଦ୍ୟୈର୍ୟଯୌ ଦୈତ୍ୟେଶ୍ୱରାଶ୍ରମମ୍ । ୧୪ ।
ନ ଦଦର୍ଶ ପ୍ରତିଚ୍ଛନ୍ନଂ ବଲ୍ମୀକତୃଣକୀଚକୈଃ ।
ପିପୀଲିକାଭିରାଚୀର୍ଣ୍ଣମେଦସ୍ତ୍ୱଙ୍ମାସଶୋଣିତମ୍ । ୧୫ ।
ତପନ୍ତଂ ତପସା ଲୋକାନ୍ ଯଥାଭ୍ରାପିହିତଂ ରବିମ୍ ।
ବିଲକ୍ଷ୍ୟ ବିସ୍ମିତଃ ପ୍ରାହ ହସଂସ୍ତଂ ହଂସବାହନଃ । ୧୬ ।

---

ହେ ଜଗତ୍ପତେ ! ଆପଣଙ୍କର ଏହି ପରମେଷ୍ଠି ପଦ ଗୋ, ବ୍ରାହ୍ମଣ ସୃଷ୍ଟି ନିମିତ୍ତ । କିନ୍ତୁ ସେ ତାହା ଅଧିକାର କଲେ ବିରୁଦ୍ଧ ସୃଷ୍ଟି କରିବ । ୧୩ ।

ହେ ରାଜନ୍ ! ଦେବତାମାନେ ଭଗବାନ୍ ଆତ୍ମଭୂ ବ୍ରହ୍ମାଙ୍କୁ ଏହି ସମସ୍ତ କଥା ଜଣାନ୍ତେ ସେ ଭୃଗୁ ଓ ଦକ୍ଷ ପ୍ରଭୃତି ପରିବେଷ୍ଟିତ ହୋଇ ଦୈତ୍ୟପତି ହିରଣ୍ୟକଶିପୁର ତପୋବନକୁ ଗମନ କରିଥିଲେ । ୧୪ ।

ବ୍ରହ୍ମା ସେହି ସ୍ଥାନକୁ ଗମନ କରି ତାହାକୁ ଦେଖି ପାରିଲେ ନାହିଁ, କାରଣ ତାହାର ଦେହ ବଲ୍ମୀକ ସ୍ତୂପ ଦ୍ୱାରା ଆବୃତ ହୋଇଥିଲା ଏବଂ ତହିଁ ଉପରେ ତୃଣ ଓ କୀଚକ ନାମକ ବଂଶ ଆବୃତ ହୋଇଥିଲା । ପିପୀଲିକାମାନେ ତାହାର ଶରୀରର ମେଦ, ତ୍ୱକ୍, ମାଂସ, ଶୋଣିତ ସମସ୍ତ ଖାଇ ଯାଇଥିଲେ । ମେଘାଚ୍ଛାଦିତ ସୂର୍ଯ୍ୟ ତୁଲ୍ୟ ସେ ପ୍ରଚ୍ଛନ୍ନ ଭାବରେ ତପସ୍ୟା କରିବା ଦ୍ୱାରା ସର୍ବ ଲୋକର ତାପ ଉତ୍ପାଦନ କରୁଥିଲା । ତାହାକୁ ଏହି ଅବସ୍ଥାରେ ଦେଖି ବ୍ରହ୍ମା ସହାସ୍ୟ ବଦନରେ କହିଥିଲେ । ୧୫,୧୬ ।

---

ଏମନ୍ତ ତାହାର ବିଚାର
କହିଲୁ ଯାହା ଇଚ୍ଛା କର ।୮-୧୩
ଦେବଙ୍କ ବାକ୍ୟ ଧାତା ଶୁଣି
ବିଚାରି ମନେ ମନେ ଗୁଣି
ସଙ୍ଗତେ ଭୃଗୁ ଦକ୍ଷ ଘେନି
ଅପରେ ଯେତେ ବ୍ରହ୍ମମୁନି
ଜନ କୁଶଳ ମନେ ଭାଳି
ଦାନବ ତପସ୍ଥାନେ ମିଳି

ଦେଖିଲେ ଅସୁର ଶରୀର
ସ୍ୱଭାବେ ମହା ଭୟଙ୍କର
ବଲ୍ମୀକ କୀଟ ଆଚ୍ଛାଦିତ
ତୃଣ ପିପିଲିକା ଭକ୍ଷିତ
ମେଦ ଶୋଣିତ ମାଂସ ଚର୍ମ୍ମ
ଅସ୍ଥି ପଞ୍ଜରେ କୀଟ ଗ୍ରାମ
ତାହାର ତପ ଅତିରେକ
ତାପିତ ହୋଇ ତିନିଲୋକ

ଦେହ ନ ଦିଶେ ତୃଣାଚ୍ଛନ୍ନେ
ମେଘେ ଆଚ୍ଛନ୍ନ ରବି ଯେହ୍ନେ
ଏମନ୍ତ ଅସୁରର ଗତି
ଦେଖି ବିସ୍ମିତ ପ୍ରଜାପତି
ଆରୋହି ନିଜ ହଂସ ଯାନେ
କହନ୍ତି ଗମ୍ଭୀର ବଚନେ ।୧୪-୧୬।

ଶ୍ରୀବ୍ରହ୍ମୋବାଚ ।

ଉତ୍ତିଷ୍ଠୋତ୍ତିଷ୍ଠ ଭଦ୍ରଂ ତେ ତପଃସିଦ୍ଧୋଽସି କାଶ୍ୟପ ।
ବରଦୋଽହମନୁପ୍ରାପ୍ତୋ ବ୍ରିୟତାମୀପ୍ସିତୋ ବରଃ । ୧୭ ।
ଅଦ୍ରାକ୍ଷମହମେତଂ ତେ ହୃତ୍ସାରଂ ମହଦଦ୍ଭୁତମ୍ ।
ଦଂଶଭକ୍ଷିତଦେହସ୍ୟ ପ୍ରାଣା ହ୍ୟସ୍ଥିଷୁ ଶେରତେ । ୧୮ ।
ନୈତତ୍ ପୂର୍ବର୍ଷୟଶ୍ଚକ୍ରୁର୍ନ କରିଷ୍ୟନ୍ତି ଚାପରେ ।
ନିରମ୍ବୁର୍ଧାରୟେତ୍ ପ୍ରାଣାନ୍ କୋ ବୈ ଦିବ୍ୟସମାଃ ଶତମ୍ । ୧୯ ।
ବ୍ୟବସାୟେନ ତେଽନେନ ଦୁଷ୍କରେଣ ମନସ୍ୱିନାମ୍ ।
ତପୋନିଷ୍ଠେନ ଭବତା ଜିତୋଽହଂ ଦିତିନନ୍ଦନ । ୨୦ ।

---

ଶ୍ରୀବ୍ରହ୍ମା କହିଲେ—

ହେ କଶ୍ୟପ ପୁତ୍ର ହିରଣ୍ୟକଶିପୁ ! ଉଠ, ଉଠ । ତୁମ୍ଭର ମଙ୍ଗଳ ହେଉ । ମୁଁ ବରଦାତା, ତୁମ୍ଭର ସମକ୍ଷରେ ଉପସ୍ଥିତ, ତୁମ୍ଭେ ଈପ୍‌ସିତ ବର ପ୍ରାର୍ଥନା କର । ୧୭ ।

ହେ କଶ୍ୟପ ନନ୍ଦନ ! ମୁଁ ତୁମ୍ଭର ଅତ୍ୟନ୍ତ ଅଦ୍ଭୁତ ଧୈର୍ଯ୍ୟ ଦର୍ଶନ କରି ବିସ୍ମିତ ହୋଇଅଛି ତୁମ୍ଭର ଦେହ କୀଟ ମାନଙ୍କ ଦ୍ୱାରା ଭକ୍ଷିତ ହୋଇଅଛି । ତଥାପି ତୁମ୍ଭର ପ୍ରାଣ ଅସ୍ଥିଗତ ହୋଇ ରହିଅଛି ।୧୮

ପୂର୍ବେ ଋଷିମାନଙ୍କ ମଧ୍ୟରେ ସୁଦ୍ଧା କେହି ଏପରି ତପସ୍ୟା କରି ନ ଥିଲେ । ଭବିଷ୍ୟତରେ ମଧ୍ୟ କେହି ଏପରି ତପସ୍ୟା କରି ପାରିବେ ନାହିଁ । ବିନ୍ଦୁଏ ମାତ୍ର ଜଳଗ୍ରହଣ ନ କରି କୌଣସି ବ୍ୟକ୍ତି ଶତବର୍ଷ ପର୍ଯ୍ୟନ୍ତ ଏପରି ଦେବ ତୁଲ୍ୟ ଜୀବନ ଧାରଣ କରି ନ ପାରେ । ୧୯ ।

ହେ ଦିତି ନନ୍ଦନ ! ମନସ୍ୱୀ ମାନଙ୍କର ପକ୍ଷରେ ଯାହା ଅତ୍ୟନ୍ତ କଷ୍ଟସାଧ୍ୟ ତୁମ୍ଭର ଏପରି ତପୋନିଷ୍ଠା ଦ୍ୱାରା ତୁମ୍ଭେ ମୋତେ ଜୟ କରିଅଛ । ତୁମ୍ଭର ତପସ୍ୟାରେ ବଶୀଭୂତ ହୋଇ ମୋତେ ବାଧ୍ୟ ହୋଇ ତୁମ୍ଭ ନିକଟକୁ ଆସିବାକୁ ହେଲା । ୨୦ ।

---

ଶ୍ରୀବ୍ରହ୍ମୋବାଚ—

ଉଠ ହେ କଶ୍ୟପ କୁମର
ତପସ୍ୟାକ୍ଷୀଣ ଆତ୍ମା ତୋର
ତପେ ତୋହର କଷ୍ଟ ଦେଖି
ଅଇଲୁଁ ଭୁବନ ଉପେକ୍ଷି
ତୋହର ବରଦାତା ମୁହିଁ
ମନ ବାଞ୍ଛିତ ମାଗ ତୁହି । ୧୭ ।

ତପେ ତୋହର ସମ ଯତ
କେ ଅବା ଭୁବନେ ଅଛନ୍ତି
ଅଦ୍ଭୁତ ଦେଖିଲି ମୁଁ ତୋତେ
ତୋ ସମ ନାହାନ୍ତି ଜଗତେ
ମାଂସ ଭକ୍ଷିତ କୀଟ ଯୂଥେ
ପ୍ରାଣ ତୋ ଅଛି ଅସ୍ଥିଗତେ ।୧୮।
ପୂର୍ବେ ଯେ ଥିଲେ ମୁନିଜନେ
ତପ ଆଚରି ଘୋରବନେ

ତୋହର ପ୍ରାୟେ କେ ଅଛନ୍ତି
ନିରମ୍ବୁ ଭକ୍ଷଣେ ରହନ୍ତି
ଶତେ ବରଷ ଦେବମତେ
ତପ ସାଧିଲୁ ଏ ଜଗତେ
ଭୂତ ଭବିଷ୍ୟ ବର୍ତ୍ତମାନେ
ଦେଖିଲି ନାହିଁ ତ୍ରିଭୁବନେ
ଦୁଃସହ ତପ ଏ ତୋହର
ମନ ବଚନେ ଅଗୋଚର

ତତସ୍ତେ ଆଶିଷଃ ସର୍ବା ଦଦାମ୍ୟସୁରପୁଙ୍ଗବ ।
ମର୍ତ୍ତ୍ୟସ୍ୟ ତେ ହ୍ୟମର୍ତ୍ତ୍ୟସ୍ୟ ଦର୍ଶନଂ ନ ଫଳଂ ମମ । ୨୧ ।

ଶ୍ରୀ ନାରଦ ଉବାଚ ।

ଇତ୍ୟୁକ୍ତ୍ୱାଦିଭବୋ ଦେବୋ ଭକ୍ଷିତାଙ୍ଗଂ ପିପୀଲିକୈଃ ।
କମଣ୍ଡଳୁଜଳେନୌକ୍ଷଦ୍ଦିବ୍ୟେନାମୋଘରାଧସା । ୨୨ ।
ସ ତତ୍କୀଚକବଲ୍ମୀକାତ୍ ସହଓଜୋବଳାନ୍ୱିତଃ-
ସର୍ବାବୟବସମ୍ପନ୍ନୋ ବଜ୍ରସଂହନନୋ ଯୁବା ।
ଉତ୍ଥିତସ୍ତପ୍ତହେମାଭୋ ବିଭାବସୁରିବୈଧସଃ । ୨୩ ।
ସ ନିରୀକ୍ଷ୍ୟାମ୍ବରେ ଦେବଂ ହଂସବାହମୁପସ୍ଥିତମ୍ ।
ନନାମ ଶିରସା ଭୂମୌ ତଦ୍ଦର୍ଶନମହୋତ୍ସବଃ । ୨୪

ହେ ଅସୁର ଶ୍ରେଷ୍ଠ ! ସେହି ହେତୁ ମୁଁ ତୁମ୍ଭଙ୍କୁ ସର୍ବପ୍ରକାର ଆଶୀର୍ବାଦ ଦାନ କରୁଅଛି । ତୁମ୍ଭେ ମର୍ତ୍ତ୍ୟ, ମୁଁ ଅମର । ତଥାପି ତୁମ୍ଭେ ମୋର ଦର୍ଶନ ଲାଭ କରିଅଛ ତାହା ନିଷ୍ଫଳ ହେବ ନାହିଁ । ୨୧ ।

ଶ୍ରୀ ନାରଦ କହିଲେ—

ସର୍ବ ପ୍ରଥମେ ଉତ୍ପନ୍ନ ବ୍ରହ୍ମା ଏହି କଥା କହି ପିପୀଲିକା ଓ ଦଂଶାଦି କର୍ତ୍ତୃକ ଭକ୍ଷିତାଙ୍ଗ ହିରଣ୍ୟ କଶିପୁଙ୍କୁ ନିଜର ଦିବ୍ୟ କମଣ୍ଡଳୁ ଜଳଦ୍ୱାରା ସିକ୍ତ କରିଥିଲେ । ଏହି ଜଳର ଅସାଧାରଣ ପ୍ରଭାବ ହେତୁ ସମ୍ୟକ ସିଦ୍ଧିଲାଭ ହୋଇଥାଏ । ୨୨ ।

ହିରଣ୍ୟ କଶିପୁ କମଣ୍ଡଳୁ ଜଳର ସେଚନ ଫଳରେ ସହ, ଓଜ, ଓ ବଳଯୁକ୍ତ (ମନ ଶକ୍ତି, ଇନ୍ଦ୍ରିୟ ଶକ୍ତି ଓ ଦେହ ଶକ୍ତି ସମ୍ପନ୍ନ) ହୋଇଥିଲେ । ତାହାଙ୍କର ସମସ୍ତ ଅବୟବ ବଜ୍ର ତୁଲ୍ୟ ଦୃଢତା ଲାଭ କରିଥିଲା । ତାହାଙ୍କର କାନ୍ତି ତପ୍ତ ସୁବର୍ଣ୍ଣ ତୁଲ୍ୟ ଦୃଷ୍ଟ ହୋଇଥିଲା । ତାହାଙ୍କର ଯୌବନ ପ୍ରଭା ଉତ୍ପନ୍ନ ହୋଇଥିଲା । ଏ ଅବସ୍ଥାରେ ସେ କାଷ୍ଠରୁ ଅଗ୍ନି ବାହାରିଲା ପରି କୀଚକ ବଂଶକ ସ୍ତମ୍ଭ ଓ ବଲ୍ମୀକ ସ୍ତୂପ ମଧ୍ୟରୁ ବହିର୍ଗତ ହୋଇଥିଲେ । ୨୩ ।

ହିରଣ୍ୟ କଶିପୁ ଅନ୍ତରୀକ୍ଷ ଆକାଶ ମାର୍ଗରେ ହଂସ ବାହନରେ ବ୍ରହ୍ମାଙ୍କୁ ଉପସ୍ଥିତ ହେବାର ଦେଖି ହୃଦୟରେ ଅତ୍ୟନ୍ତ ଆନନ୍ଦଲାଭ କରିଥିଲେ ଏବଂ ତାହାଙ୍କୁ ଭୂମିଷ୍ଠ ପ୍ରଣାମ କରିଥିଲେ । ୨୪ ।

ତୋ ତପ କଷ୍ଟା ଦୃଢ ଚିତ୍ତେ
ସ୍ୱଭାବେ ଜିଣିଲୁ ତୁ ମୋତେ
ସିଦ୍ଧ ତୋହର ତପ ଆଶା
ମାଗ ତୁ ମନେ ଯେବା ଇଚ୍ଛା
ଦେବଲୋକଙ୍କ ଦରଶନେ
ନିଷ୍ଫଳ ନୁହେଁ ମର୍ତ୍ତ୍ୟଜନେ ।୧୯-୨୧

ଶ୍ରୀନାରଦଉବାଚ—

ଏମନ୍ତ କହି ତାକୁ ବାଣୀ
ଦୟାସାଗର ଶୂଳପାଣି
ତତକ୍ଷଣେ କମଣ୍ଡଳୁ କରେ
ଜଳ ସିଞ୍ଚିଲେ ତା ଉପରେ ;

କୀଟ ବଲ୍ମୀକ ତାର ଦେଖି
ଧାତାର କରୁ ଜଳ ପାଇ
ସର୍ବ ସମ୍ପୂର୍ଣ୍ଣ କଳେବର
ବଜ୍ରହୁଁ କଠିନ ଶରୀର
ଯୁବା ବୟସ ସୁଗଠନ
ଯୁବତୀ ଲୋଚନ ମୋହନ

ଉତ୍‌ଥାୟ ପ୍ରାଞ୍ଜଳିଃ ପ୍ରହ୍ୱ ଈକ୍ଷମାଣୋ ଦୃଶା ବିଭୁମ୍ ।
ହର୍ଷାଶ୍ରୁପୁଲକୋଦ୍‌ଭେଦୋ ଗିରା ଗଦ୍‌ଗଦୟା ଗୃଣାତ୍ । ୨୫ ।
ଶ୍ରୀ ହିରଣ୍ୟକଶିପୁରୁବାଚ ।
କଲ୍ପାନ୍ତେ କାଳସୃଷ୍ଟେନ ଯୋଽନ୍ଧେନ ତମସା ବୃତମ୍ । ।
ଅଭିବ୍ୟନଗ୍‌ଜଗଦିଦଂ ସ୍ୱୟଂ ଜ୍ୟୋତିଃ ସ୍ୱରୋଚିଷା । ୨୬ ।
ଆତ୍ମନା ତ୍ରିବୃତା ଚେଦଂ ସୃଜତ୍ୟବତି ଲୁମ୍ପତି ।
ରଜଃସତ୍ତ୍ୱତମୋଧାମ୍ନେ ପରାୟ ମହତେ ନମଃ । ୨୭ ।
ନମ ଆଦ୍ୟାୟ ବୀଜାୟ ଜ୍ଞାନବିଜ୍ଞାନମୂର୍ତ୍ତୟେ ।
ପ୍ରାଣେନ୍ଦ୍ରିୟମନୋବୁଦ୍ଧିବିକାରୈର୍ବ୍ୟକ୍ତିମୀୟୁଷେ । ୨୮ ।

---

ତଦନନ୍ତର ଦୈତ୍ୟରାଜ ହିରଣ୍ୟକଶିପୁ କୃତାଞ୍ଜଳି ପୁଟରେ ସ୍ୱଚକ୍ଷୁରେ ଭଗବାନ ବ୍ରହ୍ମାଙ୍କୁ ଦର୍ଶନ କରି ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ । ତାହାଙ୍କର ନେତ୍ରରେ ଆନନ୍ଦାଶ୍ରୁ ଓ ଶରୀରରେ ପୁଲକ ଉତ୍ପନ୍ନ ହୋଇଥିଲା । ସେ ଗଦ୍‌ଗଦ ବାକ୍ୟରେ ବ୍ରହ୍ମାଙ୍କୁ କହିଲେ । ୨୫ ।

ଶ୍ରୀହିରଣ୍ୟ କଶିପୁ କହିଲେ :—

ଯେ ସ୍ୱପ୍ରକାଶ, ଭଗବାନ୍ କଲ୍ପାନ୍ତରେ କାଳ ସୃଷ୍ଟ ଅନ୍ଧ ତମସାଚ୍ଛନ୍ନ ଦୃଶ୍ୟମାନ୍ ଜଗତକୁ ନିଜ ତେଜରେ ଅଭିବ୍ୟକ୍ତ କରିଅଛନ୍ତି ଏବଂ ତ୍ରିଗୁଣ ନିଜ ସ୍ୱରୂପ ଦ୍ୱାରା ଏହି ଜଗତରେ ସୃଷ୍ଟି, ସ୍ଥିତି, ପ୍ରଳୟ କରୁଅଛନ୍ତି; ସେହି ରଜଃ, ସତ୍ତ୍ୱ ଓ ତମୋଗୁଣ ଆଶ୍ରୟୀଭୂତ ମହାନ୍ ପରମେଶ୍ୱରଙ୍କୁ ମୁଁ ନମସ୍କାର କରୁଅଛି । ୨୬, ୨୭ ।

ଯେ ସର୍ବ ଜଗତର ଅନାଦିକାରଣ, ଜ୍ଞାନ ବିଜ୍ଞାନ ଯାହାଙ୍କର ମୂର୍ତ୍ତି ଯେ ପ୍ରାଣ, ଇନ୍ଦ୍ରିୟ ମନ ଓ ବୁଦ୍ଧି ରୂପ ବିକାର୍ ମାନଙ୍କ ଦ୍ୱାରା କାର୍ଯ୍ୟ କାରଣ ରୂପେ ଅଭିବ୍ୟକ୍ତ ତାହାଙ୍କୁ ମୋର ନମସ୍କାର । ୨୮ ।

---

ଦଗ୍‌ଧ କାର୍ଯ୍ୟନ ପ୍ରାୟେ ଦେହ
ତେଜେ ଅନଳ ରୂପ ବହି
ଲୋଚନ ଘଷି ଗୃହେଁ ବେଗେ
ଧାତାକୁ ଦେଖେ ଶୂନ୍ୟମାର୍ଗେ
ହଂସ-ବାହନ ରୂପ ଗୃହିଁ
ନମିଲା ଦଣ୍ଡପ୍ରାୟେ ହୋଇ
ବ୍ରହ୍ମାର୍ ଦର୍ଶନ ଉତ୍ସବେ
ନିଷ୍ଠୁର୍ ଉପର୍ ସ୍ୱଭାବେ
କର୍ ଅଞ୍ଜଳି ଶିରେ ଦେଇ
ରୋମ ପୁଲକ ତନୁ ହୋଇ

ଆନନ୍ଦେ ଅଶ୍ରୁ ଗଦଗଦେ
ସ୍ତୁତି କରଇ ଧରି ପାଦେ । ୨୨-୨୫

ହିରଣ୍ୟକଶିପୁରୁବାଚ—

ନମସ୍ତେ ପ୍ରଭୁ ବେଦପତି
ତ୍ରିଜଗ ତୋହର ଜ୍ଞାରତି
କଳ୍ପ ଅନ୍ତରେ କାଳବଳେ
ଘୋର୍ ଅନ୍ଧାର୍ ଏ ଶରୀରେ
ନିଜ ଶରୀରୁ ନିଜ ତେଜେ
ଲୋକ ପ୍ରକାଶୁ ଆତ୍ମାରୁ ଯେ । ୨୬ ।

ଆତ୍ମ ତ୍ରିଗୁଣ ମାୟା ଘୋରେ
ସର୍ଜଇ ପାଳଇ ସଂହରେ
ତେଣୁ ତ୍ରିଗୁଣ ଧାମ ଯୁତେ
ସେ ଦେବରାୟେ ନମୋସ୍ତୁତେ । ୨୭
ପ୍ରାଣ ଇନ୍ଦ୍ରିୟ ମନ ବୁଦ୍ଧି
ବିକାରେ ବ୍ୟକ୍ତ ଯେ ପ୍ରସିଦ୍ଧି
ଜ୍ଞାନ ବିଜ୍ଞାନ ଆଦି ବୀଜ
ନମସ୍ତେ ପ୍ରଭୁ ଦେବରାଜ । ୨୮ ।

ତ୍ୱମୀଶିଷେ ଜଗତସ୍ତସ୍ଥୁଷଶ୍ଚ ପ୍ରାଣେନ ମୁଖ୍ୟେନ ପତିଃ ପ୍ରଜାନାମ୍ ।
ଚିତ୍ତସ୍ୟ ଚିତ୍ତୈର୍ମନ ଇନ୍ଦ୍ରିୟାଣାଂ ପତିର୍ମହାନ୍ ଭୂତଗୁଣାଶୟେଶଃ । ୨୯ ।
ତ୍ୱଂ ସପ୍ତତନ୍ତୂନ୍ ବିତନୋଷି ତନ୍ୱା ତ୍ରୟ୍ୟା ଚତୁର୍ହୋତ୍ରକ ବିଦ୍ୟାୟା ଚ ।
ତ୍ୱମେକ ଆତ୍ମାତ୍ମବତାମନାଦିରନନ୍ତପାରଃ କବିରନ୍ତରାତ୍ମା । ୩୦ ।
ତ୍ୱମେବ କାଲୋଽନିମିଷୋ ଜନାନାମାୟୁର୍ଲବାଦ୍ୟାବୟବୈଃ କ୍ଷିଣୋଷି ।
କୂଟସ୍ଥ ଆତ୍ମା ପରମେଷ୍ଠ୍ୟଜୋ ମହାଂସ୍ତ୍ୱଂ ଜୀବଲୋକସ୍ୟ ଚ ଜୀବ ଆତ୍ମା ।୩୧।
ତ୍ୱତ୍ତଃ ପରଂ ନାପରମପ୍ୟନେଜଦେଜଚ୍ଚ କିଞ୍ଚିଦ୍ବ୍ୟତିରିକ୍ତମସ୍ତି ।
ବିଦ୍ୟାଃ କଳାସ୍ତେ ତନବଶ୍ଚ ସର୍ବା ହିରଣ୍ୟଗର୍ଭୋଽସି ବୃହତ୍ତ୍ରିପୃଷ୍ଠଃ । ୩୨ ।

---

ହେ ଭଗବନ୍ ! ତୁମ୍ଭେ ସକଳ ପ୍ରଜା ସୃଷ୍ଟିର ନିୟନ୍ତା । ତୁମ୍ଭେ ସ୍ଥାବର ଓ ଜଙ୍ଗମ ନିୟନ୍ତ୍ରଣ କରିଥାଅ । ତୁମ୍ଭେ ଚିତ୍ତ ଓ ତାହାର ପରିଣାମ ଚେତନା, ମନ ଓ ଅପରାପର ଇନ୍ଦ୍ରିୟମାନଙ୍କର ନିୟନ୍ତା । ଏଣୁ ସମସ୍ତ ପ୍ରାଣୀଙ୍କର ଆଶ୍ରୟ ଓ ଗତି ସ୍ୱରୂପ । ୨୯ ।

ତୁମ୍ଭେ ଚତୁର୍ହୋତ୍ରକ କର୍ମ ବିଷୟିନୀ ବିଦ୍ୟା ଓ ତ୍ରୟୀରୂପ ତନୁଦ୍ୱାରା ଅଗ୍ନିଷ୍ଟୋମାଦି ଯଜ୍ଞମାନ ବିସ୍ତାର କରିଅଛ । ତୁମ୍ଭେ ଦେହୀମାନଙ୍କର ଏକମାତ୍ର ଆତ୍ମା ତୁମ୍ଭର ଆଦି ନାହିଁ । ଦେଶକାଳସୀମା ନାହିଁ । ତୁମ୍ଭେ ସର୍ବଜ୍ଞ ଏବଂ ସର୍ବାନ୍ତର୍ଯାମୀ । ( ତ୍ରୟୀ ଅର୍ଥାତ୍ ବେଦତ୍ରୟ ତୁମ୍ଭର ତନୁ, ହୋତା, ଉଦ୍ଗାତା, ଅଧ୍ୱର୍ଯ୍ୟୁ ଓ ବ୍ରହ୍ମା ଏହି ଚାରିଜଣ ଯାଜ୍ଞିକ ଏହି ଚତୁର୍ହୋତ୍ରକ ଯଜ୍ଞ କର୍ମ ସମ୍ପାଦନ କରିଥାନ୍ତି । ତୁମ୍ଭେ ସେହି ବିଦ୍ୟା ଦ୍ୱାରା ଯଜ୍ଞ ସମୂହ ବିସ୍ତାର କରିଥାଅ ) । ୩୦ ।

ତୁମ୍ଭେ କାଳରୂପେ ଅବିରତ, ଲବାଦି ଅଂଶଦ୍ୱାରା ଲୋକମାନଙ୍କର ଆୟୁକ୍ଷୟ କରୁଅଛ । ତୁମ୍ଭେ ନିର୍ବିକାର ଆତ୍ମା, ପରମେଷ୍ଠି, ଅଜ ଓ ମହାନ୍ । ତୁମ୍ଭେ ସମଗ୍ର ଜୀବ ଜଗତର ଜୀବାତ୍ମା । ୩୧ ।

ଏହି ଜଗତରେ ସ୍ଥାବର ଜଙ୍ଗମର କାରଣ ବା କାର୍ଯ୍ୟ ତୁମ୍ଭର ଅତିରିକ୍ତ ନୁହେଁ । ସମସ୍ତ ବିଦ୍ୟା ଓ କଳା ସମୂହ ତୁମ୍ଭର ଦେହ । ତୁମ୍ଭେ ତ୍ରିଗୁଣାତୀତ ବ୍ରହ୍ମ ପଦାର୍ଥ ଓ ହିରଣ୍ୟଗର୍ଭ । ୩୨ ।

---

ଜଗତ କଲ୍ୟାଣ ସ୍ୱରୂପୀ
ଜୀବକୁ ପ୍ରାଣବଳେ ବ୍ୟାପି
ପ୍ରଜାପତିଙ୍କ ପତି ହୋଇ
ଇନ୍ଦ୍ରିୟେ ଇନ୍ଦ୍ର ଅର୍ଥ ହୋଇ
ତୁ ମହାଭୂତ ଗୁଣାଶୟ
ସକଳ ଶ୍ରୁତି ସ୍ମୃତିମୟ । ୨୯ ।
ତୁ ଦେବ ସପ୍ତତନ୍ତୁ ହୋଇ
ଚତୁର୍ ହୋତ୍ର ମୂଳ ତତ୍ତ୍ୱ

ଆତ୍ମାର ଆତ୍ମା ତୁ ଅନାଦି
ଅନନ୍ତ ଅପ୍ରମେୟ ଆଦି । ୩୦ ।
ତୁ ନାଥ ଅନିମିଷ କାଳ
ହରୁ ପ୍ରାଣୀଙ୍କ ଆୟୁବଳ
ନିମିଷ ଆଦି ରୂପ ତୋର
ତେଣୁ ପ୍ରାଣୀଙ୍କ ଆୟୁ ହର
ତୋର ସର୍ଜିତ ଏ ଜଗତ
ତୁ କୂଟ ଆତ୍ମାରୂପେ ସ୍ଥିତ

ତୁ ପରମେଷ୍ଠୀ ପିତାମହ
ଜୀବ ଲୋକର ଜୀବ ଦେହ ।୩୧।
ତୋ ବିନୁ ଅନ୍ୟ କେ ଜଗତେ
ପର ଅପର ଛନ୍ତି ଯେତେ
ସଂସାରେ ବିଦ୍ୟା କଳା ଯେତେ
ତୋର ଶରୀରୁ ଏ ସମସ୍ତେ
ବ୍ରହ୍ମାଣ୍ଡ ତୋର ଗର୍ଭଗତ
ତୁ ପ୍ରଭୁ ତିନିପୁର ନାଥ ।୩୨।

ବ୍ୟକ୍ତଂ ବିଭୋ ସ୍ଥୂଲମିଦଂ ଶରୀରଂ ଯେନେନ୍ଦ୍ରିୟପ୍ରାଣମନୋଗୁଣାଂସ୍ତ୍ୱମ୍ ।
ଭୁଂକ୍ଷେ ସ୍ଥିତୋ ଧାମନି ପାରମେଷ୍ଠ୍ୟ ଅବ୍ୟକ୍ତ ଆତ୍ମା ପୁରୁଷଃ ପୁରାଣଃ । ୩୩ ।
ଅନନ୍ତାବ୍ୟକ୍ତରୂପେଣ ଯେନେଦମଖିଳଂ ତତମ୍ ।
ଚିଦଚିଚ୍ଛକ୍ତିଯୁକ୍ତାୟ ତସ୍ମୈ ଭଗବତେ ନମଃ । ୩୪ ।
ଯଦି ଦାସ୍ୟସ୍ୟଭିମତାନ୍ ବରାନ୍ମେ ବରଦୋତ୍ତମ ।
ଭୂତେଭ୍ୟସ୍ତ୍ୱଦ୍‌ବିସୃଷ୍ଟେଭ୍ୟୋ ମୃତ୍ୟୁର୍ମାଭୂନ୍ମମ ପ୍ରଭୋ । ୩୫ ।
ନାନ୍ତର୍ବହିର୍ଦିବା ନକ୍ତମନ୍ୟସ୍ମାଦପି ଚାୟୁଧୈଃ ।
ନ ଭୂମୌ ନାମ୍ବରେ ମୃତ୍ୟୁର୍ନ ନରୈର୍ନ ମୃଗୈରପି । ୩୬ ।

---

ହେ ଭଗବନ୍ ! ଏହି ଦୃଶ୍ୟମାନ ବୈରାଜ ରୂପ ତୁମ୍ଭର ସ୍ଥୂଳ ଦେହ । ଯେଉଁ ଶରୀର ଧାରଣ କରି ତୁମ୍ଭେ ପରମେଷ୍ଠି ପଦରେ ବିଦ୍ୟମାନ ରହି ଇନ୍ଦ୍ରିୟ ଓ ପ୍ରାଣ ମନର ବିଷୟ ସମୂହ ଭୋଗ କରିଥାଅ ସ୍ୱରୂପ ତଦ୍‌ଧାନ ବ୍ୟତୀତ ତୁମ୍ଭେ ବିଷୟଭୋଗ କରିଥାଅ ତେଣୁ ଅବ୍ୟକ୍ତ, ସମସ୍ତଙ୍କର ଆତ୍ମାରୂପେ ଅନ୍ତର୍ଯାମୀ ଏବଂ ପୁରାଣ ପୁରୁଷ । ୩୩ ।

ହେ ଅନନ୍ତ ! ତୁମ୍ଭେ ମନ ଓ ବାକ୍ୟର ଅଗୋଚର ରୂପେ ଏହି ସମସ୍ତ ଜଗତକୁ ପରିବ୍ୟାପ୍ତ କରି ରହିଅଛ । ଚିତ୍ ଶକ୍ତି ବିଦ୍ୟା ଓ ଅଚିତ୍ ଶକ୍ତି ମାୟାଯୁକ୍ତ ଭଗବାନ୍ ତୁମ୍ଭଙ୍କୁ ମୁଁ ନମସ୍କାର କରେ । ୩୪ ।

ହେ ଶ୍ରେଷ୍ଠ ବରଦାତା ! ହେ ପ୍ରଭୋ ! ଯଦି ତୁମ୍ଭେ ମୋର ଇପ୍‌ସିତ, ବରଦାନ କରିବ ତେବେ ମୋର ପ୍ରାର୍ଥନା ଯେ ତୁମ୍ଭେ ଯେଉଁ ଭୂତମାନ ସୃଷ୍ଟି କରିଅଛ; ସେମାନଙ୍କ ଦ୍ୱାରା ମୁଁ ଯେପରି ବିନଷ୍ଟ ନ ହୁଏ । ୩୫ ।

ଗୃହାଭ୍ୟନ୍ତରରେ, ଗୃହର ବାହ୍ୟ ଦେଶରେ, ଦିବା ଭାଗରେ, ରାତ୍ରିରେ, ଭୂତଳରେ ବା ଆକାଶରେ କୌଣସିଠାରେ ଯେପରି ମୋର ମୃତ୍ୟୁ ନ ହୁଏ । ନର ବା ପଶୁ କେହି ଯେପରି ମୋତେ ବଧକରି ନପାରନ୍ତି ।୩୬

---

ଜଗତରୂପ ତୋର ଦେହ
ମନ ଇନ୍ଦ୍ରିୟ ଗୁଣଗ୍ରାହୀ
ଏହାଙ୍କ ଭୋଗ କରୁ ଗୁଣ
ପରମ ପଦେ ତୋର ସ୍ଥାନ
ଅବ୍ୟକ୍ତ ଆତ୍ମା ତୁ ନିର୍ଗୁଣ
ତୁ ନାଥ ପୁରୁଷ ପୁରାଣ । ୩୩ ।
ଅନନ୍ତ ଅବ୍ୟକ୍ତ ଶରୀର
ତୁ ନାଥ ବ୍ରହ୍ମାଣ୍ଡ ଭିତର

ଚିତ ଅଚିତ ଶକ୍ତିଯୁକ୍ତ
ନମସ୍ତେ ପ୍ରଭୁ ଭଗବନ୍ତ । ୩୪ ।
ଯେବେ ତୁ ବର ଦେବୁ ମୋତେ
ଶୁଣ କହିବି ତୋ ଅଗ୍ରତେ
ତୋର ସର୍ଜ୍ଜନ ଜନ୍ତୁ ଯେତେ
ରୂପେ ଅରୂପେ ଛନ୍ତି ଯେତେ
ଏହାଙ୍କ ହସ୍ତେ ନ ମରିବି
ଅଜରାମର ହୋଇଥିବି । ୩୫ ।

ବ୍ରହ୍ମାଣ୍ଡ ଅନ୍ତର ବାହାରେ
ରଜନୀ କିବା ଦିବସରେ
ନାନା ଆୟୁଧ ଅଛି ଯେତେ
କେବେହେଁ ନ କାଟିବ ମୋତେ
ପଶୁ ଅଥବା ନର ହସ୍ତେ
ଭୂମି ଅଥବା ଶୂନ୍ୟପଥେ
ଜୀବେ ଅଜୀବେ ନ ମରିବି
ନିତ୍ୟେ ନିର୍ଭୟେ ମୁଁ ରହିବି

ବ୍ୟସୁଭିର୍ବାସୁମଦ୍ଭିର୍ବା ସୁରାସୁରମହୋରଗୈଃ ।
ଅପ୍ରତିଦ୍ୱନ୍ଦ୍ୱତାଂ ଯୁଦ୍ଧେ ଐକପତ୍ୟଞ୍ଚ ଦେହିନାମ୍ । ୩୭ ।
ସର୍ବେଷାଂ ଲୋକପାଳନାଂ ମହିମାନଂ ଯଥାତ୍ମନଃ ।
ତପୋଯୋଗପ୍ରଭାବାଣାଂ ଯନ୍ନ ରିଷ୍ୟତି କର୍ହିଚିତ୍ । ୩୮ ।

ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ
ଯୁଧିଷ୍ଠିର ନାରଦସମ୍ବାଦେ ତୃତୀୟୋଽଧ୍ୟାୟଃ ।

---

ହେ ଭଗବନ୍ ! ଅଚେତନ ବା ସଚେତନ ବସ୍ତୁଦ୍ୱାରା ମୋର ଯେପରି ମରଣ ନ ଘଟେ । ସୁର, ଅସୁର, ମହୋରଗ, କାହାରି ଦ୍ୱାରା ମୋର ଯେପରି ମୃତ୍ୟୁ ନ ଘଟେ । ଯୁଦ୍ଧରେ ଯେପରି କେହି ମୋର ପ୍ରତିପକ୍ଷ ହୋଇ ନ ପାରନ୍ତି । ସମସ୍ତ ଦେହଧାରୀଙ୍କ ଉପରେ ମୁଁ ଯେପରି ଅଧିପତି ହୁଏ । ୩୭ ।

ହେ ଭଗବନ୍ ! ତୁମ୍ଭେ ଯେପରି ଦିକ୍‌ପାଳମାନଙ୍କର ଐଶ୍ୱର୍ଯ୍ୟ ଧାରଣ କରିଅଛ ମୋତେ ସେହିପରି ଲୋକପାଳମାନଙ୍କର ଐଶ୍ୱର୍ଯ୍ୟ ପ୍ରଦାନ କର । ତପଃ ପ୍ରଭାବରେ ପ୍ରଭାବାନ୍ୱିତ ହୋଇ ମୋର ଏହି ଦିଗ୍‌ପାଳ ଐଶ୍ୱର୍ଯ୍ୟ ଯେପରି କଦାପି ବିନଷ୍ଟ ନ ହୁଏ । ୩୮ ।

---

ସୁର ଅସୁର ସର୍ପାଘାତେ
ବିଯୋଗ ନ କରିବେ ମୋତେ
ସଂଗ୍ରାମେ ମୋର ତୁଲେ ବଳେ
କେହି ନୋହିବେ ଏ ଶରୀରେ ୩୬, ୩୭
ହୋଇବି ତ୍ରିଭୁବନେ ରାଜା
ସର୍ବେ କରିବେ ମୋତେ ପୂଜା

ଦିଗପାଳଙ୍କ ମଧ୍ୟଗତେ
ତୋହର ମହିମା ଯେମନ୍ତେ
ମୋ ତପ ମହିମା ପ୍ରଭାବ
କେବେହେଁ ବିନାଶ ନୋହିବ । ୩୮
ଏମନ୍ତେ ବ୍ରହ୍ମାର ସମ୍ମୁଖେ
ବର ମାଗିଲା ଆତ୍ମସୁଖେ

କର ଅଞ୍ଜଳି ଶିରେ ଦେଇ
ବ୍ରହ୍ମାର ସମ୍ମୁଖକୁ ଚାହିଁ
ବୋଲଇ ବିପ୍ର ଜଗନ୍ନାଥ
ସପ୍ତମସ୍କନ୍ଧେ ଭାଗବତ
ନାରଦ ଯୁଧିଷ୍ଠିର ବାଣୀ
ଶୁଣି ସଂସାରୁ ତର ପ୍ରାଣୀ ।

---

**ବିଶଦାର୍ଥ—**

ଏହି ଅଧ୍ୟାୟରେ ହିରଣ୍ୟକଶିପୁର କଠୋର ତପସ୍ୟା ଓ ବ୍ରହ୍ମାଙ୍କଠାରୁ ବରଲାଭ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ହିରଣ୍ୟକଶିପୁ ବୁଝିଥିଲା ତାହାର ସାଧାରଣ ମାନବୀୟ ଶକ୍ତି ବିଷ୍ଣୁଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରିବା ଲାଗି ଯଥେଷ୍ଟ ନୁହେଁ । ତେଣୁ ଅସାଧାରଣ ଶକ୍ତି ଲାଭର ପ୍ରୟୋଜନ, ସେ କଠୋର ତପସ୍ୟାରେ ମଗ୍ନ ହୁଅନ୍ତେ ଦେବତାମାନଙ୍କର ସୁଦ୍ଧା ଆସନ ଟଳମଳ ହୋଇଥିଲା । ସେମାନେ ତାହାର ତପ ପ୍ରଭାବରେ ପ୍ରତପ୍ତ ହୋଇ ବ୍ରହ୍ମାଙ୍କ ନିକଟରେ ଆଶ୍ରୟ ଗ୍ରହଣ କଲେ । ବ୍ରହ୍ମା ସ୍ୱୟଂ ହଂସ ବାହନରେ ହିରଣ୍ୟକଶିପୁ ନିକଟରେ ଉପସ୍ଥିତ ହୋଇ ତାହାର ଅବସ୍ଥା ପରିଦର୍ଶନ କରିଥିଲେ । ସେ ଯେଉଁଠାରେ ତପସ୍ୟା କରୁଥିଲା, ସେ ସ୍ଥାନରେ ଉଇ ହୁଙ୍କା ଉଠି ଯାଇଥିଲା, ତାହାର ମାଂସ ଶୋଣିତ ପ୍ରଭୃତିକୁ ପିମ୍ପୁଡ଼ିକା ଓ ଅନ୍ୟାନ୍ୟ କୀଟମାନେ ଭକ୍ଷଣ କରି କେବଳ ତାହାର ଅସ୍ଥିଗତ ପ୍ରାଣ ମାତ୍ର ଥିଲା । ସେହି ଉଇହୁଙ୍କାର ଚାରିଆଡ଼େ କୀଚକ ନାମକ ବାଉଁଶ ଗଛମାନ ଉଠି ଯାଇଥିଲା । ବ୍ରହ୍ମା ସେହି ସ୍ଥଳରେ ଉପସ୍ଥିତ ହୋଇ ପ୍ରଥମତଃ

ହିରଣ୍ୟକଶିପୁକୁ ଦେଖି ପାରୁ ନ ଥିଲେ । ପରେ ତାହାଙ୍କୁ ଦେଖି ଜର୍ଜର କମଣ୍ଡଳୁରୁ ଜଳ ନେଇ ତାହା ଉପରେ ସେଚନ କରିଥିଲେ । ତଦ୍ଦ୍ୱାରା ତାହାର ବଳିଷ୍ଠ ସୁକାନ୍ତିଯୁକ୍ତଶରୀର ପ୍ରକାଶିତ ହୋଇଥିଲା । ସେ ବ୍ରହ୍ମାଙ୍କର କମଣ୍ଡଳୁ ଜଳ ପ୍ରଭାବରେ ଦିବ୍ୟ ବପୁ ତପ୍ତ ହେମକାନ୍ତି ଲାଭ କରିଥିଲା । ତଦନନ୍ତର ବ୍ରହ୍ମା ତାହାକୁ ବର ଯାଚନ୍ତେ ସେ ଯେଉଁ ବର ପ୍ରାର୍ଥନା କରିଥିଲା ତାହା ମଧ୍ୟରେ ଟିକିଏ କୌଶଳ ବୁଦ୍ଧି ଥିଲା । ସେ ଜାଣୁଥିଲା ବ୍ରହ୍ମା ତାହାକୁ ଅମର ବର ଦେବେ ନାହିଁ । ତେଣୁ ଏପରି ଭାବରେ ବର ପ୍ରାର୍ଥନା କରିଥିଲା ଯେ ଯଦ୍ଦ୍ୱାରା ତାହା ଅମର ବର ତୁଲ୍ୟ ହେବ । ଅର୍ଥାତ୍ ସେ ବ୍ରହ୍ମାଙ୍କ ସୃଷ୍ଟ କୌଣସି ଜୀବ ଦ୍ୱାରା ବା ଜଳ, ସ୍ଥଳ, ଆକାଶ କୌଣସିଠାରେ ଦିବା ବା ରାତ୍ରିରେ ନିହତ ହୋଇ ପାରିବ ନାହିଁ । କିନ୍ତୁ ଦିବା ଓ ରାତ୍ରି ଭିନ୍ନ ସନ୍ଧ୍ୟା ସମୟରେ ବା ଜଳ ସ୍ଥଳ ଆକାଶ ଭିନ୍ନ ଅନ୍ୟତ୍ର ଏବଂ ସୃଷ୍ଟ ଜୀବ ଭିନ୍ନ ଅନ୍ୟ କୌଣସି ଅଦ୍ଭୁତ ପ୍ରାଣୀରୂପୀ ଭଗବାନଙ୍କ ଦ୍ୱାରା ଯେ ସେ ନିହତ ହୋଇ ପାରେ ଏ କଥା ସେତେବେଳେ ତାହାର ପରିକଳ୍ପନାରେ ଆସି ନ ଥିଲା । ହିରଣ୍ୟକଶିପୁ କ୍ଷୁଦ୍ର ମାନବୀୟ ଶକ୍ତିର ଓ ମାନବ ବୁଦ୍ଧିର ଗୋଟିଏ ଚିତ୍ର । ମାନବ ଅହମିକା ଗ୍ରସ୍ତ ହୋଇ ଯେତେବେଳେ ଧରାକୁ ସରା ମଣିବାର ଆକାଙ୍କ୍ଷା କରେ ସେତେ-ବେଳେ ସେ ଭଗବତ୍ ଶକ୍ତିର ଉପଲବ୍ଧି କରି ପାରେ ନାହିଁ । ହିରଣ୍ୟକଶିପୁ ତହିଁର ଜ୍ୱଳନ୍ତ ଉଦାହରଣ ।

---

## ଚ ତୁ ର୍ଥ ଅ ଧ୍ୟା ୟ ।

**ଚତୁର୍ଥେ ତୁ ବରାନ୍ ଲବ୍ଧ୍ୱା ବିଜିତ୍ୟାଖିଳଲୋକପାନ୍ ।**
**ବିଷ୍ଣୁଦ୍ୱେଷେଣ ତାନ୍ ସର୍ବାନ୍ ଦୈତ୍ୟେନ୍ଦ୍ରଃ ସମପୀଡୟତ୍ । ୦ ।** ( ଶ୍ରୀଧରସ୍ୱାମୀ )

**ଶ୍ରୀ ନାରଦ ଉବାଚ ।**

**ଏବଂ ବୃତଃ ଶତଧୃତିର୍ହିରଣ୍ୟକଶିପୋରଥ ।**
**ପ୍ରାଦାତ୍ତତ୍ତପସା ପ୍ରୀତୋ ବରାଂସ୍ତସ୍ୟ ସୁଦୁର୍ଲଭାନ୍ । ୧ ।**

---

### ହିରଣ୍ୟକଶିପୁର ଦେବତା ଓ ଲୋକପୀଡ଼ନ ।

ଚତୁର୍ଥ ଅଧ୍ୟାୟରେ ବରଲାଭ କରି ସମସ୍ତ ଲୋକପାଳଙ୍କୁ ଜୟ କରି ବିଷ୍ଣୁଦ୍ୱେଷରେ ସେମାନଙ୍କୁ ବହୁତ କଷ୍ଟ ଦେଇଅଛି । ° ।

ଶ୍ରୀନାରଦ କହିଲେ—

ହିରଣ୍ୟ କଶିପୁ ଏହିପରି ବର ପ୍ରାର୍ଥନା କରନ୍ତେ ବ୍ରହ୍ମା ତାହାର ତପସ୍ୟାରେ ପ୍ରୀତ ହୋଇ ଏହି ପ୍ରକାର ସୁଦୁର୍ଲ୍ଲଭ ବର ପ୍ରଦାନ କରିଥିଲେ । ୧ ।

---

ଅସୁର ବ୍ରହ୍ମା ବରପାଇ, ବିଷ୍ଣୁଙ୍କ ସଙ୍ଗେ ବୈରୀ ହୋଇ । ଜିଣି ପୀଡ଼ିଲା ଦିଗପାଳ, ରଚିତ ଚତୁର୍ଥ ଅଧ୍ୟାୟ

ଶ୍ରୀବ୍ରହ୍ମୋବାଚ—

ଶୁଣ ହେ ଅସୁର ପୁଙ୍ଗବ | ଯେତେ ମାଗିଲୁ ବର ମୋତେ
ତୋହର କର୍ମ ଯେ ଦୁର୍ଲ୍ଲଭ | ପ୍ରାଣୀଙ୍କି ଦୁର୍ଲ୍ଲଭ ଜଗତେ

ଶ୍ରୀ ବ୍ରହ୍ମୋବାଚ ।

ତାତେମେ ଦୁର୍ଲଭାଃ ପୁଂସାଂ ଯାନ୍ ବୃଣୀଷେ ବରାନ୍ ମମ ।
ତଥାପି ବତରାମ୍ୟଙ୍ଗ ! ବରାନ୍ ଯଦ୍ୟପି ଦୁର୍ଲଭାନ୍ । ୨ ।
ତତୋ ଜଗାମ ଭଗବାନମୋଘାନୁଗ୍ରହୋ ବିଭୁଃ ।
ପୂଜିତୋଽସୁରବର୍ଯ୍ୟେଣ ସ୍ତୂୟମାନଃ ପ୍ରଜେଶ୍ୱରୈଃ । ୩ ।
ଏବଂ ଲବ୍‌ଧବରୋ ଦୈତ୍ୟୋ ବିଭ୍ରଦ୍ଧେମମୟଂ ବପୁଃ ।
ଭଗବତ୍ୟକରୋଦ୍ଦ୍ୱେଷଂ ଭ୍ରାତୁର୍ବଧମନୁସ୍ମରନ୍ । ୪ ।
ସ ବିଜିତ୍ୟ ଦିଶଃ ସର୍ବା ଲୋକାଂଶ୍ଚ ତ୍ରୀନ୍ ମହାସୁରଃ ।
ଦେବାସୁରମନୁଷ୍ୟେନ୍ଦ୍ରଗନ୍ଧର୍ବଗରୁଡ଼ୋରଗାନ୍ । ୫ ।
ସିଦ୍ଧଚାରଣ ବିଦ୍ୟାଧ୍ରାନ୍ ଋଷୀନ୍ ପିତୃପତୀନ୍ ମନୂନ୍ ।
ଯକ୍ଷରକ୍ଷଃପିଶାଚେଶାନ୍ ପ୍ରେତଭୂତପତୀନପି । ୬ ।

---

ଶ୍ରୀବ୍ରହ୍ମା କହିଲେ—

ତୁମ୍ଭେ ଯେଉଁ ବର ପ୍ରାର୍ଥନା କରିଅଛ ତାହା ମୁଁ କାହାରିକୁ ଦେଇ ନାହିଁ । କିନ୍ତୁ ହେ ବତ୍ସ ଏ ବର ସୁଦୁର୍ଲଭ ହେଲେହେଁ ତାହା ମୁଁ ତୁମ୍ଭଙ୍କୁ ପ୍ରଦାନ କଲି । ୨ ।

ବ୍ରହ୍ମା ତଦନନ୍ତର ହିରଣ୍ୟକଶିପୁ ପ୍ରତି ଅବ୍ୟର୍ଥ ଅନୁଗ୍ରହ ପ୍ରଦର୍ଶନ କରି ଅସୁର ରାଜ କର୍ତ୍ତୃକ ପୂଜିତ ହୋଇ ବ୍ରହ୍ମଲୋକକୁ ଗମନ କରିଥିଲେ ଏବଂ ପ୍ରଜାପତିମାନେ ତାହାଙ୍କୁ ସ୍ତବ କରିଥିଲେ । ୩ ।

ଏହିପରି ବରଲାଭ କରି ହିରଣ୍ୟକଶିପୁ ସୁବର୍ଣ୍ଣାଭ ଦେହ ଧାରଣ କରି ଭ୍ରାତା ହିରଣାକ୍ଷର ବଧକାରୀ ବିଷ୍ଣୁଙ୍କ ପ୍ରତି ବିଦ୍ୱେଷ ପୋଷଣ କରିବାକୁ ଲାଗିଲା । ୪ ।

ପ୍ରବଳ ପ୍ରତାପୀ ଅସୁର ହିରଣ୍ୟକଶିପୁ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ, ଦଶଦିଗ, ଦିଗପାଳ, ଦେବ, ଅସୁର, ମନୁଷ୍ୟ, ଗନ୍ଧର୍ବ, ଗରୁଡ଼, ସର୍ପ, ସିଦ୍ଧ, ଚାରଣ, ବିଦ୍ୟାଧର, ଋଷି, ପିତୃଗଣ, ପ୍ରଜାପତିଗଣ, ଯକ୍ଷ, ରାକ୍ଷସ, ପିଶାଚ, ପ୍ରେତ, ଭୂତ, ଅଧିପତି ଏବଂ ସର୍ବପ୍ରାଣୀଙ୍କର ଅଧିପତିଙ୍କୁ ପରାଜିତ କରି ବିଶ୍ୱ ବିଜେତା

---

ତୋହର ତପେ ତୋଷ ହୋଇ
ଦେବି ଅନ୍ୟଥା ଏଥେ ନାହିଁ
ହେଉ ତୋ ମନବାଞ୍ଛା ସିଦ୍ଧି
ଏମନ୍ତ କହି ବେଦ-ନିଧି
ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ
ଗଲେ ସେ ଆପଣା ଭୁବନ ।୧-୩।

ଏମନ୍ତେ ବ୍ରହ୍ମା ବର ପାଇ
ସୁବର୍ଣ୍ଣମୟ ତନୁ ବହି
ବିଷ୍ଣୁ ବିଦ୍ୱେଷେ ତମ ଧରି
ଅନୁଜବଧ ମନେ ସ୍ମରି
ବଳେ ଜିଣିଲା ଦଶ ଦିଶ
ତିନି ଭୁବନ କଲା ବଶ

ଦେବ ଅସୁର ନରବର୍ଗ
ଗନ୍ଧର୍ବ ଗରୁଡ଼ ଉରଗ
ସିଦ୍ଧ ଚାରଣ ବିଦ୍ୟାଧର
ଋଷି ପିତର ମନୁବର
ପିଶାଚ ଯକ୍ଷ ରକ୍ଷଗଣ
ଭୂତ ବେତାଳ ପତିମାନ

ସର୍ବସତ୍ତ୍ୱପତୀନ୍ ଜିତ୍ୱା ବଶମାନୀୟ ବିଶ୍ୱଜିତ୍ ।
ଜହାର ଲୋକପାଳାନାଂ ସ୍ଥାନାନି ସହ ତେଜସା । ୭ ।
ଦେବୋଦ୍ୟାନଶ୍ରିୟା ଜୁଷ୍ଟମଧ୍ୟାସ୍ତେ ସ୍ମ ତ୍ରିପିଷ୍ଟପମ୍ ।
ମହେନ୍ଦ୍ରଭବନଂ ସାକ୍ଷାନ୍ନିର୍ମିତଂ ବିଶ୍ୱକର୍ମଣା ।
ତ୍ରୈଲୋକ୍ୟଲକ୍ଷ୍ମ୍ୟାୟତନମଧ୍ୟୁବାସାଖିଳର୍ଦ୍ଧିମତ୍ । ୮ ।
ଯତ୍ର ବିଦ୍ରୁମସୋପାନା ମହାମାରକତା ଭୁବଃ ।
ଯତ୍ର ସ୍ଫାଟିକକୁଡ୍ୟାନି ବୈଦୂର୍ଯ୍ୟସ୍ତମ୍ଭପଂକ୍ତୟଃ । ୯ ।
ଯତ୍ର ଚିତ୍ରବିତାନାନି ପଦ୍ମରାଗାସନାନି ଚ ।
ପୟଃଫେନନିଭାଃ ଶଯ୍ୟା ମୁକ୍ତାଦାମପରିଚ୍ଛଦାଃ । ୧୦ ।
କୂଜଦ୍ଭିର୍ନୂପୁରୈର୍ଦ୍ଦେବ୍ୟଃ ଶବ୍ଦୟନ୍ତ୍ୟ ଇତସ୍ତତଃ ।
ରତ୍ନସ୍ଥଳୀଷୁ ପଶ୍ୟନ୍ତି ସୁଦତୀଃ ସୁନ୍ଦରଂ ମୁଖମ୍ । ୧୧ ।

---

ଇନ୍ଦ୍ରାଦି ଲୋକପାଳ ଗଣଙ୍କର ତେଜ ହରଣ କରି ସେମାନଙ୍କର ବାସ ଭବନ ଅଧିକାର କରିଥିଲା । ୫,୭ ।

ହିରଣ୍ୟ କଶିପୁ ନନ୍ଦନ କାନନ ଶୋଭିତ ସ୍ୱର୍ଗରାଜ୍ୟ ଅଧିକାର କରି ସାକ୍ଷାତ୍ ବିଶ୍ୱକର୍ମା ନିର୍ମିତ ସର୍ବ ସମୃଦ୍ଧି ସମ୍ପନ୍ନ, ସର୍ବଶୋଭାର ଆଧାର ଇନ୍ଦ୍ରଭବନରେ ବାସ କରିଥିଲା । ୮ ।

ଯେଉଁ ଅମରାବତୀର ସୋପାନମାନ ବିଦ୍ରୁମମଣି ନିର୍ମିତ ଏବଂ ସ୍ଥଳ ପ୍ରଦେଶ ମରକତ ମଣିମୟ, ଭିତ୍ତିମାନ ସ୍ଫଟିକ ନିର୍ମିତ ଏବଂ ସ୍ତମ୍ଭମାନ ବୈଦୁର୍ଯ୍ୟମଣି ସୁଶୋଭିତ । ୯ ।

ଯେଉଁଠାରେ ବିଚିତ୍ର ଚନ୍ଦ୍ରାତପମାନ, ଆସନ ସମୂହ ପଦ୍ମରାଗ ମଣି ଖଚିତ ଏବଂ ଯେଉଁ ସ୍ଥାନରେ ମୁକ୍ତା ଦାମାଦିପରିଚ୍ଛଦ ଯୁକ୍ତ, ଦୁଗ୍ଧଫେନ ନିଭ ଶଯ୍ୟା ପରିଶୋଭିତ । ୧୦ ।

ଯେଉଁ ସ୍ଥାନରେ କୁନ୍ଦଦନ୍ତୀ ଦେବକନ୍ୟାନେ ସୁମଧୁର ନୂପୁର ଧ୍ୱନି କରି ଚାରିଆଡ଼େ ପଦଚାରଣ ପୂର୍ବକ ରତ୍ନଖଚିତ ଦର୍ପଣରେ ନିଜନିଜର ସୁନ୍ଦର ଆନନ ଶ୍ରୀ ଅବଲୋକନ କରୁଅଛନ୍ତି ସେହି ଅମରାବତୀରେ ହିରଣ୍ୟକଶିପୁ ବାସ କରିଥିଲେ । ୧୧ ।

---

ସକଳ ପ୍ରାଣି ଦର୍ପ ହରି
ବିଶ୍ୱ ସଂସାର ବଶ କରି
ଦିଗପାଳଙ୍କ ଘରୁ ଆଣି
ଅମୂଲ୍ୟ ଧନ ରତ୍ନ ମଣି । ୪-୭ ।
ସ୍ୱର୍ଗ ଭୁବନ ସୀମା ଯେତେ
ବିଚିତ୍ର ରଥ ବଳ ଯୁତେ
ସକଳ ବଳେ ଆବୋରିଲା
ଇନ୍ଦ୍ର-ଭୁବନେ ବିଜେକଲା
ବିଶ୍ୱକର୍ମାର ଶିଳ୍ପ ଯହିଁ
ଦେବଉଦ୍ୟାନ ମଧ୍ୟେ ଶୋହି

ତ୍ରୈଲୋକ୍ୟ ଲକ୍ଷ୍ମୀ ଯହିଁ ବସେ
ଅଶେଷ ସମ୍ପଦ ପ୍ରକାଶେ । ୮ ।
ମର୍କତସ୍ଥଳ ଭୂମି ସାଜେ
ପ୍ରବାଳ ସାବଳ୍ଲ ବିରାଜେ
ସ୍ଫଟିକ ପାଟେରି ଆରମ୍ଭେ
ନିର୍ମିତ ବଇଡ଼ୂର୍ଯ୍ୟ ସ୍ତମ୍ଭେ । ୯ ।
ଉପରେ ବିଚିତ୍ର ବିତାନ
ମାଣିକ୍ୟ ଘଟିତ ଆସନ
ଶଯ୍ୟା ରଚିତ ଯହିଁ ହୋଏ
ଦିଶନ୍ତି ଦୁଗ୍ଧ-ଫେନ ପ୍ରାୟେ

ଲମ୍ବଇ ମୁକୁତାର ଝରି
ସୁବର୍ଣ୍ଣପୁଷ୍ପ କେରି କେରି । ୧୦ ।
ଦିବ୍ୟ କାମିନୀଗଣ ତହିଁ
ଚଳନ୍ତି ଇତସ୍ତତ ହୋଇ
ଚରଣେ ନୂପୁର ବାଜେଣି
ରତ୍ନମେଖଳାର ସାଜେଣି
ଆପଣାମୁଖ ରତ୍ନ କାନ୍ଥେ
ହରଷେ ଦେଖନ୍ତି ଏକାନ୍ତେ । ୧୧ ।

ତସ୍ମିନ୍ ମହେନ୍ଦ୍ରଭବନେ ମହାବଲୋ ମହାମନା ନିର୍ଜିତଲୋକ ଏକରାଟ୍ ।
ରେମେଽଭିବନ୍ଦ୍ୟାଙ୍ଘ୍ରିଯୁଗଃ ସୁରାଦିଭିଃ ପ୍ରତାପିତୈରୂର୍ଜିତଚଣ୍ଡଶାସନଃ ।୧୨।
ତମଙ୍ଗ ମତ୍ତଂ ମଧୁନୋରୁଗନ୍ଧିନା ବିବୃତ୍ତତାମ୍ରାକ୍ଷମଶେଷଧିଷ୍ଣ୍ୟପାଃ ।
ଉପାସତୋପାୟନପାଣିଭିର୍ବିନା ତ୍ରିଭିସ୍ତପୋଯୋଗବଲୌଜସାଂପଦମ୍ ।୧୩।
ଜଗୁର୍ମହେନ୍ଦ୍ରାସନମୋଜସା ସ୍ଥିତଂ ବିଶ୍ୱାବସୁସ୍ତୁମ୍ବୁରୁରସ୍ମଦାଦୟଃ ।
ଗନ୍ଧର୍ବସିଦ୍ଧା ଋଷୟୋଽସ୍ତୁବନ୍ ମୁହୁର୍ବିଦ୍ୟାଧରାଶ୍ଚାପ୍ସରସଶ୍ଚ ପାଣ୍ଡବ । ୧୪ ।
ସ ଏବ ବର୍ଣ୍ଣାଶ୍ରମିଭିଃ କ୍ରତୁଭିର୍ଭୂରିଦକ୍ଷିଣୈଃ ।
ଇଜ୍ୟମାନୋ ହବିର୍ଭାଗାନଗ୍ରହୀତ୍ ସ୍ୱେନ ତେଜସା । ୧୫ ।

---

ସେହି ଅମରାବତୀରେ ମହାବଳତେଜା, ମହାମନା ହିରଣ୍ୟକଶିପୂ ପ୍ରଚଣ୍ଡ ଶାସନ ପ୍ରଭାବ ବିସ୍ତାର କରି ସର୍ବ ଲୋକଙ୍କୁ ପରାଭୂତ କରି ପ୍ରତାପଶାଳୀ ଦେବଗଣଙ୍କୁ ଅବନତ ମସ୍ତକ କରାଇ ଏକାଧିପତ୍ୟରେ ବିରାଜମାନ କରିଥିଲା । ୧୨ ।

ହେ ଅଙ୍ଗ ! (ରାଜନ୍) ବ୍ରହ୍ମା, ବିଷ୍ଣୁ, ଶିବଙ୍କ ଭିନ୍ନ ଅନ୍ୟାନ୍ୟ ଲୋକପାଳମାନେ ମଦ୍ୟପାନରେ ମତ୍ତ ତାମ୍ରଲୋଚନ ତପୋବଳ ଓ ଯୋଗ ବଳରେ ଦୃପ୍ତ ସେହି ଦୈତ୍ୟରାଜଙ୍କୁ ଉପହାର ହସ୍ତରେ ଆରାଧନା କରିଥିଲେ । ୧୩ ।

ହେ ପାଣ୍ଡବ ! ସେହି ଦୈତ୍ୟ ବଳ ପୂର୍ବକ ମହେନ୍ଦ୍ର ଆସନ ଅଧିକାର କରିଥିଲା । ସଙ୍ଗୀତ କୁଶଳ ବିଶ୍ୱାବସୁ, ତମ୍ବୁରୁ ଓ ଅନ୍ୟାନ୍ୟ ଗନ୍ଧର୍ବ, ସିଦ୍ଧ ବିଦ୍ୟାଧର, ଅପ୍ସରା, ଋଷିଗଣ ଓ ଆମ୍ଭେମାନେ (ନାରଦାଦି) ଘନ ଘନ ସ୍ତୁତିବାକ୍ୟ ପୂର୍ଣ୍ଣ ସଙ୍ଗୀତାଦି ଦ୍ୱାରା ଆରାଧନା କରିଥିଲୁ । ୧୪ ।

ବର୍ଣ୍ଣାଶ୍ରମୀମାନେ ପ୍ରଚୁର ଦକ୍ଷିଣା ଦ୍ୱାରା ଯେଉଁ ଯଜ୍ଞାନୁଷ୍ଠାନ କରନ୍ତି, ଦୈତ୍ୟରାଜ ସ୍ୱୀୟ ତେଜ ପ୍ରଭାବରେ ସେହି ଯଜ୍ଞ ଦ୍ୱାରା ପୂଜିତ ହୋଇ ହବିର୍ଭାଗ ଗ୍ରହଣ କରିଥିଲା । ସପ୍ତଦ୍ୱୀପା ପୃଥ୍ୱୀ କର୍ଷଣ ବ୍ୟତୀତ

---

ଏମନ୍ତେ ଇନ୍ଦ୍ରର ଭୁବନେ
ଅସୁର ବସେ ତୋଷମନେ
ତିନି ଭୁବନେ ଏକରାଜା
ଦେବେ କରନ୍ତି ପାଦେ ପୂଜା
ପ୍ରଚଣ୍ଡ ତେଜେ ଆଜ୍ଞା କରେ
ଯମର ପ୍ରାୟେ ବେଷଭରେ ।୧୨।
ସୁଗନ୍ଧ ମଦ୍ୟ କରେ ପାନ
ସ୍ୱଭାବେ ଘୂର୍ଣ୍ଣିତ ଲୋଚନ
ତମ୍ବାର ପ୍ରାୟେ ଚକ୍ଷୁ ଜଳେ
ଦେବେ ଖଟନ୍ତି ପାଦ-ତଳେ
ହସ୍ତେ ଘେନି ଉପାୟନ
ଦିଶନ୍ତି ତାର ତେଜେ ହୀନ

ସ୍ୱଭାବେ ତପ ଯୋଗବଳେ
ବିରାଜେ ଆଦିତ୍ୟ ମଣ୍ଡଳେ
ସର୍ବ ଦେବତା ତାର ପାଶେ
ଖଟନ୍ତି ଜୀବନର ଆଶେ
ବିଧାତା ବିଷ୍ଣୁ ମହେଶ୍ୱର
ଏହୁ ରହିଲେ ନିଜପୁର
ଏ ତିନି ଛାଡ଼ି ସର୍ବଦେବା
ଅସୁର ପାଦେ କଲେ ସେବା ।୧୩।
ଇନ୍ଦ୍ର ଆସନେ କରି ବସେ
ଇନ୍ଦ୍ରହୁଁ ଅଧିକ ବିରାଜେ
ଗନ୍ଧର୍ବେ ମେଳି ତା ଚରଣେ
ଖଟନ୍ତି ଅପସରାଗଣେ

ତୁମ୍ବୁରୁ ନାରଦ ସହିତେ
ମିଳିଲେ ବିଶ୍ୱାବସୁ ଯେତେ
ଖଟିଲେ ସିଦ୍ଧ ଋଷିଗଣେ
ସଭିଏ ଅସୁର ଚରଣେ
ସ୍ତୁତି କରନ୍ତି ଅନୁଦିନେ
ଗନ୍ଧର୍ବେ ନୃତ୍ୟ ଗୀତ ଗାନେ ।୧୪
ବ୍ରାହ୍ମଣ ଆଦି ଚାରିବର୍ଣ୍ଣେ
ଅପରେ ଚାରୁର ଆଶ୍ରମେ
ପୂଜନ୍ତି ପିତୃଦେବ ଯଜ୍ଞେ
ତାର ଚରଣେ ହବିର୍ଭାଗେ ।୧୫।
ସପତ ଦ୍ୱୀପ ମହୀତଳେ
ବିନା କର୍ଷଣେ ଶସ୍ୟ ଫଳେ

ଅକୃଷ୍ଟପଚ୍ୟା ତସ୍ୟାସୀତ୍ ସପ୍ତଦ୍ୱୀପବତୀ ମହୀ ।
ତଥା କାମଦୁଘା ଗାବୋ ନାନାଶ୍ଚର୍ଯ୍ୟପଦଂ ନଭଃ । ୧୬ ।
ରତ୍ନାକରାଶ୍ଚ ରତ୍ନୌଘାଂସ୍ତତ୍ପତ୍ନ୍ୟଶ୍ଚୋହୁରୂର୍ମିଭିଃ ।
କ୍ଷାରସୀଧୁଘୃତକ୍ଷୌଦ୍ରଦଧିକ୍ଷୀରାମୃତୋଦକାଃ । ୧୭ ।
ଶୈଳା ଦ୍ରୋଣୀଭିରାକ୍ରୀଡ଼ଂ ସର୍ବର୍ତ୍ତୁଷୁ ଗୁଣାନ୍ ଦ୍ରୁମାଃ ।
ଦଧାର ଲୋକପାଳାନାମେକ ଏବ ପୃଥଗ୍ ଗୁଣାନ୍ । ୧୮ ।
ସ ଇତ୍ଥଂ ନିର୍ଜିତକକୁବେକରାଡ୍ ବିଷୟାନ୍ ପ୍ରିୟାନ୍ ।
ଯଥୋପଯୋଷଂ ଭୁଞ୍ଜାନୋ ନାତୃପ୍ୟଦଜିତେନ୍ଦ୍ରିୟଃ । ୧୯ ।

---

ସୁପକ୍ୱ ଫଳ ଓ ଶସ୍ୟ ପ୍ରଦାନ କରୁଥାନ୍ତି ଏବଂ ଗାଈମାନେ ଅଭିଳଷିତ ଦ୍ରବ୍ୟ ପ୍ରଦାନ କରନ୍ତି । ଆକାଶ ବହୁବିଧ ଆଶ୍ଚର୍ଯ୍ୟ ଦ୍ରବ୍ୟ ପ୍ରଦାନ କରି ସେହି ଦୈତ୍ୟରାଜକୁ ସେବା କରୁଥିଲେ । ୧୫,୧୬ ।

କ୍ଷୀର, ମଧୁ, ଘୃତ, ଇକ୍ଷୁରସ, ଦଧି, କ୍ଷୀର, ଅମୃତମୟ ଜଳ ବିଶିଷ୍ଟ ରତ୍ନାକର ଏବଂ ରତ୍ନାକର ପତ୍ନୀ ନଦୀ ସମସ୍ତେ ରତ୍ନାକରସ୍ଥ ରତ୍ନ ସମୂହ ଆଣି ଦୈତ୍ୟରାଜଙ୍କ ତୃପ୍ତି ନିମିତ୍ତ ସମୁଦ୍ର ତୀରରେ ପ୍ରଦାନ କରୁଥିଲେ । ୧୭ ।

ପର୍ବତମାନେ ଓ ସେମାନଙ୍କର ଗହ୍ୱର ସମୂହ ତାହାର କ୍ରୀଡ଼ା କ୍ଷେତ୍ର ହେଲା, ବୃକ୍ଷମାନେ ସର୍ବଋତୁ ଉପଯୋଗୀ ଫଳ ପୁଷ୍ପାଦି ଦ୍ୱାରା ତାହାକୁ ଉପାସନା କରୁଥିଲେ । ଇନ୍ଦ୍ର, ଅଗ୍ନି, ବାୟୁ ପ୍ରଭୃତି ଲୋକପାଳଗଣ ଯଥା କ୍ରମେ ବର୍ଷଣ, ଦହନ ଓ ଶୋଷଣାଦି ଗୁଣଧାରଣ କରନ୍ତି ମାତ୍ର ଦୈତ୍ୟରାଜ ଏକାକୀ ସେହିଗୁଣମାନ ଧାରଣ କରୁଥିଲା । ୧୮ ।

ଏହିପରି ସମସ୍ତଦିଗ ଅଧିକାର କରି ଯଥାଭିଳଷିତ ଭୋଗବାସନା ଚରିତାର୍ଥ କରି ସୁଦ୍ଧା ସେହି ଅଜିତେନ୍ଦ୍ରିୟର ତୃପ୍ତି ହେଲା ନାହିଁ । ୧୯ ।

---

ମଧୁ ସ୍ରବନ୍ତି ବୃକ୍ଷପନ୍ତି
ଗାବେ କଳ୍ପିତ କ୍ଷୀର ଦିଅନ୍ତି ।୧୬।
ଷଡ଼ ଋତୁଏ ଅନ୍ତରାଳେ
ଶୁଭେ ଶଟନ୍ତି ଯେଝା କାଳେ
ସମୁଦ୍ରେ ରତ୍ନମାନ ଦିଅନ୍ତି
ନଦୀଏ ଊର୍ମି ଉଚ୍ଛୁଳନ୍ତି
ଲବଣ ଇକ୍ଷୁ ସୁରା ଘୃତ
ଦଧି ଦୁଗ୍ଧ ଜଳେ ପୂରିତ ।୧୭।

ପର୍ବତ ଦ୍ରୋଣୀଙ୍କର ଠାବେ
ସକଳ ଋତୁ ପୁଷ୍ପ ଲଭେ
ଦିଗପାଳଙ୍କ ଗୁଣ ଯେତେ
ରହିଲେ ଅସୁର ଆୟତ୍ତେ ।୧୮।
ଅସୁର ଦଶ ଦିଗ ଜିଣି
ସପତ ଦ୍ୱୀପେ ନୃପମଣି
ସକଳଭୋଗ ଭୋଗ କଲା
କେବେହେଁ ସନ୍ତୋଷ ନୋହିଲା

ବିଶେଷେ ତପଗର୍ବ ମୋହି
ସ୍ୱଭାବେ ଅଜିତ ଇନ୍ଦ୍ରିୟ
ଅଜିତ ଇନ୍ଦ୍ରିୟ ସନ୍ତୋଷେ
ମନ ବାରଣ ନିରଙ୍କୁଶେ
ଅତୁଷ୍ଟ ଇନ୍ଦ୍ରିୟର ବଳେ
ଘୃତେ ଅନଳ ଯେହ୍ନେ ଜଳେ ।୧୯

ଏବମୈଶ୍ୱର୍ଯ୍ୟମତ୍ତସ୍ୟ ଦୃପ୍ତସ୍ୟୋଚ୍ଛାସ୍ତ୍ରବର୍ତ୍ତିନଃ ।
କାଲୋ ମହାନ୍ ବ୍ୟତୀୟାୟ ବ୍ରହ୍ମଶାପମୁପେୟୁଷଃ । ୨୦ ।
ତସ୍ୟୋଗ୍ରଦଣ୍ଡସଂବିଗ୍ନା ସର୍ବେ ଲୋକାଃ ସପାଳକାଃ ।
ଅନ୍ୟତ୍ରାଲବ୍ଧଶରଣାଶରଣଂ ଯୟୁରଚ୍ୟୁତମ୍ । ୨୧ ।
ତସ୍ୟୈ ନମୋଽସ୍ତୁ କାଷ୍ଠାୟୈ ଯତ୍ରାତ୍ମା ହରିରୀଶ୍ୱରଃ ।
ଯଦ୍ଗତ୍ୱା ନ ନିବର୍ତ୍ତନ୍ତେ ଶାନ୍ତାଃ ସନ୍ନ୍ୟାସିନୋଽମଲାଃ । ୨୨ ।
ଇତି ତେ ସଂଯତାତ୍ମାନଃ ସମାହିତଧିୟୋଽମଲାଃ ।
ଉପତସ୍ଥୁ ହୃଷୀକେଶଂ ବିନିଦ୍ରା ବାୟୁଭୋଜନାଃ । ୨୩ ।
ତେଷାମାବିରଭୂଦ୍ବାଣୀ ଅରୂପା ମେଘନିସ୍ୱନା ।
ସନ୍ନାଦୟନ୍ତୀ କକୁଭଃ ସାଧୂନାମଭୟଙ୍କରୀ । ୨୪ ।

---

ସନକାଦିଙ୍କର ଶାପରେ ଅସୁରଯୋନି ପ୍ରାପ୍ତ ଶାସ୍ତ୍ର ମର୍ଯ୍ୟାଦା ଲଙ୍ଘନ କରି ଗର୍ବିତ ଐଶ୍ୱର୍ଯ୍ୟ ମଦମତ୍ତ ଦୈତ୍ୟରାଜ ଏପରି ବହୁ ଶତାବ୍ଦୀ ଭୋଗ କରିଥିଲ । ୨୦ ।

ତାହାର କଠୋର ଶାସନରେ ଦେବତାମାନେ ଭୀତ ହୋଇ କାହାରିଠାରୁ ପ୍ରତୀକାର ନ ପାଇ ବିଷ୍ଣୁଙ୍କର ଶରଣାପନ୍ନ ହୋଇଥିଲେ ଏବଂ ବିଷ୍ଣୁ ଯେଉଁଠାରେ ଅଛନ୍ତି ଦେବତାମାନେ ସେହିଦିଗକୁ ନମସ୍କାର କରିଥିଲେ । ଯେଉଁ ସ୍ଥାନରେ ପରମାତ୍ମା ହରି ବିରାଜିତ ଯେଉଁ ସ୍ଥାନକୁ ଗଲେ ନିର୍ମଳ ସନ୍ନ୍ୟାସୀଗଣ ଆଉ ଫେରି ଆସନ୍ତି ନାହିଁ ସେମାନେ ସେହିଦିଗକୁ ନମସ୍କାର କରିଥିଲେ । ୨୧,୨୨ ।

ସମାହିତ ଚିତ୍ତ, ନିର୍ମଳ ମନ, ସଂଯତାତ୍ମା ଦେବତାମାନେ ଏହିପରି ନମସ୍କାର କରି ଆହାର ନିଦ୍ରା ପରିତ୍ୟାଗ ପୂର୍ବକ ନାରାୟଣଙ୍କର ଶରଣାପନ୍ନ ହୋଇଥିଲେ । ୨୩ ।

ଦେବତାମାନଙ୍କର କାତର କ୍ରନ୍ଦନରେ ମେଘ ଗମ୍ଭୀର ଆକାଶ ବାଣୀ ସାଧୁମାନଙ୍କର ଆଶ୍ୱାସ ବାକ୍ୟରୂପେ ସର୍ବଦିଗରେ ନିନାଦିତ ହେଲା । ୨୪ ।

---

ଐଶ୍ୱର୍ଯ୍ୟମଦେ ମତ୍ତହୋଇ
ଈଶ୍ୱର ବାକ୍ୟ ନ ମାନଇ
ଏତେ ଅନେକ କାଳ ଗଲା
ସନକ ଶାପ ପ୍ରବର୍ତ୍ତିଲା । ୨୦ ।
ଅସୁର ଉଗ୍ର ଦଣ୍ଡ ଦେଖି
ତ୍ରିଦଶ ଭୁବନ ଉପେକ୍ଷି
ଅନ୍ୟତ୍ର ଶରଣ ନ ପାଇ
ସକଳେ ଏକତ୍ରିତ ହୋଇ
ଯାଆନ୍ତି ଚତୁର୍ଦିଗ ଚାହିଁ
ନାହିଁ ଭୟରୁ ଆସ୍ଥା ଯାଇ
ଯେ ଦିଗେ ଛନ୍ତି ଚକ୍ରଧର
ତହିଁକି କଲେ ନମସ୍କାର
ନିର୍ମଳ ଯୋଗିଜନେ ଯହିଁ
ଗଲେ ପୁନରାବୃତ୍ତି ନାହିଁ । ୨୧,୨୨
ଏମନ୍ତେ ଏକମନେ ଭଲ
କ୍ଷୀର ସମୁଦ୍ରମଧ୍ୟେ ମିଳ
ଉନ୍ନିଦ୍ର ପବନ ଭୋଜନ
ଡାକନ୍ତି ରକ୍ଷ ଭଗବାନ
ଅନେକ ମତେ କରି ସ୍ତୁତି
ଜଳଧି କୂଳେ ଭ୍ରମନ୍ତି
ମସ୍ତକେ ଦେଇ ବେଳିକର
ଡାକନ୍ତି ରକ୍ଷ ଚକ୍ରଧର
ମହାମହିମ ଭଗବାନ
ପରମ ଆତ୍ମା ନିରଞ୍ଜନ
ଶୁଦ୍ଧ ଆନନ୍ଦର ସମୂହ
ନମସ୍ତେ ପ୍ରଭୁ ଦିବ୍ୟ-ଦେହ । ୨୩।
ଏମନ୍ତେ ଦେବ ସ୍ତୁତି ଶୁଣି
ସ୍ଫୁରିଲା ଅନ୍ତରୀକ୍ଷ ବାଣୀ
ମେଘ ଗମ୍ଭୀର ପ୍ରାୟେ ସ୍ଫୁରେ
ସାଧୁଜନଙ୍କ ଦୁଃଖ ହରେ । ୨୪ ।

ମାଭୈଷ୍ଟ ବିବୁଧଶ୍ରେଷ୍ଠାଃ ସର୍ବେଷାଂ ଭଦ୍ରମସ୍ତୁ ବଃ ।
ମଦ୍ଦର୍ଶନଂ ହି ଭୂତାନାଂ ସର୍ବଶ୍ରେୟୋପପତ୍ତୟେ । ୨୫ ।
ଜ୍ଞାତମେତସ୍ୟ ଦୌରାତ୍ମ୍ୟଂ ଦୈତେୟାପସଦସ୍ୟ ଯତ୍ ।
ତସ୍ୟ ଶାନ୍ତିଂ କରିଷ୍ୟାମି କାଳଂ ତାବତ୍ ପ୍ରତୀକ୍ଷତ । ୨୬ ।
ଯଦା ଦେବେଷୁ ବେଦେଷୁ ଗୋଷୁ ବିପ୍ରେଷୁ ସାଧୁଷୁ ।
ଧର୍ମେ ମୟି ଚ ବିଦ୍ୱେଷଃ ସ ବା ଆଶୁ ବିନଶ୍ୟତି । ୨୭ ।
ନିର୍ବୈରାୟ ପ୍ରଶାନ୍ତାୟ ସ୍ୱସୁତାୟ ମହାତ୍ମନେ ।
ପ୍ରହ୍ଲାଦାୟ ଯଦା ଦ୍ରୁହ୍ୟେଦ୍ଧନିଷ୍ୟେଽପି ବରୋର୍ଜିତମ୍ । ୨୮ ।

---

ହେ ଦେବଗଣ ! ତୁମ୍ଭେମାନେ ଭୀତ ହୁଅ ନାହିଁ, ତୁମ୍ଭମାନଙ୍କର ମଙ୍ଗଳ ହେଉ । ମୋର ଦର୍ଶନ ସର୍ବଭୂତ ପକ୍ଷରେ ଶ୍ରେୟସ୍କର ପ୍ରଦାନ କରେ । ୨୫ ।

ମୁଁ ଏହି ଦୈତ୍ୟକୁଳାଧମର ଅତ୍ୟାଚାର ବିଷୟ ଜାଣିଅଛି । ଶୀଘ୍ର ତାହାର ଶାନ୍ତି ବିଧାନ କରିବି । ତୁମ୍ଭେମାନେ କିଛିକାଳ ଅପେକ୍ଷାକର । ୨୬ ।

ଦେବତା, ବେଦ, ବିପ୍ର, ସାଧୁ, ଧର୍ମ ଏବଂ ମୋଠାରେ ଯେ ବିଦ୍ୱେଷ କରେ ସେ ଶୀଘ୍ର ବିନଷ୍ଟ ହୁଏ । ୨୭ ।

ଯେତେବେଳେ ଶତ୍ରୁଶୂନ୍ୟ, ପ୍ରଶାନ୍ତାତ୍ମା ନିଜପୁତ୍ର ପ୍ରହ୍ଲାଦ ପ୍ରତି ବିଦ୍ୱେଷ କରିବ ସେତେବେଳେ ମୁଁ ସେହି ବରମତ୍ତ ଦୈତ୍ୟକୁ ବଧ କରିବି । ୨୮ ।

---

ଭୟ ନକର ଦେବଗଣ
ତୁମ୍ଭର ହୋଇବ କଲ୍ୟାଣ
ମୋହର ଦରଶନ ଲଭି
ଅଶେଷ ସମ୍ପଦ ସମ୍ଭବ । ୨୫ ।
ପାପି ଅସୁର ଦୁଷ୍ଟପଣେ
ଭୟେ କମ୍ପିଲେ ଦେବଗଣେ
ଏ ଭୟ କରିବି ମୁଁ ଶାନ୍ତ
ତୁମ୍ଭେ ନ କର ମନେ ଭ୍ରାନ୍ତ
ଅଳପ ଦିନ ଦୁଃଖ ସହ
ତୁମ୍ଭର ନାଶିବ ସନ୍ଦେହ । ୨୬ ।

ବେଦବଚନ ପୁରାତନ
ହେ ଦେବେ ! ସାବଧାନେ ଶୁଣ
ଯେ ଦେବ ଦେବଙ୍କୁ ନିନ୍ଦଇ
ଗୋରୁ ବ୍ରାହ୍ମଣ ବିନାଶଇ
ସାଧୁଜନଙ୍କୁ ଦୁଷ୍ଟପଣେ
ଯେବେ ହିଂସଇ ଅନୁକ୍ଷଣେ
ନିର୍ଦ୍ଦୋଷି ପ୍ରାଣିଙ୍କର ମନେ
କ୍ଳେଶ ସମ୍ପାଦେ ଅକାରଣେ
ମୋତେ କରଇ ଶତ୍ରୁଭାବ
ତେବେ ସେ ବେଗେ ନାଶଯିବ । ୨୭

ଯେବେ ଏହାର ନିଜସୁତ
ହୋଇବ ଗୋବିନ୍ଦ ଭକତ.
ସମଦରଶୀ ସାଧୁ ଧୀର
ଶ୍ରୀପ୍ରହ୍ଲାଦ ନାମ ତାର
ତାହାକୁ ଅସୁର ଲଙ୍ଘିବ
କୋପେ ଅନେକ ଦୁଃଖ ଦେବ
ମୁଁ ତାକୁ ସଙ୍କଟୁ ରଖିବି
ବ୍ରହ୍ମାର ବର ବିନାଶିବି । ୨୮ ।

ଶ୍ରୀ ନାରଦ ଉବାଚ ।

ଇତ୍ୟୁକ୍ତା ଲୋକଗୁରୁଣା ତଂ ପ୍ରଣମ୍ୟ ଦିବୌକସଃ ।
ନ୍ୟବର୍ତ୍ତନ୍ତ ଗତୋଦ୍‌ବେଗା ମେନିରେ ଚାସୁରଂ ହତମ୍ । ୨୯ ।
ତସ୍ୟ ଦୈତ୍ୟପତେଃ ପୁତ୍ରାଶ୍ଚତ୍ୱାରଃ ପରମାଦ୍‌ଭୁତାଃ ।
ପ୍ରହ୍ଲାଦୋଽଭୂନ୍ମହାଂସ୍ତେଷାଂ ଗୁଣୈର୍ମହଦୁପାସକଃ । ୩୦ ।
ବ୍ରହ୍ମଣ୍ୟଃ ଶୀଲସମ୍ପନ୍ନଃ ସତ୍ୟସନ୍ଧୋ ଜିତେନ୍ଦ୍ରିୟଃ ।
ଆତ୍ମବତ୍ ସର୍ବଭୂତାନାମେକପ୍ରିୟସୁହୃତ୍ତମଃ । ୩୧ ।
ଦାସବତ୍ ସନ୍ନତାର୍ଯ୍ୟାଙ୍ଘ୍ରିଃ ପିତୃବତ୍ ଦୀନବତ୍ସଳଃ-
ଭ୍ରାତୃବତ୍ ସଦୃଶେ ସ୍ନିଗ୍‌ଧୋ ଗୁରୁଷ୍ୱୀଶ୍ୱରଭାବନଃ ।
ବିଦ୍ୟାର୍ଥରୂପଜନ୍ମାଢ଼୍ୟୋ ମାନସ୍ତମ୍ଭବିବର୍ଜିତଃ । ୩୨ ।

ଶ୍ରୀନାରଦ କହିଲେ—

ଲୋକଗୁରୁ ବିଷ୍ଣୁ ଏପରି କହନ୍ତେ ଦେବତାମାନେ ବିଷ୍ଣୁଙ୍କୁ ପ୍ରଣାମ କରି ନିରୁଦ୍ଵେଗ ହୋଇ ପ୍ରସ୍ଥାନ କରିଥିଲେ ଏବଂ ସେହି ଅସୁର ହତ ହୋଇଅଛି ବୋଲି ମନେ କରିଥିଲେ । ୨୯ ।

ସେହି ଦୈତ୍ୟପତିର ଚାରୋଟି ଅତ୍ୟନ୍ତ ଅଦ୍ଭୁତ ପୁତ୍ର ଜନ୍ମିଥିଲେ । ତନ୍ମଧ୍ୟରେ ପ୍ରହ୍ଲାଦ ବିବିଧ ଗୁଣ ସମ୍ପନ୍ନ, ମହତ୍ତ୍ଵ ଉପାସକ ଥିଲେ । ୩୦ ।

ସେ ବ୍ରାହ୍ମଣ ସ୍ଵଭାବୋଚିତ ଚରିତ୍ରସମ୍ପନ୍ନ, ସତ୍ୟ ପ୍ରତିଜ୍ଞ, ଜିତେନ୍ଦ୍ରିୟ, ସର୍ବପ୍ରାଣୀ ପ୍ରତି ସମଦୃଷ୍ଟି ଏବଂ ପ୍ରିୟ ସୁହୃତ । ୩୧ ।

ଗୁରୁକୁଳ ପ୍ରତି ସେ ଭୃତ୍ୟ ତୁଲ୍ୟ ପ୍ରଣତ, ଦୀନମାନଙ୍କ ପ୍ରତି ପିତୃତୁଲ୍ୟ ବତ୍ସଳ, ସମବୟସ୍କ ମାନଙ୍କ ପ୍ରତି ଭ୍ରାତୃ ତୁଲ୍ୟ ଅନୁରାଗ ଯୁକ୍ତ ଗୁରୁମାନଙ୍କ ପ୍ରତି ଈଶ୍ଵର ଭାବ ଯୁକ୍ତ । ଜ୍ଞାନ, ଧନ ସମ୍ପଦ, ସୌନ୍ଦର୍ଯ୍ୟ ଓ ଆଭିଜାତ୍ୟରେ ସେ ସୁସମୃଦ୍ଧ ହେଲେ ମଧ୍ୟ ଦମ୍ଭହୀନ, ବିପଦରେ ଧୀରଚିତ୍ତ, ଐହିକ ଓ

ଶ୍ରୀନାରଦଉବାଚ—

ଏମନ୍ତେ ବିଷ୍ଣୁ ବାକ୍ୟ ଶୁଣି
ଦେବେ ନମିଲେ ଚକ୍ରପାଣି
ଗୋବିନ୍ଦ ବଚନେ ବିଶ୍ୱାସ
ଜାଣିଲେ ନିଶ୍ଚେ ଯିବ ନାଶ
କୃଷ୍ଣ ଚରଣେ ଦେବେ ନମି
ବେଗେ ଚଳିଲେ ନିଜ ଭୂମି । ୨୯ ।
ଏବେ ହୋ ଶୁଣ ଧର୍ମ୍ମ ସୁତ
ପ୍ରହ୍ଲାଦର ଯେ ଚରିତ
ଯାହା ଶୁଣନ୍ତେ ପ୍ରାଣି ଦେହେ
ଅଶେଷ ଦୁରିତ ନ ରହେ-
ହିରଣ୍ୟ-କଶିପୁର ଘରେ
ତାହାର ପତ୍ନୀର ଉଦରେ
ଜନ୍ମ ଲଭିଲେ ଚାରି ସୁତ
ତେଜେ ବିରାଜେ କି ଆଦିତ୍ୟ
ସେ ପ୍ରହ୍ଲାଦ ତା'ର ମଧ୍ୟେ
କୃଷ୍ଣଙ୍କୁ ଭଜଇ ଅଭେଦେ । ୩୦ ।
ଗୁଣେ କି ଦେବା ପଟାନ୍ତର
କୃଷ୍ଣ-ଭକତମଧ୍ୟେ ବର
ସେ ସତ୍ୟସନ୍ଧ ଶୀଳ ଗୁଣ
ସେବଇ ବିପ୍ରଙ୍କ ଚରଣ
ସର୍ବଭୂତେ ସୁହୃଦ ପ୍ରିୟ
ସ୍ୱଭାବେ ବିଜିତ ଇନ୍ଦ୍ରିୟ । ୩୧ ।
ସନ୍ତ ଚରଣେ ଦାସ ପ୍ରାୟେ
ଦୁଃଖିଙ୍କୁ ଭଜେ ପିତୃସ୍ନେହେ
ସମାନେ ଭଜେ ଭ୍ରାତୃଭାବେ
ଗୁରୁଙ୍କୁ ଈଶ୍ୱର ସ୍ୱଭାବେ
ବିଦ୍ୟାର୍ଥ-ରୂପ-ଜନ୍ମସାର
ସ୍ୱଭାବେ ଗର୍ବ ନାହିଁ ତାର । ୩୨ ।

ନୋଦ୍‌ବିଗ୍ନଚିତ୍ତୋ ବ୍ୟସନେଷୁ ନିସ୍ପୃହଃ ଶ୍ରୁତେଷୁ ଦୃଷ୍ଟେଷୁ ଗୁଣେଷ୍ୱବସ୍ତୁଦୃକ୍ ।
ଦାନ୍ତେନ୍ଦ୍ରିୟପ୍ରାଣଶରୀରଧୀଃ ସଦା ପ୍ରଶାନ୍ତକାମୋ ରହିତାସୁରୋଽସୁରଃ । ୩୩ ।

ଯସ୍ମିନ୍ ମହଦ୍‌ଗୁଣା ରାଜନ୍ ! ଗୃହ୍ୟନ୍ତେ କବିଭିର୍ମୁହୁଃ ।
ନ ତେଽଧୁନାପିଧୀୟନ୍ତେ ଯଥା ଭଗବତୀଶ୍ୱରେ । ୩୪ ।
ଯଂ ସାଧୁଗାଥା ସଦସି ରିପବୋଽପି ସୁରା ନୃପ ।
ପ୍ରତିମାନଂ ପ୍ରକୁର୍ବନ୍ତି କିମୁତାନ୍ୟେ ଭବାଦୃଶଃ । ୩୫ ।
ଗୁଣୈରଲମସଂଖ୍ୟେୟୈର୍ମାହାତ୍ମ୍ୟଂ ତସ୍ୟ ସୂଚ୍ୟତେ ।
ବାସୁଦେବେ ଭଗବତି ଯସ୍ୟ ନୈସର୍ଗିକୀ ରତିଃ । ୩୬ ।

---

ସ୍ୱର୍ଗୀୟ ସୁଖରେ ସ୍ପୃହା ଶୂନ୍ୟ, ଇନ୍ଦ୍ରିୟ, ପ୍ରାଣ ଓ ଶରୀରରେ ଶାନ୍ତ ବୁଦ୍ଧି, ବାସନା ବର୍ଜିତ ଏବଂ ଅସୁର ହେଲେ ମଧ୍ୟ ମାତ୍ସର୍ଯ୍ୟ ଶୂନ୍ୟ । ୩୨,୩୩ ।

ହେ ରାଜନ୍ ! ଯେପରି ଈଶ୍ୱରଙ୍କର ଗୁଣାବଳୀ କବିମାନଙ୍କର ଆଲୋଚନୀୟ ବିଷୟ ଏବଂ ବହୁକାଳ ଅତୀତ ହେଲେ ମଧ୍ୟ ତାହା ତିରୋହିତ ହୁଏ ନାହିଁ ସେହିପରି ଭକ୍ତପ୍ରବର ପ୍ରହ୍ଲାଦଙ୍କ ଗୁଣାବଳୀ କବିମାନଙ୍କର ଆଲୋଚନାର ବିଷୟ ହୋଇଥିଲା । ୩୪ ।

ସାଧୁମାନଙ୍କର ଗୁଣାଲୋଚନା ସମୟରେ ଦୈତ୍ୟଶତ୍ରୁ ଦେବତାମାନେ ପ୍ରହ୍ଲାଦଙ୍କ ଗୁଣରାଶି ପ୍ରତି ସମ୍ମାନ ପ୍ରଦର୍ଶନ କରିଥାନ୍ତି । ତୁମ ଆମ କଥା ବା କଣ ? । ୩୫ ।

ତାହାଙ୍କର ଅପ୍ରମେୟ ଗୁଣଗ୍ରାମ କ୍ରମେ ତାହାଙ୍କର ମହାତ୍ମ୍ୟ ବିସ୍ତାର କରିବାକୁ ଲାଗିଲା କାରଣ ଭଗବାନ୍ ବାସୁଦେବଙ୍କ ପ୍ରତି ତାହାଙ୍କର ସ୍ୱାଭାବିକ ପ୍ରୀତି ଥିଲା । ୩୬ ।

---

ଦୁଃଖେ ଦୁଃଖିତ ଚିତ୍ତ ନୋହେ
ଜ୍ଞାନ ଗୋଚରେ ସର୍ବ ସହେ
ନିଶ୍ଚଳ ଦୃଷ୍ଟି ଶ୍ରୁତ ଗୁଣେ
ବସ୍ତୁ ଅବସ୍ତୁ ପରିମାଣେ
ଦୁଃଖୀ ବାଳକ ପ୍ରାୟେ ରହେ
ସ୍ୱଭାବେ ତପ କ୍ଲେଶ ସହେ
ପ୍ରଶାନ୍ତ ଚିତ୍ତ କାମ୍ୟ ବହେ
ମଦ ମତ୍ସର ନାହିଁ ଦେହେ

ଅସୁର ହେଲେହେଁ ପ୍ରତ୍ୟକ୍ଷେ
ଅସୁର ଭାବକୁ ନ ରଖେ । ୩୩ ।
ଯାହାର ଦେହେ ମହାଗୁଣ
ମୁନି କହନ୍ତି ପୁଣ ପୁଣ
ଏବେହେଁ ଅଲକ୍ଷିତ ନୋହେ
ତା ନିଷ୍ଠା ଗୋବିନ୍ଦ ବିଷୟେ । ୩୪ ।
ସୁର ସଭାରେ ଯାର କଥା
ଚିନ୍ତା ଗାବନ୍ତି ସାଧୁଗାଥା

ଶତ୍ରୁଙ୍କ ମିତ୍ର ପ୍ରାୟ ଦିଶେ
ଯାର ମହିମା ବିଷ୍ଣୁ ଅଂଶେ
ତାହାଙ୍କୁ ସାଧୁ-ସଭା ମଝେ
ପ୍ରଶଂସା କରନ୍ତି ଆନନ୍ଦେ । ୩୫ ।
ଯାର ମହିମା ମୁନିଗଣେ
ଗୁଣନ୍ତି ଅସଂଖ୍ୟ ପ୍ରକାରେ
ସ୍ୱଭାବେ ତାର ଶୁଦ୍ଧ ମତି
ହରି ଚରଣେ ଚିତ୍ତ ରତି । ୩୬

**ନମୁଚାନୁବଶାନ୍ ସାଧୂଂ ସ୍ତାଦୃଶାନ୍ ଗୁରୁଦେବତାନ୍ ।**
**ଏତତ୍ କୌତୂହଲଂ ବ୍ରହ୍ମନ୍ନସ୍ମାକଂ ବିଧମ ପ୍ରଭୋ ।**
**ପିତୁଃ ପୁତ୍ରାୟ ଯଦ୍ଦ୍ୱେଷୋ ମରଣାୟ ପ୍ରଯୋଜିତଃ । ୪୬ ।**

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ
ଯୁଧିଷ୍ଠିରନାରଦସମ୍ବାଦେ ଚତୁର୍ଥୋଽଧ୍ୟାୟଃ । ୪ ।

---

ତାହା ପ୍ରତି ପିତା ଦ୍ୱେଷାଚରଣ କରିବା ଆଶ୍ଚର୍ଯ୍ୟର ବିଷୟ । ହେ ବ୍ରହ୍ମନ୍ ! ପିତା ପୁତ୍ରପ୍ରତି ଦ୍ୱେଷାଚରଣ କଲା ଏହା ଅତି ସନ୍ଦେହ ଜନକ । ଦୟାକରି ମୋର ଏ ସନ୍ଦେହ ଦୂର କରନ୍ତୁ । ୪୫ । ୪୬ ।

---

ଯେ ପିତା ପୁତ୍ରେ ଦେଇ ଦୁଃଖ
ସେ କଥା ମରଣୁଁ ଅଧିକ
ଏଣେ ଦୁଃଖିତ ମୋର ଚିତ୍ତ
କହ ହେ ବ୍ରହ୍ମାଙ୍କର ସୁତ ।୪୪-୪୬
ଏମନ୍ତେ ଧର୍ମ-ସୁତ ବାଣୀ
ନାରଦ ସାବଧାନେ ଶୁଣି

କୃଷ୍ଣ ଚରଣେ ଦେଇ ଚିତ୍ତ
ସ୍ମରିଲ କୃଷ୍ଣର ଚରିତ
ସେ ବ୍ରହ୍ମମୁନିର ଚରଣେ
ପୂଜନେ ନମି ଅନୁକ୍ଷଣେ
ତୁମ୍ଭର ହିତେ ଭାଗବତ
ବାକ୍ୟ ପ୍ରବନ୍ଧେ କଲି ଗୀତ

ସପ୍ତମସ୍କନ୍ଧେ ଏହୁ ଚିତ୍ତ
କହିଲ ଦାସ ଜଗନ୍ନାଥ ।



**ବିଶଦାର୍ଥ :—**

ହିରଣ୍ୟକଶ୍ୟପୁ ବ୍ରହ୍ମାଙ୍କ ବରରେ ଦୃପ୍ତ ହୋଇ ତ୍ରିଲୋକରେ ବିବିଧ ଅତ୍ୟାଚାର କରିଥିଲା । ସାଧୁଜନମାନେ ଦେବକୃପା ଲାଭ କଲେ । ସାଧୁମାନେ ସେହି କୃପା ବଳରେ ଜଗତର ଇଷ୍ଟସାଧନ କରନ୍ତି ମାତ୍ର ଅସାଧୁବ୍ୟକ୍ତି ପକ୍ଷରେ ତାଦୃଶ କୃପା ଜଗତର ଅମଙ୍ଗଳର ହେତୁ ହୁଏ । ହିରଣ୍ୟ କଶ୍ୟପୁ ସର୍ବରାଜ୍ୟ ଅଧିକାର-କରି ଦେବତାମାନଙ୍କୁ ନିଜର ଶାସନାଧୀନରେ ରଖିଥିଲା । ଦେବ ଭୋଗ୍ୟ ସ୍ୱର୍ଗରାଜ୍ୟ ଓ ଅମରାବତୀପୁରରେ ବାସ କରି ସେ ଦେବତାମାନଙ୍କୁ ଭୃତ୍ୟ ତୁଲ୍ୟ ବ୍ୟବହାର କରିଥିଲା । ଦେବତାମାନେ ଭୀତ ଓ ତ୍ରସ୍ତ ହୋଇ ବିଷ୍ଣୁଙ୍କର ଶରଣାପନ୍ନ ହୋଇଥିଲେ । ବିଷ୍ଣୁ କହିଲେ ତୁମ୍ଭେମାନେ ଆଶ୍ୱସ୍ତ ହୁଅ ! କିଛିକାଳ ଅପେକ୍ଷାକର, ମୁଁ ଶୀଘ୍ର ତାହାକୁ ବଧ କରିବି । ତୁମ୍ଭମାନଙ୍କର ଦୁଃଖ ଦୂର କରିବି । ବିଷ୍ଣୁଙ୍କର ଏହି ଆଶ୍ୱାସ ବଚନରେ ଦେବତାମାନେ ମନେ କଲେ ହିରଣ୍ୟକଶ୍ୟପୁ ନିଶ୍ଚୟ ନିହତ ହେବ । ବିଷ୍ଣୁ କହିଥିଲେ, ହିରଣ୍ୟକଶ୍ୟପୁ ନିଜର ପୁତ୍ର ପ୍ରତି ବିଦ୍ୱେଷ କଲେ ତାହାର ମୃତ୍ୟୁ ଘଟିବ । ହିରଣ୍ୟକଶ୍ୟପୁର ଚାରିପୁତ୍ର । ସେମାନଙ୍କ ମଧ୍ୟରେ ପ୍ରହ୍ଲାଦ ଶ୍ରେଷ୍ଠ । ସେ ଦେବ, ଦ୍ୱିଜ, ଗୋ ଭକ୍ତ ଅଶେଷ ଗୁଣଶାଳୀ ଏବଂ ଭଗବଦ୍ଭକ୍ତ । ଭଗବାନ ନିଜପ୍ରତି ଅପମାନ ସହ୍ୟକରି ପାରନ୍ତି ମାତ୍ର ଭକ୍ତ ପ୍ରତି ଅପମାନ ସହ୍ୟ କରନ୍ତି ନାହିଁ । **ହିରଣ୍ୟକଶ୍ୟପୁ ବିଷ୍ଣୁ ଦ୍ୱେଷ ହେତୁରୁ ସ୍ୱପୁତ୍ର ପ୍ରହ୍ଲାଦ ପ୍ରତି ବିଦ୍ୱେଷୀ ହୋଇଥିଲା ।**

ନ୍ୟସ୍ତକ୍ରୀଡ଼ନକୋ ବାଲୋ ଜଡବତ୍ ତନ୍ମନସ୍ତୟା ।
କୃଷ୍ଣଗ୍ରହଗୃହୀତାତ୍ମା ନ ବେଦ ଜଗଦୀଦୃଶମ୍ । ୩୭ ।
ଆସୀନଃ ପର୍ଯ୍ୟଟନ୍ନଶ୍ନନ୍ ଶୟାନଃ ପ୍ରପିବନ୍ ବ୍ରୁବନ୍ ।
ନାନୁସନ୍ଧତ୍ତ ଏତାନି ଗୋବିନ୍ଦପରିରମ୍ଭିତଃ । ୩୮ ।
କ୍ୱଚିଦ୍ରୁଦତି ବୈକୁଣ୍ଠଚିନ୍ତାଶବଳଚେତନଃ ।
କ୍ୱଚିଦ୍ଧସତି ତଚ୍ଚିନ୍ତାହ୍ଲାଦଂ ଉଦ୍‌ଗାୟତି କ୍ୱଚିତ୍ । ୩୯ ।
ନଦତି କ୍ୱଚିଦୁତ୍‌କଣ୍ଠୋ ବିଲଜ୍ଜୋ ନୃତ୍ୟତି କ୍ୱଚିତ୍ ।
କ୍ୱଚିତ୍ ତଦ୍‌ଭାବନାଯୁକ୍ତସ୍ତନ୍ମୟୋଽନୁଚକାର ହ । ୪୦ ।
କ୍ୱଚିଦୁତ୍‌ପୁଲକସ୍ତୂଷ୍ଣୀମାସ୍ତେ ସଂସ୍ପର୍ଶନିର୍ବୃତଃ ।
ଅସ୍ପନ୍ଦପ୍ରଣୟାନନ୍ଦସଲିଳାମୀଳିତେକ୍ଷଣଃ । ୪୧ ।

---

ପ୍ରହ୍ଲାଦ ବାଲୋଚିତ କ୍ରୀଡ଼ାରେ ଆଦୌ ଆସକ୍ତ ନ ଥିଲେ । ସାଧାରଣ ଲୋକେ ତାହାଙ୍କୁ ଜଡ଼ ପଦାର୍ଥ ତୁଲ୍ୟ ମଣୁଥିଲେ, ସେ ବିଷ୍ଣୁ ପଦରେ ଚିତ୍ତ ସମର୍ପଣ କରିଥିବାରୁ ଗ୍ରହ ଯେପରି ମନୁଷ୍ୟକୁ ଗ୍ରହଣ କଲେ ସହସା ଛାଡ଼ି ନ ପାରେ ସେହିପରି କୃଷ୍ଣରୂପୀ ଗ୍ରହକର୍ତ୍ତୃକ ତାହାର ଆତ୍ମା ଗୃହୀତ ହୋଇଥିଲା ବୋଲି ସେ ଏହି ଜଗତକୁ ଏକାବେଳକେ ବୁଝି ପାରୁ ନ ଥିଲେ । ୩୭ ।

ଭକ୍ତ ପ୍ରବର ପ୍ରହ୍ଲାଦର ଆତ୍ମା ଗୋବିନ୍ଦଙ୍କ ଆତ୍ମା ସହିତ ମିଳିତ ହୋଇଥିବାରୁ ଶୟନ, ସ୍ୱପନ, ଅଶନ, ଆସନ, ଜଳପାନ, ବାକ୍ୟ ପ୍ରୟୋଗରେ ତହିଁର ଉପକରଣ ସେ ଅନୁସନ୍ଧାନ କରି ପାରୁ ନ ଥିଲେ ।୩୮

ବୈକୁଣ୍ଠ ଓ ବୈକୁଣ୍ଠ ନାଥଙ୍କର ଚିନ୍ତାରେ ତାହାଙ୍କର ଚେତନା ମିଶି ଯାଇଥିବାରୁ ସେ କେତେବେଳେ ରୋଦନ କରନ୍ତି, କେତେବେଳେ ଆହ୍ଲାଦିତ ଚିତ୍ତରେ ହାସ୍ୟ କରନ୍ତି, କେତେବେଳେ ଗାନ କରନ୍ତି, କେତେବେଳେ ଉଚ୍ଚସ୍ୱରରେ ଆହ୍ୱାନ କରନ୍ତି, କେତେବେଳେ ନିର୍ଲ୍ଲଜ ଭାବରେ ନୃତ୍ୟ କରନ୍ତି ପୁଣି ବିଷ୍ଣୁମୟ ରୂପ ଅନୁକରଣ କରନ୍ତି । ୩୯,୪୦ ।

ଯେପରି ବିଷ୍ଣୁଙ୍କର ଅଙ୍ଗ ତାହାଙ୍କର ଅଙ୍ଗକୁ ସ୍ପର୍ଶ କରିଅଛି ସେହିପରି ଭାବରେ ତାହାଙ୍କର ରୋମାବଳୀ କଣ୍ଟକିତ ହୁଏ । ସେ ତହିଁରେ ପରିତୃପ୍ତ ହୋଇ ବିଷ୍ଣୁ ପ୍ରୀତିମୟ, ନିର୍ମଳ ଆନନ୍ଦ ଜଳରେ ତାହାଙ୍କର ଚକ୍ଷୁର୍ଦ୍ୱୟ ଈଷତ୍ ନିମୀଳିତ ହୋଇ ହୋଇ ସେ ତୁଷ୍ଣୀଭାବ ଅବଲମ୍ବନ କରନ୍ତି । ୪୧ ।

---

ବାଳକମେଳେ କ୍ରୀଡ଼ା କରେ
କ୍ରୀଡ଼ା କନ୍ଦୁକ ନ ଘୁମରେ ।
ଜଡ଼ପରି ପ୍ରାୟ ହୋଇ ଖେଳେ
ଚିତ୍ତ ଗୋବିନ୍ଦ ପାଦତଳେ
ନଥାଇ ଜ୍ଞାନ ନିଜ ଦେହେ
ଗୃହୀତ କୃଷ୍ଣ-ଗ୍ରହ ପ୍ରାୟେ
ମନ ତା ଗୋବିନ୍ଦ-ଚରଣେ
ସଂସାର କଥା ସେ ନ ଜାଣେ ।୩୭।

ଆସନ ଶୟନ ଭୋଜନେ
ଭ୍ରମଣେ ବାକ୍ୟ ଆଳାପନେ
ଗୋବିନ୍ଦ ପାଦେ ଚିତ୍ତ ଦେଇ
ବିଷୟ ରସେ ମନ ନାହିଁ । ୩୮ ।
କୃଷ୍ଣଚରଣ ଚିନ୍ତା ବଳେ
କି ଅବା ବୋଲେ କିବା କରେ
ଉଚ୍ଚେ ଉତ୍କଟ ନାଦ କରେ
ନିର୍ଲ୍ଲଜ ପ୍ରାୟ ନୃତ୍ୟ କରେ

କାନ୍ଦେ ହସଇ ଉଚ୍ଚ ନାଦେ
କୃଷ୍ଣ ଗାୟନେ ସେ ଆନନ୍ଦେ
ନିର୍ମ୍ମଳ ଭକ୍ତିଭାବ ଭରେ
କୃଷ୍ଣଚରିତ ଚେଷ୍ଟା କରେ ।୩୯,୪୦
କୃଷ୍ଣଚରଣ ଭାବେ ମଜ୍ଜି
ପୁଲକ କରେ ରୋମ ରାଜି
ଆନନ୍ଦେ ଅଶ୍ରୁଜଳ ସ୍ଫୁରେ
ଝରନ୍ତେ ବହେ ଚକ୍ଷୁଦ୍ୱାରେ ।୪୧

**ସ ଉତ୍ତମଃ ଶ୍ଳୋକ ପଦାରବିନ୍ଦୟୋର୍ନିଷେବୟାଃ କିଞ୍ଚନସଙ୍ଗଲବ୍ଧୟା ।**
**ତନ୍ୱନ୍ ପରାଂ ନିର୍ବୃତମାତ୍ମନୋ ମୁହୁର୍ଦୁଃସଙ୍ଗଦୀନସ୍ୟ ମନଃ ଶମଂ ବ୍ୟଧାତ୍ ।୪୨।**
**ତସ୍ମିନ୍ ମହାଭାଗବତେ ମହାଭାଗେ ମହାତ୍ମନି ।**
**ହିରଣ୍ୟକଶିପୂରାଜନ୍ନକରୋଦଘମାତ୍ମଜେ । ୪୩ ।**
**ଶ୍ରୀଯୁଧିଷ୍ଠିର ଉବାଚ ।**
**ଦେବର୍ଷ ଏତଦିଚ୍ଛାମୋ ବେଦିତୁଂ ତବ ସୁବ୍ରତ ।**
**ଯଦାତ୍ମଜାୟ ଶୁଦ୍ଧାୟ ପିତାଦାତ୍ ସାଧବେ ହ୍ୟଘମ୍ । ୪୪ ।**
**ପୁତ୍ରାନ୍ ବିପ୍ରତିକୂଳାନ୍ ସ୍ୱାନ୍ ପିତରଃ ପୁତ୍ରବତ୍ସଳାଃ ।**
**ଉପାଲଭନ୍ତେ ଶିକ୍ଷାର୍ଥଂ ନୈବାଘମପରେ ଯଥା । ୪୫ ।**

---

ସେହି ପ୍ରହ୍ଲାଦ ନାରଦାଦି ବୈଷ୍ଣବ ଚୂଡ଼ାମଣି ମାନଙ୍କ ସଙ୍ଗଲାଭର ଫଳ ସ୍ୱରୂପ ବିଷ୍ଣୁଙ୍କର ଚରଣ କମଳ ପ୍ରାପ୍ତି ହେତୁ ଏପରି ଆନନ୍ଦ ଲାଭ କରୁଥିଲେ ଯେ ତାହାଙ୍କୁ ଅନ୍ୟ ସଂସର୍ଗ ଦୂଷିତ ବୋଧହେଉଥିଲା । ତାହାଙ୍କ ସଂସର୍ଗରେ ଦୁଃଖ ସାଗର ନିମଗ୍ନ ବ୍ୟକ୍ତି ମଧ ଶାନ୍ତି ଲାଭ କରୁଥିଲା । ୪୨ ।

ହେ ରାଜନ୍ ! ମହାଭାଗବତ ମହାଭାଗ ମହାତ୍ମା ପ୍ରହ୍ଲାଦଙ୍କୁ ହିରଣ୍ୟକଶ୍ୟପୁ ବିଶେଷ ରୂପେ ଦ୍ୱେଷ କରିଥିଲା । ୪୩ ।

ଶ୍ରୀଯୁଧିଷ୍ଠିର କହିଲେ—

ହେ ଦେବର୍ଷେ ! ସତ୍ ଚରିତ୍ର, ନିର୍ମଳାନ୍ତଃକରଣ, ନିଜର ପୁତ୍ର ପ୍ରତି ପିତା ଯେ ଦ୍ୱେଷ କଲା ତହିଁର କାରଣ ମୁଁ ଆପଣଙ୍କଠାରୁ ଶୁଣିବାକୁ ଇଚ୍ଛା କରେ । ୪୪ ।

ଅବାଧ ପୁତ୍ରମାନଙ୍କ ପ୍ରତି ପିତା ଶିକ୍ଷାଦାନ କରିବା ନିମିତ୍ତ ଶତ୍ରୁତୁଲ୍ୟ ବିଦ୍ରୋହାଚରଣ କରନ୍ତି ନାହିଁ । ଅନୁଗତ, ଅସୀମ ବୋଧଶୀଳ ପ୍ରହ୍ଲାଦ ତୁଲ୍ୟ ପୁତ୍ର ଯେ ପିତାଙ୍କୁ ଦେବତା ତୁଲ୍ୟ ମନେକରୁଥିଲା

---

କୃଷ୍ଣଚରଣ ସେବା ଲୋଭେକି
ରମଇ ଅକାର୍ଥନ ମେଳେ
ଆତ୍ମା ନିବୃତ୍ତି ଅନୁକ୍ଷଣେ
ବିଷୟ ସଙ୍ଗ ଦୁଃଖ ମଣେ
ଏମନ୍ତେ ପୁତ୍ରର ବିଷୟେ
ହିରଣ୍ୟ କଶିପୁ ନ ସହେ
ଯାତନା କଲେ ଅତିରେକେ
କେ ସହିପାରେ ନରଲୋକେ
।୪୨,୪୩।

ଶ୍ରୀଯୁଧିଷ୍ଠିର ଉବାଚ—
ହେ ଦେବଋଷି ସତ୍ୟବ୍ରତ !
ତୁମ୍ଭେତ କହିଲ ଅଦ୍ଭୁତ
ନିଜ ପୁତ୍ରକୁ ପିତା କେବେ
ଦଣ୍ଡଇ ଅତି ଶତ୍ରୁଭାବେ ?
ସେ ଶୁଦ୍ଧ-ଚିତ୍ତ ପ୍ରହଲାଦ
କିପାଁ ଆଚରିଲା ପ୍ରମାଦ
କୁପୁତ୍ର ପଣ ଯେ କରନ୍ତି
ପିତାକୁ ଶତ୍ରୁପ୍ରାୟ ଚିନ୍ତି

ପୁତ୍ରକୁଶଳ ଶିକ୍ଷା ଅର୍ଥେ
ପିତା ଚିନ୍ତଇ ହିତାର୍ଥେ
ନିଜ ପୁତ୍ରକୁ ପିତା କେବେ
ନ ଦଣ୍ଡେ ଅପର ସ୍ୱଭାବେ
ସେ ପୁତ୍ର ପିତା ଅନୁଚର
ସ୍ୱଭାବେ ଶୁଦ୍ଧ ସାଧୁ ଧୀର
ଏହାକୁ କିପାଁ ଦୁଃଖ ଦେଲା
ମୋତେତ ସନ୍ଦେହ ଲାଗିଲା

## ପ ଞ୍ଚ ମ ଅ ଧ୍ୟା ୟ ।

ପଞ୍ଚମେ ଗୁରୁଣୋଽଧୀତଂ ତ୍ୟକ୍ତ୍ୱା ବିଷ୍ଣୁସ୍ତୁତୌ ରତମ୍ ।
ଘାତୟନ୍ ଦ୍ୱିପସର୍ପାଦ୍ୟୈଃ ସୂତଂ ଦୈତ୍ୟୋ ନ ଶୃଣକତ୍ ।୦। (ଶ୍ରୀଧରସ୍ୱାମୀ)

ଶ୍ରୀନାରଦ ଉବାଚ ।

ପୌରୋହିତ୍ୟାୟ ଭଗବାନ୍ ବୃତଃ କାବ୍ୟ କିଲାସୁରୈଃ ।
ଷଣ୍ଡାମର୍କୌ ସୁତୌ ତସ୍ୟ ଦୈତ୍ୟରାଜଗୃହାନ୍ତିକେ । ୧
ତୌ ରାଜ୍ଞା ପ୍ରାପିତଂ ବାଲଂ ପ୍ରହ୍ଲାଦଂ ନୟକୋବିଦମ୍ ।
ପାଠୟାମାସତୁଃ ପାଠ୍ୟାନନ୍ୟାଂଶ୍ଚାସୁରବାଳକାନ୍ । ୨ ।
ଯତ୍ତତ୍ର ଗୁରୁଣା ପ୍ରୋକ୍ତଂ ଶୁଶ୍ରୁବେଽନୁ ପପାଠ ଚ ।
ନ ସାଧୁ ମନସା ମେନେ ସ୍ୱପରାସଦ୍‌ଗ୍ରହାଶ୍ରୟମ୍ । ୩ ।

---

### ପ୍ରହ୍ଲାଦର ବିଦ୍ୟାଶିକ୍ଷା ଓ ତାହାପ୍ରତି ଦଣ୍ଡବିଧାନ ।

ପଞ୍ଚମ ଅଧ୍ୟାୟରେ ପ୍ରହ୍ଲାଦ ଗୁରୁଙ୍କଠାରୁ ପାଠପଢା ଛାଡ଼ି ବିଷ୍ଣୁଙ୍କ ସ୍ତବ ସ୍ତୋତ୍ର ପାଠକରନ୍ତେ ହିରଣ୍ୟକଶିପୁ ତାଙ୍କୁ ସର୍ପ ଓ ହାତୀ ପ୍ରଭୃତିଙ୍କ ଦ୍ୱାରା ବିନାଶ କରିବାକୁ ଚେଷ୍ଟା କରିବା ବିଷୟ ।୦।

ଶ୍ରୀନାରଦ କହିଲେ :—

ଭଗବାନ ଶୁକ୍ରାଚାର୍ଯ୍ୟଙ୍କୁ ଅସୁର ରାଜ ପୁରୋହିତ ପଦରେ ବରଣ କରିଥିଲେ । ତାହାଙ୍କର ଦୁଇପୁତ୍ର ଷଣ୍ଡ ଓ ଅମର୍କ ତାହାର ପ୍ରାସାଦ ନିକଟରେ ବାସ କରୁଥିଲେ । ୧ ।

ରାଜା ନୀତି ନିପୁଣ ବାଳକ ପ୍ରହ୍ଲାଦକୁ ଓ ଅନ୍ୟାନ୍ୟ ଅସୁର ବାଳକ ମାନଙ୍କୁ ଦଣ୍ଡନୀତି ପ୍ରଭୃତି ଶିକ୍ଷା ଦେବା ନିମିତ୍ତ କହନ୍ତେ ଷଣ୍ଡ ଓ ଅମର୍କ ଦଣ୍ଡନୀତି ପ୍ରଭୃତି ଶିକ୍ଷା ଦେଇଥିଲେ । ୨ ।

ଗୁରୁ ଦ୍ୱୟ ନିଜ ଗୃହରେ ଶିଷ୍ୟମାନଙ୍କୁ ଯାହା ପଢାଉଥିଲେ ପ୍ରହ୍ଲାଦ ତାହା ଶୁଣୁଥିଲେ ଓ ପଢୁଥିଲେ କିନ୍ତୁ ତହିଁରେ ତାହାଙ୍କର ଆଦୌ ପ୍ରୀତି ଜନ୍ମୁ ନ ଥିଲା । ହେ ପାଣ୍ଡବ ! ପଠିତବ୍ୟ ବିଷୟରେ କେବଳ ଏ ବ୍ୟକ୍ତି ନିଜର, ତାହାକୁ ଶ୍ରଦ୍ଧା କରିବ, ଏ ବ୍ୟକ୍ତି ଶତ୍ରୁ ତାହାପ୍ରତି ବିଦ୍ୱେଷ କରିବ ଇତ୍ୟାଦି ବ୍ୟତୀତ ଆଉ କିଛି ନ ଥିଲା । ୩ ।

---

ପ୍ରହ୍ଲାଦ ଗୁରୁ ଶିକ୍ଷା ଛାଡ଼ି, ବିଷ୍ଣୁ ସ୍ତୁତିରେ ମନ ବଳି । ପିତା ମରନ୍ତେ ସେ ନ ମରେ, ଏହି ଚରିତ ପଞ୍ଚମରେ ॥

ଶ୍ରୀନାରଦ ଉବାଚ—

ଅସୁରକୁଳେ ପୁରୋହିତ
ସର୍ବଙ୍କ ଶୁକ୍ର ଭୃଗୁ-ସୁତ
ଶୁକ୍ରର ସୁତ ବେନି ଭାଇ
ଶଣ୍ଡ ଅମର୍କ ନାମ ଦୁଇ
ପୁତ୍ରକୁ ପଢାଇବା ଅର୍ଥେ
ଆଚାର୍ଯ୍ୟ ବର ରାଜମତେ

ରାଜ-ମନ୍ଦିରେ ବେନିଭାଇ
ଦୈତ୍ୟ-ଶିଶୁଙ୍କୁ ସଙ୍ଗେ ଲଇ
ଯେ ଷଡ଼ନୀତି ରାଜକୁଳେ
ସର୍ବ ପଢାନ୍ତି ଏକମେକେ ।୧, ୨।
ତାହାଙ୍କ ମଧ୍ୟେ ପ୍ରହଲଦ
ସକଳ ଶାସ୍ତ୍ରେ ସେ ପ୍ରସିଦ୍ଧ
ଗୁରୁଙ୍କ ମୁଖୁଁ ଯେତେ ଶୁଣି
ତକ୍ଷଣେ ଚିତ୍ତେ ପରମାଣି

ଚିତ୍ତ ନିର୍ମଳେ ତାହା ଜାଣେ
କେବଳ ମନେ ନ ପ୍ରମାଣେ
ବିଚାର କରେ ହୃଦଗତେ
କେ ଶତ୍ରୁ ମିତ୍ର ଏ ଜଗତେ
ଏକଇ ଆତ୍ମା ନରହରି
ସମେ ସକଳ ଘଟେ ପୁରି
ଏକଥା ନୁହେଁ ଅପ୍ରମାଣ
ସକଳ ଆତ୍ମା ନାରାୟଣ

ଏକଦା ସୁରଶତ୍ରୁସ୍ତୁ ପୁତ୍ରମଙ୍କମାରୋପ୍ୟ ପାଣ୍ଡବ ।
ପପ୍ରଚ୍ଛ କଥ୍ୟତାଂ ବତ୍ସ ମନ୍ୟତେ ସାଧୁ ଯଦ୍ଭବାନ୍ । ୪ ।
ଶ୍ରୀପ୍ରହ୍ଲାଦ ଉବାଚ ।
ତତ୍ସାଧୁ ମନ୍ୟେଽସୁରବର୍ଯ୍ୟ ଦେହିନାଂ ସଦା ସମୁଦ୍ୱିଗ୍ନଧିୟାମସଦ୍ଗ୍ରହାତ୍ ।
ହିତ୍ୱାତ୍ମପାତଂ ଗୃହମନ୍ଧକୂପଂ ବନଂ ଗତୋ ଯଦ୍ଧରିମାଶ୍ରୟେତ । ୫ ।

ହେ ପାଣ୍ଡବ ! ପ୍ରହ୍ଲାଦ କିଛିଦିନ ଏହିପରି ଗୁରୁଗୃହରେ ବିଦ୍ୟାଭ୍ୟାସ କରୁଥିଲେ । ଦିନେ ଦୈତ୍ୟରାଜ ପ୍ରହ୍ଲାଦଙ୍କୁ କୋଳରେ ବସାଇ ପଚାରିଲେ ବତ୍ସ ! ତୁ ଯାହା ଶିଖିଅଛୁ ତହିଁରୁ କିଛି କହ ।୪।


ପ୍ରହ୍ଲାଦଙ୍କର ହିରଣ୍ୟକଶିପୁଙ୍କ ନିକଟରେ ଭଗବଦ୍ଗୁଣ କୀର୍ତ୍ତନ

ଶ୍ରୀପ୍ରହ୍ଲାଦ କହିଲେ—

ହେ ଅସୁର ରାଜ ! ମୁଁ, ମୋର ଏହି ମିଥ୍ୟା ଓ ଅହଙ୍କାରରେ ଉଦ୍ବିଗ୍ନ ହୋଇ ଅନ୍ଧକୂପତୁଲ୍ୟ ସଂସାରରେ ଭ୍ରମଣ କରିବା ଅପେକ୍ଷା ନିର୍ଜ୍ଜନ ଅରଣ୍ୟରେ ବାସକରି ଶ୍ରୀହରି ଚରଣସେବା କରିବା ଶ୍ରେଷ୍ଠ ବୋଲି ମୁଁ ମନେ କରେ । ୫ ।

ଯେ ପାଠ ପଢ଼େ ବାପ ତୋର
ଦୃଢ଼ ନ ଧରେ ହୃଦୟରେ ।୩।
ଦିନେକ ପ୍ରହ୍ଲାଦ ଆଣି
କୋଳେ ବସାଇ ନୃପମଣି
ଅନେକ ଅଳଙ୍କାର ଦେଇ
ସାନନ୍ଦେ ପୁତ୍ରଙ୍କୁ ପୁଚ୍ଛଇ
ହେ ପୁତ୍ର ଶୁଣ ମୋ ଉତ୍ତର
ଯେ ଷଟ ନୀତି ରାଜାଙ୍କର
ତୁ ତାହା ଗୁରୁ ମୁଖୁଁ ଶୁଣୁ
ସୁଦୃଢ଼ ରଖୁ ନ ପ୍ରମାଣୁ
ମୁଁ ଭଲେ ଶୁଣିଲଇଁ ଏହା
କହ ତୁ ସାଧୁ ମଣୁ ଯାହା
ଯେ ରାଜନୀତି ରଖି ଧରେ
କେବେହେଁ ଶତ୍ରୁକୁ ନ ଡରେ
ସଂଗ୍ରାମେ ଶତ୍ରୁ ଜୟ କଲେ
ସେ ରାଜା ସୁଖ ଭୁଞ୍ଜି ଭଲେ
ଏ କଥା ତୋତେ କି ସନ୍ଦେହ
କି ସାଧୁ ମଣୁ ପୁତ୍ର କହ
ପିତାର ବାକ୍ୟ କର୍ଣ୍ଣେ ଶୁଣି
ଶିରେ ନବେଣି ଯୋଡ଼ି ପାଣି
ସାନନ୍ଦେ ବାକ୍ୟ ଗଦ ଗଦ
ପିତାଙ୍କୁ କହେ ପ୍ରହ୍ଲାଦ ।୪।
ଶୁଣ ହେ ପିତା ଏକ ଚିତ୍ତେ
ଯେ ସାଧୁ ମଣେ ମୋର ମତେ
ଶୁଣ କହଇ ତୋ ଅଗ୍ରତେ
ଯେ ସାଧୁବାକ୍ୟ ଶାସ୍ତ୍ରମତେ
ସଂସାର ପାପ-ଗ୍ରହ ପ୍ରାୟେ
ପ୍ରାଣିଙ୍କୁ ଉଦବେଗ ଦିଏ
ଦେଖ ଏ ଗୃହ ଅନ୍ଧକୂପ
ଆତ୍ମାନିପାତ ମହାତାପ
ଏହାକୁ ଦୂରେ ପରିହରେ
ଅରଣ୍ୟେ କୃଷ୍ଣ ଆଶ୍ରେ କରେ
ସାଧୁ ମଣଇ ଏହା ଚିତ୍ତେ
ସତ୍ୟ କହିଲି ତୋ ଅଗ୍ରତେ ।୫।

ଶ୍ରୀନାରଦ ଉବାଚ ।

ଶ୍ରୁତ୍ୱା ପୁତ୍ରଗିରୋ ଦୈତ୍ୟଃ ପରପକ୍ଷସମାହିତାଃ ।
ଜହାସ ବୁଦ୍ଧିର୍ବାଳାନାଂ ଭିଦ୍ୟତେ ପରବୁଦ୍ଧିଭିଃ । ୬ ।
ସମ୍ୟଗ୍‌ବିଧାର୍ଯ୍ୟତାଂ ବାଲୋ ଗୁରୁଗେହେ ଦ୍ୱିଜାତିଭିଃ ।
ବିଷ୍ଣୁପକ୍ଷୈଃ ପ୍ରତିଚ୍ଛନ୍ନୈର୍ନଭିଦ୍ୟେତାସ୍ୟଧୀର୍ଯଥା । ୭ ।
ଗୃହମାନୀତମାହୂୟ ପ୍ରହ୍ରାଦଂ ଦୈତ୍ୟଯାଜକାଃ ।
ପ୍ରଶସ୍ୟ ଶ୍ଳକ୍ଷ୍ଣୟା ବାଚା ସମପୃଚ୍ଛନ୍ତ ସାମଭିଃ । ୮ ।
ବତ୍ସ ପ୍ରହ୍ରାଦ ଭଦ୍ରଂ ତେ ସତ୍ୟଂ କଥୟ ମା ମୃଷା ।
ବାଲାନତି କୁତସ୍ତୁଭ୍ୟମେଷ ବୁଦ୍ଧିବିପର୍ଯ୍ୟୟଃ । ୯ ।

---

ଶ୍ରୀନାରଦ କହିଲେ—

ନିଜ ପୁତ୍ର ପ୍ରହ୍ଲାଦର ଶତ୍ରୁ ପ୍ରତି ଭକ୍ତି ସୂଚକ ବାକ୍ୟାବଳୀ ଶ୍ରବଣ କରି ଦୈତ୍ୟରାଜ ସହାସ୍ୟ ବଦନରେ କହିଲେ ବାଳକର ବୁଦ୍ଧି ପରବୁଦ୍ଧି ପରିଚାଳିତ । ୬ ।

ଦୈତ୍ୟରାଜ ଅନୁଚରମାନଙ୍କୁ କହିଲେ—

ରେ ଅନୁଚର ବର୍ଗ ! ଦ୍ୱିଜାତିଗଣ ପ୍ରଚ୍ଛନ୍ନ ଭାବରେ ବିଷ୍ଣୁ ଭକ୍ତ, ସେମାନେ ଯେପରି ବାଳକର ବୁଦ୍ଧି ବିପର୍ଯ୍ୟୟ ନ ଘଟାନ୍ତି ତତ୍‌ପ୍ରତି ତୁମ୍ଭେମାନେ ସାବଧାନ ରହିବ । ପୁରୋହିତମାନେ ପ୍ରହ୍ଲାଦକୁ ଡାକି ଶାନ୍ତ ଭାବରେ ପ୍ରଶଂସା ସୂଚକ ବାକ୍ୟରେ ପ୍ରଶ୍ନ କଲେ ? । ୭,୮ ।

ଶ୍ରୀଗୁରୁମାନେ କହିଲେ—

ହେ ବତ୍ସ ପ୍ରହ୍ଲାଦ ! ତୋର ମଙ୍ଗଳ ହେଉ । ଆମ୍ଭେମାନେ ଯେଉଁ ପ୍ରଶ୍ନ କରୁଅଛୁ ତହିଁର ଯଥାର୍ଥ ଉତ୍ତର ଦେବୁ । ସତ୍ୟ କହିବୁ ମିଥ୍ୟା କହିବୁ ନାହିଁ । ତୋର ଯେପରି ବୁଦ୍ଧି ବିପର୍ଯ୍ୟୟ ଘଟିଅଛି ତାହା

---

ଶ୍ରୀନାରଦ ଉବାଚ—

ରାଜା ଯେ ପୁତ୍ର ବାକ୍ୟ ଶୁଣି
ଶତ୍ରୁର ପକ୍ଷ ପ୍ରାୟେ ମଣି
ଉଚ୍ଚେ ହସିଲା ଅତିରେକ
ବୋଇଲା ବାଳ ଅବିବେକ
ଏହାର ବୁଦ୍ଧି କେ ହରିଲା
ମୋହର ଶତ୍ରୁକୁ ଭଜିଲା । ୬ ।
କୋପେ ବାଳକ ତଳେ ଥୋଇ
ବୋଇଲେ ସେବକ ମୁଖ ଚାହିଁ

ଗୁରୁ ଭୁବନେ ନେଇ ଦିଅ
ଏ କଥା ଗୁରୁ ଆଗେ କହ
ଏ ମୋର ବାଳକର ମନ
ଶତ୍ରୁ ବିଷୟେ କର୍ଣ୍ଣ ଛନ୍ନ
ଏହାର ମନ ବିଷ୍ଣୁ ପକ୍ଷେ
ଯେମନ୍ତେ ନ ଘଟେ ପ୍ରତ୍ୟକ୍ଷେ । ୭ ।
ରାଜାର ବାକ୍ୟେ ଭୃତ୍ୟ ନେଇ
ବାଳକ ଗୁରୁ ଘରେ ଦେଇ
ବ୍ରାହ୍ମଣ ଗୋଷ୍ଠୀ ମଧ୍ୟେ ଦେଲେ
ରାଜା ବଚନ ଜଣାଇଲେ

ତା ଶୁଣି ବିପ୍ରେ ଉଦବେଗେ
ବୋଲନ୍ତି ପ୍ରହ୍ଲାଦ ଆଗେ
ଏ ରାଜ-ନୀତି ବାକ୍ୟ ଯେତେ
ବୋଲନ୍ତି ହସ୍ତ ଧରି ହସ୍ତେ । ୮ ।
ହେ ବତ୍ସ ପ୍ରହ୍ଲାଦ ଶୁଣ
ସର୍ବଥା ହେଉ ତୋ କଲ୍ୟାଣ
ଅମ୍ଭଙ୍କୁ ଲାଗି ଇ ସଂଶୟ
ମିଥ୍ୟା ନ କହ ସତ୍ୟ କହ
ବାଳକ ବୁଦ୍ଧିତ ନ ଦେଖି
ଅଦ୍ଭୁତ ପ୍ରାୟେ ଉପଲକ୍ଷି

ବୁଦ୍ଧିଭେଦଃ ପରକୃତ ଉତାହୋ ତେ ସ୍ୱତୋଽଭବତ୍ ।
ଭଣ୍ୟତାଂ ଶ୍ରୋତୁକାମାନାଂ ଗୁରୁଣାଂ କୁଳନନ୍ଦନ । ୧୦ ।

ଶ୍ରୀପ୍ରହ୍ଲାଦ ଉବାଚ ।

ପରଃ ସ୍ୱଶ୍ଚେତ୍ୟସଦ୍‌ଗ୍ରାହଃ ପୁଂସାଂ ଯନ୍ମାୟୟା କୃତଃ ।
ବିମୋହିତଧିୟାଂ ଦୃଷ୍ଟସ୍ତସ୍ମୈ ଭଗବତେ ନମଃ । ୧୧ ।
ସ ଯଦାନୁବ୍ରତଃ ପୁଂସାଂ ପଶୁବୁଦ୍ଧିର୍ବିଭିଦ୍ୟତେ ।
ଅନ୍ୟ ଏଷ ତଥାଽନ୍ୟୋଽହମିତି ଭେଦଗତାଽସତୀ । ୧୨ ।
ସ ଏଷ ଆତ୍ମା ସ୍ୱପରେତ୍ୟବୁଦ୍ଧିଭିର୍ଦୁରତ୍ୟୟାନୁକ୍ରମଣୋ ନିରୂପ୍ୟତେ ।
ମୁହ୍ୟନ୍ତି ଯଦ୍‌ବର୍ତ୍ମନି ବେଦବାଦିନୋ ବ୍ରହ୍ମାଦୟୋ ହ୍ୟେଷ ଭିନତ୍ତି ମେ ମତିମ୍ ।୧୩।

---

ଅନ୍ୟ ବାଳକ ତୁଲ୍ୟ ନୁହେଁ । ଏହା କେଉଁଠାରୁ ଆସିଲା । ତୋର ଯେଉଁ ବିପରୀତ ବୁଦ୍ଧି ଘଟିଅଛି ତାହା ସ୍ୱାଭାବିକ କି ଅନ୍ୟ କେହି ଶିଖାଇ ଅଛି, ହେ କୁଳନନ୍ଦନ ! ଆମ୍ଭେମାନେ ତୋହର ଗୁରୁ । ଏହା ଆମ୍ଭମାନଙ୍କର ଶୁଣିବାକୁ ଇଚ୍ଛା ହୋଇଅଛି । ତୁ ସତ୍ୟକରି କହ । ୯,୧୦ ।

ଶ୍ରୀପ୍ରହ୍ଲାଦ କହିଲେ :—

ଆପଣା ଓ ପର ଏହି ମିଥ୍ୟା ଅଭିମାନ ଶ୍ରୀ ଭଗବାନଙ୍କର ମାୟାରୁ ଉତ୍ପନ୍ନ ଏବଂ ଆପଣଙ୍କ ତୁଲ୍ୟ ମୁଗ୍ଧଚିତ୍ତ ବ୍ୟକ୍ତିମାନେ ତାହା କଳ୍ପିତ ହେଉନ୍ତି । ସେହି ଶ୍ରୀହରି ପାଦପଦ୍ମକୁ ନମସ୍କାର । ଯେତେବେଳେ ସେହି ଶ୍ରୀହରି ମନୁଷ୍ୟ ପ୍ରତି ଅନୁକୂଳ ହୁଅନ୍ତି ସେତେବେଳେ କିଏ ପର ଓ କିଏ ଆପଣାର ଏହି ଦେହାଭିମାନୀ ପଶୁ ଜନୋଚିତ ଅସତ୍ ବୁଦ୍ଧି ନିବୃତ୍ତ ହୋଇଥାଏ । ୧୧,୧୨ ।

ବୁଦ୍ଧି ବିପର୍ଯ୍ୟୟ ହେବାର କାରଣ ନିର୍ଦ୍ଦେଶ କରି ପ୍ରହ୍ଲାଦ କହିଲେ :—

ଅବିଦ୍ୟାଚ୍ଛନ୍ନ ଜୀବ ଭେଦ ବୁଦ୍ଧି ହେତୁ ଅବର୍ଣ୍ଣନୀୟ ଓ ଦୁରନ୍ୱେଷଣୀୟ ପରମାତ୍ମାଙ୍କୁ ଆପଣା ଓ ପରରୂପେ ନିରୂପଣ କରେ । ତହିଁରେ ଆଶ୍ଚର୍ଯ୍ୟ ବା କଣ ଅଛି । ବେଦବିତ୍ ଋଷିମାନେ ଓ ବ୍ରହ୍ମାଦି ଦେବତାମାନେ ଯେ ପରମାତ୍ମାଙ୍କର ଅନୁସନ୍ଧାନରେ ବା ବର୍ଣ୍ଣନାରେ ମୋହ ପ୍ରାପ୍ତ ହୁଅନ୍ତି ସାଧାରଣ ବ୍ୟକ୍ତି ପକ୍ଷରେ ସେପରି ମୋହ ଅସ୍ୱାଭାବିକ ନୁହେଁ । ସେହି ପରମାତ୍ମାହିଁ ମୋର ବୁଦ୍ଧି ଭେଦ ଜନ୍ମାଇ ଅଛନ୍ତି ।୧୩।

---

ଏ ତୋର ବୁଦ୍ଧି କେ ହରିଲା
ଶତ୍ରୁ ଭଜନେ ଶିକ୍ଷା ଦେଲା
କି ବା ସ୍ୱଭାବ ଏ ତୋହର
ଆମ୍ଭଙ୍କ ଆଗେ ଅଗୋଚର
କହ କେ ଦେଲା ତୋତେ ଶିକ୍ଷା
ଆମ୍ଭେ ଶ୍ରବଣେ କଲୁ ଇଚ୍ଛା ।୯,୧୦

ଶ୍ରୀପ୍ରହ୍ଲାଦ ଉବାଚ—

ଯାହାର ମାୟା ବଳେ ଜନ
ସ୍ୱ ପର ବୁଦ୍ଧି କରେ ଭିନ୍ନ
ଯାହାର ନାହିଁ ସ୍ୱପର
ତାହାଙ୍କୁ ମୋର ନମସ୍କାର ।୧୧।
ଯାହାର ଆଜ୍ଞା ପରମାଣେ
ସ୍ୱରୂପ ବୁଦ୍ଧି ନ ପ୍ରମାଣେ
ସେ ସର୍ବ ଆତ୍ମା ଯୋଗେଶ୍ୱର
ତାହାର ନାହିଁ ସ୍ୱପର
ଯାହାକୁ କରେ ଗୁରୁ ଦୟା
ତାହାର ଯାଏ ଭେଦ ମାୟା ।୧୨।
ଅଜ୍ଞାନ ବଳେ ସର୍ବ ଜନ୍ତୁ
ଭଜନ୍ତି ସ୍ୱପର ହେତୁ
ତାହାର ମାର୍ଗେ ଶିବ ବ୍ରହ୍ମା
ଗତି ନ ଜାଣି ହୋନ୍ତି ଭ୍ରମା
ସେ ମୋର ମନ ଭିନ୍ନ କଲା
ପର ଅପର ନ କହିଲା
ଯେସନେ ଅୟସ୍କାନ୍ତ ଗୁଣେ
ଲୌହ ଭ୍ରମଇ ବରଷଣେ

ଯଥା ଭ୍ରାମ୍ୟତ୍ୟୟୋ ବ୍ରହ୍ମନ୍ ସ୍ୱୟମାକର୍ଷସନ୍ନିଧୌ ।
ତଥା ମେ ଭିଦ୍ୟତେ ଚେତଶ୍ଚକ୍ରପାଣେର୍ଯଦୃଚ୍ଛୟା । ୧୪ ।

ଶ୍ରୀନାରଦ ଉବାଚ ।

ଏତାବଦ୍‌ବ୍ରହ୍ମଣାୟୋକ୍ତ୍ୱା ବିରରାମ ମହାମତିଃ ।
ତଂ ସନ୍ନିର୍ଭର୍ତ୍ସ୍ୟ କୁପିତଃ ସୁଦୀନୋ ରାଜସେବକଃ । ୧୫ ।
ଆନୀୟତାମରେ ବେତ୍ରମସ୍ମାକମୟଶସ୍କରଃ ।
କୁଳାଙ୍ଗାରସ୍ୟ ଦୁର୍ବୁଦ୍ଧେଶ୍ଚତୁର୍ଥୋଽସ୍ୟୋଦିତୋ ଦମଃ । ୧୬ ।
ଦୈତେୟଚନ୍ଦନବନେ ଜାତୋଽୟଂ କଣ୍ଟକଦ୍ରୁମଃ ।
ଯନ୍ମୂଲୋନ୍ମୂଲପରଶୋର୍ବିଷ୍ଣୋର୍ନାଳାୟିତୋଽର୍ଭକଃ । ୧୭ ।

---

କର୍ବିକାର ମତଭେଦର କାରଣ ସ୍ୱରୂପ କହିଲେ ହେ ବ୍ରହ୍ମନ୍ ! ଅୟସ୍କାନ୍ତମଣି ଯେପରି ନବପିଣ୍ଡକୁ ଆପେ ଗ୍ରହଣ କରେ ସେହିପରି ଚକ୍ରପାଣିଙ୍କର ଚକ୍ରରେ ମୋର ଚିତ୍ତ ଭ୍ରମ ଉପସ୍ଥିତ ହୋଇଅଛି । ତହିଁର ଉତ୍ତରରେ ବକ୍ତବ୍ୟ ଏହି ଯେ କେଉଁ ତପୋଦାନ ଫଳରେ ମୋର ଏହି ସୌଭାଗ୍ୟ ଉପସ୍ଥିତ । ୧୪ ।

ଶ୍ରୀନାରଦ କହିଲେ :—

ଶୁକ୍ର ତନୟଙ୍କୁ ପ୍ରହ୍ଲାଦ ଏହିପରି କହି ଶାନ୍ତ ହେଲେ । ତାହା ଶୁଣି ନୀଚହୃଦୟ, କ୍ରୁଦ୍ଧ ରାଜାନୁଚର ମାନେ ଷଣ୍ଡାମର୍କଙ୍କୁ ତର୍ଜ୍ଜନ ଓ ତିରସ୍କାର କରି କହିଲେ, କରେ ! ଏଠାରେ କିଏ ଅଛ । ଶୀଘ୍ର ବେତ ଘେନି ଆସ । ଏହି ଦୁଷ୍ଟ ଦ୍ୱାରା ଆମ୍ଭମାନଙ୍କର ରାଜ ସଂସ୍ଥାନ ନଷ୍ଟ ହେବାକୁ ବସିଲାଣି । ଏହି ଦୁର୍ବୁଦ୍ଧି, କୁଳାଙ୍ଗାରର ଶାସ୍ତି ବିଧାନ ନିମନ୍ତେ ସାମ, ଦାନ, ଦଣ୍ଡ, ଭେଦ ନୀତି ଚତୁଷ୍ଟୟ ପ୍ରୟୋଗ କରିବାକୁ ହେବ । ଦୈତ୍ୟରୂପୀ ଚନ୍ଦନ ବନରେ ଏହି ବାଳକ କଣ୍ଟକ ବୃକ୍ଷ ତୁଲ୍ୟ ଜନ୍ମିଅଛି । ଦୈତ୍ୟରୂପ ଚନ୍ଦନବନର ସମୂଳ ଛେଦନ କରିବା ନିମନ୍ତେ ବିଷ୍ଣୁରୂପ କୁଠାର ଏହି ବାଳକରୂପ କଣ୍ଟକ ବୃକ୍ଷ, ସେହି ବିଷ୍ଣୁ କୁଠାର ବର୍ତ୍ତମାନ ବାଳକରୂପେ ଉପସ୍ଥିତ । ୧୫,୧୬,୧୭ ।

---

ମୋହର ମତ ସେହିମତେ
ଭ୍ରମଇ ଈଶ୍ୱର ଆୟତ୍ତେ ।୧୩,୧୪
ଶ୍ରୀନାରଦ ଉବାଚ—
ଗୁରୁଙ୍କୁ କହି ଏ ବଚନ
ତକ୍ଷଣେ ହୋଇଲା ମଉନ
ବାଳକ ବାକ୍ୟ ଶୁଣି କର୍ଣ୍ଣେ
କୋପ ବସିଲା ଗୁରୁ ମନେ
ସମୀପେ ଥିଲା ରାଜା ଲୋକ
ଗୁରୁହିଁ ରାଜାର ସେବକ

କୋପେ କମ୍ପିଲେ ବାକ୍ୟ ଶୁଣି
ତକ୍ଷଣେ ଘରୁ ବେତ ଆଣି
ଆମ୍ଭର କୁଳେ ଦୁରାଚାର
ନିଶ୍ଚେ ଜନ୍ମିଲା କୁଳାଙ୍ଗାର
କୁବୁଦ୍ଧି ପଣ ଏ ବାଳକ
ଏହାକୁ ଉପ୍ରୋଧ ନ ରଖ ।୧୫,୧୬
ଚନ୍ଦନ ବନେ କଣ୍ଟା ବୃକ୍ଷ
ଜନ୍ମିଲା ଦେଖ ଏ ପ୍ରତ୍ୟକ୍ଷ

କଣ୍ଟକ ବୃକ୍ଷ ଯେବେ ମାର
ଚନ୍ଦନ ବନ ଯତ୍ନ କର
ତେବେ ନିର୍ଭୟେ ଭୋଗ କର
କଣ୍ଟା ବୃକ୍ଷକୁ ନିତ୍ୟ ଡର
ଚନ୍ଦନ ବନ ଦୈତ୍ୟଗଣ
ବିଷ୍ଣୁ ଯେ କୁଠାର ସମାନ
କୁଠାର ବେଣ୍ଟ ଏହୁ ହୋଇ
ଏ ଥିଲେ ଆମ୍ଭ ଭଲ ନାହିଁ ।୧୭।

ଇତି ତଂ ବିବିଧୋପାୟୈର୍ଭୀଷୟଂସ୍ତର୍ଜନାଦିଭିଃ ।
ପ୍ରହ୍ଲାଦଂ ଗ୍ରାହୟାମାସ ତ୍ରିବର୍ଗସ୍ୟୋପପାଦନମ୍ । ୧୮ ।
ତତ ଏନଂ ଗୁରୁର୍ଜ୍ଞାତ୍ୱା ଜ୍ଞାତଜ୍ଞେୟଚତୁଷ୍ଟୟମ୍ ।
ଦୈତ୍ୟେନ୍ଦ୍ରଂ ଦର୍ଶୟାମାସ ମାତୃମୃଷ୍ଟମଲଙ୍କୃତମ୍ । ୧୯ ।
ପାଦୟୋଃ ପତିତଂ ବାଲଂ ପ୍ରତିନନ୍ଦ୍ୟାଶିଷାଽସୁରଃ ।
ପରିଷ୍ୱଜ୍ୟ ଚିରଂ ଦୋର୍ଭ୍ୟାଂ ପରମାମାପ ନିର୍ବୃତିମ୍ । ୨୦ ।
ଆରୋପ୍ୟାଙ୍କମବଘ୍ରାୟ ମୂର୍ଦ୍ଧନ୍ୟଶ୍ରୁକଳାମ୍ବୁଭିଃ ।
ଆସିଞ୍ଚନ୍ ବିକସଦ୍‌ବକ୍ତ୍ରମିଦମାହ ଯୁଧିଷ୍ଠିର । ୨୧ ।

ଶ୍ରୀ ହିରଣ୍ୟକଶିପୁରୁବାଚ ।

ପ୍ରହ୍ଲାଦାନୂଚ୍ୟତାଂ ତାତ ସ୍ୱଧୀତଂ କିଞ୍ଚିଦୁତ୍ତମମ୍ ।
କାଲେନୈତାବତାୟୁଷ୍ମନ୍ ଯଦଶିକ୍ଷଦ୍‌ଗୁରୋର୍ଭବାନ୍ । ୨୨ ।

ଏହିପରି ନାନାପ୍ରକାର ତର୍ଜ୍ଜନ କରି ଶିକ୍ଷକ ପ୍ରହ୍ଲାଦଙ୍କୁ ଭୟ ପ୍ରଦର୍ଶନ କରିଥିଲେ । ଧର୍ମ, ଅର୍ଥ, କାମ ରୂପ ତ୍ରିବର୍ଗ ଫଳ ସାଧନୋପଯୋଗୀ ଶାସ୍ତ୍ର ପଢାଇଲେ । ୧୮ ।

କିଛିଦିନ ଗତ ହେଲା ପରେ ପ୍ରହ୍ଲାଦ ସାମ, ଦାନ, ଭେଦ, ଦଣ୍ଡ ଶାସ୍ତ୍ରରେ ନିପୁଣ ହୋଇଥିବାରୁ ପୁରସ୍କାର ପ୍ରାପ୍ତି ଆଶାରେ ତାକୁ ମାଆଙ୍କ ନିକଟକୁ ଘେନିଗଲେ । ୧୯ ।

ମାତା ତାହାଙ୍କୁ ଅଳଙ୍କାର ଓ ଉତ୍ତମ ବସ୍ତ୍ରଦ୍ୱାରା ଭୂଷିତ କରାଇ ଦୈତ୍ୟ ରାଜ ନିକଟକୁ ନେଲେ ଏବଂ କୃତବିଦ୍ୟ ପୁତ୍ରକୁ ବିନୀତ ଓ ପଦାନତ ଦେଖି ହିରଣ୍ୟ କଶ୍ୟପୁ ଦୀର୍ଘଜୀବୀ ହୁଅ ଇତ୍ୟାଦି ଆଶୀର୍ବଚନ କହି ଅତ୍ୟନ୍ତ ପ୍ରୀତ ହୋଇ ତାହାଙ୍କୁ ଗାଢ ଆଲିଙ୍ଗନ କରିଥିଲେ । ୨୦ ।

ହେ ମହାରାଜ ଯୁଧିଷ୍ଠିର ! ଦୈତ୍ୟରାଜ ପୁତ୍ର ପ୍ରହ୍ଲାଦଙ୍କୁ କୋଡ଼ରେ ଘେନି ମୁଖ ଚୁମ୍ବନ ମସ୍ତକାଘ୍ରାଣ ଓ ବାହୁଦ୍ୱାରା ଆଲିଙ୍ଗନ କରି ଆନନ୍ଦାଶ୍ରୁ ଦ୍ୱାରା ପରିପ୍ଳୁତ କରିଥିଲେ । ୨୧ ।

ହିରଣ୍ୟ କଶ୍ୟପୁ କହିଲେ ରେ ପ୍ରାଣାଧିକ ଆହ୍ଲାଦ ଦାୟକ ପୁତ୍ର ପ୍ରହ୍ଲାଦ ! ରେ ଆୟୁଷ୍ମନ୍ ! ତୁ ଏହି ଦୀର୍ଘକାଳ ଗୁରୁଙ୍କ ନିକଟରୁ ଯେଉଁ ବିଦ୍ୟାଶିକ୍ଷା କରି ଅଛୁ ତହିଁ ମଧ୍ୟରୁ ଉତ୍କୃଷ୍ଟ ବିଷୟ ମୋତେ କହ । ୨୨ ।

ଏମନ୍ତେ କରାଇଲେ ଭୟେ
ତର୍ଜ୍ଜିଲେ ବିବିଧ ଉପାୟେ
ପୁଣି ଆଶ୍ୱାସ ତାକୁ କରି
ଗୁରୁ ପଢାନ୍ତି ହସ୍ତ ଧରି
ଯେ ଧର୍ମ ଅର୍ଥ କାମ ଫଳେ
ସେ ବିଦ୍ୟା ପଢାଅନ୍ତି ବଳେ
କେବଳ ମୋକ୍ଷ ନାହିଁ ତହିଁ
ଏମନ୍ତେ ବାଳକ ପଢାଇ
ପିତାର ଆଗେ ନେଇ ଦେଲେ
ସେ ତାକୁ ଅଳଙ୍କାର କଲେ
ରାଜା ସମୀପେ ଦେଲେ ନେଇ
ତା ଦେଖି ରାଜା ତୋଷ ହୋଇ
ଚରଣ ତଳେ ପୁତ୍ର ଦେଖି
ସ୍ନେହେ ଲୋତକେ ପୂରେ ଆଖି
ଆନନ୍ଦେ ଗାତ୍ରେ ହସ୍ତ ଦେଇ
ସ୍ନେହରେ କୋଳରେ ବସାଇ
ପୁତ୍ର ସ୍ୱଭାବେ ପ୍ରୀତି କରି
କଲ୍ୟାଣ କରେ କୋଳେ ଧରି
ପ୍ରସନ୍ନ ବଦନେ ଅନାଇଁ
ପୁଚ୍ଛଇ ପୁତ୍ର-ମୁଖ ଚାହିଁ । ୧୮-୨୧
ହେ ପୁତ୍ର ଶୁଣ ମୋ ବଚନ
ଗୁରୁ ଭବନେ ଏତେଦିନ
ତୁ ଯେ ପଢିଲୁ ଶାସ୍ତ୍ର ସବେ
ମୋର ଅଗ୍ରତେ ପଢ ଏବେ

ଶ୍ରୀପ୍ରହ୍ଲାଦ ଉବାଚ ।

ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ ସ୍ମରଣଂ ପାଦସେବନଂ ।
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମନିବେଦନମ୍ । ୨୩ ।
ଇତି ପୁଂସାର୍ପିତା ବିଷ୍ଣୌ ଭକ୍ତିଶ୍ଚେନ୍ନବଲକ୍ଷଣା ।
କ୍ରିୟେତ ଭଗବତ୍ୟଦ୍ଧା ତନ୍ମନ୍ୟେଽଧୀତମୁତ୍ତମମ୍ । ୨୪ ।
ନିଶମ୍ୟୈତତ୍ସୁତବଚୋ ହିରଣ୍ୟକଶିପୁସ୍ତଦା ।
ଗୁରୁପୁତ୍ରମୁବାଚେଦଂ ରୁଷାପ୍ରସ୍ଫୁରିତାଧରଃ । ୨୫ ।
ବ୍ରହ୍ମବନ୍ଧୋ କିମେତତ୍ତେ ବିପକ୍ଷଂ ଶ୍ରୟତାସତା ।
ଅସାରଂ ଗ୍ରାହିତୋ ବାଲୋ ମାମନାଦୃତ୍ୟ ଦୁର୍ମ୍ମତେ । ୨୬ ।

---

ଶ୍ରୀପ୍ରହ୍ଲାଦ କହିଲେ:—

ପିତଃ ! ବିଷ୍ଣୁଙ୍କର ମହାତ୍ମ୍ୟ ଶ୍ରବଣ, ନାମକୀର୍ତ୍ତନ, ଲୀଳା ସ୍ମରଣ, ପଦସେବନ, ଅର୍ଚ୍ଚନ, ବନ୍ଦନ, ସ୍ତୋତ୍ରପାଠ, ଆତ୍ମ ନିବେଦନ ତାହାଙ୍କଠାରେ ବିଶ୍ୱାସ ସ୍ଥାପନ ଏହି ନବଧାଭକ୍ତି ବିଷୟ ଅଧ୍ୟୟନ କରି ବିଷ୍ଣୁଙ୍କଠାରେ ଚିତ୍ତ ସମର୍ପଣ କଲେ ତାହାହିଁ ପ୍ରକୃତ ବିଦ୍ୟାଧ୍ୟୟନ ବୋଲଯାଏ । ମୁଁ ତାହାହିଁ ଉତ୍ତମରୂପେ ଅଧ୍ୟୟନ କରିଅଛି ମାତ୍ର ଗୁରୁଙ୍କଠାରୁ ଏପରି ଅଧ୍ୟୟନ କରିବା ସମ୍ଭାବନା ନୁହେଁ ।

ହିରଣ୍ୟକଶିପୁ ପୁତ୍ରର ଏପରି ବାକ୍ୟ ଶ୍ରବଣ କରି କ୍ରୋଧରେ କମ୍ପିତ ହେଲେ ଏବଂ ଗୁରୁ ପୁତ୍ରଙ୍କୁ କହିଲେ ରେ ଦ୍ୱିଜାଧମ ! ତୁମ୍ଭେ ମୋର ପରମଶତ୍ରୁ ଦେବ ପକ୍ଷାବଲମ୍ବୀ ହୋଇ ଏପରି କରିଅଛ । ରେ ଦୁର୍ମତେ ! ମୋତେ ଅନାଦର କରି ଏହି ବାଳକକୁ ଦେବପକ୍ଷ ଅବଲମ୍ବନ କରିବାକୁ ଶିକ୍ଷା ଦେଇଅଛ । ସଂସାରରେ ବହୁ ଛଦ୍ମବେଶୀ କପଟବନ୍ଧୁ ଥାଆନ୍ତି । ସେମାନେ ସାକ୍ଷାତରେ ମିତ୍ରତୁଲ୍ୟ ବ୍ୟବହାର କରନ୍ତି କିନ୍ତୁ ସେମାନଙ୍କ ଅନ୍ତରରେ ବିଦ୍ୱେଷଭାବ ଥାଏ । ତାହା ଉପଯୁକ୍ତ ସମୟରେ ପ୍ରକାଶିତ ହୁଏ । ଯେପରି

---

ଉତ୍ତମ ବିଦ୍ୟା ପୁତ୍ର କହ
ମୋ ମନେ ନ ରହୁ ସନ୍ଦେହ । ୨୨

ଶ୍ରୀପ୍ରହ୍ଲାଦ ଉବାଚ—

ହେ ତାତ ଶୁଣ ମନ ଦେଇ
ଯେ ବିଦ୍ୟା ଉତ୍ତମ ମଣଇ
କୃଷ୍ଣର ଶ୍ରବଣ କୀର୍ତ୍ତନ
ସ୍ମରଣ ଚରଣେ ସେବନ
କରିବ ତାଙ୍କ ପୂଜା ସ୍ତବ
ଚରଣେ ଦାସ ପଣେ ଥିବ

ସଖ୍ୟଭାବରେ ନେବ ଦିନ
କରିବ ଆତ୍ମ ନିବେଦନ
ସର୍ବ ସମ୍ପଦ ସମର୍ପିବ
ଯେ ଶାସ୍ତ୍ରେ କହେ ଏତେ ଭାବ
ଏହା ମୁଁ ଉତ୍ତମ ମଣଇ
କହିଲି ତୋ ଅଗ୍ରତେ ମୁହିଁ
ନବ ଲକ୍ଷଣେ ଭକତି
ଯେ ନର ଗୋବିନ୍ଦେ କରନ୍ତି
ଉତ୍ତମ ବିଦ୍ୟା ବୋଲି ତାହା
ଯେତେଣେନଜିଣେବିଷ୍ଣୁ ମାୟା । ୨୩, ୨୪।

ଏମନ୍ତ ପୁତ୍ର ମୁଖୁଁ ଶୁଣି
କୋପେ ଉଠିଲେ ଶିରଧୁଣି
ଅରୁଣ ବେନି ଚକ୍ଷୁରେ
ପ୍ରଚଣ୍ଡ କମ୍ପିତ ଅଧରେ
ଗୁରୁ ପୁତ୍ରର ମୁଖ ଚାହିଁ
ବୋଲଇ କୋପଭର ହୋଇ । ୨୫।
ହେ ବ୍ରହ୍ମବନ୍ଧୁ ଗୁରୁ ସୁତ
ଏତ ତୋହର ବିପରୀତ
ବିପକ୍ଷ କଥା ପୁତ୍ର ଯେତେ
ଏହା ଶିଖାଇଲୁ କେମନ୍ତେ

ସନ୍ତି ହ୍ୟସାଧବୋ ଲୋକେ ଦୁର୍ମେଧାଶ୍ଛଦ୍ମବେଶିନଃ ।
ତେଷାମୁଦେତ୍ୟଘଂ କାଲେ ରୋଗଃ ପାତକିନାମିବ । ୨୭ ।

ଶ୍ରୀଗୁରୁପୁତ୍ର ଉବାଚ ।

ନ ମତ୍ପ୍ରଣୀତଂ ନ ପରପ୍ରଣୀତଂ ସୁତୋ ବଦତ୍ୟେଷ ତବେନ୍ଦ୍ରଶତ୍ରୋ ।
ନୈସର୍ଗିକୀୟଂ ମତିରସ୍ୟ ରାଜନ୍ ନିୟଚ୍ଛ ମନ୍ୟୁଂ କଦଦାଃସ୍ମ ମା ନଃ । ୨୮ ।

ଶ୍ରୀନାରଦ ଉବାଚ ।

ଗୁରୁଣୈବଂ ପ୍ରତିପ୍ରୋକ୍ତୋ ଭୂୟ ଆହାସୁରଃ ସୁତମ୍ ।
ନ ଚେଦ୍ଗୁରୁମୁଖୀୟଂ ତେ କୁତୋଽଭଦ୍ରାସତୀ ମତିଃ । ୨୯ ।

---

ବ୍ରହ୍ମହତ୍ୟାକାରୀ କ୍ଷୟରୋଗଗ୍ରସ୍ତ ହୁଏ କିନ୍ତୁ ତାହା ବ୍ରହ୍ମହତ୍ୟା ସମୟରେ ହୁଏ ନାହିଁ ତୁମ୍ଭମାନଙ୍କର ବନ୍ଧୁତ୍ୱ ମଧ୍ୟ ସେହିପରି । ତୁମ୍ଭମାନେ ମୋର କପଟ ବନ୍ଧୁ ତାହା ମୁଁ ବର୍ତ୍ତମାନ ବୁଝି ପାରିଅଛି । ୨୩-୨୭ ।

ଶ୍ରୀଗୁରୁପୁତ୍ର କହିଲେ;—

ହେ ଇନ୍ଦ୍ରଶତ୍ରୁ ! ଆମ୍ଭମାନଙ୍କ ପ୍ରତି ସେ ଦୋଷାରୋପ କର ନାହିଁ । ଆମ୍ଭେମାନେ ଏ ପୁତ୍ରକୁ ଏ ପ୍ରକାର ବିଷ୍ଣୁଭକ୍ତି ଶିକ୍ଷା ଦେଇନାହୁଁ ! ତାହାର ଏପରି ବିଷ୍ଣୁ ପ୍ରୀତି ସ୍ୱଭାବଗତ । ସୁତରାଂ ଆମ୍ଭମାନଙ୍କ ପ୍ରତି କ୍ରୋଧକର ନାହିଁ । ୨୮ ।

ଶ୍ରୀନାରଦ କହିଲେ—

ଗୁରୁପୁତ୍ରମାନେ ଏପରି କହନ୍ତେ ଦୈତ୍ୟରାଜ ପ୍ରହ୍ଲାଦକୁ ପୁନଶ୍ଚ କହିଲେ ରେ କୁଳାଧମ ! ଗୁରୁମାନଙ୍କଠାରୁ ଏପରି ଶିକ୍ଷା ନ ପାଇଥିଲେ ତୁ ଏପରି ଅସାଧୁମତି ହେଲୁ କିପରି ? । ୨୯

---

ଅସାଧୁ-ବିଦ୍ୟା ଶିଖାଇଲୁ
ଭୂତ ଅବଜ୍ଞା ମୋତେ କଲୁ । ୨୬।
ଅସାଧୁ ଲୋକ ଏ ସଂସାରେ
ଅଛନ୍ତି କୈତବ ବେଶରେ
ତାହାଙ୍କ ଦୋଷ ତାଙ୍କୁ ମାରେ
ରୋଗ ଯେସନେ କାଳେକରେ
ଯେ ପ୍ରାଣୀ ବ୍ରହ୍ମହତ୍ୟା କରେ
ସେ କ୍ଷୟ ରୋଗୀ ଜନ୍ମାନ୍ତରେ
ଯେ ନିତ୍ୟେ ମଦ୍ୟ ପାନ କରେ
ଢଳଃ ଦନ୍ତ ତା ଅଧରେ
ସୁବର୍ଣ୍ଣ ହରିଥାଇ ଯେବେ
କୁନଖୀ ହୋଇ ଜନ୍ମାନ୍ତରେ
ଗୁରୁ କାମିନୀ ଯେବେ ରତି
ଧବଳ ହୋଇ ମୁଖ ହସ୍ତେ । ୨୭।
ଏମନ୍ତେ ଅସୁର ବଚନେ
କହନ୍ତି ଗୁରୁଙ୍କ ନନ୍ଦନେ
ମୋ ଉପଦେଶ ଏ ନୁହଇ
ଆନ ବା ପଢାଇବେ କେହି
ତୁମ୍ଭ ପୁତ୍ରର ଏ ସ୍ୱଭାବ
ଜାଣି ତୁ ଛନ୍ତ ସମ୍ଭବ । ୨୮ ।
ଏମନ୍ତେ ଗୁରୁବାକ୍ୟ ଶୁଣି
ସଂଶୟ ବାକ୍ୟେ ସ୍ୱାରମଣି
ପୁତ୍ରକୁ ପୃଚ୍ଛି କୋପଭରେ
ବୋଲଇ ଗରୁ ତମଭରେ
ଏ ବିଦ୍ୟା ଗୁରୁବାକ୍ୟ ନୁହେଁ
କେଅବା ତୋର ମନମୋହେ ? । ୨୯

ଶ୍ରୀପ୍ରହ୍ଲାଦ ଉବାଚ ।

ମତିର୍ନକୃଷ୍ଣେ ପରତଃସ୍ୱତୋ ବା ମିଥୋଽଭିପଦ୍ୟେତ ଗୃହବ୍ରତାନାମ୍ ।
ଅଦାନ୍ତଗୋଭିର୍ବିଶତାଂ ତମିସ୍ରଂ ପୁନଃ ପୁନଶ୍ଚର୍ବିତଚର୍ବଣାନାମ୍ । ୩୦ ।
ନ ତେ ବିଦୁଃ ସ୍ୱାର୍ଥଗତିଂ ହି ବିଷ୍ଣୁଂ ଦୁରାଶୟା ଯେ ବହିରର୍ଥମାନିନଃ ।
ଅନ୍ଧା ଯଥାନ୍ଧୈରୁପନୀୟମାନାସ୍ତେଽପୀଶତନ୍ତ୍ର୍ୟାମୁରୁଦାମ୍ନି ବଦ୍ଧାଃ । ୩୧ ।
ନୈଷାଂ ମତିସ୍ତାବଦୁରୁକ୍ରମାଙ୍ଘ୍ରିଂ ସ୍ପୃଶତ୍ୟନର୍ଥାପଗମୋ ଯଦର୍ଥଃ ।
ମହୀୟସାଂ ପାଦରଜୋଽଭିଷେକଂ ନିଷ୍କିଞ୍ଚନାନାଂ ନ ବୃଣୀତ ଯାବତ୍ । ୩୨ ।

ଶ୍ରୀପ୍ରହ୍ଲାଦ କହିଲେ :—ହେ ପିତଃ । ଯେଉଁମାନେ ଗୃହାସକ୍ତହେତୁ ଅଶାନ୍ତ, ଇନ୍ଦ୍ରିୟମାନଙ୍କର ପ୍ରେରଣାରେ ଅନ୍ଧ ତମିସ୍ର ନରକରେ ପ୍ରବେଶ କରିଥାନ୍ତି ଏବଂ ସର୍ବଦା ପଶୁତୁଲ୍ୟ ଚର୍ବିତଚର୍ବଣକାରୀ, ଅତଏବ ଏପ୍ରକାର ଭୋଗ ବିଳାସରେ ମତ୍ତ, ସେହି ବିଷୟାସକ୍ତ ବ୍ୟକ୍ତିମାନେ ସ୍ୱଭାବତଃ ବା ଗୁରୁପଦେଶାଦି ଦ୍ୱାରା ମଧ୍ୟ ଶ୍ରୀକୃଷ୍ଣଙ୍କଠାରେ ମନୋନିବେଶ କରନ୍ତି ନାହିଁ । ୩୦ ।

ଗୋଟିଏ ଅନ୍ଧ ଯେପରି ଅନ୍ୟ ଏକ ଅନ୍ଧକୁ ବାଟ ଦେଖାଇବାକୁ ଗଲେ ଉଭୟ ଗାତରେ ପଡ଼ନ୍ତି, ସେହିପରି ଈଶ୍ୱରତନ୍ତ୍ରୀ ଅର୍ଥାତ୍ ଈଶ୍ୱର ପ୍ରବର୍ତ୍ତିତ ବେଦରଜ୍ଜୁ ଅର୍ଥାତ୍ କାମ୍ୟ କର୍ମ ଦ୍ୱାରା ବଦ୍ଧ ଏବଂ ବାହ୍ୟିକ ବିଷୟ ସମୂହକୁ ଯେଉଁମାନେ ପରାର୍ଥବୋଲି ମନେ କରନ୍ତି ଏପରି ଦୁରାଶାରେ ଲୋକେ ପରମାର୍ଥ ଗତି ଭଗବାନ ବିଷ୍ଣୁଙ୍କୁ ଜାଣି ପାରନ୍ତି ନାହିଁ । ୩୧ ।

ବିଷ୍ଣୁ ସର୍ବବ୍ୟାପୀ ଓ ପରମେଶ୍ୱର, ତାହାଙ୍କୁ କାହିଁକି ଲୋକେ ନ ଜାଣିବେ ଓ ତାଙ୍କୁ ନ ଜାଣି ନରକରେ ପତିତ ହେବେ ଏ ବିଷୟରେ ପ୍ରହ୍ଲାଦ କହିଲେ—ବିଷୟ ସ୍ପୃହା ଶୂନ୍ୟ, ଉଦାରଚେତା, ମହତ୍ତମ ବ୍ୟକ୍ତିମାନଙ୍କର ପାଦରେଣୁ ଦ୍ୱାରା ଅଭିଷିକ୍ତ ନ ହେବା ପର୍ଯ୍ୟନ୍ତ ସ୍ମୃତି ଶାସ୍ତ୍ରାନୁମୋଦିତ କାମ୍ୟକର୍ମ ଯଥାର୍ଥ ଭାବରେ ଅନୁଷ୍ଠାନ କଲେ ମଧ୍ୟ ମାନବର ମତି ସଂସାର ଦୁଃଖ ନାଶକ ଶ୍ରୀନାରାୟଣ ଚରଣାରବିନ୍ଦ ସ୍ପର୍ଶକରି ନ ପାରେ । ଅର୍ଥାତ୍ ବେଦ ପ୍ରଦର୍ଶିତ ସମସ୍ତ କାମ୍ୟ କର୍ମ ଅନୁଷ୍ଠାନ କଲେ ମଧ୍ୟ ସାଧୁସଙ୍ଗ ବ୍ୟତୀତ ସଂସାର କ୍ଲେଶର ଏକମାତ୍ର ମହୌଷଧ ଶ୍ରୀ ନାରାୟଣ ପାଦପଦ୍ମ ଲାଭ ହୁଏ ନାହିଁ । ସୁତରାଂ ବେଦ ପ୍ରତିପାଦ୍ୟ କାମ୍ୟ

ଶ୍ରୀପ୍ରହ୍ଲାଦ ଉବାଚ—
ଶୁଣ ହେ ତ୍ରୈଲୋକ୍ୟ ଈଶ୍ୱର ।
ମତିର ଗତି ଚକ୍ରଧର
ଯେ ପ୍ରାଣୀ ଗୃହ ବାସକରେ
ତା ମତି କୃଷ୍ଣ ନ ସୁମରେ
ଗୁରୁ ବଚନ କି କରିବ
ଯାହାର ଯେମନ୍ତ ସ୍ୱଭାବ
ଅସାଧ୍ୟ ଇନ୍ଦ୍ରିୟଙ୍କ ବଳେ,
ଗୃହସ୍ଥ ପଡ଼େ ରସାତଳେ
କୁଳ ବେଭାରେ ବଶ ହୋଇ.
ଚର୍ବିତ ଚର୍ବଣ କରଇ । ୩୦ ।

ତାହାଙ୍କ ମତି କୃଷ୍ଣଭାବେ
କେବେହେଁ ନୁହଇ ପ୍ରସ୍ତାବେ
ଯେ ପ୍ରାଣୀ ଦୁରାଶୟ ପଣେ
ଅନର୍ଥ ଅର୍ଥ ପ୍ରାୟେ ମଣେ
ସେ କାହିଁ କୃଷ୍ଣଙ୍କୁ ପାଇବ
ଯେ ବ୍ରହ୍ମା-ଶଙ୍କରେ ଦୁର୍ଲ୍ଲଭ
ଯାହାର ମତି ଅର୍ଥେ ମୋହ
ସେ ପ୍ରାଣୀ ଲଭିବ ତା କାହିଁ
ଯେହ୍ନେ ଅନ୍ଧକୁ ଅନ୍ଧ ବହେ.
ସେ ଈଶତନ୍ତ୍ରେ ଭ୍ରମେ ମୋହେ

ଏମନ୍ତ ପ୍ରାଣୀଙ୍କ ସ୍ୱଭାବ
କେମନ୍ତ କୃଷ୍ଣଙ୍କୁ ଲଭିବ । ୩୧ ।
କୃଷ୍ଣଚରଣ-ପଦ୍ମ ଛୁଇ
ଏ ଘେନି ଲଭି ନ ପାରଇ
ଯାହାର ଚରଣର ଅର୍ଥ
ଶରଣେ ଖଣ୍ଡଇ ଅନର୍ଥ
ମହତ ଚରଣର ଧୂଳି
ଉଦକ ସଙ୍ଗେ ଶିରେ ବୋଳି
ତହିଁରେ ସ୍ନାନ ନ କରଇ
ହରିଙ୍କି ଲଭିବ ସେ କାହିଁ । ୩୨ ।

ଇତ୍ୟୁକ୍ତ୍ୱୋପରତଂ ପୁତ୍ରଂ ହିରଣ୍ୟକଶିପୂ ରୁଷା ।
ଅନ୍ଧୀକୃତାତ୍ମା ସ୍ୱୋତ୍ସଙ୍ଗାନ୍ନିରସ୍ୟତ ମହୀତଳେ । ୩୩ ।
ଆହାମର୍ଷରୁଷାବିଷ୍ଟଃ କଷାୟୀଭୂତଲୋଚନଃ ।
ବଧ୍ୟତାମାଶ୍ୱୟଂ ବଧ୍ୟୋ ନିଃସାରୟତ ନୈରୃତାଃ । ୩୪ ।
ଅୟଂ ମେ ଭ୍ରାତୃହା ସୋଽୟଂ ହିତ୍ୱା ସ୍ୱାନ୍ ସୁହୃଦୋଽଧମଃ ।
ପିତୃବ୍ୟହନ୍ତୁଃ ପାଦୌ ଯୋ ବିଷ୍ଣୋର୍ଦାସବଦର୍ଚ୍ଚତି । ୩୫ ।
ବିଷ୍ଣୋର୍ବା ସାଧ୍ୱସୌ କିନ୍ନୁ କରିଷ୍ୟତ୍ୟସମଞ୍ଜସଃ ।
ସୌହୃଦଂ ଦୁସ୍ତ୍ୟଜଂ ପିତ୍ରୋରହାଦ୍ୟଃ ପଞ୍ଚହାୟନଃ । ୩୬ ।

---

ଧର୍ମ ସୁକ୍ଷ୍ମ ଉପଦେଶରେ ଅବଗତ ହେଲେ ମଧ୍ୟ ସେ କୃଷ୍ଣ ଚରଣ ରୂପ ନୌକାରେ ପରପାରକୁ ଯିବାର ଏକମାତ୍ର ଉପାୟ ସାଧୁସଙ୍ଗ । ୩୨ ।

ପ୍ରହ୍ଲାଦ ଏହିପରି ନାନାପ୍ରକାର କଥା କହି ନିରସ୍ତ ହୁଅନ୍ତେ ଦୈତ୍ୟରାଜ ହିରଣ୍ୟକଶିପୁ ପ୍ରଚଣ୍ଡ କ୍ରୋଧାନ୍ୱିତ ହୋଇ ପୁତ୍ରକୁ କୋଳରୁ ଭୂମିତଳେ ନିକ୍ଷେପ କରିଥିଲେ ଏବଂ ରାକ୍ଷସଗଣଙ୍କୁ ଆଦେଶ ଦେଲେ ଏହି ପାପାତ୍ମା ଦୁର୍ମତିକୁ ଶୀଘ୍ର ଅନ୍ୟତ୍ର ନେଇ ବଧ କର । ୩୩,୩୪ ।

ଏ ପାପାତ୍ମା ବାଳକହିଁ ମୋର ଭ୍ରାତୃହନ୍ତା, କାରଣ ଏହି ବାଳକ ପିତାମାତା ପ୍ରଭୃତି ଆତ୍ମୀୟ ମାନଙ୍କୁ ପରିତ୍ୟାଗ କରି ମୋର ଭ୍ରାତା ହିରଣ୍ୟାକ୍ଷ ନିଧନକାରୀ ବିଷ୍ଣୁଙ୍କର ଭୃତ୍ୟ ତୁଲ୍ୟ ପାଦସେବା କରୁଅଛି । ସେ ପାଞ୍ଚବର୍ଷ ବୟସର ଶିଶୁ । ଯେଉଁ ପାଞ୍ଚବର୍ଷର ଶିଶୁ ପିତାମାତାଙ୍କର ମମତା ପରିତ୍ୟାଗ କରିପାରେ, ସେହି କୃତଘ୍ନ ଦୁର୍ବିନୀତ ବାଳକର ବିଷ୍ଣୁ କି ଉପକାର କରିବ ଦେଖିବ । ୩୫,୩୬ ।

---

ଏମନ୍ତ କହି ତାର ବଳା
ଅନ୍ତରେ ମଉନେ ରହିଲା
ଶୁଣି ଅସୁର କୋପାନଳେ
କୋଳରୁ ପକାଇଲା ତଳେ
କୋପେ ଅରୁଣ-ଚକ୍ଷୁ କରି
ଅସୁରଗଣେ ଆଜ୍ଞା ଦେଲା
ଶୁଣ ହେ ନଇଋତଗଣ
ଦେଖ ମୋ ପୁତ୍ର ଦୁଷ୍ଟ ପଣ
ମରଣ ଅର୍ହିଲା ବେଗରେ
ଏହାକୁ ବର୍ଜ୍ଜୁ କର ଦୂରେ । ୩୩,୩୪

ମୋର ଅନୁଜ ନାଶକର
ସେ ବିଷ୍ଣୁ ମୋହର ବଇରୀ
ତାହାର ପକ୍ଷ ଏ ଧଇଲା
ନିଜ ସୁହୃଦ ଉପେକ୍ଷିଲା
ବିଷ୍ଣୁର ଦାସଭାବ ବହି
କେ ପ୍ରାଣ ଆଉ ଏହା ସହି । ୩୫
ବିଷ୍ଣୁର ଆଶ୍ରେ ମୋହର
ନିଶ୍ଚେ କରିବ ଅପକାର
ପିତା ସୁହୃଦ ପୁତ୍ରଙ୍କର
ଦୁସ୍ତ୍ୟଜ୍ୟ ଏ ଶାସ୍ତ୍ର ବେଭାର

ପରର ପୁତ୍ର ହୋଇ ଯେବେ
ଆପଣା ହିତ ଅନୁଭବେ
ତାହାକୁ ଜାଣି ନିଜ ସୁତ
ରୋଗକୁ ଔଷଧ ଯେମନ୍ତ
ଆପଣା ତନୁଁ ଜାତ ହୋଇ
ପରର ହିତେ ଯେବେ ଥାଇ
ବ୍ୟାଧିର ପ୍ରାୟ ଗତ ତାର
ସେ ମଲେ ଆତ୍ମାର ନିସ୍ତାର
ଯେ ହିତ କରେ ପର ହୋଇ
ତା ତନୁଁ ଆଉ ବନ୍ଧୁ କାହିଁ

ପରୋଽପ୍ୟପତ୍ୟଂ ହିତକୃଦ୍ୟଥୌଷଧଂ ସ୍ୱଦେହଜୋଽପ୍ୟାମୟବତ୍ ସୁତୋଽହିତଃ ।
ଛିନ୍ଦ୍ୟାତ୍ତଦଙ୍ଗଂ ଯଦୁତାତ୍ମନୋଽହିତଂ ଶେଷଂ ସୁଖଂ ଜୀବତି ଯଦ୍ୱିବର୍ଜନାତ୍ ।୩୭।
ସର୍ବୈରୁପାୟୈର୍ହନ୍ତବ୍ୟଃ ସମ୍ଭୋଜଶୟନାସନୈଃ ।
ସୁହୃଲ୍ଲିଙ୍ଗଧରଃ ଶତ୍ରୁର୍ମୁନେର୍ଦୁଷ୍ଟମିବେନ୍ଦ୍ରିୟମ୍ ।୩୮।
ନୈର୍ଋତାସ୍ତେ ସମାଦିଷ୍ଟା ଭର୍ତ୍ରା ବୈ ଶୂଳପାଣୟଃ ।
ତିଗ୍ମଦଂଷ୍ଟ୍ରକରାଳାସ୍ୟାସ୍ତାମ୍ରଶ୍ମଶ୍ରୁଶିରୋରୁହାଃ ।୩୯।
ନଦନ୍ତୋ ଭୈରବଂ ନାଦଂ ଛିନ୍ଧି ଭିନ୍ଧୀତିବାଦିନଃ ।
ଆସୀନଞ୍ଚାହନନ୍ ଶୂଳୈଃ ପ୍ରହ୍ଲାଦଂ ସର୍ବମର୍ମସୁ ।୪୦।

---

ଯେପରି ଔଷଧ ବନମଧ୍ୟରେ ଉତ୍ପନ୍ନ ହେଲେ ମଧ୍ୟ ତାହା ହିତକର, ସେହିପରି ଅନ୍ୟବ୍ୟକ୍ତି ହିତାନୁଷ୍ଠାନ କଲେ ପୁତ୍ରବତ୍ ପ୍ରତିପାଳ୍ୟ । ପୁଣି ନିଜର ଔରସଜାତ ପୁତ୍ର ଅପକାରୀ ହେଲେ ସେ ରୋଗ ତୁଲ୍ୟ ପରିତ୍ୟାଜ୍ୟ । ଯେପରି ନିଜର କୌଣସି ଅଙ୍ଗରେ ଦୁଷ୍ଟବ୍ରଣ ହୋଇ ବିଷାକ୍ତ ହେଲେ ତାହାକୁ ଅତି ଯତ୍ନ ପୂର୍ବକ ପରିତ୍ୟାଗ କରିବ କାରଣ ତଦ୍ଦ୍ୱାରା ଅବଶିଷ୍ଟ ଅଙ୍ଗ ଅସୁସ୍ଥ ହେବ । ୩୭।

ଦୁଷ୍ଟ ଇନ୍ଦ୍ରିୟ ଯେପରି ମୁନିମାନଙ୍କର ଶତ୍ରୁ, ସେହିପରି ମିତ୍ର ଚିହ୍ନଧାରୀ ପୁତ୍ର ପ୍ରହ୍ଲାଦ ମୋର ପରମ ଶତ୍ରୁ । ସୁତରାଂ ବିଷପ୍ରୟୋଗ କରି ଖଡ୍ଗଘାତ କରି ବା ଅସ୍ତ୍ର ପ୍ରହାର କରି ଯେ କୌଣସି ଉପାୟରେ ହେଉ ପଛକେ ତାହାକୁ ବଧ କରିବା ଉଚିତ । ରାକ୍ଷସ ଘାତକଗଣ ହିରଣ୍ୟକଶ୍ୟପୁଙ୍କର ଏପରି ଆଦେଶ ପାଇଁ ଶୂଳ ହସ୍ତରେ ପ୍ରହ୍ଲାଦ ଉପରକୁ ଧାବିତ ହେଲେ । ତାମ୍ରବର୍ଣ୍ଣ ଶ୍ମଶ୍ରୁ ଓ କେଶ ବିଶିଷ୍ଟ ରାକ୍ଷସମାନେ ତୀକ୍ଷ୍ଣ ଦନ୍ତ ବିକାଶ କରି ଓ ମୁଖ ବ୍ୟାଦାନ କରି, ବଧକର, ଛେଦନକର ଇତ୍ୟାଦି ଭୀଷଣ ଶବ୍ଦକରି ଉପବିଷ୍ଟ ପ୍ରହ୍ଲାଦର ମର୍ମସ୍ଥାନରେ ଶୂଳ ପ୍ରହାର କରିଥିଲେ । ୩୯,୪୦ ।

---

ଅହିତ କରେ ବନ୍ଧୁ ଯେବେ
ତାକୁ ଲେଖିବ ଶତ୍ରୁ ଭାବେ
ଯେ ଅଙ୍ଗେ ସର୍ପଘାତ କରେ
ସେ ଅଙ୍ଗ ଦୋଷେ ପ୍ରାଣୀ ମରେ,
ସେ ଅଙ୍ଗ ଛେଦି ପକାଇଲେ
ଦେହେ ଜୀବନ ରହେ ଭଲେ
ଦେହରୁ ବ୍ୟାଧି ଜନ୍ମ ହୋଇ
ଆତ୍ମାର ହିତ ସେ ନୁହଇ
ଅରଣ୍ୟ ଅଉଷଧ ଆଣି
ରୋଗସଙ୍କଟୁ ତରେ ପ୍ରାଣୀ ।୩୬,୩୭
ପର ଅପର ଯେ ବିଚାର
କେ ରିପୁ କେବା ଆପଣାର

ସୁହୃଦ ହୋଇ ରିପୁଗଣେ
ଯେ ପାପ ଚିନ୍ତେ ଅନୁକ୍ଷଣେ
ନାନା ଉପାୟେ ତାକୁ ମାରି
ସେ ମଲେ ସୁଖେ ପ୍ରାଣ ଧରି-
ଯୋଗୀଙ୍କ ଯୋଗ ସାଧି କାଳେ
ଦୁଷ୍ଟ ଇନ୍ଦ୍ରିୟ ଯେବେ ବଳେ
ତାହାକୁ ଯେବେ କରେ ସାଧି
ତେବେ ଲଭଇ ବ୍ରହ୍ମପଦ ।୩୮।
ଏମନ୍ତେ ରାଜା ଆଜ୍ଞା ପାଇ
ଅସୁରେ ଶସ୍ତ୍ରଘେନି ଧାଇଁ
ବାଳକ ନାଶ ମନେ ଚିନ୍ତି
ଶୂଳ ଅନ୍ତରୀକ୍ଷେ ବୁଲନ୍ତି

ସୁତୀକ୍ଷ୍ଣ ଦିଶେ ଦନ୍ତ-ପନ୍ତି
କରାଳ ବଦନେ ରହାନ୍ତି
ତମ୍ବାର ପ୍ରାୟେ ଦିଶେ ଦାଢ଼ି
ଶିରେ କପିଳ ଜଟା ବେଢ଼ି
ନାଚନ୍ତି ଭଇରବ ନାଦେ
ଡାକନ୍ତି କିଲିକିଳା ନାଦେ
ଶୂଳ ବୁଲାଇ ମହାଘୋରେ
ପିଟିଲେ ବାଳକ ଉପରେ ।୩୯,୪୦

ପରେ ବ୍ରହ୍ମଣ୍ୟନିର୍ଦ୍ଦେଶ୍ୟେ ଭଗବତ୍ୟଖିଳାତ୍ମନି ।
ଯୁକ୍ତାତ୍ମନ୍ୟଫଳା ଆସନ୍ନପୁଣ୍ୟସ୍ୟେବ ସତ୍କ୍ରିୟାଃ । ୪୧ ।
ପ୍ରୟାସେଽପହତେ ତସ୍ମିନ୍ ଦୈତ୍ୟେନ୍ଦ୍ରଃ ପରିଶଙ୍କିତଃ ।
ଚକାର ତଦ୍ବଧୋପାୟାନ୍ ନିର୍ବନ୍ଧେନ ଯୁଧିଷ୍ଠିର । ୪୨ ।
ଦିଗ୍ଗଜୈର୍ଦନ୍ଦଶୂକେନ୍ଦ୍ରୈରଭିଚାରାବପାତନୈଃ ।
ମାୟାଭିଃ ସନ୍ନିରୋଧୈଶ୍ଚ ଗରଦାନୈରଭୋଜନୈଃ । ୪୩ ।

ବାକ୍ୟାଦିର ଅଗୋଚର, ଅତ୍ୟନ୍ତ ଐଶ୍ୱର୍ଯ୍ୟଶାଳୀ, ନିର୍ବିକାର ଭଗବାନ ପରମେଶ୍ୱରଙ୍କ ଠାରେ ପ୍ରହ୍ଲାଦ ଚିତ୍ତ ସମର୍ପଣ କରିଥିଲେ । ତେଣୁ ରାକ୍ଷସମାନଙ୍କର ପ୍ରହାରାଦି ପୁଣ୍ୟହୀନ ବ୍ୟକ୍ତି ସତ୍କ୍ରିୟା କଲାପରି ବ୍ୟର୍ଥ ହେଲା । ୪୧ ।



ପ୍ରହ୍ଲାଦଙ୍କୁ ବଧ କରିବା ଚେଷ୍ଟା ।

ହେ ମହାରାଜ ! ପ୍ରହ୍ଲାଦଙ୍କୁ ବଧ କରିବା ଲାଗି ସର୍ବପ୍ରକାର ଉଦ୍ୟମ ନଷ୍ଟ ହେବାର ଦେଖି ଶଙ୍କିତ ଦୈତ୍ୟରାଜ ସାଗ୍ରହରେ ଅନ୍ୟ ଉପାୟ ଅବଲମ୍ବନ କରିଥିଲା । ୪୨ ।

ଦନ୍ତୀ ହସ୍ତୀ ଦ୍ୱାରା ତାହାଙ୍କୁ ଦଳନ, ଭୀଷଣ ସର୍ପ ଦଂଶନ, ଅଭିଚାର ଅର୍ଥାତ୍ ପର୍ବତ ଶୃଙ୍ଗରୁ ଅଧଃ ପାତନ, ବାୟୁଶୂନ୍ୟ ସ୍ଥାନରେ ସ୍ଥାପନ, ବିଷ ପ୍ରୟୋଗ, ଅନଶନ, ଶୀତ, ବାୟୁ, ଅଗ୍ନି ଓ ଜଳରେ ନିକ୍ଷେପ, ପର୍ବତୋପରି ଆଘାତ ଇତ୍ୟାଦି

ତା ଦେଖି ଅସୁର କୁମର
ମନେ ଚିନ୍ତିଲା ଚକ୍ରଧର
ଗୋବିନ୍ଦପାଦେ ଚିତ୍ତ ଦେଇ
ବୋଲଇ ଅସୁରଙ୍କୁ ଚାହିଁ
ତୁମ୍ଭର ଦେହେ ଯେବେ ହରି
ଆତ୍ମା ସ୍ୱରୂପେ ଛନ୍ତି ପୂରି
ସକଳ ଶାସ୍ତ୍ରେ ହରି ଯେବେ
ଘଟେ ଅଛନ୍ତି ଆତ୍ମାଭାବେ
ଏ କଥା ସତ୍ୟ ଯେବେ ହୋଏ
ଶସ୍ତ୍ର ନ କାଟୁ ମୋର ଦେହେ
ଶୁଣି ଅସୁର କୋପଭରେ
ଅନେକ ଶସ୍ତ୍ର ପ୍ରହାରିଲେ
ପ୍ରହ୍ଲାଦର ଦେହେ ବାଜି
ସକଳ ଶସ୍ତ୍ରେ ଗଲେ ଭାଜି
ଅପୁଣ୍ୟବନ୍ତ ପ୍ରାଣିଦେହେ
ଯେସନ୍ତେ ସୁକୃତ ଫଳ ନୋହେ ।୪୧
ଅଦ୍ଭୁତ କର୍ମ ତାର ଦେଖି
ଅସୁର ଆସନ ଉପେକ୍ଷି
ଭିତରେ ପଶିଲା ଅସୁର
ଭୟେ କମ୍ପିଲା ତା ଶରୀର
ମନ୍ତ୍ରିର ସଙ୍ଗେ ବିଚାରିଲା
ନିର୍ବନ୍ଧେ ମରଣ ଚିନ୍ତିଲା । ୪୨ ।
ଅଇରାବତ ଆଦି ନାଗେ
ତାହାଙ୍କୁ ଅଣାଇଲା ବେଗେ
ବୋଇଲା ଦନ୍ତଘାତ କରି
ଯେମନ୍ତେ ମରେ ଏ କୁମର
ଶୁଣି ଅନେକ ହସ୍ତିଭୁଲେ
ବାଳକ ସମୀପେ ମିଳିଲେ
ହସ୍ତିଙ୍କ ଚାହିଁ ଦୈତ୍ୟବଳା
ଅନ୍ତରେ କୃଷ୍ଣ ସୁମରିଲା

**ହିମବାଯ୍ୱଗ୍ନିସଲିଲୈଃ ପର୍ବତାକ୍ରମଣୈରପି-**
**ନ ଶଶାକ ଯଦା ହନ୍ତୁମପାପମସୁରଃ ସୁତମ୍ ।**
**ଚିନ୍ତାଂ ଦୀର୍ଘତମାଂ ପ୍ରାପ୍ତସ୍ତତ୍କର୍ତ୍ତୁଂ ନାଭ୍ୟପଦ୍ୟତ ।୪୪।**
**ଏଷ ମେ ବହ୍ୱସାଧୂକ୍ତୋ ବଧୋପାୟାଶ୍ଚ ନିର୍ମିତାଃ ।**
**ତୈସ୍ତୈର୍ଦ୍ରୋହୈରସଦ୍ଧର୍ମୈର୍ମୁକ୍ତଃ ସ୍ୱେନୈବ ତେଜସା ।୪୫।**
**ବର୍ତ୍ତମାନୋଽବଦୂରେ ବୈ ବାଲୋଽପ୍ୟଜଡ଼ଧୀରୟମ୍ ।**
**ନ ବିସ୍ମରତି ମେଽନାର୍ଯ୍ୟଂ ଶୁନଃଶେପ ଇବ ପ୍ରଭୁଃ ।୪୬।**

---

ନାନାପ୍ରକାର ମରଣ ସୂଚକ କାର୍ଯ୍ୟ ଦ୍ୱାରା ନିଜର ନିଷ୍ପାପ ପୁତ୍ର ପ୍ରହ୍ଲାଦକୁ ବଧ କରି ନ ପାରି ଦୈତ୍ୟରାଜ ଚିନ୍ତାସାଗରରେ ନିମଗ୍ନ ହେଲେ ଏବଂ ଅନ୍ୟ କୌଣସି ଉପାୟ ସ୍ଥିର କରି ପାରିଲେ ନାହିଁ । ୪୩,୪୪ ।

ଏହି ବାଳକ ପ୍ରହ୍ଲାଦକୁ ବହୁ ଅକଥ୍ୟ ବାକ୍ୟ ପ୍ରୟୋଗ କଲି, ବହୁ ଅସଦୁପାୟରେ ତାହାର ବଧ ସାଧନ ଚେଷ୍ଟା କଲି କିନ୍ତୁ ସେ ନିଜ ତେଜରେ ଅବ୍ୟାହତ ରହିଲା । ୪୫ ।

ମୋର ଅନତିଦୂରରେ ଅବସ୍ଥାନ କରି ଏବଂ ବାଳକ ହେଲେ ମଧ୍ୟ ସେ ନିର୍ଭୟ ଚିତ୍ତ ଶୁନଃ ଶେଫ ଯେପରି ପିତାମାତାଙ୍କର ଅନାର୍ଯ୍ୟ ବ୍ୟବହାର ବିସ୍ମୃତ ହୋଇ ନ ଥିଲା ସେହିପରି ଏ ବାଳକ ମୋର ଅନାର୍ଯ୍ୟ ବ୍ୟବହାର ବିସ୍ମୃତ ହେବ ନାହିଁ । ଏହି ଶ୍ଳୋକରେ ଶୁନଃ ଶେଫ ପ୍ରସଙ୍ଗ ଉଲ୍ଲେଖ କରାଯାଇଅଛି । ଅଗୃଗର୍ତ୍ତ ଓ ତାହାଙ୍କର ପତ୍ନୀ ଧନ ଲୋଭରେ ସେମାନଙ୍କର ମଧ୍ୟମପୁତ୍ର ଶୁନଃ ଶେଫକୁ ନରଯଜ୍ଞର ବଳି ପଶୁରୂପେ ବିକ୍ରୟ କରିଥିଲେ । ସେ ବିଶ୍ୱାମିତ୍ରଙ୍କର ଶରଣାପନ୍ନ ହୋଇ ରକ୍ଷା ପାଇଥିଲା ଏବଂ ପିତା ମାତାଙ୍କ ଦୁର୍ବ୍ୟବହାର ହେତୁ ସେମାନଙ୍କ ନିକଟକୁ ଆଉ ଫେରିଲା ନାହିଁ । ୪୬ ।

---

ଗଜେ ପଡ଼ିଲେ ଭୂମିଗତେ
ନିଷ୍ଠୁର ଦନ୍ତର ଅଗ୍ରତେ
ନିର୍ଘାତେ କରନ୍ତେ ପ୍ରହାର
ସକଳ ଦନ୍ତେ ହେଲେ ଚୂର
ଭୟେ ଭାଙ୍ଗିଲେ ହସ୍ତିବଳ
ଦେଖି ଅସୁର କୋପାନଳ
ତକ୍ଷକ ଆଦି ଅଷ୍ଟନାଗେ
ଥିଲେ ଯେ ଅନ୍ତରୀକ୍ଷ ମାର୍ଗେ
ତାହାଙ୍କୁ ଆଣି ନୃପବର
ବୋଇଲେ ନିଷ୍ଠୁର ଉତ୍ତର
ଏ କୁଳାଙ୍ଗାର ମୋ କୁମର
ଏହାର ପ୍ରାଣ ବେଗେ ହର
ନାଗଙ୍କୁ ଦେଖି ପ୍ରହଲାଦ
ଚିତ୍ତେ ଚିନ୍ତିଲା କୃଷ୍ଣପାଦ

ତକ୍ଷଣେ କୋପେ ନାଗବଳେ
ବାଳକ ଶରୀରେ ଦଂଶିଲେ
ତକ୍ଷଣେ ଦଶନ ଛିଡ଼ିଲା
ନାଗଙ୍କ ଫଣା ଚୂର ହେଲା
ନାଗେ ପଳାଇ ଗଲେ ବେଗେ
ଜୀବନ ଭୟେ ଦଶଦିଗେ
ପୁଣି କୃତ୍ୟାଗ୍ନି ହୋମ କଲା
ପର୍ବତ ଶିଖେ କରି ଦିଲା
ଶବର ହସ୍ତେ ମାୟା କଲା
କେବେହେଁ ପ୍ରାଣ ତା ନ ଗଲା
ବନ୍ଧନ କରି ହସ୍ତ ପାଦ
ମେଲିଲା ସମୁଦ୍ର ଅଗାଧ
ଗରଳ ଦେଲା ଜଳ ପାନେ
କେତେହେଁ ଦିନ ଅଭୋଜନେ

ହିମ ଶୀତଳ ତାପଜଳେ
ପର୍ବତ ଗୁପି କୋପାନଳେ
ନାନା ପ୍ରକାରେ ଦୁଃଖ ଦେଲା
କେବେହେଁ ବାଳକ ନ ମଲା
ସ୍ୱଭାବେ ପାପ ତାର ନାହିଁ
ଦଣ୍ଡ ବାଧିବ ତାକୁ କାହିଁ
କେବେହେଁ ମାରି ନ ପାରିଲା
ଚିନ୍ତା-ସାଗରେ ନିମଗ୍ନିଲା ।୪୩,୪୪
ଦେଖ ଏ ବାଳକ ବିଷୟେ
କେତେ ନ ଚିନ୍ତିଲି ଉପାୟେ
ଶତ୍ରୁର ପ୍ରାୟେ ପଛେ ଥାନ୍ତେ
କେବେହେଁ ନ ଡରଇ ଚିତ୍ତେ
କିଷଣ କରି ଯେତେ ମୁହିଁ
କିଛି ଏହାର ହେଲା ନାହିଁ

ଅପ୍ରମେୟାନୁଭାବୋଽୟମକୁତଶ୍ଚିଦ୍‌ଭୟୋଽମରଃ ।
ନନମେତଦ୍ ବିରୋଧେନ ମୃତ୍ୟୁର୍ମେ ଭବିତା ନ ବା । ୪୭ ।
ଇତି ତଚ୍ଚିନ୍ତୟା କିଞ୍ଚିନ୍ମ୍ଲାନଶ୍ରିୟମଧୋମୁଖମ୍ ।
ଶଣ୍ଡାମର୍କାବୌଶନସୌ ବିବିକ୍ତ ଇତି ହୋଚତୁଃ । ୪୮ ।
ଜିତଂ ତ୍ୱୟୈକେନ ଜଗତ୍ତ୍ରୟଂ ଭ୍ରୁବୋର୍ବିଜୃମ୍ଭଣତ୍ରସ୍ତସମସ୍ତଧିଷ୍ଣ୍ୟପମ୍ ।
ନ ତସ୍ୟ ଚିନ୍ତ୍ୟଂ ତବ ନାଥ ଚକ୍ଷ୍ମହେ ନ ବୈ ଶିଶୂନାଂ ଗୁଣଦୋଷୟୋଃ ପଦମ୍ ।୪୯
ଇମଂ ତୁ ପାଶୈର୍ବରୁଣସ୍ୟ ବଦ୍ଧ୍ୱା ନିଧେହି ଭୀତୋ ନ ପଲାୟତେ ଯଥା ।
ବୁଦ୍ଧିଶ୍ଚ ପୁଂସୋ ବୟସାର୍ଯ୍ୟସେବୟା ଯାବଦ୍‌ଗୁରୁର୍ଭାର୍ଗବ ଆଗମିଷ୍ୟତି ।୫୦।

---

ଏହି ଅସୀମ ବୁଦ୍ଧିସମ୍ପନ୍ନ ନିର୍ଭୀକ ଅମର ବାଳକ ପ୍ରତି ବିରୋଧାଚରଣ କରି ନିଶ୍ଚୟ ମୋର ମୃତ୍ୟୁ ଘଟିବ ଏହିପରି ଚିନ୍ତାକ୍ଳିଷ୍ଟ ହୋଇ ଦୈତ୍ୟରାଜ ଅଧୋମୁଖରେ ଉପବିଷ୍ଟ ହେଲେ । ଶୁକ୍ରାଚାର୍ଯ୍ୟଙ୍କର ପୁତ୍ର ଷଣ୍ଡ ଓ ଅମର୍କ ତାହାଙ୍କୁ ଏପରି ଅବସ୍ଥାନ କରୁଥିବାର ଦେଖି ନିର୍ଜ୍ଜନରେ ଏହିପରି ପରାମର୍ଶ ଦେଲେ।୪୭,୪୮

ହେ ପ୍ରଭୋ ! ଆପଣଙ୍କର ଭ୍ରୂଭଙ୍ଗୀ ଦର୍ଶନ କରି ସମସ୍ତ ଲୋକପାଳମାନେ ଭୀତ । ଆପଣ ନିଜ ବାହୁବଳରେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ସମସ୍ତ ଏକାକୀ ଜୟ କରିଅଛନ୍ତି । ଆପଣ ଚିନ୍ତା କରୁଅଛନ୍ତି କାହିଁକି ? ଶିଶୁଚରିତ୍ରର ଦୋଷଗୁଣ ବିଚାର୍ଯ୍ୟର ବିଷୟ ନୁହେଁ । ୪୯ ।

ହେ ଦୈତ୍ୟବର ! ଆମ୍ଭମାନଙ୍କର ପିତା ଶୁକ୍ରାଚାର୍ଯ୍ୟ ଉପସ୍ଥିତ ହେବା ପର୍ଯ୍ୟନ୍ତ ଆପଣ ଏ ବାଳକକୁ ବରୁଣ ପାଶରେ ବନ୍ଧନ କରି ରଖନ୍ତୁ ଯେପରି ସେ ଭୟରେ ପଳାୟନ କରି ନ ପାରେ । ପୁରୁଷର ବୁଦ୍ଧି ବୟସ ଓ ସତ୍‌ସଙ୍ଗଦ୍ୱାରା ସ୍ଥିର ହୁଏ । ପ୍ରହ୍ଲାଦ ଏକେ ବାଳକ, ଦ୍ୱିତୀୟରେ ସେ ସତ୍‌ସଙ୍ଗ ଲାଭ କରି ନାହିଁ ସୁତରାଂ ତାହାର ବୁଦ୍ଧି ବିପର୍ଯ୍ୟୟ ଘଟିବା ଆଶ୍ଚର୍ଯ୍ୟ ନୁହେଁ । ୫୦ ।

---

ଶୁନଃଶେଫର ପ୍ରାୟେ ରହେ
କି ଆଉ କରିବି ଉପାୟେ ।୪୫,୪୬
ସାଧୁ ବିଷୟେ ଦ୍ରୋହ କଲେ
କେବା ସଂସାରେ ଥିବ ଭଲେ
ମହତ୍ତ୍ୱ ଏ କୁମର
ମନ ବଚନେ ଅଗୋଚର
ନିର୍ଭୟେ ଏତେ ଦୁଃଖ ସହେ
ଏଣୁ ମୋ ଚିତ୍ତେ ମହାଭୟେ
ଏହାର ଭୂଲେ ବାଦ କଲେ
ପ୍ରାଣ ମୁଁ ନ ପାଇବି ଭଲେ ।୪୭
ଏମନ୍ତ ଭାଳି ମନ ଦୁଃଖେ
ଦୈତ୍ୟ ରହିଲା ଅଧୋମୁଖେ

ଗୁରୁ କୁମର ତାହା ଶୁଣି
ଅସୁର ମୁଖ ଚାହିଁ ଭଣି । ୪୮ ।
ଶୁଣ ହେ ନୃପଶିରୋମଣି
ତପେ ତୁ ତ୍ରିଭୁବନ ଜିଣି
ଆମ୍ଭର ସୁଖେ ଭୋଗ କରୁ
ଯେସନେ ଅଚଳ ମହାମେରୁ
ତୋହର ଶତ୍ରୁ ଏ ସଂସାରେ
ନ ଦେଖି ସଂସାର ଭିତରେ
ବାଳକ କୁମର ତୋହର
ଏହାକୁ କପାଁ ତୋର ଡର
ବାଳକ ଗୁଣ-ଦୋଷ ନାହିଁ
ସଂଶୟ କରୁ କାହିଁ ପାଇଁ ।୪୯।

ଯେବେ ସଂଶୟ ତୋର ମନେ
କହିବା ଶୁଣ ସାବଧାନେ
ଏହାକୁ ବରୁଣର ପାଶେ
ବନ୍ଧନ କରି ତୁ ବିଶ୍ୱାସେ
ନିକଟେ ରଖ ତୋ ଆୟତ୍ତେ
ଭୟେ ଭାଜିବା ପରଯନ୍ତେ
ବାଳକ ଦଶା ଏ ଛାଡ଼ିଲେ
ସୁବୁଦ୍ଧି ପ୍ରକାଶିବ ଭଲେ
ବ୍ରହ୍ମାର ପୁତ୍ର ଆମ୍ଭ ତାତ
ତୋ ପାଶେ ନ ଆସେ ଯାବତ
ତାବତ ଥାଉ ଏ ଆୟତ୍ତେ
ସଂଶୟ ନ କର ତୁ ଚିତ୍ତେ ।୫୦।

ଅଥୈତ ଗୁରୁପୁତ୍ରୋକ୍ତମନୁଜ୍ଞାପ୍ୟେଦମବ୍ରବୀତ୍ ।
ଧର୍ମୋ ହ୍ୟସ୍ୟୋପଦେଷ୍ଟବ୍ୟୋ ରାଜ୍ଞାଂ ଯୋ ଗୃହମେଧିନାମ୍ । ୫୧ ।
ଧର୍ମମର୍ଥଞ୍ଚ କାମଞ୍ଚ ନିତରାଂଞ୍ଚାନୁପୂର୍ବଶଃ ।
ପ୍ରହ୍ଲାଦାୟୋଚତୂ ରାଜନ୍ ପ୍ରଶ୍ରିତାବନତାୟ ଚ । ୫୨ ।
ଯଥା ତ୍ରିବର୍ଗଂ ଗୁରୁଭିରାତ୍ମନେ ଉପଶିକ୍ଷିତମ୍ ।
ନ ସାଧୁ ମେନେ ତଚ୍ଛିକ୍ଷାଂ ଦ୍ୱନ୍ଦ୍ୱାରାମୋପବର୍ଣ୍ଣିତାମ୍ । ୫୩ ।
ଯଦାଚାର୍ଯ୍ୟଃ ପରାବୃତ୍ତୋ ଗୃହମେଧୀୟକର୍ମସୁ ।
ବୟସ୍ୟୈର୍ବାଳକୈସ୍ତତ୍ର ସୋପହୂତଃ କୃତକ୍ଷଣୈଃ । ୫୪ ।
ଅଥ ତାନ୍ ଶ୍ଲକ୍ଷ୍ଣୟା ବାଚା ପ୍ରତ୍ୟାହୂୟ ମହାବୁଧଃ ।
ଉବାଚ ବିଦ୍ୱାଂସ୍ତନ୍ନିଷ୍ଠାଂ କୃପୟା ପ୍ରହସନ୍ନିବ । ୫୫ ।

---

ହିରଣ୍ୟକଶିପୁ ଗୁରୁପୁତ୍ରମାନଙ୍କ ବାକ୍ୟ ଶ୍ରବଣ କରି ଆନନ୍ଦିତ ହୋଇ ଏବଂ ପ୍ରହ୍ଲାଦଙ୍କୁ ଗୃହସ୍ଥାଶ୍ରମୀ ରାଜାମାନଙ୍କର ଉପଯୁକ୍ତ ଧର୍ମ ସମ୍ବନ୍ଧେ ଉପଦେଶ ଦେଇଥିଲି । ୫୧ ।

ହେ ମହାରାଜ ଯୁଧିଷ୍ଠିର ! ତଦନନ୍ତର ଆଜ୍ଞାବହ, ବିନୀତ ପ୍ରହ୍ଲାଦଙ୍କୁ ଗୁରୁପୁତ୍ର ଦୁହେଁ ଧର୍ମ, ଅର୍ଥ, କାମ ସମ୍ବନ୍ଧେ ଉପଦେଶ ଦେଇଥିଲେ । ୫୨ ।

ଗୁରୁପୁତ୍ର ଷଣ୍ଡାମର୍କ ଉତ୍ତମରୂପେ ଧର୍ମ, ଅର୍ଥ, କାମ ବିଷୟକ ଶିକ୍ଷା ପ୍ରଦାନ କରି ଥିଲେ ମଧ୍ୟ ଯହିଁରେ ରାଗ ଦ୍ୱେଷାଦି ବିଷୟ ଉତ୍ତମରୂପେ ବର୍ଣ୍ଣିତ ତାହାକୁ ପ୍ରହ୍ଲାଦ ଉତ୍ତମ ଶିକ୍ଷା ବୋଲି ମନେ କଲି ନାହିଁ । ୫୩ ।

ଗୁରୁପୁତ୍ରମାନେ ଯେତେବେଳେ ଗୃହକର୍ମାଦି ସମ୍ପାଦନ ନିମିତ୍ତ ଅନ୍ୟତ୍ର ଗମନ କରନ୍ତି ସେତେବେଳେ ଅବସର କ୍ରମେ ପ୍ରହ୍ଲାଦ ସଙ୍ଗୀ ବାଳକମାନଙ୍କୁ ଆହ୍ୱାନ କରେ । ୫୪ ।

ତଦନନ୍ତର ଅତି ପ୍ରାଜ୍ଞ ପ୍ରହ୍ଲାଦ ମଧୁର ବାକ୍ୟରେ ସମବୟସ୍କ ବାଳକମାନଙ୍କୁ ଆହ୍ୱାନ କରି ସହାସ୍ୟ ବଦନରେ ଦୟାକରି ଜନ୍ମ, ମରଣ ବିଷୟକ ସମସ୍ତ ବୃତ୍ତାନ୍ତ କହୁଥିଲି । ୫୫ ।

---

ଗୁରୁ ପୁତ୍ରଙ୍କ ବାକ୍ୟ ଶୁଣି
ସନ୍ତୋଷେ କହେ ନୃପମଣି
ଶୁଣ ହେ ଗୁରୁଙ୍କ କୁମର
ଏବେ ମୋହର ବୋଲ କର
ଗୃହସ୍ଥାଶ୍ରମ ଧର୍ମ ଯେତେ
ରାଜାଙ୍କ ନୀତି ବିଧିମତେ । ୫୧ ।
ତ୍ରିବର୍ଗ ଧର୍ମ ଅର୍ଥ କାମ
ଯେମନ୍ତେ ପଢେ ଅନୁକ୍ରମ ।
ଏମନ୍ତେ ରାଜାର ବଚନେ
ପ୍ରହ୍ଲାଦଙ୍କୁ ବେନି ଜନେ
ଅନେକ ଯତ୍ନେ ପଢାଇଲେ
ଅସୁର କୁମାରଙ୍କ କୁଳେ । ୫୨ ।
ଗୁରୁଙ୍କ ମୁଖୁଁ ଯେତେ ଶୁଣେ
ଅନ୍ତରେ ସାଧୁ ତା ନ ମଣେ
ଗୃହସ୍ଥ ଧର୍ମର ବ୍ୟବସ୍ଥା
ଆମ୍ଭର ନିପାତ ଏ କଥା
ଏ ଧର୍ମେ ମୋହ ହୁଅନ୍ତି ଜନ
ଏଥେଣ କି ମୋର ପ୍ରୟୋଜନ । ୫୩ ।
ଏମନ୍ତେ କରଇ ବିଚାର
ଏବେ ହୋ ଶୁଣ ନୃପବର
ପଢଇ ବାଳକଙ୍କ ମେଳେ
ଗୁରୁ ଯେ ଗୃହକର୍ମେ ଗଲେ
ସେ ପ୍ରହ୍ଲାଦ ତାହା ଶୁଣି
ବୋଲେ ବାଳକ ମଧ୍ୟେ ଥାଇ—

ତେ ତୁ ତଦ୍‌ଗୌରବାତ୍ ସର୍ବେ ତ୍ୟକ୍ତକ୍ରୀଡ଼ାପରିଚ୍ଛଦାଃ ।
ବାଲା ଅଦୂଷିତଧିୟୋ ଦ୍ୱନ୍ଦ୍ୱାରାମେରିତେହିତୈଃ । ୫୬ ।
ପର୍ଯ୍ୟୁପାସତ ରାଜେନ୍ଦ୍ର ତନ୍ନ୍ୟସ୍ତହୃଦୟେକ୍ଷଣାଃ ।
ତାନାହ କରୁଣୋ ମୈତ୍ରୋ ମହାଭାଗବତୋଽସୁରଃ । ୫୭ ।

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ
ପ୍ରହ୍ଲାଦାନୁଚରିତେ ପଞ୍ଚମୋଽଧ୍ୟାୟଃ । ୫ ।

---

ଯେଉଁମାନଙ୍କର ଚିତ୍ତ ରାଗ, ଦ୍ୱେଷାଦି ଦ୍ୱାରା ମଳିନ ନୁହେଁ ସେହି ବାଳକମାନେ କ୍ରୀଡ଼ା ସାମଗ୍ରୀମାନ ପରିତ୍ୟାଗ କରି ପ୍ରହ୍ଲାଦର ବାକ୍ୟ ଶ୍ରବଣ କରି ଗୌରବାନ୍ୱିତ ହେଉଥିଲେ ଏବଂ ତାହାଠାରେ ମନଃପ୍ରାଣ ସମର୍ପଣ କରି ଉପାସନା କରିବାକୁ ଆରମ୍ଭ କଲେ । ୫୬ ।

ହେ ମହାରାଜ ! ସେତେବେଳେ ଭକ୍ତପ୍ରବର, କରୁଣାମୟ, ସର୍ବପ୍ରାଣୀ ହିତକାରୀ ପ୍ରହ୍ଲାଦ ସେହି ବାଳକମାନଙ୍କୁ କହିଲେ । ୫୭ ।

---

ଶୁଣ ହେ ଅସୁର କୁମରେ
ଯେ ବନ୍ଧା ସଂସାରୁ ଉଦ୍ଧରେ
ମତେଁ ମାନବ ଦେହ ବହି
ଆତ୍ମାର ଜ୍ଞାନ ଯାର ନାହିଁ

ତାର ଜୀବନ ଅକାରଣ
ଏବେ ହୋ ସାବଧାନେ ଶୁଣ । ୫୪-୫୭
କହଇ ଦାସ ଜଗନ୍ନାଥ
ସପ୍ତମସ୍କନ୍ଧ ଭାଗବତ

ଏ ପିତା-ପୁତ୍ରଙ୍କ ସମ୍ବାଦ
ଶୁଣନ୍ତେ ନ ଲାଗେ ପ୍ରମାଦ ।



**ଭାବାର୍ଥ :—**

ଯୁଧିଷ୍ଠିରଙ୍କର ପ୍ରଶ୍ନର ଉତ୍ତରରେ ନାରଦ କହିଲେ :—

ମହାରାଜ ! ଦୈତ୍ୟରାଜ ହିରଣ୍ୟକଶିପୁ ପ୍ରହ୍ଲାଦର ବିଦ୍ୟାଶିକ୍ଷା ନିମିତ୍ତ ଶୁକ୍ରାଚାର୍ଯ୍ୟଙ୍କର ଦୁଇପୁତ୍ର ଷଣ୍ଡ ଓ ଅମର୍କଙ୍କୁ ନିଯୁକ୍ତ କରିଥିଲେ । ପ୍ରହ୍ଲାଦ ବିଦ୍ୟା ଶିକ୍ଷାରେ କୃତତ୍ୱ ଲାଭ କରିବା ସଙ୍ଗେ ସଙ୍ଗେ ସର୍ବଦା ଶ୍ରୀହରି ଚରଣ ସୁଧା ପାନ କରିବାକୁ ବ୍ୟାକୁଳତା ପ୍ରକାଶ କରିଥିଲେ । ରାକ୍ଷସଅନୁଚରମାନେ ପ୍ରହ୍ଲାଦର ହରିନାମ ଉଚ୍ଚାରଣ ଶ୍ରବଣ କରି ହିରଣ୍ୟକଶିପୁକୁ ଜଣାଇଥିଲେ । ହିରଣ୍ୟକଶିପୁ ପ୍ରହ୍ଲାଦ ପ୍ରତି ନାନାବିଧ ଦଣ୍ଡ ବିଧାନ କରିଥିଲେମାତ୍ର ତହିଁରେ କୌଣସି ଫଳ ହେଲନାହିଁ । ପ୍ରହ୍ଲାଦ ପୁନଶ୍ଚ ଗୁରୁଗୃହକୁ ପ୍ରେରିତ ହେଲେ । ସେଠାରେ କେତେକକାଳ ଅବସ୍ଥାନ ଓ ବିଦ୍ୟାଶିକ୍ଷା କଲା ପରେ ଗୃହକୁ ଫେରିଆସନ୍ତେ ପିତା ପୁତ୍ରକୁ କୋଳରେ ବସାଇ ପ୍ରଶ୍ନ କଲେ "ବତ୍ସ ! ତୁ ଯେଉଁ ବିଦ୍ୟା ଶିକ୍ଷା କରିଅଛୁ ତହିଁରୁ ଶ୍ରେଷ୍ଠ ବିଷୟ ମୋତେ କହ ।" ପ୍ରହ୍ଲାଦ ବିଷ୍ଣୁ ନାମ ସ୍ମରଣ ଭଜନର ମହାତ୍ମ୍ୟ ବ୍ୟାଖ୍ୟା କରିବାକୁ ଲାଗିଲେ । ହିରଣ୍ୟକଶିପୁ ତାହା ଶୁଣିଲାମାତ୍ରକେ ପ୍ରହ୍ଲାଦଙ୍କୁ କୋଳରୁ ଫିଙ୍ଗିଦେଲା । ପର୍ବତ ଶିଖରରୁ ତାହାକୁ ଫିଙ୍ଗିଦେବା, ତାହାପ୍ରତି ବିଷ ପ୍ରୟୋଗ କରିବା, ତାହାକୁ ଅନ୍ଧକୂପ ମଧ୍ୟରେ ନିକ୍ଷେପ କରିବା, ଅଗ୍ନିରେ ଓ ସମୁଦ୍ରରେ ତାହାକୁ ନିକ୍ଷେପ କରିବା, ଶୂଳରେ ପ୍ରହାର କରିବା ଏବଂ ଖଡ୍‌ଗରେ ବଧ କରିବା ଇତ୍ୟାଦି କଲେ ମଧ୍ୟ ସେ ଶ୍ରୀହରିଙ୍କ ଚରଣପଦ୍ମରେ ମନୋ ନିବେଶ କରିଥିବାରୁ କୌଣସିଥିରେ ତାହାର ମୃତ୍ୟୁ ହେଲ ନାହିଁ । ଏଥିରେ ହିରଣ୍ୟକଶିପୁ ହୃଦୟରେ ଆଶଙ୍କା ଜନ୍ମିଲା "ଏ କିଣ ମୋର ଶତ୍ରୁ ହରି ପୁତ୍ରରୂପେ ଜନ୍ମ ହୋଇ ଅଛି କି" । ଷଣ୍ଡ ଓ ଅମର୍କ ଗୁରୁପୁତ୍ର ଦୁହେଁ ହିରଣ୍ୟକଶିପୁକୁ କହିଲେ ମହାରାଜ ! ଆପଣ ଏକାକୀ ତ୍ରିଭୁବନ ବିଜୟ କରିଥିଲେ । ଆପଣଙ୍କ ଶତ୍ରୁତା ସାଧନ କରିବାକୁ କିଏ ସମର୍ଥ । ବର୍ତ୍ତମାନ ତାହାର ବାଳକ ମନ । ତାହାକୁ ପୁନଶ୍ଚ ଆମ୍ଭମାନଙ୍କ ନିକଟରେ ଶିକ୍ଷାଲାଭ କରିବାକୁ ଛାଡ଼ି ଦିଅନ୍ତୁ, କ୍ରମେ ତାହାର ମନ ପରିବର୍ତ୍ତିତ ହେବ ଏବଂ ସେ ସୁପନ୍ଥା ଅବଲମ୍ବନ କରିବ । ପ୍ରହ୍ଲାଦ ଗୁରୁ ଗୃହରେ ରହି ଗୁରୁଦ୍ୱୟଙ୍କର ଅନୁପସ୍ଥିତ ବେଳେ ସଙ୍ଗୀ ବାଳକମାନଙ୍କୁ ହରିଭକ୍ତି ପ୍ରସଙ୍ଗ ଶୁଣାଉ ଥିଲେ । ସେମାନେ ମନ୍ତ୍ର ମୁଗ୍ଧବତ୍ ତାହା ଶ୍ରବଣ କରିଥିଲେ ।

---

## ଷଷ୍ଠ ଅଧ୍ୟାୟ ।

**ଷଷ୍ଠେ ଗୁରୁ ଗୃହବ୍ୟଗ୍ରେ ପ୍ରହ୍ରାଦୋ ଦୈତ୍ୟବାଳକାନ୍ ।**
**ଅନୁକମ୍ପ୍ୟ ପରଂ ତତ୍ତ୍ୱଂ ନାରଦୋକ୍ତମୁପାଦିଶତ୍ । ● । (ଶ୍ରୀଧରସ୍ୱାମୀ)**

---

**ପ୍ରହ୍ଲାଦଙ୍କର ସଙ୍ଗୀ ବାଳକମାନଙ୍କୁ ବିଷ୍ଣୁ ଭକ୍ତି ବିଷୟକ ଉପଦେଶ ।**

ଷଷ୍ଠ ଅଧ୍ୟାୟରେ ପ୍ରହ୍ଲାଦ ଅସୁରବାଳକ ମାନଙ୍କୁ ବିଷ୍ଣୁ ଭକ୍ତି ବିଷୟକ ନାରଦୋକ୍ତ ମାର୍ଗ ଅନୁସାରେ ଉପଦେଶ ଦେଇ ଅଛନ୍ତି ।

---

ଷଷ୍ଠେ ପ୍ରହ୍ଲାଦ ତତ୍ତ୍ୱବାଣୀ । ଅସୁର ବାଳକଙ୍କୁ ଭଣି ॥

ଶ୍ରୀପ୍ରହ୍ଲାଦ ଉବାଚ ।

କୌମାର ଆଚରେତ୍ ପ୍ରାଜ୍ଞୋ ଧର୍ମାନ୍ ଭାଗବତାନିହ ।
ଦୁର୍ଲ୍ଲଭଂ ମାନୁଷଂ ଜନ୍ମ ତଦପ୍ୟଧ୍ରୁବମର୍ଥଦମ୍ । ୧ ।
ଯଥା ହି ପୁରୁଷସ୍ୟେହ ବିଷ୍ଣୋଃ ପାଦୋପସର୍ପଣମ୍ ।
ଯଦେଷ ସର୍ବଭୂତାନାଂ ପ୍ରିୟ ଆତ୍ମେଶ୍ୱରଃ ସୁହୃତ୍ । ୨ ।

---

ଶ୍ରୀପ୍ରହ୍ଲାଦ କହିଲେ :—

ପ୍ରାଜ୍ଞ ବ୍ୟକ୍ତି ବାଲ୍ୟ କାଳରେହିଁ ଭାଗବତ ଧର୍ମ ଆଚରଣ କରିବ କାରଣ ମନୁଷ୍ୟ ଜନ୍ମ ଦୁର୍ଲ୍ଲଭ ଏବଂ ସେ ଜନ୍ମ ଅନିଶ୍ଚିତ । ୧ ।

ଏ ସଂସାରରେ ମନୁଷ୍ୟ ବିଷ୍ଣୁ ପାଦପଦ୍ମରେ ଶରଣ ପାଇବା ଅତ୍ୟନ୍ତ ମଙ୍ଗଳକର । ସେହି ଆତ୍ମେଶ୍ୱର ବିଷ୍ଣୁ ସର୍ବ ପ୍ରାଣୀଙ୍କର ସୁହୃତ୍ । ୨ ।

---

ଶ୍ରୀପ୍ରହ୍ଲାଦ ଉବାଚ—

ଶୁଣ ହେ ଅସୁର ବାଳକେ
ଯେ ବିଦ୍ୟା ସାର ନରଲୋକେ
ଆହେ ବୟସ୍ୟେ ! ତୁମ୍ଭେ ଦେଖ
ମୃତ୍ୟୁ ଅଧୀନ ଜୀବଲୋକ
ମାୟା କ୍ରୀଡ଼ାରେ ଭୋଳ ହୋଇ
ଜ୍ଞାନ ତୁମ୍ଭର ଦେହେ ନାହିଁ
ବାଳତ ଯୁବା ଯୁଦ୍ଧ ଦେହ
କେବେହେଁ ମୃତ୍ୟୁ ନ ତରଇ
ଏ ଭାବ ଚିତ୍ତେ ଯେ ଜାଣନ୍ତି
ଅନ୍ତେ ସେ କୈବଲ୍ୟ ଲଭନ୍ତି
ଯେବେ ଅଶେଷ ଗ୍ରନ୍ଥ ପଢ଼ି
ଆତ୍ମାର ଗତି ସ୍ଥିର ହୁଡ଼ି
ପର ଅପର ବୋଲି ଚିନ୍ତି
ସେ ମୂର୍ଖ ମୁର୍ଖେ ସନ୍ଥିରନ୍ତି
ଯେ ଗୁରୁ କହନ୍ତି ଶାସ୍ତ୍ର ମତେ
ଅର୍ଥକୁ ବୁଝାଇ ଅନର୍ଥେ
ଅଜ୍ଞାନ କଳିତ ବଚନେ
ନ ଘଟେ ଶାସ୍ତ୍ର ଅନୁମାନେ ॥

ସେ ଗୁରୁ-ବାକ୍ୟ କାର୍ଯ୍ୟ କିସ
କିଷ୍ଫଳ ତାର ଉପଦେଶ
ଆତ୍ମା ଶରୀର ଉଦ୍ଧାରଣେ
ନ କହେ ଅଜ୍ଞାନ କାରଣେ
ଏଣୁ ଯେ ଆତ୍ମଜ୍ଞାନ ଯେତେ
ଯତ୍ନ କରନ୍ତି ଆତ୍ମ-ହିତେ
ଏଣୁ ଅଜ୍ଞାନଙ୍କ ବଚନ
ନ ମାନେ ଆତ୍ମଜ୍ଞାନୀ ଜନ
ଅଜ୍ଞାନୀ ଅଜ୍ଞାନ ଦେଖାଏ
ଅନ୍ଧକୁ ଅନ୍ଧ ଯେସନେ ବହେ
ଜ୍ଞାନକୁ ଶତ୍ରୁ ମିତ୍ର ନାହିଁ
ନିତ୍ୟେ ଉଦାସୀ ପଣେ ଥାଇ
ଜନ୍ତୁଏ କର୍ମ୍ମର ଅଧୀନେ
ସମ୍ପଦ ବିପଦ ଭୁଗନ୍ତେ
ଏ ମାୟାମୟ ଗୃହ ବାସେ
ପ୍ରାଣୀ ଯନ୍ତ୍ରିତ ମୋହ ପାଶେ
ମନର ଚରଣେ ଶାଙ୍କୁଳ
ଏଣୁ ନ ପାରେ ପ୍ରାଣୀ ଚଳି
ଏ ଦୃଢ଼ ବନ୍ଧ ଯା ବଚନେ
ଛିଣ୍ଡଇ ଜ୍ଞାନ ଅନୁମାନେ

ସେ ଗୁରୁ ବଚନ ପ୍ରମାଣି
ଯେଣୁ ସଂସାରୁ ତରେ ପ୍ରାଣୀ
ବିଅର୍ଥ କ୍ରୀଡ଼ା ନିତ୍ୟେ ଚିନ୍ତି
ଆୟୁଷ କ୍ଷୟ ନ ଜାଣନ୍ତି
ଏମନ୍ତେ ଅସୁରଙ୍କୁ ଗୁହିଁ
ସେ ପ୍ରହ୍ଲାଦ ଦୟା ବହି
କହଇ ଭାଗବତ ଧର୍ମ
ଯେସନେ ତୁଟଇ ଭବ ଭ୍ରମ ॥ • ॥
ଶୁଣ ବାଳକେ ମୋ ବଚନ
ସଂସାରେ ଯେବା ବୁଧଜନ
କୁମାର କାଳୁ ଭକ୍ତି କରେ
ଶରୀର ଅନିତ୍ୟ ବିଚାରେ
ମନୁଷ୍ୟ ଶରୀର ଦୁର୍ଲ୍ଲଭ
ଏଣୁ ଗୋବିନ୍ଦେ କର ଭାବ । ୧ ।
ଯେ ହରି ସର୍ବ ଜୀବ ଦେହେ
ଆତ୍ମା ସୁହୃଦ ପ୍ରିୟ ଭାବେ
ବସଇ ଈଶ୍ୱର ସ୍ୱଭାବେ
ଏଣୁ ଭଜିବ ଆତ୍ମ ଲାଭେ । ୨ ।

ସୁଖମୈନ୍ଦ୍ରିୟକଂ ଦୈତ୍ୟା ଦେହଯୋଗେନ ଦେହିନାମ୍ ।
ସର୍ବତ୍ର ଲଭ୍ୟତେ ଦୈବାଦ୍ ଯଥା ଦୁଃଖମଯତ୍ନତଃ । ୩ ।
ତତ୍ ପ୍ରୟାସୋ ନ କର୍ତ୍ତବ୍ୟୋ ଯତ ଆୟୁର୍ବ୍ୟୟଃ ପରମ୍ ।
ନ ତଥା ବିନ୍ଦତେ କ୍ଷେମଂ ମୁକୁନ୍ଦଚରଣାମ୍ବୁଜମ୍ । ୪ ।
ତତୋ ଯତେତ କୁଶଳଃ କ୍ଷେମାୟ ଭବମାଶ୍ରିତଃ ।
ଶରୀରଂ ପୁରୁଷଂ ଯାବନ୍ନ ବିପଦ୍ୟେତ ପୁଷ୍କଳମ୍ । ୫ ।

---

ହେ ଦୈତ୍ୟଗଣ ! ଯଦି ତୁମ୍ଭେମାନେ କହିବ ଭୋଗ ସୁଖ କରିବା କିପରି ? ତେଣୁ ମୁଁ କହୁଅଛି ଇନ୍ଦ୍ରିୟ ବୃତ୍ତି ଚରିତାର୍ଥ କରିବା ପାଇଁ ଯେଉଁ ସୁଖ ତାହା ମାନବର ଦେହ ସମ୍ବନ୍ଧ । ଅଦୃଷ୍ଟ ବଶରେ ଦୁଃଖ ତୁଲ୍ୟ ସର୍ବତ୍ର ଏପରି କି ପଶୁ ଯୋନିରେ ସୁଦ୍ଧା ଉପସ୍ଥିତ ହୁଏ । ୩ ।

ଅତଏବ ବିଷୟ ସେବା ନିମିତ୍ତ ସୁଖପାଇଁ ବିଶେଷ କଷ୍ଟ କରିବା ଉଚିତ ନୁହେଁ, କାରଣ ଶ୍ରୀ ମୁକୁନ୍ଦ ଚରଣାରବିନ୍ଦ ଆଶ୍ରୟ କରିବାରେ ଯେଉଁ ଆନନ୍ଦ ତାହା ବିଷୟ ଭୋଗରେ ନାହିଁ । ଅତଏବ ହେ ଭ୍ରାତୃଗଣ ! ସମସ୍ତେ ମିଳିତ ହୋଇ ଆସ । ବିଷ୍ଣୁ ଚରଣାରବିନ୍ଦରେ ଆତ୍ମ ସମର୍ପଣ କରିବା । ୪ ।

ବିଷୟ ସୁଖ ଅନିତ୍ୟ । ସୁତରାଂ ବିବେକୀପୁରୁଷ ସଂସାରକୁ ଆସି ନରଦେହ ଧାରଣ କରି ଯେ ପର୍ଯ୍ୟନ୍ତ ରୋଗ ଶୋକାଦିରେ ଅଭିଭୂତ ହୋଇ ନ ବିନାଶ ପ୍ରାପ୍ତ ହୁଏ ସେ ପର୍ଯ୍ୟନ୍ତ ଶ୍ରୀବିଷ୍ଣୁ ଚରଣାରବିନ୍ଦରେ ଯତ୍ନ କରିବା ବିହିତ ।୫।



ଅସୁର ବାଳକଙ୍କୁ ପ୍ରହ୍ଲାଦଙ୍କର ଉପଦେଶ ।

---

ଏ ସୁଖ ଦୁଃଖ ଦେହ ଯୋଗେ
କର୍ମ୍ମର ବଳେ ତାହା ଲଭେ
ତେଣେ ନ କର ପ୍ରତି ଆଶ
ନିରତେ ହୋଇବ ସନ୍ତୋଷ ।୩।
ଦେଖ ଆୟୁଷ ଏ ଶରୀରେ
ଛିଦ୍ର ଘଟର ପ୍ରାୟେ ଝରେ
ଏଣୁ ମୁକୁନ୍ଦ ପାଦ ଯୁଗେ
ନିରତେ ଭଜ ମନ୍ତ୍ରହୁବେ । ୪ ।

ମରଣ ନିତ୍ୟେ ସନ୍ନିହିତ
ତା ମୁଖେ ନ ପଡ଼ ଯାବତ
ଯାବତ ସୁସ୍ଥ ଏ ଶରୀରେ
ବୃଦ୍ଧ ଅବସ୍ଥା ଅଛି ଦୂରେ
ଯାବତ ଏ ଦୁର୍ଲ୍ଲଭ ଦେହେ
ଇନ୍ଦ୍ରିୟ ଶକ୍ତି ନଷ୍ଟ ନୋହେ
ଯାବତ ଜୀବନ ଏ ଦେହେ
କାଳର ବଳେ କ୍ଷୟ ନୋହେ

ତାବତ ଆତ୍ମା ନିସ୍ତାରଣେ
ଯତ୍ନ କରିବ ଅନୁକ୍ଷଣେ
ଯେତେ ଆତ୍ମାର ହିତ କରେ
ଦୁର୍ଲ୍ଲଭ ମନୁଷ୍ୟ ଶରୀରେ
ଜ୍ଞାନ ନ ବୁଝି ଯେବେ ହେଲେ
ବୋଲେ ସାଧିବ ବୃଦ୍ଧ କାଳେ
ଗୃହେ ଲାଗିଲେ ଅଗ୍ନି ଯେହ୍ନେ
ଉଦ୍ୟମ କୂପର ଖନନେ । ୫ ।

ପୁଂସୋ ବର୍ଷଶତଂ ହ୍ୟାୟୁସ୍ତଦର୍ଦ୍ଧଂଚାଜିତାତ୍ମନଃ ।
ନିଷ୍ଫଳଂ ଯଦସୌ ରାତ୍ର୍ୟାଂ ଶେତେଽନ୍ଧଂ ପ୍ରାପିତସ୍ତମଃ । ୬ ।
ମୁଗ୍‌ଧସ୍ୟ ବାଲ୍ୟେ କୈଶୋରେ କ୍ରୀଡତୋ ଯାତି ବିଂଶତିଃ ।
ଜରୟା ଗ୍ରସ୍ତଦେହସ୍ୟ ଯାତ୍ୟକଳ୍ପସ୍ୟ ବିଂଶତିଃ । ୭ ।
ଦୁରାପୂରେଣ କାମେନ ମୋହେନ ଚ ବଳୀୟସା ।
ଶେଷଂ ଗୃହେଷୁ ସକ୍ତସ୍ୟ ପ୍ରମତ୍ତସ୍ୟାପଯାତି ହି । ୮ ।
କୋ ଗୃହେଷୁ ପୁମାନ୍ ସକ୍ତମାତ୍ମାନମଜିତେନ୍ଦ୍ରିୟଃ ।
ସ୍ନେହପାଶୈର୍ଦୃଢ଼ୈର୍ବଦ୍ଧମୁତ୍ସହେତ ବିମୋଚିତୁମ୍ । ୯ ।

---

ଏପରି ଜୀବର ଆୟୁ କ୍ଷୟ ହୁଏ ତାହା କହୁଅଛି । ଯଦି ପୁରୁଷର ଶତବର୍ଷ ଆୟୁ ହୁଏ ତା ହେଲେ ତହିଁରୁ ଅର୍ଦ୍ଧେକ ଅର୍ଥାତ୍ ପଚାଶ (୫୦) ବର୍ଷ ବୃଥାରେ ଅତିବାହିତ ହୁଏ । କାରଣ ଯେଉଁମାନେ କାମମତ୍ତ ହୋଇ ତହିଁରେ ସଫଳତା ଲାଭ କରନ୍ତି ସେମାନଙ୍କର ଇନ୍ଦ୍ରିୟମାନେ ଅବଶ ହୋଇ ନିଦ୍ରାରେ ରଜନୀ ଅତିବାହିତ କରନ୍ତି । ୬ ।

ସଂସାର ମୋହରେ ମୁହ୍ୟମାନ ବିବେକହୀନ ବ୍ୟକ୍ତିମାନେ ବାଲ୍ୟ ଓ କୈଶୋରରେ ଦଶବର୍ଷ ଲେଖାଏ କୋଡ଼ିଏବର୍ଷ ବାଳକ ବାଳିକାମାନଙ୍କ ସହିତ କ୍ରୀଡ଼ା କରିବାରେ ଅତିବାହିତ କରନ୍ତି ପୁଣି ଜରାଗ୍ରସ୍ତ ଅବସ୍ଥାରେ ଅସମର୍ଥ ହୋଇ କୋଡ଼ିଏ ବର୍ଷ ବୃଥାରେ ଅତିବାହିତ କରନ୍ତି । ୭ ।

ବିଷୟ ମଦ୍ୟପାନରେ ଉନ୍ମତ୍ତ ପୁତ୍ର କଳତ୍ରାଦିରେ ସମାସକ୍ତ ବ୍ୟକ୍ତିମାନଙ୍କର ହୃଦୟକୁ ଦୁଃଖପୂର୍ଣ୍ଣ ଅଭିଳାଷ ଓ ବଳବାନ୍ ମୋହ ଅଧିକାର କରିଥାଏ । ତେଣୁ ସେମାନଙ୍କର ଅବଶିଷ୍ଟ ଆୟୁ ମଧ୍ୟ ନିରର୍ଥକ । ୮

ଯେଉଁ ଅଜିତେନ୍ଦ୍ରିୟ ବ୍ୟକ୍ତି ପୁତ୍ର କଳତ୍ରାଦିରେ ଏକାନ୍ତ ଆସକ୍ତ, ସୁଦୃଢ଼ ସ୍ନେହ ବନ୍ଧନରେ ଅବଦ୍ଧ ହୋଇ ଆତ୍ମାକୁ ପରିତ୍ୟାଗ କରିପାରେ, ଯେଉଁ ଅର୍ଥ ପ୍ରାଣ ଅପେକ୍ଷା ପ୍ରିୟତମ, ଯେଉଁ ଅର୍ଥକୁ

---

ଏମନ୍ତେ ଅଜ୍ଞାନଙ୍କ ଗତି
କେବେହେଁ ସୁଖ ନ ଲଭନ୍ତି
ସ୍ୱଭାବେ ପୁରୁଷ ଆୟୁଷ
ଜୀବନ ଶତେକ ବରଷ
ଯେବେ ଅଜ୍ଞାନପଣେ ଥାଇ
ଆୟୁଷ ଅର୍ଦ୍ଧ କ୍ଷୟ ଯାଇ
ସ୍ୱଭାବେ ରାତ୍ରି ନିଦ୍ରାକାଳେ
ଅର୍ଦ୍ଧ ଆୟୁଷ ଯାଇ ହେଳେ

ବାଳକ ପୌଗଣ୍ଡ କିଶୋରେ
ବିଂଶ ବରଷ ତହିଁ ହରେ
କାଳର ସ୍ୱଭାବ ଏମନ୍ତ
କ୍ରୀଡ଼ା ବିନୋଦେ କରେ ଗ୍ରସ୍ତ
ପୁଣ ବିଂଶତି ବୃଦ୍ଧେ ଯାଇ
ବଳିଁଇ ଅସମର୍ଥ ହୋଇ
ଅପରେ ଯେ ଅବା ରହଇ
ତା ଗୃହବନ୍ଧେ ପାଶୋରଇ

ଗୃହ ବନ୍ଧନେ ବନ୍ଦୀ ହୋଇ
ଆତ୍ମା ଉଦ୍ଧରି ନ ପାରଇ
ଅତି ଯନ୍ତ୍ରିତ ସ୍ନେହ ପାଶେ
ଦୁର୍ଜୟ ଇନ୍ଦ୍ରିୟ ବିଳାସେ ।୬-୯।

କୋନ୍ୱର୍ଥତୃଷ୍ଣାଂ ବିସୃଜେତ୍ ପ୍ରାଣେଭ୍ୟୋଽପି ଯ ଈପ୍ସିତଃ ।
ଯଂ କ୍ରୀଣାତ୍ୟସୁଭିଃ ପ୍ରେଷ୍ଠୈସ୍ତସ୍କରଃ ସେବକୋ ବଣିକ୍ । ୧୦ ।
କଥଂ ପ୍ରିୟାୟା ଅନୁକମ୍ପିତାୟାଃ ସଙ୍ଗଂ ରହସ୍ୟଂ ରୁଚିରାଂଶ୍ଚ ମନ୍ତ୍ରାନ୍ ।
ସୁହୃତ୍ସୁ ତତ୍ସ୍ନେହସିତଃ ଶିଶୂନାଂ କଳାକ୍ଷରାଣାମନୁରକ୍ତଚିତ୍ତଃ । ୧୧ ।
ପୁତ୍ରାନ୍ ସ୍ମରଂସ୍ତା ଦୁହିତୃର୍ହୃଦୟ୍ୟା ଭ୍ରାତୃନ୍ ସ୍ୱସୃର୍ବା ପିତରୌ ଚ ଦୀନୌ ।
ଗୃହାନ୍ ମନୋଜ୍ଞୋରୁପରିଚ୍ଛଦାଂଶ୍ଚ ବୃତ୍ତୀଶ୍ଚ କୁଲ୍ୟାଃ ପଶୁଭୃତ୍ୟବର୍ଗାନ୍ ।୧୨।
ତ୍ୟଜେତ କୋଶସ୍କୃଦିବେହମାନଃ କର୍ମାଣି ଲୋଭାଦବିତୃପ୍ତକାମଃ ।
ଔପସ୍ଥ୍ୟଜୈହ୍ୱ୍ୟଂ ବହୁ ମାନ୍ୟମାନଃ କଥଂ ବିରଜ୍ୟେତ ଦୁରନ୍ତମୋହଃ ।୧୩।

---

ଚୋର୍ ଚୋରି କରିପାରେ, ବେତନ ଭୋଗୀ କର୍ମଚାରୀ ଓ ବ୍ୟବସାୟୀମାନେ ପ୍ରାଣ ବିନିମୟରେ ମୁଦ୍ରା ଅର୍ଜ୍ଜନ କରନ୍ତି ସେପରି ଅର୍ଥତୃଷ୍ଣା କିଏ ପରିତ୍ୟାଗ କରିପାରେ । ୯,୧୦ ।

ପ୍ରିୟ ଜନମାନଙ୍କ ସ୍ନେହରେ ଏକାନ୍ତ ଆବଦ୍ଧ ଦେହ, ଗେହାଦି ସମାସକ୍ତ ବ୍ୟକ୍ତିମାନେ ଶିଶୁର ଅବ୍ୟକ୍ତ ମଧୁର ଅର୍ଦ୍ଧସ୍ଫୁଟିତ ବାକ୍ୟାବଳୀ, ବଶୀକୃତ ପ୍ରିୟବାଦିନୀ ପ୍ରିୟାର ନିର୍ଜନ ସଂସର୍ଗ ଏବଂ ହିତ ଶିକ୍ଷାଳାପ ସ୍ମରଣ କରି ତହିଁରେ ଆସକ୍ତି କିଏ ପରିତ୍ୟାଗ କରିପାରେ ? । ୧୧ ।

ପୁତ୍ର, ସେହି ବାତ୍ସଲ୍ୟମୟୀ କନ୍ୟା, ଭ୍ରାତା, ଭଗ୍ନୀ, ବୃଦ୍ଧ ପିତାମାତା ନାନାବିଧ ଉପକରଣ ସମନ୍ୱିତ ସୁନ୍ଦର ବାସଗୃହ, ଗୋ ମେଷାଦି ପଶୁ, ଭୃତ୍ୟ ଓ ପରମ୍ପରା ଗତ ବୃତ୍ତି ଏ ସବୁ ସ୍ମରଣ କରି କିପରି ସେ ଆସକ୍ତି ପରିତ୍ୟାଗ କରାଯାଇପାରେ । ୧୨ ।

ଯେପରି କୋଷକାରୀ କୀଟ (ଗୋଟି ପୋକ) ନିଜେ ବାସଗୃହ ନିର୍ମାଣ କରି ବାହାରକୁ ଆସିବାକୁ ବାଟ ରଖେ ନାହିଁ ସେହିପରି ଦୁରନ୍ତ ମୋହପରବଶ ଲୋକେ ଲୋଭରେ କର୍ମକରି ତୃପ୍ତି ଲାଭ କରନ୍ତି ନାହିଁ, କେବଳ ଶିଶ୍ନ ଓ ଜିହ୍ୱାର ସୁଖକୁ ଚରମସୁଖ ବୋଲି ମନେ କରନ୍ତି, ସେମାନେ ତାହା ତ୍ୟାଗ କରିବେ କିପରି । ୧୩ ।

---

ଅର୍ଥ ଅର୍ଜ୍ଜନେ ଅବିରତେ
ଲୋଭ ବଢାଇ ଅନ୍ତର୍ଗତେ
ପ୍ରାଣଠୁଁ ଅତି ସ୍ନେହଭରେ
ସେ ତୃଷ୍ଣା କେବା ତେଜି ପାରେ ?
ଯେ ଧନ ଅର୍ଥେ ଦିଏ ପ୍ରାଣ
ତାହାର ନାହିଁ ପରିତ୍ରାଣ
ତସ୍କର ପ୍ରାୟେ ଚୋରି କରେ
ସେବା କରଇ ଯାଇ ପରେ
ବୋଇତେ ବସି ବଣିଜାରେ
ଅଗାଧ-ସିନ୍ଧୁ ଜଳେ ଚଳେ
ନିରତେ ଗୃହବନ୍ଧେ ବନ୍ଧେ
ପ୍ରାଣୁ ଅଧିକେ ଧନ ସନ୍ଧେ ।୧୦।

ଏକାନ୍ତେ କାମିନୀର ସଙ୍ଗେ
କ୍ରୀଡ଼ା କରଇ ନାନାରଙ୍ଗେ
ସେ ପତ୍ନୀବାକ୍ୟ ଅନୁକ୍ଷଣେ
ଗୁରୁର ମନ୍ତ୍ର ପ୍ରାୟେ ମଣେ
ବନ୍ଧୁ ବାନ୍ଧବ ସ୍ନେହଭରେ
ବାଳକସଙ୍ଗେ ମନ ହରେ
ସ୍ନେହ ଆଳାପ ଅନୁରକ୍ତେ
ରହଇ ଅବିରତ ଚିତ୍ତେ
ଘରୁ ବାହାର ହୋଇ ଯେବେ
ପ୍ରବାସ କରଇ ସ୍ୱଭାବେ
ତହିଁ ଜୀବନେ ସୁଖ ନାହିଁ
ଭୁଲଇ ମନ ଗୃହେ ଦେଇ

ପୁତ୍ର ଦୁହିତା ସ୍ନେହ ଚିତ୍ତେ
ମନୋଜ୍ଞ ପତ୍ନୀ ଭାବ ଚିନ୍ତେ
ଭ୍ରାତ ଜନନୀ ତାତ ସ୍ମରେ
ଏ ଭଲେ ଥିବେ କି ମୋ ଘରେ
ମନୋଜ୍ଞ ଗୃହ ବସ୍ତୁ ଯେତେ
ଜୀବିକା ପଶୁ ଭୃତ୍ୟ ମତେ
ଏମନ୍ତେ କୋଷକାରି ପ୍ରାୟେ
ଅନ୍ତରେ ଅବିରତେ ଧ୍ୟାୟେ
ଲୋଭେ ଅତୃପ୍ତ-କାମ ହୋଇ
ଜିହ୍ୱା ଉପସ୍ଥଭାବ ଧ୍ୟାଇ
ଦୁରନ୍ତ ମୋହଭାବ ଚିତ୍ତେ
ସେପ୍ରାଣୀଛାଡ଼ିବେକେମନ୍ତେ୧୧-୧୩

କୁଟୁମ୍ବପୋଷାୟ ବିୟନ୍ନିଜାୟୁର୍ନ ବୁଧ୍ୟତେଽର୍ଥଂ ବିହତଂ ପ୍ରମତ୍ତଃ ।
ସର୍ବତ୍ର ତାପତ୍ରୟଦୁଃଖିତାତ୍ମା ନିର୍ବିଦ୍ୟତେ ନ ସ୍ୱକୁଟୁମ୍ବରାମଃ । ୧୪ ।
ବିତ୍ତେଷୁ ନିତ୍ୟାଭିନିବିଷ୍ଟଚେତା ବିଦ୍ୱାଂଶ୍ଚ ଦୋଷଂ ପରବିତ୍ତହର୍ତ୍ତୁଃ ।
ପ୍ରେତ୍ୟେହ ଚାଥାପ୍ୟଜିତେନ୍ଦ୍ରିୟସ୍ତଦଶାନ୍ତକାମୋ ହରତେ କୁଟୁମ୍ବୀ । ୧୫ ।
ବିଦ୍ୱାନପୀତ୍ଥଂ ଦନୁଜାଃ କୁଟୁମ୍ବଂ ପୁଷ୍ଣନ୍ ସ୍ୱଲୋକାୟ ନ କଳ୍ପତେ ବୈ ।
ଯଃ ସ୍ୱୀୟପାରକ୍ୟବିଭିନ୍ନଭାବସ୍ତମଃ ପ୍ରପଦ୍ୟେତ ଯଥା ବିମୂଢ଼ଃ । ୧୬ ।
ଯତୋ ନ କଶ୍ଚିତ୍ କ୍ୱ ଚ କୁତ୍ରଚିଦ୍‌ବା ଦୀନଃ ସ୍ୱମାତ୍ମାନମଲଂ ସମର୍ଥଃ ।
ବିମୋଚିତୁଂ କାମଦୃଶାଂ ବିହାରକ୍ରୀଡାମୃଗୋ ଯନ୍ନିଗଡ଼ୋ ବିସର୍ଗଃ । ୧୭ ।
ତତୋ ବିଦୂରାତ୍ ପରିହୃତ୍ୟ ଦୈତ୍ୟା ଦୈତ୍ୟେଷୁ ସଙ୍ଗଂ ବିଷୟାତ୍ମକେଷୁ ।
ଉପେତ ନାରାୟଣମାଦିଦେବଂ ସ ମୁକ୍ତସଙ୍ଗୈରିଷିତୋପବର୍ଗଃ । ୧୮ ।

---

ପୁତ୍ର କଳତ୍ରାଦି ଭରଣ ପୋଷଣରେ ନିଜର ପରମାୟୁ କ୍ଷୟହୁଏ କିନ୍ତୁ ଭଗବତ୍ ଆରାଧନା ପରମ ପୁରୁଷାର୍ଥ ଓ ହିତକର ହେଲେ ମଧ୍ୟ ସେ ପ୍ରମତ୍ତ ହୋଇ ତାହା ବୁଝିପାରେ ନାହିଁ । ଗୃହ ପୁତ୍ରାଦି ପ୍ରତି ଅତ୍ୟନ୍ତ ଆସକ୍ତି ନିବନ୍ଧନ ତ୍ରିବିଧ ତାପରେ ସନ୍ତପ୍ତ ହେଲେ ମଧ୍ୟ ତାହାକୁ ଆଦୌ ଦୁଃଖ ବୋଲି ମନେ କରେନାହିଁ ।୧୪।

ଅଜିତେନ୍ଦ୍ରିୟ, କୁଟୁମ୍ବ ଯୁକ୍ତ ବିଷୟାଭିନିବିଷ୍ଟ ଚିତ୍ତ, ପରବିତ୍ତହରଣ ଦୋଷଯୁକ୍ତ ଜାଣି ମଧ୍ୟ ଲୋଭ ସମ୍ବରଣ କରି ନ ପାରି ଯେ ତାହା ହରଣ କରିଥାଏ । ୧୫ ।

ହେ ଦୈତ୍ୟ ବାଳକଗଣ ! କୁଟୁମ୍ବ ସଙ୍ଗରେ ଅତ୍ୟନ୍ତ ଆସକ୍ତ ଦୋଷ ଉତ୍ତମରୂପେ ଜାଣି ମଧ୍ୟ କେବଳ କୁଟୁମ୍ବ ପୋଷଣ ଯେ କରିଥାଏ ଏବଂ କସ୍ମିନ୍‌କାଳେ ଭଗବତ୍ ଚିନ୍ତା କରେ ନାହିଁ ସେହି ବ୍ୟକ୍ତି କେବଳ ଆତ୍ମ, ପର ଏହି ବିଭିନ୍ନ ଭାବାପନ୍ନ ମୂଢ ତୁଲ୍ୟ ଏବଂ ବିଦ୍ୱାନ ହେଲେ ମଧ୍ୟ ପରବିତ୍ତ ହରଣରେ ଅଭିନିବେଶ କରିଥାଏ । ୧୬ ।

ପୁତ୍ର ପୌତ୍ରାଦି ରୂପ ଶୃଙ୍ଖଳା ଦ୍ୱାରା ଆବଦ୍ଧ ସେ ରମଣୀମାନେ ସ୍ୱେଚ୍ଛାଚାରରେ କ୍ରୀଡ଼ା ମୃଗତୁଲ୍ୟ କେତେବେଳେ ଲମ୍ପଟ ପୁରୁଷମାନଙ୍କୁ କେତେବେଳେ ବା ନିଜକୁ ମୁକ୍ତ ବୋଲି ମନେ କରନ୍ତି । ୧୭ ।

ହେ ଦୈତ୍ୟଗଣ ! ବିଷୟାସକ୍ତ ଦୈତ୍ୟମାନଙ୍କୁ ଦୂରରୁ ପରିତ୍ୟାଗ କରି ଆଦି ଦେବ ନାରାୟଣଙ୍କର ଶରଣାଗତ ହୁଅ ତାଙ୍କର ଶରଣହିଁ ମୋକ୍ଷ । ନିଃସଙ୍ଗ ମୁନିମାନେ ତାହାହିଁ ବାଞ୍ଛା କରିଥାନ୍ତି । ୧୮ ।

---

ନିରତେ କୁଟୁମ୍ବ ପୋଷଣେ
ଆୟୁଷ କ୍ଷୟ ନ ପ୍ରମାଣେ
ସର୍ବଦା ତାପତ୍ରୟେ ଦୁଃଖୀ
କୁଟୁମ୍ବ ରାଗ ନ ଉପେକ୍ଷି
ନିରତେ ରତ ହୋଏ ଚିତ୍ତ
କାମେ ଜଡ଼ିତ ଅବିରତ ।୧୪,୧୫।
ପଣ୍ଡିତ ପ୍ରାୟେ ସର୍ବଜାଣେ
ଆତ୍ମାର ଗତି ନ ପ୍ରମାଣେ

ଯେ ଫଳ ଇହ ପରଲୋକେ
ତା ପୁଣି ଜାଣେ ବିଦ୍ୟାମୁଖେ
କୁଟୁମ୍ବୀ ସଙ୍ଗେ ଗୃହ କରେ
କ୍ରୀଡ଼ା ବିନୋଦେ ସେ ବିହରେ
କୁଟୁମ୍ବଗ୍ରସ୍ତ ଯାକୁ କରେ
ଉଭୟ ଲୋକୁଁ ନ ନିସ୍ତରେ
ବିଭିନ୍ନ ଆତ୍ମା ପର ଭାବ
କାମ ଫଳକଲେ ଅନୁରାଗି

ବିମୂଢ଼-ମତି ଭବେ ଭ୍ରମେ
ଅନ୍ତେ ପଡ଼ଇ ଘୋର ତମେ ।୧୬,୧୭
ତୁମ୍ଭେ ସକଳେ ଏହା ଜାଣି
ଆତ୍ମାର ହିତ ମନେ ଗୁଣି
ବିଷୟ ନ କର ହୋ ସଙ୍ଗ
ଦେଖ ଏ ସିନ୍ଧୁର ତରଙ୍ଗ
ଏ ସଙ୍ଗ ଦୂରେ ପରିହରି
ନାରାୟଣଙ୍କୁ ଆଶ୍ରେ କରି

ନ ହ୍ୟଚ୍ୟୁତଂ ପ୍ରୀଣୟତୋ ବହ୍ୱାୟାସୋଽସୁରାତ୍ମଜାଃ ।
ଆତ୍ମତ୍ୱାତ୍ ସର୍ବଭୂତାନାଂ ସିଦ୍ଧତ୍ୱାଦିହ ସର୍ବତଃ । ୧୯ ।
ପରାବରେଷୁ ଭୂତେଷୁ ବ୍ରହ୍ମାନ୍ତସ୍ଥାବରାଦିଷୁ ।
ଭୌତିକେଷୁ ବିକାରେଷୁ ଭୂତେଷ୍ୱଥ ମହତ୍ସୁ ଚ । ୨୦ ।
ଗୁଣେଷୁ ଗୁଣସାମ୍ୟେ ଚ ଗୁଣବ୍ୟତିକରେ ତଥା ।
ଏକ ଏବ ପରୋ ହ୍ୟାତ୍ମା ଭଗବାନୀଶ୍ୱରୋଽବ୍ୟୟଃ । ୨୧ ।
ପ୍ରତ୍ୟଗାତ୍ମସ୍ୱରୂପେଣ ଦୃଶ୍ୟରୂପେଣ ଚ ସ୍ୱୟମ୍ ।
ବ୍ୟାପ୍ୟବ୍ୟାପକନିର୍ଦ୍ଦେଶ୍ୟୋ ହ୍ୟନିର୍ଦ୍ଦେଶ୍ୟୋଽବିକଳ୍ପିତଃ । ୨୨ ।
କେବଳାନୁଭବାନନ୍ଦସ୍ୱରୂପଃ ପରମେଶ୍ୱରଃ ।
ମାୟୟାନ୍ତର୍ହିତୈଶ୍ୱର୍ଯ୍ୟ ଈୟତେ ଗୁଣସର୍ଗୟା । ୨୩ ।

---

ହେ ଅସୁର ନନ୍ଦନଗଣ ! ଭଗବାନ ଅଚ୍ୟୁତଙ୍କ ଭକ୍ତି କରିବା କଷ୍ଟସାଧ୍ୟ ନୁହେଁ କାରଣ ସେ ସର୍ବ ଭୂତର ଆତ୍ମା ଏବଂ ସର୍ବତ୍ର ବିଦ୍ୟମାନ । ୧୯ ।

ସ୍ଥାବରାଦି ବ୍ରହ୍ମ ପର୍ଯ୍ୟନ୍ତ ଉତ୍କୃଷ୍ଟ ନିକୃଷ୍ଟ ଜୀବ ସମୂହରେ ଏବଂ ଜୀବଶୂନ୍ୟ ଭୌତିକ ବିକାର ଘଟ ପଟାଦିରେ ଏବଂ ମହାଭୂତମାନଙ୍କରେ ସତ୍ତ୍ୱାଦି ଗୁଣସମୂହରେ ପ୍ରକୃତିରେ ଓ ମହଦାଦିତତ୍ତ୍ୱ ସମୂହରେ ଏମାନଙ୍କରେ ବ୍ରହ୍ମସ୍ୱରୂପ ଭଗବାନ୍ ଈଶ୍ୱର ଅବ୍ୟୟ, ଏକାତ୍ମା ରୂପେ ବିଦ୍ୟମାନ । ୨୦,୨୧ ।

ମାୟାଦ୍ୱାରା ଦ୍ରଷ୍ଟାଶୂନ୍ୟ ଭୋକ୍ତା ଓ ଭୋଗ୍ୟ ଏହିପରି ଭେଦ ହୁଏ, ଏହା କୁହା ଯାଇଅଛି । ଏହି ବ୍ରହ୍ମ ପ୍ରତ୍ୟାଗାତ୍ମାରୂପେ ଓ ଦୃଶ୍ୟ ରୂପେ ନିଜେ ଅନିର୍ଦ୍ଦେଶ୍ୟ ଓ ବିକଳ୍ପ ରହିତ ହେଲେ ମଧ୍ୟ ବ୍ୟାପକ ଓ ବିକଳ୍ପିତ ହୋଇଥାଏ ଅର୍ଥାତ୍ ସେ ଦ୍ରଷ୍ଟା ଓ ଭୋକ୍ତାରୂପେ ବ୍ୟାପକ ଦୃଶ୍ୟ ଓ ଭୋଗ୍ୟରୂପେ ବ୍ୟାପ୍ୟ ବୋଲି ନିର୍ଦ୍ଦେଶ କରାଯାଇଥାଏ କିନ୍ତୁ ସେ ଦ୍ୱୈତ ବର୍ଜିତ, ଅନୁଭବ ଓ ଆନନ୍ଦ ତାହାର ସ୍ୱରୂପ କିନ୍ତୁ ତାହା ଯେବେ ଅନ୍ୟରୂପେ ପ୍ରତୀତ ହୁଏ ତହିଁର କାରଣ ଗୁଣ ସୃଷ୍ଟି କାରଣୀ ମାୟାଦ୍ୱାରା ତାହାର ଐଶ୍ୱର୍ଯ୍ୟ ଅନ୍ତର୍ହିତ ହୋଇଥାଏ ସୁତରାଂ ସେ ଅନିର୍ଦ୍ଦେଶ୍ୟ ଓ ଅବିକଳ୍ପିତ । ୨୨,୨୩ ।

---

ସେ ନାରାୟଣ ସର୍ବଧାତା
ଈଷତେ କଇବଲ୍ୟ ଦାତା
କୃଷ୍ଣଙ୍କୁ ଆରାଧେ ଯେ କରନ୍ତି
ସେ ସର୍ବ ଦୁଃଖୁଁ ନିସ୍ତରନ୍ତି
ଅସୁର ବୁଦ୍ଧିକି ଉପେଖ
ଆତ୍ମାରସ୍ତ୍ରାନ୍ତେ ସର୍ବଦେଖ ।୧୮,୧୯
ଏ ବିଷ୍ଣୁ ମାୟା ପାରାପାର
ବ୍ରହ୍ମାଣ୍ଡ ବାହ୍ୟ ଅଭ୍ୟନ୍ତର

ବ୍ରହ୍ମାଦି ସ୍ଥାବର ପର୍ଯ୍ୟନ୍ତ
ଅବ୍ୟକ୍ତରୂପ ପଞ୍ଚ ଭୂତ
ଗୁଣ ଅଗୁଣ ଗୁଣସାମ୍ୟେ
ଏ ଆଦି ସର୍ବଘଟେ ରମେ
ବସଇ ଏକ ଆତ୍ମା ହରି
ଈଶ୍ୱର ଅବ୍ୟୟ ରୂପ ଧରି ।୨୦,୨୧
ଆତ୍ମା ସ୍ୱରୂପେ ସର୍ବ ଦେହେ
ଦୃଶ୍ୟ ଅଦୃଶ୍ୟ ଭାବେ ରହେ

ନିର୍ଦ୍ଦେଶ ଅନିର୍ଦ୍ଦେଶ ମତେ
କଳି କେ ପାରିବ ଜଗତେ
କେବଳ ଆନନ୍ଦାନୁଭବେ
ଅଶେଷ ନୋହେ ସର୍ବ ଜୀବେ
ବାହ୍ୟ ଅନ୍ତରେ ବ୍ୟାପି ରହେ
ଐଶ୍ୱର୍ଯ୍ୟ ଗୁଣ ସଙ୍ଗେ ବହେ
ଏ ଯେଣି ସର୍ବଭୂତେ ସାର
ପ୍ରାଣି-ବିଷୟେ ଦୟା କର

ତସ୍ମାତ୍ ସର୍ବେଷୁ ଭୂତେଷୁ ଦୟାଂ କୁରୁତ ସୌହୃଦମ୍ ।
ଭାବମାସୁରମୁନ୍ମୁଚ୍ୟ ଯୟା ତୁଷ୍ୟତ୍ୟଧୋକ୍ଷଜଃ । ୨୪ ।
ତୁଷ୍ଟେ ଚ ତତ୍ର କିମଲଭ୍ୟମନନ୍ତ ଆଦ୍ୟେ କିଂ ତୈର୍ଗୁଣବ୍ୟତିକରାଦିହ ଯେ ସ୍ୱସିଦ୍ଧାଃ ।
ଧର୍ମାଦୟଃ କିମଗୁଣେନ ଚ କାଂକ୍ଷିତେନ ସାରଂ ଜୁଷାଂ ଚରଣୟୋରୁପଗାୟତାଂ ନଃ ॥
ଧର୍ମାର୍ଥକାମ ଇତି ଯୋଽଭିହିତସ୍ତ୍ରିବର୍ଗ ଈକ୍ଷା ତ୍ରୟୀ ନୟଦମୌ ବିବିଧା ଚ ବାର୍ତ୍ତା ।
ମନ୍ୟେ ତଦେତଦଖିଳଂ ନିଗମସ୍ୟ ସତ୍ୟଂ ସ୍ୱାତ୍ମାର୍ପଣଂ ସ୍ୱସୁହୃଦଃ ପରମସ୍ୟ ପୁଂସଃ ।୨୬।
ଜ୍ଞାନଂ ତଦେତଦମଲଂ ଦୁରବାପମାହ ନାରାୟଣୋ ନରସଖଃ କିଲ ନାରଦାୟ ।
ଏକାନ୍ତିନାଂ ଭଗବତସ୍ତଦକିଞ୍ଚନାନାଂ ପାଦାରବିନ୍ଦରଜସାପ୍ଲୁତଦେହିନାଂ ସ୍ୟାତ୍ ।୨୭।

---

ହେ ବୟସ୍ୟଗଣ ! ତେଣୁ ତୁମ୍ଭେମାନେ ଅସୁରଭାବ ପରିତ୍ୟାଗ କରି ସର୍ବଭୂତରେ ଦୟାବାନ୍ ହୁଅ ଏବଂ ସମସ୍ତଙ୍କ ସହିତ ସଖ୍ୟଭାବ ସ୍ଥାପନ କର । ତଦ୍ଦ୍ୱାରା ଭଗବାନ୍ ଅଧୋକ୍ଷଜ ପରିତୁଷ୍ଟ ହେବେ । ୨୪ ।

ହେ ବୟସ୍ୟ ଗଣ ! ସେହି ଆଦି ଦେବ ଅନନ୍ତ ପରିତୁଷ୍ଟ ହେଲେ କି ଅଭାବ ରହିପାରେ । ସତ୍ତ୍ୱ ପ୍ରଭୃତି ଗୁଣ ପରିଣାମରେ ଦୈବାତ୍ ଉତ୍ପନ୍ନ ଧର୍ମ, ଅର୍ଥ ଓ କାମରୂପ ପୁରୁଷାର୍ଥରେ କି ଫଳ ? ଏବଂ ମୋକ୍ଷାଦି ଆକାଙ୍କ୍ଷାରେ ବା କି ଲାଭ । ଭଗବାନଙ୍କର ଚରଣସୁଧା ସେବା କରିବାକୁ ଯଦି ଆମ୍ଭେମାନେ ସମର୍ଥ ହେଉ ଏବଂ ଯତ୍ନ ସହକାରେ ତାଙ୍କର ନାମ କୀର୍ତ୍ତନ କରିପାରୁ ତେବେ ନିର୍ଗୁଣ ମୋକ୍ଷ ପର୍ଯ୍ୟନ୍ତ ଆମ୍ଭମାନଙ୍କର କାମନା ବିଷୟ ହୋଇ ନ ପାରେ । ୨୫ ।

ହେ ଦୈତ୍ୟ ବାଳକଗଣ ! ଧର୍ମ ଅର୍ଥ, କାମ ଏ ସମସ୍ତ ଆତ୍ମବିଦ୍ୟା, ବେଦତ୍ରୟୀ, ଦଣ୍ଡନୀତି ଓ ବିବିଧ ଜୀବିକା ଶାସ୍ତ୍ର । ଏହା ବେଦରେ କଥିତ ହୋଇଅଛି । ତାହା ମୁଁ ସତ୍ୟ ବୋଲି ମାନେ, ତାହାହିଁ ତ୍ରିଗୁଣ ଲକ୍ଷଣ । ୨୬ ।

ହେ ବୟସ୍ୟଗଣ ! ଏହି ନିର୍ମଳ ଜ୍ଞାନକଥା ମାନବବନ୍ଧୁ ଭଗବାନ୍ ନାରଦଙ୍କୁ କହିଥିଲେ । ( ତୁମ୍ଭେମାନେ ନାରଦଙ୍କ ତୁଲ୍ୟ ନୁହଁ ବୋଲି ଏହି ଜ୍ଞାନ ଜନ୍ମିବ ନାହିଁ ଏପରି ମନେ କର ନାହିଁ ) । ଭଗବାନଙ୍କର ଏକାନ୍ତ ଭକ୍ତ ଅକିଞ୍ଚନ ପୁରୁଷମାନଙ୍କର ପଦଧୂଳିରେ ଯେଉଁ ଦେହ ଅଭିଷିକ୍ତ ହୁଏ ସେମାନେ ସମସ୍ତେ ଜ୍ଞାନଲାଭ କରି ପାରନ୍ତି । କେବଳ ଯେ ଉତ୍ତମ ପୁରୁଷମାନଙ୍କର ଏ ଜ୍ଞାନ ହେବ ତାହା ନୁହେଁ ।୨୭

---

ସୁହୃଦ ଭାବ ଧରି ଚିତ୍ତେ
ହରିଙ୍କି ଲଭିବ ଯେମନ୍ତେ
ଅସୁର ଭାବ ଦୂର କରି
ଯେତେଶସନ୍ତୋଷହୋଏହରି।୨୨-୨୪
ଏ ଭାବ ଦୃଢକରି ଚିତ୍ତେ
ହରିଙ୍କି ଭଜ ଅବିରତେ
ସେ ହରି ତୋଷ ଯାକୁ ଚିତ୍ତେ
କିବା ଅଲଭ୍ୟ ଏ ଜଗତେ
ଅନନ୍ତ ଅବ୍ୟକ୍ତ ମହିମା
କି ଗୁଣେ କରିବା ଉପମା
ତ୍ରିଗୁଣୁଁ କରେ ନିସ୍ତାରଣ
କୈବଲ୍ୟ ପରମ କାରଣ
ସଂସାର ମଧ୍ୟେ ସାର କାହିଁ
ତାର ଚରଣ ବିନୁ ନାହିଁ
ଏ ଘେନି କୃଷ୍ଣର ଚରଣ
ଯେ ପ୍ରାଣୀ ପଶନ୍ତି ଶରଣ
ତାଙ୍କ ଚରଣେ ସେବା କରି
ଏ ବସ୍ତୁ-ମାୟାରୁ ନିସ୍ତରି । ୨୫ ।
ଧର୍ମାର୍ଥ କାମ ବେଦମତେ
ଏ ତିନି ବର୍ଗର ପ୍ରାପତେ
ସାଧନ କରି ଶମ ଦମ
ଯଜ୍ଞାଦି ନାନାବିଧ କର୍ମ
ସତ୍ୟ ବଚନ ବେଦବାଣୀ
ଏଥେ ସଂସାରୁ ତରେ ପ୍ରାଣୀ
ନାନା ପ୍ରକାରେ ପୁଣ୍ୟ-ଦାହି
ଯେ ହରିପାଦେ ସମର୍ପଇ
ଧନ୍ୟ ତା ଶରୀର ଧାରଣ
ସେ ଲଭେ ପରମ କାରଣ ।୨୬।
ନିର୍ମଳ ଦୁର୍ଲଭ ଏ ଜ୍ଞାନ
ନିଗମ ସାର ଅନୁପମ

ଶ୍ରୁତମେତନ୍ମୟାପୂର୍ବଂ ଜ୍ଞାନଂ ବିଜ୍ଞାନସଂଯୁତମ୍ ।
ଧର୍ମଂ ଭାଗବତଂ ଶୁଦ୍ଧଂ ନାରଦାଦ୍ଦେବଦର୍ଶନାତ୍ । ୨୮ ।

ଶ୍ରୀ ଦୈତ୍ୟପୁତ୍ରା ଊଚୁଃ—ପ୍ରହ୍ଲାଦ ତ୍ୱଂ ବୟଞ୍ଚାପି ନର୍ତେଽନ୍ୟଂ ବିଦ୍ମହେ ଗୁରୁମ୍ ।
ଏତାଭ୍ୟାଂ ଗୁରୁପୁତ୍ରାଭ୍ୟାଂ ବାଲାନାମପି ହୀଶ୍ୱରୌ । ୨୯ ।
ବାଲସ୍ୟାନ୍ତଃପୁରସ୍ଥସ୍ୟ ମହତ୍ସଙ୍ଗୋ ଦୁରନ୍ୱୟଃ ।
ଛିନ୍ଧି ନଃ ସଂଶୟଂ ସୌମ୍ୟ ସ୍ୟାଚ୍ଚେଦ୍‌ବିଶ୍ରମ୍ଭକାରଣମ୍ । ୩୦ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ
ପ୍ରହ୍ଲାଦାନୁଚରିତେ ନାମ ଷଷ୍ଠୋଽଧ୍ୟାୟଃ । ୬ ।

---

ମୁଁ ପୂର୍ବେ ଏହି ବିଶୁଦ୍ଧ ଭାଗବତଧର୍ମ ଜ୍ଞାନ ବିଜ୍ଞାନ ବିତ୍ତ ଦେବଦର୍ଶନ ନାରଦଙ୍କଠାରୁ ଶୁଣିଅଛି । ୨୮ ।

ଦୈତ୍ୟ ପୁତ୍ରମାନେ କହିଲେ :—ହେ ପ୍ରହ୍ଲାଦ ! ତୁମ୍ଭେ ଓ ଆମ୍ଭେମାନେ ଏହି ଗୁରୁ ପୁତ୍ରଦ୍ୱୟଙ୍କ ଭିନ୍ନ ଅନ୍ୟ କୌଣସି ଗୁରୁ ଜାଣି ନାହୁଁ । ଆମ୍ଭେମାନେ ବାଳକ ଏବଂ ଏହି ଗୁରୁପୁତ୍ରମାନେ ଆମ୍ଭମାନଙ୍କର ନିୟନ୍ତା, ତେବେ ତୁମ୍ଭେ କିପରି ଏ ଜ୍ଞାନ ନାରଦଙ୍କଠାରୁ ଲାଭ କଲ । ୨୯ ।

ହେ ସୌମ୍ୟ ! ଅନ୍ତଃପୁର ବାସୀ ବାଳକ ପକ୍ଷରେ ମହାପୁରୁଷ ସଙ୍ଗଲାଭ ଦୁର୍ଘଟ । ଯଦି ଏ ବିଷୟରେ ବିଶ୍ୱାସ ଯୋଗ୍ୟ କୌଣସି ପ୍ରମାଣ ଥାଏ ତଦ୍ଦ୍ୱାରା ଆମ୍ଭମାନଙ୍କର ସନ୍ଦେହ ଦୂରକର । ୩୦ ।

---

ନାରଦ ମୁନିଙ୍କ ଅଗ୍ରତେ
ସୁପୁଣ୍ୟ ବଦରିକା ତୀର୍ଥେ
ତପ ଆଚରି ଅନୁକ୍ଷଣ
ଅଛନ୍ତି ନର ନାରାୟଣ
ନାରଦ ମୁନି ଶୁଦ୍ଧଚେତା
ପୁଚ୍ଛିଲେ ହରି ଗୁଣ ଗାଥା
ଓସେ ନାରାୟଣ ଶୁଦ୍ଧଭାବେ
ଯେ ବାକ୍ୟ ବିବିଧ ପ୍ରସ୍ତାବେ
ନାରଦ ମୁନିଙ୍କ ସନ୍ତୋଷେ
କହିଲେ ଜ୍ଞାନ ଉପଦେଶେ
କୃଷ୍ଣର ପାଦପଦ୍ମ ଧୂଳି
ସାନନ୍ଦମନେ ଅଙ୍ଗେ ବୋଳି
ସଂସାରେ ଅକିଞ୍ଚନମାନେ
ଯାହା ଭଜନ୍ତି ଶୁଦ୍ଧମନେ
ପୂର୍ବେ ମୁଁ ନାରଦର ବାଣୀ
ମାତାର ଗର୍ଭେ ଥାଇ ଶୁଣି
ଏ ବାଣୀ ଭାଗବତ କଥା
ଶୁଣନ୍ତେ ଖଣ୍ଡେ ଭବବ୍ୟଥା

ଭାବେ କହିଲି ତୁମ୍ଭ ଆଗେ
ହରି ଚରିତ ଅନୁରାଗେ । ୨୭,୨୮ ।
ଏମନ୍ତେ ପ୍ରହ୍ଲାଦ ବାଣୀ
ଭାବେ ଅସୁର ପୁତ୍ର ଶୁଣି
ବୋଲନ୍ତି ପ୍ରହ୍ଲାଦ ଆଗେ
ତୁଲ୍ୟ ବୟସ ଅନୁରାଗେ
ଶୁଣ ହେ ନୃପତି କୁମର
ଆମ୍ଭେ ଯେ ସଙ୍ଗତେ ତୋହର
ତୋହର ଭିନ୍ନ ଗୁରୁ ନାହିଁ
ଏ ବିଦ୍ୟା ସମ୍ପାଦିଲୁ କାହିଁ ?
ଏ ଗୁରୁ ପୁତ୍ରଙ୍କ ଚରଣେ
ଆମ୍ଭେ ଯେ ସେବୁଁ ଅନୁକ୍ଷଣେ
ତାହାଙ୍କ ଉପଦେଶ ଜାଣୁ
ତୁ ଏହା କେମନ୍ତେ ପ୍ରମାଣୁ ?
ତୁହିତ ବାଳକ ବେଶରେ
ନିରତେ ଥାଉ ଅନ୍ତଃପୁରେ
ସ୍ୱଭାବେ ସନ୍ତଙ୍କ ମନ୍ଦିର
ଦେବ ମାନବେ ଅଗୋଚର

ତହିଁ ଭିତରେ ଥାଉ ତୁହି
ମହିତ ସଙ୍ଗ ତୋର ନାହିଁ
ତେଣୁ ସଂଶୟ ଆମ୍ଭ ମନ
ନିହାର ବନେ ଯେସନ୍ତ ଘନ
ତୋହର ପାଦେ ନମସ୍କାର
ସଂଶୟ ଛେଦ ତୁ ଆମ୍ଭର
ଏମନ୍ତେ ଅସୁର ବାଳକେ
ତାର ସମୀପେ ଏକ ଏକେ
ଚରଣ ଧରି ପ୍ରବୋଧିଲେ
ବିଶ୍ୱାସ ହେତୁ ପଚାରିଲେ । ୨୯,୩୦
ଏମନ୍ତ ଭାଗବତ ବାଣୀ
ଶୁଣି ସଂସାରୁ ତରି ପ୍ରାଣୀ
ସପ୍ତମସ୍କନ୍ଧେ ଭାଗବତ
କହିଲେ ଦାସ ଜଗନ୍ନାଥ ।



## ବିଶଦାର୍ଥ :—

ପ୍ରହ୍ଲାଦ ଗୁରୁପୁତ୍ରଦ୍ୱୟଙ୍କ ଅନୁପସ୍ଥିତିରେ ସଙ୍ଗୀ ବାଳକମାନଙ୍କୁ ହରିରସ ଆସ୍ୱାଦନ କରାଇବାକୁ ବ୍ୟାକୁଳ ହୋଇଥିଲେ । ଏହାହିଁ ହରିଭକ୍ତର ଲକ୍ଷଣ, ସେ ଯେଉଁ ଅମୀୟରସ ଲାଭକରେ ତାହା ଅନ୍ୟକୁ ବିତରଣ କରିବାକୁ ବ୍ୟଗ୍ର ହୁଏ । ପ୍ରହ୍ଲାଦର ଏହି ଅବସ୍ଥା ଉପସ୍ଥିତ ହୋଇଥିଲା, ସେ ଭାବିଲେ ମୋର ବୟସ୍ୟ ମାନଙ୍କୁ କିଛି ଭଗବତ୍ଜ୍ଞାନ ବିତରଣ କରି ମୁଁ ଯେଉଁ ଆନନ୍ଦ ଉପଭୋଗ କରୁଅଛି ସେମାନଙ୍କୁ ତହିଁର ଅଂଶଭାଗୀ କରାଏ । ହରିରସ ପରିବେଷଣ ନିମିତ୍ତ ଭକ୍ତ ସର୍ବ ଦେଶ, କାଳ, ପାତ୍ର ଅନୁସନ୍ଧାନ କରୁଥାଏ । ତେଣୁ ଶ୍ରୀମଦ୍ ଭଗବଦ୍ ଗୀତାରେ ଉକ୍ତ ହୋଇଅଛି—

ମନୁଷ୍ୟାଣାଂ ସହସ୍ରେଷୁ କଶ୍ଚିତ୍ ଯତତି ସିଦ୍ଧୟେ ।
ଯତତାମପି ସିଦ୍ଧାନାଂ କଶ୍ଚିନ୍ମାଂ ବେତ୍ତି ତତ୍ତ୍ୱତଃ ॥

ସହସ୍ର ସହସ୍ର ମନୁଷ୍ୟ ମଧ୍ୟରେ କ୍ୱଚିତ୍ କେହି ଆତ୍ମଜ୍ଞାନ ଲାଭ ନିମିତ୍ତ ପ୍ରଯତ୍ନବାନ୍ ହୁଅନ୍ତି ଏବଂ ପ୍ରଯତ୍ନଶୀଳ ମୁମୁକ୍ଷୁ ମାନଙ୍କ ମଧ୍ୟରେ କେହି କେହି ମୋର ସ୍ୱରୂପ ଜାଣି ପାରନ୍ତି ।

ସିଦ୍ଧି ନିମିତ୍ତ ଯତ୍ନବାନ୍ ବ୍ୟକ୍ତି ଉପଦେଷ୍ଟା ନ ପାଇଲେ ସିଦ୍ଧିମାର୍ଗରେ ଅଗ୍ରସର ହୋଇ ନ ପାରେ ତେଣୁ କ୍ଷତ୍ରିୟ କୁଳରେ ଧ୍ରୁବ ଗୁରୁରୂପେ ଅବତୀର୍ଣ୍ଣ; ଅସୁରକୁଳରେ ପ୍ରହ୍ଲାଦର ଜନ୍ମ ଧ୍ରୁବ; ଏବଂ ପ୍ରହ୍ଲାଦ ଉଭୟ ଭକ୍ତ ପ୍ରବର ଦେବର୍ଷି ନାରଦଙ୍କର ଉପଦେଶ ଲାଭ କରି ତାହା ବୟସ୍ୟ ମାନଙ୍କୁ ଶୁଣାଇବାକୁ ବ୍ୟାକୁଳ ହୋଇଥିଲେ ।

କେହି କେହି ନୀତିଶାସ୍ତ୍ର ବିତ୍ ସମୟ ବିଭାଗ କରି ଜରାବସ୍ଥାକୁ ଧର୍ମ ଅର୍ଜ୍ଜନର ସମୟ ନିର୍ଦ୍ଦେଶ କରିଥାନ୍ତି କିନ୍ତୁ ଏହି ଭ୍ରାନ୍ତି ଦୂର କରିବା ଉଦ୍ଦେଶ୍ୟରେ ପ୍ରହ୍ଲାଦ ସଙ୍ଗୀ ବାଳକ ଗଣଙ୍କୁ ବୁଝାଇ ଥିଲେ । ହରି ଚରଣ ସୁଧା ପାନ କରିବା ନିମିତ୍ତ କୌଣସି ସମୟ ବିଭାଗ ନିର୍ଦ୍ଦେଶ କରିବା ଉଚିତ ନୁହେଁ, ମନୁଷ୍ୟ ଜୀବନ ବିଶ୍ଳେଷଣ କରି ଦେଖିଲେ ଜଣାଯାଏ ସମଗ୍ର ଜୀବନ କାଳମଧ୍ୟରୁ ଅର୍ଦ୍ଧେକ ବା ତତୋଽଧିକ କାଳ ନିଦ୍ରା କ୍ରୀଡ଼ା, ଇନ୍ଦ୍ରିୟ ସୁଖ ଭୋଗ, ଜୀବିକାର୍ଜ୍ଜନ, କୁଟୁମ୍ବାଦି ପୋଷଣ ଇତ୍ୟାଦିରେ ବୃଥା ବ୍ୟୟିତ ହୋଇଥାଏ । ତେଣୁ ଯେଉଁମାନେ ବାର୍ଦ୍ଧକ୍ୟାବସ୍ଥାକୁ ହରିନାମ କୀର୍ତ୍ତନ ପାଇଁ ନିର୍ଦ୍ଦେଶ କରନ୍ତି ସେମାନେ ନିଶ୍ଚୟ ଭ୍ରାନ୍ତ । ସମସ୍ତ ବିଷୟ ଆଲୋଚନା ନିମିତ୍ତ ପଛକୁ ରଖାଯାଇ ପାରେ କିନ୍ତୁ ହରି ଭଜନର କୌମାର, ଯୌବନ, ଜରା, ଦିବା, ରାତ୍ରି, ଦେଶ କାଳ କୌଣସି ପ୍ରକାର ନିର୍ଦ୍ଦିଷ୍ଟ ସମୟ ବା ସ୍ଥାନ ନିରୂପଣ କରାଯାଇ ନ ପାରେ । ବରଂ କୌମାର ସମୟ ତଦପେକ୍ଷେ ଉତ୍କୃଷ୍ଟ ବୋଲି ପ୍ରହ୍ଲାଦ ନିର୍ଦ୍ଦିଷ୍ଟ କରିଅଛନ୍ତି । ପ୍ରହ୍ଲାଦ ଅସୁର ବାଳକମାନଙ୍କର ସ୍ୱାଭାବିକ ନିଷ୍ଠୁର ହୃଦୟରୁ ପ୍ରାଣୀ ହିଂସା, ଜୀବହିଂସା ଦୂର କରିବା ନିମିତ୍ତ ସେମାନଙ୍କୁ ସର୍ବପ୍ରାଣୀଠାରେ ଦୟା ପରବଶ ଏବଂ ସମସ୍ତଙ୍କଠାରେ ସମଭାବ ହେବାକୁ ଉପଦେଶ ଦେଇଥିଲେ । ପ୍ରହ୍ଲାଦ ଭଗବତ୍ ଭକ୍ତିର ଯେଉଁ ମହାତ୍ମ୍ୟ ବୟସ୍ୟ ମାନଙ୍କୁ ଶୁଣାଇ ଥିଲେ; ତାହା ନୂତନ ନୁହେଁ । ଦେବର୍ଷି ନାରଦଙ୍କଠାରୁ ସେ ଯେଉଁ ଜ୍ଞାନ ଲାଭ କରିଥିଲେ ତାହାହିଁ ତାହାଙ୍କର ବୟସ୍ୟମାନଙ୍କୁ ଉପଦେଶର ଭିତ୍ତି । ଏହା ମଧ୍ୟ ଜଣାଇଥିଲେ । ଏଥିରେ ବୟସ୍ୟମାନଙ୍କର ସନ୍ଦେହ ହେବା ସ୍ୱାଭାବିକ, କାରଣ ସେମାନେ ଦେଖୁଛନ୍ତି ପ୍ରହ୍ଲାଦ ରାଜ ଭବନରେ ଗୁରୁ ଗୃହରେ ଏବଂ ପ୍ରାସାଦ ମଧ୍ୟରେ ଆବଦ୍ଧ ରହିଅଛି । ଗୁରୁପୁତ୍ର ଦୁଇଟିଙ୍କ ଭିନ୍ନ ଅନ୍ୟ ଗୁରୁ ସହିତ ତାହାର ସାକ୍ଷାତ ହେଲା କେବେ ? ସୁତରାଂ ସେମାନଙ୍କର ସନ୍ଦେହ ଦୂର କରିବା ଲାଗି ସେମାନେ ପ୍ରହ୍ଲାଦଙ୍କୁ ପ୍ରଶ୍ନ କରିଥିଲେ ।

## ସ ପ୍ତ ମ ଅ ଧ୍ୟା ୟ ।

ସପ୍ତମେ ମାତୃଗର୍ଭସ୍ଥେ ସ୍ୱସ୍ମିନ୍ ନାରଦଭାଷିତମ୍ ।
ପ୍ରହ୍ଲାଦେ ବର୍ଣ୍ଣୟାମାସ ଶିଷ୍ୟପ୍ରତ୍ୟୟସିଦ୍ଧୟେ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀନାରଦ ଉବାଚ ।

ଏବଂ ଦୈତ୍ୟସୁତୈଃ ପୃଷ୍ଟୋ ମହାଭାଗବତୋଽସୁରଃ ।
ଉବାଚ ସ୍ମୟମାନସ୍ତାନ୍ ସ୍ମରନ୍ ମଦନୁଭାଷିତମ୍ । ୧ ।

ଶ୍ରୀପ୍ରହ୍ଲାଦ ଉବାଚ ।

ପିତରି ପ୍ରସ୍ଥିତେଽସ୍ମାକଂ ତପସେ ମନ୍ଦରାଚଲମ୍ ।
ଯୁଦ୍ଧୋଦ୍ୟମଂ ପରଂ ଚକ୍ରୁର୍ବିବୁଧା ଦାନବାନ୍ ପ୍ରତି । ୨ ।

---

### ପ୍ରହ୍ଲାଦଙ୍କୁ ନାରଦଙ୍କ ଉପଦେଶ ।

ସପ୍ତମ ଅଧ୍ୟାୟରେ ମାତୃଗର୍ଭରେ ଥାଇ ପ୍ରହ୍ଲାଦ ଯେପରି ନାରଦୋକ୍ତ ଉପଦେଶ ଦ୍ୱାରା ଜ୍ଞାନଲାଭ କରିଥିଲେ ତାହା ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀନାରଦ କହିଲେ—

ଭଗବତ ଶ୍ରେଷ୍ଠ ପ୍ରହ୍ଲାଦଙ୍କୁ ବୟସ୍ୟ ବାଳକମାନେ ପ୍ରଶ୍ନ କରନ୍ତେ ସେ ଈଷତ୍ ହାସ୍ୟ କରି ଦୈତ୍ୟ ବାଳକମାନଙ୍କୁ ପୂର୍ବ କଥିତ ବିଷୟମାନ କହିଥିଲେ (ଏହି କଥା ନାରଦ ରାଜା ଯୁଧିଷ୍ଠିରଙ୍କୁ କହିଲେ) । ୧ ।

ଶ୍ରୀପ୍ରହ୍ଲାଦ କହିଲେ—

ଆମ୍ଭମାନଙ୍କର ପିତା ହିରଣ୍ୟ କଶିପୁ ତପସ୍ୟା କରିବାକୁ ମନ୍ଦର ପର୍ବତକୁ ଗମନ କରନ୍ତେ ଦେବତାମାନେ ଅସୁରମାନଙ୍କ ସହିତ ଯୁଦ୍ଧ କରିବାକୁ ଉଦ୍ୟତ ହେଲେ । ୨ ।

---

ପ୍ରହ୍ଲାଦ ମାତା ଗର୍ଭେ ଥାଇ,ନାରଦ ଉପଦେଶ ପାଇ । ଯେମନ୍ତେ ଲଭିଲ ସେ ଜ୍ଞାନ,ସପ୍ତମ ଅଧ୍ୟାୟେ ବର୍ଣ୍ଣନ୍ୟାଂ

ଶ୍ରୀନାରଦ ଉବାଚ—

ଏବେ ହୋ ଶୁଣ ଧର୍ମସୁତ
ଅସୁର ବାଳକ ଚରିତ
ସେ ପ୍ରହ୍ଲାଦ ଦୟା ମନେ
କହେ ବାଳକ ସନ୍ନିଧାନେ । ୧ ।

ଶ୍ରୀପ୍ରହ୍ଲାଦ ଉବାଚ—

ମୋହର ପିତା ତପଅର୍ଥେ
ଗଲା ଯେ ମନ୍ଦର ପର୍ବତେ
ଜାଣିଲେ ତପ ତାର ଦେଖି
ବିବୁଧେ ଗଗନ ଉପେକ୍ଷି
ଯୁଦ୍ଧ ଉଦ୍ୟମ କରି ବଳେ
ମିଳିଲେ ଅବନୀ ମଣ୍ଡଳେ । ୨

ପିପୀଲିକୈରହିରିବ ଦିଷ୍ଟ୍ୟା ଲୋକୋପତାପନଃ ।
ପାପେନ ପାପୋଽଭକ୍ଷୀତି ବଦନ୍ତୋ ବାସବାଦୟଃ । ୩ ।
ତେଷାମତିବଲୋଦ୍ୟୋଗଂ ନିଶମ୍ୟାସୁରଯୂଥପାଃ ।
ବଧ୍ୟମାନାଃ ସୁରୈର୍ଭୀତା ଦୁଦ୍ରୁବୁଃ ସର୍ବତୋ ଦିଶମ୍ । ୪ ।
କଳତ୍ରପୁତ୍ରବିତ୍ତାପ୍ତାନ୍ ଗୃହାନ୍ ପଶୁପରିଚ୍ଛଦାନ୍ ।
ନାବେକ୍ଷ୍ୟମାଣାସ୍ତ୍ୱରିତାଃ ସର୍ବେ ପ୍ରାଣପରୀପ୍ସବଃ । ୫ ।
ବ୍ୟଲୁମ୍ପନ୍ ରାଜଶିବିରମମରା ଜୟକାଂକ୍ଷିଣଃ ।
ଇନ୍ଦ୍ରସ୍ତୁ ରାଜମହିଷୀଂ ମାତରଂ ମମ ଜଗ୍ରହୀତ୍ । ୬ ।
ନୀୟମାନାଂ ଭୟୋଦ୍ୱିଗ୍ନାଂ ରୁଦତୀଂ କୁରରୀମିବ ।
ଯଦୃଚ୍ଛୟାଗତସ୍ତତ୍ର ଦେବର୍ଷିର୍ଦଦୃଶେ ପଥି । ୭ ।

---

ଇନ୍ଦ୍ରପ୍ରଭୃତି ଦେବତାମାନେ କହିଲେ—

ସ୍ୱକୃତ ଲୋକ ତାପକାରୀ ପାପାତ୍ମା ହିରଣ୍ୟ କଶ୍ୟପୁ ପିପୀଲିକା ମାନଙ୍କ କର୍ତ୍ତୃକ ମହାସର୍ପ ତୁଲ୍ୟ ପାପରେ ନିଜେ ନଷ୍ଟ ହୋଇଅଛି । ୩ ।

ଇନ୍ଦ୍ରାଦି ଦେବତାମାନେ ବିଶେଷଭାବରେ ଯୁଦ୍ଧୋଦ୍ୟମ କରୁଅଛନ୍ତି ଜାଣି ଶ୍ରେଷ୍ଠ ଦୈତ୍ୟଗଣ ଦେବତାମାନଙ୍କ କର୍ତ୍ତୃକ ନିହତ ହେବା ଭୟରେ ସ୍ତ୍ରୀ, ପୁତ୍ର, ଧନ, ପଶୁ ଓ ଅନ୍ୟାନ୍ୟ ଭୋଗୋପକରଣ ମାନ ପରିତ୍ୟାଗ କରି ପ୍ରାଣରକ୍ଷା ନିମିତ୍ତ ଦ୍ରୁତ ବେଗରେ ଇତସ୍ତତଃ ପଳାୟନ କଲେ । ୪,୫ ।

ଜୟାଭିଳାଷୀ ଦେବଗଣ ରାଜଶିବିର ଆକ୍ରମଣ କରି ସର୍ବସ୍ୱ ଲୁଣ୍ଠନ କରିନେଲେ ଏବଂ ଇନ୍ଦ୍ର ମୋର ଜନନୀ ରାଜମହିଷୀଙ୍କୁ ଘେନିଗଲେ । ୬ ।

ଭୟ ବିହ୍ୱଳା କୁରରୀ ତୁଲ୍ୟ ରୋରୁଦ୍ୟମାନା ମୋର ମାତାଙ୍କୁ ଇନ୍ଦ୍ର ଘେନି ଯାଉ ଅଛନ୍ତି ଏମନ୍ତ ସମୟରେ ଦେବର୍ଷି ନାରଦ ସେହି ପଥରେ ଗମନ କରୁ କରୁ ସେ ଇନ୍ଦ୍ରଙ୍କୁ ତଦବସ୍ଥ ଦେଖିଲେ । ୭ ।

---

ହିରଣ୍ୟକଶିପୁ ଅସୁର
ସ୍ୱଭାବେ ପାପୀ ଦୁରାଚାର
ପିପିଲିକାରେ ସର୍ପ ଯେସନେ
ନାଶିଲା ଆତ୍ମ-ପାପ ଗୁଣେ
ଏରୂପେ ତୁଚ୍ଛମତି କରି
ବିବୁଧେ ସମରେ ଉଦ୍ଧରି । ୩ ।
ଯେତେ ଅସୁର ଥିଲେ ପୁରେ
ଦେବଙ୍କୁ ଦେଖି ମହାଡରେ
ନିଶସ୍ତ୍ର ହୋଇ ଶସ୍ତ୍ରଘାତେ
ସଂଗ୍ରାମେ ଜୁଝିଲେ ସମସ୍ତେ

ଭୟେ ପଶିଲେ ଦଶ ଦିଗେ
ନ ମିଳି ଦେବଙ୍କର ଆଗେ
ଗୃହ କଳତ୍ର ପୁତ୍ର ଏହି
ସର୍ବ ସମ୍ପଦ ବେଗେ ଛାଡ଼ି
ଜୀବନ ଭୟେ ପଳାଇଲେ
ବିବୁଧ ନଗରେ ପଶିଲେ ।୪,୫।
ସର୍ବ ସମ୍ପଦ ଜୁର୍ କରି
ମୋର ଜନନୀ ନେଲେ ଧରି
ପଥେ ଚଳାଇ ନ୍ୟନ୍ତି ବେଗେ
ପିତାର ଭୟେ ଉଦବେଗେ

ମୋର ଜନନୀ ଅତିଭୟେ
ଚଳି ନ ପାରେ ଗରୁ ଦେହେ
ଅନେକ ଦୁଃଖ ଶୋକମତେ
କୁରରୀ ପ୍ରାୟେ କାନ୍ଦେ ପଥେ
ଏମନ୍ତେ ଗଲେ କେତେ ଦୂର
କାନନେ ବ୍ରହ୍ମାଙ୍କ କୁମର
ମୋର ଜନନୀ ଦେଖି ପଥେ
ମିଳିଲେ ଇନ୍ଦ୍ରର ଅଗତେ
ବୋଲନ୍ତି ଇନ୍ଦ୍ର ମୁଖ ଚାହିଁ
ଏ କଥା ଉଚିତ ନୁହଇ

ପ୍ରାହ ନୈନାଂ ସୁରପତେ ନେତୁମର୍ହସ୍ୟନାଗସମ୍ ।
ମୁଞ୍ଚ ମୁଞ୍ଚ ମହାଭାଗଃ ସତୀଂ ପରପରିଗ୍ରହମ୍ । ୮ ।

ଶ୍ରୀଇନ୍ଦ୍ର ଉବାଚ ।

ଆସ୍ତେଽସ୍ୟା ଜଠରେ ବୀର୍ଯ୍ୟମବିସହ୍ୟଂ ସୁରଦ୍ୱିଷଃ ।
ଆସ୍ୟତାଂ ଯାବତ୍ ପ୍ରସବଂ ମୋକ୍ଷେଽର୍ଥପଦବୀଂ ଗତଃ । ୯ ।

ଶ୍ରୀନାରଦ ଉବାଚ ।

ଅୟଂ ନିଷ୍କିଲ୍ବିଷଃ ସାକ୍ଷାନ୍ମହାଭାଗବତୋ ମହାନ୍ ।
ତ୍ୱୟା ନ ପ୍ରାପ୍ସ୍ୟତେ ସଂସ୍ଥାମନନ୍ତାନୁଚରୋ ବଲୀ । ୧୦ ।

---

ଶ୍ରୀନାରଦ କହିଲେ—

ହେ ଦେବରାଜ ! ଏ ଅନ୍ୟର ସ୍ତ୍ରୀ, ସତୀ, ନିରପରାଧିନୀ । ତାହାଙ୍କୁ ତୁମ୍ଭେ ଘେନିଯିବା ଉଚିତ ନୁହେଁ । ହେ ମହାଭାଗ ! ଏହାଙ୍କୁ ଶୀଘ୍ର ପରିତ୍ୟାଗ କର । ୮ ।

ଶ୍ରୀଇନ୍ଦ୍ର କହିଲେ—

ଏହି ଦୈତ୍ୟପତ୍ନୀଙ୍କ ଉଦରରେ ଦେବଦ୍ୱେଷୀ ହିରଣ୍ୟକଶିପୁର ଅସହନୀୟ ବୀର୍ଯ୍ୟ ଗର୍ଭରୂପେ ସ୍ଥାପିତ ହୋଇଅଛି । ସେ ପ୍ରସବ ନ କରିବା ପର୍ଯ୍ୟନ୍ତ ମୋ ନିକଟରେ ରହିବ । ପୁତ୍ର ପ୍ରସବ ହେଲେ ତାହାର ବଧ ସାଧନ କରି ମୁଁ ଏହାକୁ ପରିତ୍ୟାଗ କରିବି ଏବଂ ମୋର ସ୍ୱାର୍ଥ ସିଦ୍ଧି କରିବି । ୯ ।

ଶ୍ରୀନାରଦ କହିଲେଃ—

ହେ ଦେବରାଜ ! ଦୈତ୍ୟ ପତ୍ନୀ ଗର୍ଭସ୍ଥ ବାଳକ କଦାପି ତୁମ୍ଭର ବଧ୍ୟ ନୁହେଁ । କାରଣ ସେ ନିଷ୍ପାପ, ଦୈତ୍ୟକୁଳରେ ଜନ୍ମ ଗ୍ରହଣ କଲେ ମଧ୍ୟ ସେ ନିଜ ଗୁଣରେ ପୂଜ୍ୟ, ଭଗବଦ୍ ଭକ୍ତ ଏବଂ ଅନନ୍ତଙ୍କର ସାକ୍ଷାତ୍ ଅନୁଚର । ତୁମ୍ଭଦ୍ୱାରା ଏ ବିନଷ୍ଟ ହୋଇ ନ ପାରେ । ୧୦ ।

---

ନିରପରାଧ ଏ ତୋହର
ଏହାକୁ ଛାଡ଼ ସୁନାସୀର
ପରର ସତୀ ଏ ସୁନ୍ଦରୀ
ତୁ କର୍ଷା ନେଉ ବଳେ ଧରି ।୭-୮।
ଏମନ୍ତେ ନାରଦ ବଚନେ
ଇନ୍ଦ୍ର ବୋଲଇ ଭୟ ମନେ
ଅସୁର ବୀର୍ଯ୍ୟ ଏହା ଗର୍ଭେ
ଏ ମୋର ବଇରୀ ସ୍ୱଭାବେ
ଯେ ବୀର୍ଯ୍ୟ ଗର୍ଭେ ଅଛି ରହି
ତାର ପ୍ରତାପ କେବା କହି
ସ୍ୱର୍ଗ ଘେନିବ ଏ ମୋହର
ଏହାକୁ ମୋର ବଡ଼ ଡର
ଏ ନାରୀ ମୋର ଘରେ ଥିବ
ଯାବତ ଗର୍ଭ ପ୍ରସବିବ
ଗର୍ଭକୁ ମାରି ତାକୁ ପୁଣି
ଛାଡ଼ିବି ନିଜ ଘରେ ଆଣି
ଏ କଥା ସଂକଳ୍ପ ମୋହର
ନିଶ୍ଚେ କହିଲି ମୁନିବର । ୯ ।

ଶ୍ରୀନାରଦ ଉବାଚ—

ଏହାର ଗର୍ଭେ ଯେ କୁମର
ନିଷ୍ପାପୀ ବଇଷ୍ଣବବର
ଅଶେଷ ଗୁଣେ ଗୁଣନିଧି
ଏହାର ଦେହେ ସର୍ବ ସିଦ୍ଧି
କୃଷ୍ଣର ଏ ନିଜ ସେବକ
ଏବେ ଗର୍ଭର ତେଜ ଦେଖ
ତୁ କାହିଁ ଏହାକୁ ମାରିବୁ
ଏହାର ଚରଣେ ସେବିବୁ ।୧୦।

ଇତ୍ୟୁକ୍ତସ୍ତାଂ ବିହାୟେନ୍ଦ୍ରୋ ଦେବର୍ଷେର୍ମାନୟନ୍ ବଚଃ ।
ଅନନ୍ତପ୍ରିୟଭକ୍ତ୍ୟୈନାଂ ପରିକ୍ରମ୍ୟ ଦିବଂ ଯଯୌ । ୧୧ ।
ତତୋ ମେ ମାତରମୃଷିଃ ସମାନୀୟ ନିଜାଶ୍ରମେ ।
ଆଶ୍ୱାସ୍ୟେହୋଷ୍ୟତାଂ ବତ୍ସେ ଯାବତ୍ତେ ଭର୍ତୁରାଗମଃ । ୧୨ ।
ତଥେତ୍ୟବାତ୍ସୀଦ୍ଦେବର୍ଷେରନ୍ତିକେ ସାକୁତୋଭୟା ।
ଯାବଦ୍ଦୈତ୍ୟପତିର୍ଘୋରାତ୍ ତପସୋ ନ ନ୍ୟବର୍ତ୍ତତ । ୧୩ ।
ଋଷିଂ ପର୍ଯ୍ୟଚରତ୍ ତତ୍ର ଭକ୍ତ୍ୟା ପରମୟା ସତୀ ।
ଅନ୍ତର୍ବତ୍ନୀ ସ୍ୱଗର୍ଭସ୍ୟ କ୍ଷେମାୟେଚ୍ଛାପ୍ରସୂତୟେ । ୧୪ ।

---

ଦେବର୍ଷି ଦେବରାଜଙ୍କୁ ଏହି କଥା କହନ୍ତେ ମହର୍ଷିଙ୍କର ବାକ୍ୟ ପ୍ରତି ସମ୍ମାନ କରି ଏବଂ ମୋତେ ବିଷ୍ଣୁଭକ୍ତ ବୋଲି ମନେ କରି ମୋର ମାତାଙ୍କୁ ପ୍ରଦକ୍ଷିଣ କରିଥିଲେ ଏବଂ ନିଜର ସ୍ୱର୍ଗପୁରକୁ ଗମନ କରିଥିଲେ । ୧୧ ।

ତଦନନ୍ତର ଦେବର୍ଷି ନାରଦ ମୋର ଜନନୀଙ୍କୁ ନିଜ ଆଶ୍ରମକୁ ଆଣି ଆଶ୍ୱାସ ବାକ୍ୟ ଶୁଣାଇ କହିଲେ, ବତ୍ସେ ! ତୁମ୍ଭର ସ୍ୱାମୀ ହିରଣ୍ୟକଶିପୁ ଆଗମନ କରିବା ପର୍ଯ୍ୟନ୍ତ ତୁମ୍ଭେ ମୋର ଆଶ୍ରମରେ ରୁହ । ମୋର ମାତା ଏଥିରେ ସମ୍ମତ ହୋଇ ନିର୍ଭୟରେ ଦେବର୍ଷିଙ୍କ ବାକ୍ୟାନୁସରଣ କରି ମୋର ପିତା ତପସ୍ୟାରୁ ଫେରିବା ପର୍ଯ୍ୟନ୍ତ ଋଷିଙ୍କ ଆଶ୍ରମରେ ବାସ କରିଥିଲେ । ୧୨,୧୩ ।

ଗର୍ଭବତୀ ମୋର ଜନନୀ ଗର୍ଭର ମଙ୍ଗଳ ନିମିତ୍ତ ଏବଂ ମୋର ପିତା ଆଗମନ କଲା ପରେ ଯେପରି ପ୍ରସବ ହୁଏ ସେଥିପାଇଁ ପରମଭକ୍ତି ସହକାରେ ଦେବର୍ଷିଙ୍କ ସେବାରେ ନିଯୁକ୍ତ ହୋଇଥିଲେ ।୧୪।

---

ଏ କଥା ମୁନି-ମୁଖୁଁ ଶୁଣି
ଇନ୍ଦ୍ର ଯେ ମନେ ମନେ ଗୁଣି
ନାରଦ ବାକ୍ୟେ ସୁରପତି
ଛାଡ଼ିଲି ଅସୁର ଯୁବତୀ
ଅତ୍ୟନ୍ତ ପ୍ରିୟଭାବ ଭରି
ମାତାକୁ ପ୍ରଦକ୍ଷିଣ କରି
ଇନ୍ଦ୍ର ଯେ ନିଜପୁର ଗଲି
ଶୁଣ ହେ ଅସୁରଙ୍କ ବଳା ।୧୧।
ମୋର ମାତାକୁ ଆଗ କରି
ଆଶ୍ୱାସ କରି ବ୍ରହ୍ମର୍ଷି

ନିଜ ଆଶ୍ରମେ ମୁନି ଆଣି
ମୁଖେ ସିଞ୍ଚିଲେ ଶୀତ-ପାଣି
ବୋଲନ୍ତି ମଧୁର ବଚନ
ତୁ ଏଥେ ଥାଅ କିଛି ଦିନ
ଯାବତ ସ୍ୱାମୀ ତୋର ଆସେ
ତାବତ ଥାଅ ମୋର ପାଶେ ।୧୨।
ମୁନି ବଚନେ ମୋର ମାତା
ଛାଡ଼ିଲି ମନ ଦୁଃଖ ଚିନ୍ତା
ନିର୍ଭୟେ ମୁନି ଘରେ ରହି
ଭର୍ତ୍ତା ଆଗମ୍ୟବାଟ ଚାହିଁ । ୧୩।

ପରମ ଭକ୍ତ ମୁନି ପାଦେ
ମୋର ଜନନୀ ଅପ୍ରମାଦେ
ସେବା କରଇ ନିରନ୍ତରେ
ସୁଖ ପ୍ରସବ ଉପକାରେ
ଏ ମୁନିଚରଣ ପ୍ରସାଦେ
ପ୍ରସବ ହେବ ଅପ୍ରମାଦେ
ଏମନ୍ତେ ମନେ କରି ଚିନ୍ତା
ସୁଖେ ରହିଲି ମୋର ମାତା ।୧୪।

**ଋଷିଃ କାରୁଣିକସ୍ତସ୍ୟାଃ ପ୍ରାଦାଦୁଭୟମୀଶ୍ୱରଃ ।**
**ଧର୍ମସ୍ୟ ତତ୍ତ୍ୱଂ ଜ୍ଞାନଞ୍ଚ ମାମପ୍ୟୁଦ୍ଦିଶ୍ୟ ନିର୍ମଳମ୍ । ୧୫ ।**
**ତତ୍ତୁ କାଳସ୍ୟ ଦୀର୍ଘତ୍ୱାତ୍ ସ୍ତ୍ରୀତ୍ୱାନ୍ମାତୁସ୍ତିରୋଦଧେ ।**
**ଋଷିଣାନୁଗୃହୀତଂ ମାଂ ନାଧୁନାପ୍ୟଜହାତ୍ ସ୍ମୃତିଃ । ୧୬ ।**
**ଭବତାମପି ଭୂୟାନ୍ମେ ଯଦି ଶ୍ରଦ୍ଦଧତେ ବଚଃ ।**
**ବୈଶାରଦୀ ଧୀଃ ଶ୍ରଦ୍ଧାତଃ ସ୍ତ୍ରୀବାଲାନାଞ୍ଚ ମେ ଯଥା । ୧୭ ।**
**ଜନ୍ମାଦ୍ୟାଃ ଷଡ଼ିମେ ଭାବାଃ ଦୃଷ୍ଟା ଦେହସ୍ୟ ନାତ୍ମନଃ ।**
**ଫଳାନାମିବ ବୃକ୍ଷସ୍ୟ କାଳେନେଶ୍ୱରମୂର୍ତ୍ତିନା । ୧୮ ।**

---

ପରେ ପରମ କାରୁଣିକ ତତ୍ତ୍ୱଜ୍ଞାନଦର୍ଶୀ ମହର୍ଷି ନାରଦ ମୋତେ ଲକ୍ଷ୍ୟକରି ତାହାଙ୍କର ଶୋକ ଶାନ୍ତି ନିମିତ୍ତ ନିର୍ମଳ ଭକ୍ତି ଜ୍ଞାନ; ଧର୍ମତତ୍ତ୍ୱ, ଆତ୍ମଜ୍ଞାନ, ବିବେକଜ୍ଞାନ ବିଷୟରେ ଉପଦେଶ ଦେଇଥିଲେ । ୧୫ ।

ଏକେ ସ୍ତ୍ରୀ ଜାତି, ସେପୁଣି ଦୁର୍ବଳ ସ୍ମୃତି । ସେଥିରେ ବହୁକାଳ ଅତୀତ ହୋଇଅଛି । ମୋର ମାତାଙ୍କର ଏ ସମସ୍ତ କିଛି ସ୍ମରଣ ନାହିଁ । ଋଷିଙ୍କର ଅନୁଗ୍ରହରୁ ମୋର ସେ ସ୍ମୃତି ଲୁପ୍ତ ହୋଇ ନାହିଁ । ମୋର ବାକ୍ୟରେ ତୁମ୍ଭମାନଙ୍କର ଶ୍ରଦ୍ଧା ଥିଲେ ତୁମ୍ଭେମାନେ ଏ ଧର୍ମ ତତ୍ତ୍ୱ ଓ ଭକ୍ତିଜ୍ଞାନ ଉଭୟ ତୁମ୍ଭମାନଙ୍କର ଉଦିତ ହେବ । ଗର୍ଭରେ ଥାଇ ମୋ ଦେହାଦିର ଅହଙ୍କାର ଶୂନ୍ୟ ଯେପରି ବୁଦ୍ଧି ଉତ୍ପନ୍ନ ହୋଇଅଛି ସ୍ତ୍ରୀ ଏବଂ ବାଳକମାନଙ୍କର ମଧ୍ୟ ସେପରି ବୁଦ୍ଧି ଉତ୍ପନ୍ନ ହେବା ଅସମ୍ଭବ । ୧୬,୧୭ । (ଦେହାଦିର ଅହଙ୍କାର ଛେଦରୂପା ବୁଦ୍ଧି କିପରି ପ୍ରହ୍ଲାଦ ନିମ୍ନୋକ୍ତ ଦଶୋଟି ଶ୍ଳୋକରେ ଏହା କହୁ ଅଛନ୍ତି ) ।

ବୃକ୍ଷାଦିର ଫଳ ଯେପରି ଜନ୍ମ, ବୃଦ୍ଧି, ପକ୍ୱାବସ୍ଥା ଓ ବିନାଶ ପତନାଦି ଭାବ ଧାରଣ କରିଥାଏ, ସେହିପରି ଆତ୍ମା ନିର୍ବିକାର ଅବସ୍ଥାରେ ଅବସ୍ଥାନ କରେ, କିନ୍ତୁ ଦେହର ଛଅପ୍ରକାର ବିକାର ଲକ୍ଷିତ ହୁଏ। କାଳହିଁ ଏହି ବିକାରର ହେତୁ । ୧୮ ।

---

ଶୁଣହେ ନାରଦ ବ୍ରହ୍ମର୍ଷି
ମୋର ମାତାକୁ ଦୟା କରି
ଦୀନକୁ ଦୀନ କହି ଜ୍ଞାନ
ଆନନ୍ଦ କରି ମାତା ମନ
ବିଷ୍ଣୁର ଅଂଶ ସେ ସ୍ୱଭାବେ
ସେ ଉପଦେଶ ମୁହିଁ ଗର୍ଭେ
ଯେତେ କହିଲେ ଜ୍ଞାନ ମୁନି
ମୁଁ ତାହା ଗର୍ଭେ ଥାଇ ଶୁଣି ।୧୫
ଜନନୀ ସ୍ୱଭାବେ ଅବଳା
କାଳେ ସେ ଜ୍ଞାନ ପାସୋରିଲା

ନାରଦ ଅନୁଗ୍ରହ ମୋତେ
ଜ୍ଞାନ ରହିଲା ମୋର ଚିତ୍ତେ ।୧୬।
ମୋର ବଚନେ ଶ୍ରଦ୍ଧା କରି
ଏ ଜ୍ଞାନ ହୋଇବ ତୁମ୍ଭର
ମୋ ପରି ଜ୍ଞାନ ପ୍ରସରିବ
ଅବିଦ୍ୟା ବନ୍ଧ ନାଶ ଯିବ ।୧୭।
ସ୍ୱଭାବେ ମନୁଷ୍ୟ ଶରୀରେ
ଜନ୍ମଇ ଏ ଷଡ଼ ବିକାରେ
ଆତ୍ମାର ନୁହଇ ସ୍ୱଭାବ
ଶୁଣ କହିବା ଜ୍ଞାନ ଭାବ

ବୃକ୍ଷର ଫଳ ଯେସନ୍ତି କାଳେ
ପାଚି ପଡ଼ଇ ମହୀତଳେ
ଷଡ଼ ବିକାରେ ନାଶ ଯାଇ
ଶରୀର ସ୍ୱଭାବଟି ଏହି
ଗର୍ଭେ ଶରୀର ଜନ୍ମ ହୋଇ
ବାଳକ ରୂପେଣ ବଢ଼ଇ
ପୌଗଣ୍ଡ କିଶୋର ତରୁଣ
ଜରାନ୍ତେ ଲଭଇ ମରଣ
ଏ ଷଡ଼ ବିକାରେ ଶରୀର
ଆତ୍ମା ସ୍ୱଭାବେ ନିର୍ବିକାର । ୧୮ ।

ଆତ୍ମା ନିତ୍ୟୋଽବ୍ୟୟଃ ଶୁଦ୍ଧଃ ଏକଃ କ୍ଷେତ୍ରଜ୍ଞ ଆଶ୍ରୟଃ ।
ଅବିକ୍ରିୟଃ ସ୍ୱଦୃଗ୍‌ହେତୁର୍ବ୍ୟାପକୋଽସଙ୍ଗ୍ୟନାବୃତଃ । ୧୯ ।
ଏତୈର୍ଦ୍ୱାଦଶଭିର୍ବିଦ୍ୱାନାତ୍ମନୋ ଲକ୍ଷଣୈଃ ପରୈଃ ।
ଅହଂ ମମେତ୍ୟସଦ୍‌ଭାବଂ ଦେହାଦୌ ମୋହଜଂ ତ୍ୟଜେତ୍ । ୨୦ ।
ସ୍ୱର୍ଣ୍ଣଂ ଯଥା ଗ୍ରାବସୁ ହେମକାରଃ କ୍ଷେତ୍ରେଷୁ ଯୋଗୈସ୍ତଦଭିଜ୍ଞ ଆପ୍ନୁୟାତ୍ ।
କ୍ଷେତ୍ରେଷୁ ଦେହେଷୁ ତଥାତ୍ମଯୋଗୈରଧ୍ୟାତ୍ମବିଦ୍ ବ୍ରହ୍ମଗତିଂ ଲଭେତ । ୨୧ ।
ଅଷ୍ଟୌ ପ୍ରକୃତୟଃ ପ୍ରୋକ୍ତାସ୍ତ୍ରୟ ଏବ ହି ତଦ୍‌ଗୁଣାଃ ।
ବିକାରାଃ ଷୋଡ଼ଶାଚାର୍ଯ୍ୟୈଃ ପୁମାନେକଃ ସମନ୍ୱୟାତ୍ । ୨୨ ।

---

ଆତ୍ମା ନିତ୍ୟ, ଅବିନାଶୀ, ଅବ୍ୟୟ ଅର୍ଥାତ୍ ଅପକ୍ଷୟ ଶୂନ୍ୟ, ଶୁଦ୍ଧ ଅର୍ଥାତ୍ ଅପାପବିଦ୍ଧ ( ରାଗାଦି ରହିତ ), ଅଦ୍ୱିତୀୟ, ବିଜ୍ଞାତା, ସର୍ବାଶ୍ରୟ, ବିକାର ବର୍ଜିତ, ଆତ୍ମ ଜ୍ୟୋତିରେ ପ୍ରକାଶିତ, ସମସ୍ତର ହେତୁ, ଅସଙ୍ଗ ଏବଂ ଅନାବୃତ । ୧୯ ।

ଆତ୍ମାର ନିତ୍ୟତ୍ୱାଦି ଦ୍ୱାଦଶ ଶ୍ରେଷ୍ଠ ଲକ୍ଷଣ ଦ୍ୱାରା ବିବେକୀମାନେ ଦେହାଦିରେ ମୁଁ ଓ ମୋର ମୋହଜ ମିଥ୍ୟା ବୁଦ୍ଧି ପରିତ୍ୟାଗ କରିଥାନ୍ତି । ୨୦ ।

ସ୍ୱର୍ଣ୍ଣ ଖଣିରେ ଯେଉଁ ପ୍ରସ୍ତରମାନଙ୍କରେ ସ୍ୱର୍ଣ୍ଣକଣାର ପ୍ରଭାବ ଦେଖାଯାଏ ତହିଁରେ ଯେପରି ଅଭିଜ୍ଞ ସ୍ୱର୍ଣ୍ଣକାର ଅଗ୍ନି ସଂଯୋଗାଦି ଉପାୟ ଦ୍ୱାରା ପଥରରୁ ସୁନା ବାହାର କରିଥାଏ ସେହିପରି ଅଧ୍ୟାତ୍ମବିତ୍ ମାନେ ଦେହକୁ ଅଧିକାର କରି ଆତ୍ମଅବସ୍ଥାନ କରୁଅଛି ଏହା ଅବଗତ ହୋଇ ଆତ୍ମଯୋଗ ଦ୍ୱାରା ଅର୍ଥାତ୍ ଆତ୍ମ ଉପାୟ ସମୂହଦ୍ୱାରା ଦେହ କ୍ଷେତ୍ରରେ ବ୍ରହ୍ମତା ପ୍ରାପ୍ତ ହୋଇଥାନ୍ତି । ୨୧ ।

ସାଂଖ୍ୟାଚାର୍ଯ୍ୟ କପିଳାଦି ମୁନିଗଣ ମୂଳ ପ୍ରକୃତି, ମହତ୍ତତ୍ତ୍ୱ, ଅହଙ୍କାର, ପଞ୍ଚତନ୍ମାତ୍ର ରୂପ ଅଷ୍ଟ ପ୍ରକୃତି, ସତ୍ତ୍ୱ, ରଜ, ତମ ପ୍ରକୃତିର ଏହି ଗୁଣତ୍ରୟ, ପଞ୍ଚକର୍ମେନ୍ଦ୍ରିୟ, ପଞ୍ଚଜ୍ଞାନେନ୍ଦ୍ରିୟ, ମନ, ପଞ୍ଚମହାଭୂତ ରୂପ ଷୋଡ଼ଶ ବିକାର ଏବଂ ସାକ୍ଷୀରୂପେ ପୁରୁଷ ନିରୂପଣ କରିଅଛନ୍ତି । ୨୨ ।

---

ନିତ୍ୟ ଅବ୍ୟୟ ଶୁଦ୍ଧ ଏକ
କ୍ଷେତ୍ରଜ୍ଞଭାବେ ସର୍ବ ସାକ୍ଷି
ସର୍ବ ଆଶ୍ରୟ ସର୍ବବ୍ୟାପୀ
ନିଷ୍କ୍ରିୟ ଅନାବୃତରୂପୀ
ଅସଙ୍ଗ ହେତୁ ବଦ୍ଧ ନୋହେ
ସ୍ୱପ୍ନ ଜାଗ୍ରତ ଯେହ୍ନେ ଦେହେ
ବୁଦ୍ଧିର ଧର୍ମ ପ୍ରକାଶଇ
ସେ ପୁଣି ତାକୁ ନ ଲଗଇ
ବସ୍ତୁ ସ୍ୱଭାବେ ବଦ୍ଧ ନୋହେ
ଅଜ୍ଞାନେ ଦିଶେ ବଦ୍ଧ ପ୍ରାୟେ
ଭୂତ ଭବିଷ୍ୟ ବର୍ତ୍ତମାନେ
ବସ୍ତୁ ପ୍ରକାଶେ ଭଲେ ଭଲେ
ସେ ପୁଣି ରହେ ଶେଷ ହୋଇ
ପୂର୍ଣ୍ଣ ସ୍ୱଭାବେ ପ୍ରକାଶଇ । ୧୯ ।
ଏ ଯେନି ଦ୍ୱାଦଶ ପ୍ରକାର
ଆତ୍ମା ଲକ୍ଷଣ ଜାଣି ନର
'ମୁହିଁ' 'ମୋହର' ବୋଲି ଯେତେ
ମିଥ୍ୟା ସ୍ୱଭାବ ଏ ଜଗତେ
ଦେହାଦି ଉପାଧି ବିଶେଷ
ମୋହରୁ ଜାତ ଯେତେ ଅଂଶ
ମୂଢ଼ ସ୍ୱଭାବ ବେଗେ ତେଜ
ମୁକୁନ୍ଦ ପାଦଯୁଗେ ଭଜ । ୨୦ ।
ସୁବର୍ଣ୍ଣକାରି ଯେହ୍ନେ ଜନେ
ପାଷାଣୁ ସୁବର୍ଣ୍ଣ ଧୋଇଲେ
ଯେନଇ ଅତି ଯତ୍ନ କରି
ଏହି ପ୍ରକାରେ ବ୍ରହ୍ମବିତ୍
କ୍ଷେତ୍ରଜ୍ଞ କ୍ଷେତ୍ରରୁ ଭିନ୍ନରେ
ଆତ୍ମାକୁ ଲଭେ ଅଭ୍ୟନ୍ତରେ । ୨୧ ।
ଅଷ୍ଟ ପ୍ରକୃତି ତିନି ଗୁଣ
ଷୋଡ଼ଶ ବିକାର ଲକ୍ଷଣ
ଏତେ ପ୍ରକାର ଭିନ୍ନେ ଆତ୍ମା
ଏ ଭାବେ ବିସ୍ତରେ ମହାତ୍ମା । ୨୨ ।

**ଦେହସ୍ତୁ ସର୍ବସଂଘାତୋ ଜଗତ୍ ତସ୍ଥୁରିତି ଦ୍ୱିଧା ।**
**ଅତ୍ରୈବ ମୃଗ୍ୟଃ ପୁରୁଷୋ ନେତି ନେତୀତ୍ୟତତ୍ ତ୍ୟଜନ୍ । ୨୩ ।**
**ଅନ୍ୱୟବ୍ୟତିରେକେଣ ବିବେକେନୋଶତାତ୍ମନା ।**
**ସର୍ଗସ୍ଥାନ ସମାମ୍ନାୟୈର୍ବିମୃଶଦ୍ଭିରସତ୍ୱରୈଃ । ୨୪ ।**
**ବୁଦ୍ଧେର୍ଜାଗରଣଂ ସ୍ୱପ୍ନଃ ସୁଷୁପ୍ତିରିତି ବୃତ୍ତୟଃ ।**
**ତା ଯେନୈବାନୁଭୂୟନ୍ତେ ସୋଽଧ୍ୟକ୍ଷଃ ପୁରୁଷଃ ପରଃ । ୨୫ ।**
**ଏଭିସ୍ତ୍ରିବର୍ଣ୍ଣୈଃ ପର୍ଯ୍ୟସ୍ତୈର୍ବୁଦ୍ଧିଭେଦୈଃ କ୍ରିୟୋଦ୍ଭବୈଃ ।**
**ସ୍ୱରୂପମାତ୍ମନୋ ବୁଧ୍ୟେଦ୍ଗନ୍ଧୈର୍ବାୟୁମିବାନ୍ୱୟାତ୍ । ୨୬ ।**

---

ପୂର୍ବୋକ୍ତ ବିଭାଗ ସମୂହର ସମଷ୍ଟି ହିଁ ଦେହ । ଏହା ଦ୍ୱିବିଧ ଅର୍ଥାତ୍ ଗତିଶୀଳ ଓ ସ୍ଥିତିଶୀଳ । ଏହି ଦୁଇପ୍ରକାର ଦେହରେ ଆତ୍ମାର ଅନୁସରଣ କରିବାକୁ ହେବ । "ନେତି ନେତି ଅର୍ଥାତ୍ ,ଏହା ନୁହେଁ" "ଏହା ନୁହେଁ" ଏପରି ଅନ୍ୱେଷଣ କଲେ ଅନାତ୍ମ ପଦାର୍ଥରୁ ଆତ୍ମା ପୃଥକ୍ ବୋଲି ଉପଲବ୍ଧି ହେବ । ୨୩।

ଯେପରି ସୂତ୍ର ମଣିମୟ ହାରର ସମସ୍ତ ମଣିରେ ପ୍ରବେଶ କରିଥାଏ ସେହିପରି ଆତ୍ମା ଦେହର ପ୍ରତ୍ୟେକ ଉପାଦାନରେ ଅବସ୍ଥିତ । ଏହାକୁ ଅନ୍ୱୟ ବୋଲିଯାଏ । ଯେପରି ପୂର୍ବୋକ୍ତ ସୂତ୍ର ପ୍ରତ୍ୟେକ ମଣିଠାରୁ ପୃଥକ୍ ସେହିପରି ଆତ୍ମା ପ୍ରତ୍ୟେକ ଦେହାବୟବଠାରୁ ପୃଥକ୍ । ଏହାକୁ ବ୍ୟତିରେକ ବୋଲିଯାଏ, ନିର୍ମଳ ଚିତ୍ତ ମନୁଷ୍ୟ ଏହି ବିବେକ ଜ୍ଞାନଦ୍ୱାରା ସୃଷ୍ଟି ସ୍ଥିତି, ସଂହାର ବିଷୟକ ବେଦବାକ୍ୟ ସାହାଯ୍ୟରେ ଆତ୍ମାର ଅବ୍ୟଗ୍ରରୂପ ଅନୁସନ୍ଧାନ କରିବ । ୨୪ ।

ଜାଗରଣ, ସ୍ୱପ୍ନ, ଓ ସୁଷୁପ୍ତି ବୁଦ୍ଧିର ଏହି ତିନି ଅବସ୍ଥା ଯେ ଅନୁଭବ କରିଥାଏ ଦେହାଦିର ସ୍ରଷ୍ଟାରୂପେ ସେ ପରମ ପୁରୁଷ । ୨୫ ।

ଜାଗରଣ, ସ୍ୱପ୍ନ ଓ ସୁଷୁପ୍ତି ବୁଦ୍ଧିର ପରିଣତି, ଆତ୍ମାର ଧର୍ମ ନୁହେଁ ଏବଂ ଏହି ସମସ୍ତ ବୃତ୍ତି କର୍ମ ଭେଦରେ ତ୍ରିଗୁଣାତ୍ମକ । ଜାଗରଣାଦି ଅବସ୍ଥା ଆତ୍ମାର ଅବସ୍ଥା ନୁହେଁ । ଯେପରି ସ୍ପର୍ଶ ଗୁଣ ବାୟୁ, ପୁଷ୍ପଗନ୍ଧ ସହିତ ମିଳିତ ହେଲେ ଗନ୍ଧବାନ୍ ବାୟୁ ବୋଲି ପ୍ରତୀତ ହୁଏ ସେହିପରି ଆତ୍ମା ନିର୍ଗୁଣ ହେଲେ ମଧ୍ୟ ବୁଦ୍ଧିର ଅବସ୍ଥା ଜାଗରଣାଦି ଦ୍ୱାରା ମିଳିତ ହୋଇ ଗୁଣବାନ୍ ବୋଲି ପ୍ରତୀତ ହୁଏ । ନିର୍ଗୁଣ ହୋଇ ମଧ୍ୟ ଯେ ଅନ୍ୟ ସହିତ ମିଳିତ ହୋଇ ଗୁଣବାନ୍ ବୋଲି ପ୍ରତୀୟମାନ ହୁଏ ତାହାକୁ ଆତ୍ମାର ସ୍ୱରୂପ ବୋଲି ଜାଣିବାକୁ ହେବ । ୨୬ ।

---

ଏତେ ପ୍ରକାରେ ଦେହ ଜାତ
ସ୍ଥାବର ଜଙ୍ଗମେ ବିଦିତ
ଏ ଦୁବେ ଯେ ଜନ ବିସ୍ତରେ
ମାୟା ସମୂହ ପରିହରେ
ଅନ୍ୱୟ ଆଉ ବ୍ୟତିରେକେ
ଜ୍ଞାନ ସଧିଁଇ ଏକ ଏକେ ।୨୩,୨୪

ସୁଷୁପ୍ତି ସ୍ୱପ୍ନ ଜାଗରଣ
ବୁଦ୍ଧିର ଏ ତିନି ଲକ୍ଷଣ
ଯାଁ ତହୁଁ ଅନୁଭବ ହୋଏ
ଅଧ୍ୟକ୍ଷ ପୁରୁଷ ସେ ଦେହେ ।୨୫।
ଆତ୍ମା ଏ ତିନି ଗୁଣେ ଦେହେ
ପବନେ ଗନ୍ଧ ପ୍ରାୟେ ରହେ

ଏ ତିନି ଗୁଣ ନିବନ୍ଧନେ
ସଂସାରେ ମାୟା ଅନୁମାନେ ।୨୬।

ଏତଦ୍ଦ୍ୱାରୋ ହି ସଂସାରୋ ଗୁଣକର୍ମନିବନ୍ଧନଃ ।
ଅଜ୍ଞାନମୂଲୋଽପାର୍ଥୋଽପି ପୁଂସଃ ସ୍ୱପ୍ନ ଇବାର୍ପ୍ୟତେ ।୨୭।
ତସ୍ମାଦ୍ଭବଦ୍ଭିଃ କର୍ତ୍ତବ୍ୟଂ କର୍ମଣାଂ ତ୍ରିଗୁଣାତ୍ମନାମ୍ ।
ବୀଜନିର୍ହରଣଂ ଯୋଗ ପ୍ରବାହୋ ପରମୋ ଧିୟଃ ।୨୮।
ତତ୍ରୋପାୟସହସ୍ରାଣାମୟଂ ଭଗବତୋଦିତଃ ।
ଯଦୀଶ୍ୱରେ ଭଗବତି ଯଥା ଯୈରଞ୍ଜସା ରତିଃ ।୨୯।
ଗୁରୁଶୁଶ୍ରୂଷୟା ଭକ୍ତ୍ୟା ସର୍ବଲବ୍ଧାର୍ପଣେନ ଚ ।
ସଙ୍ଗେନ ସାଧୁଭକ୍ତାନାମୀଶ୍ୱରାରାଧନେନ ଚ ।୩୦।
ଶ୍ରଦ୍ଧୟା ତତ୍କଥାୟାଞ୍ଚ କୀର୍ତ୍ତନୈର୍ଗୁଣକର୍ମଣାମ୍ ।
ତତ୍ପାଦାମ୍ବୁରୁହଧ୍ୟାନାତ୍ ତଲ୍ଲିଙ୍ଗେକ୍ଷାର୍ହଣାଦିଭିଃ ।୩୧।

---

ବୁଦ୍ଧିର ଏହି ଚୈତନ୍ୟ ସ୍ୱରୂପ ଦ୍ୱାରା ଗୁଣକର୍ମ ବନ୍ଧନ ଅବିଦ୍ୟାର ମୂଳ ଏହିପରି ମିଥ୍ୟାଭୂତ ପୁରୁଷର ଜନ୍ମ ମରଣ ପ୍ରବାହମୟ ସଂସାର ସ୍ୱପ୍ନ ତୁଲ୍ୟ । ୨୭ ।

ହେ ବୟସ୍ୟଗଣ ! ବୁଦ୍ଧିର ଜାଗରଣାଦି ଭାବ ବିନାଶୀ ଯୋଗ ଆଶ୍ରୟ କରି ତ୍ରିଗୁଣମୟ କର୍ମର ବୀଜ ନଷ୍ଟ କରିବା କର୍ତ୍ତବ୍ୟ ।୮ ।

ଜନ୍ମ ମରଣମୟ ପ୍ରବାହର ବୀଜ ବିନାଶ କରିବାର ସହସ୍ର ଉପାୟ ଶାସ୍ତ୍ରରେ କଥିତ ହୋଇଅଛି । ତନ୍ମଧ୍ୟରେ ଭଗବାନ୍ ନାରଦ ଭକ୍ତିଯୋଗକୁ ଶ୍ରେଷ୍ଠ ଉପାୟ ବୋଲି ନିର୍ଦ୍ଦେଶ କରିଅଛନ୍ତି, କାରଣ ଭକ୍ତି ଯୋଗ ଦ୍ୱାରା ଈଶ୍ୱରଙ୍କ ଠାରେ ଫଳ ଲାଭ ଆକାଙ୍କ୍ଷା ରହିତ ପ୍ରୀତି ଜନ୍ମେ । ୨୯ ।

ଗୁରୁ ଶୁଶ୍ରୂଷା, ଭକ୍ତି, ସର୍ବପ୍ରକାର ଲବ୍ଧ ଦ୍ରବ୍ୟ ଭଗବାନଙ୍କଠାରେ ସମର୍ପଣ, ସାଧୁ ସଂସର୍ଗ, ଈଶ୍ୱରାରାଧନା, ଶ୍ରଦ୍ଧା ସହକାରେ ଭଗବାନଙ୍କର ଗୁଣ ଓ ଆଚରିତ କର୍ମ ଶ୍ରବଣ ଓ କୀର୍ତ୍ତନ, ଶ୍ରୀହରି ପାଦପଦ୍ମ ଚିନ୍ତନ, ଶ୍ରୀ ବିଷ୍ଣୁଙ୍କର ମୂର୍ତ୍ତି ଦର୍ଶନ, ପୂଜନ ଓ ବନ୍ଦନା, ସର୍ବ ପ୍ରାଣୀଙ୍କଠାରେ ଶ୍ରୀହରି ବିରାଜିତ ଏହା ଭାବି

---

ଅଜ୍ଞାନ ମୂଳ ଏ ଅନର୍ଥ
ସ୍ୱପ୍ନ ଯେସନ ନିଦ୍ରାଗତ
ଆତ୍ମାର ସ୍ୱପ୍ନ ଏ ଜଗତ
ଯେଣୁ ଏ ତ୍ରିଗୁଣେ ନିର୍ମିତ ।୨୭।
ତ୍ରିଗୁଣାତ୍ମକ କର୍ମ ବୀଜ
ଅଙ୍କୁର ସମସ୍ତ ଉପୁଜେ
ଏ ବୀଜ ଅନଳ ସଂଯୋଗେ
ଦହନ କର ଯୋଗମାର୍ଗେ ।୨୮।

ଅନ୍ୟଥା ସହସ୍ରେ ଉପାୟେ
କେ ସାଧି ପାରିବ ଏ ଦେହେଁ
ଯେ ଭାବେ କୃଷ୍ଣେ ହୋଏ ରତି
ଭକ୍ତି ଲକ୍ଷଣେ ତାହା ଶକ୍ତି ।୨୯।
ଭକ୍ତିଲକ୍ଷଣେ ଗୁରୁ ସେବା
କୃଷ୍ଣେ ସମର୍ପି ସର୍ବ ଲାଭ
ସଙ୍ଗ କରିବ ସାଧୁଜନ
ଏଣେ ଈଶ୍ୱର ଆରାଧନ

ସେ କୃଷ୍ଣ କଥାର ଶ୍ରବଣେ
ଶ୍ରଦ୍ଧା କରିବ ଅନୁକ୍ଷଣେ
କୃଷ୍ଣର ଯେତେ ନାମ ଗୁଣ
କରିବ ଶ୍ରବଣ କୀର୍ତ୍ତନ
ପଦାରବିନ୍ଦ ଧ୍ୟାନ କରି
ପୂଜିବ ଦେଖି ମୂର୍ତ୍ତି ତାରି
ବସିବ ବଇଷ୍ଣବ ମେଳେ
ବିଷ୍ଣୁର ପାଦ-ପଦ୍ମ ତଳେ ।୩୦,୩୧

**ହରିଃ ସର୍ବେଷୁ ଭୂତେଷୁ ଭଗବାନାସ୍ତ ଈଶ୍ୱରଃ ।**
**ଇତି ଭୂତାନି ମନସା କାମୈସ୍ତୈଃ ସାଧୁ ମାନୟେତ୍ । ୩୨ ।**
**ଏବଂ ନିର୍ଜିତଷଡ୍‌ବର୍ଗୈଃ କ୍ରିୟତେ ଭକ୍ତିରୀଶ୍ୱରେ ।**
**ବାସୁଦେବେ ଭଗବତି ଯୟା ସଂଲଭ୍ୟତେ ରତିଃ । ୩୩ ।**
**ନିଶମ୍ୟ କର୍ମାଣି ଗୁଣାନତୁଲ୍ୟାନ୍ ବୀର୍ଯ୍ୟାଣି ଲୀଳାତନୁଭିଃ କୃତାନି ।**
**ଯଦାତିହର୍ଷୋତ୍‌ପୁଲକାଶ୍ରୁ ଗଦ୍ଗଦଂ ପ୍ରୋତ୍‌କଣ୍ଠଉଦ୍ଗାୟତି ରୌତି ନୃତ୍ୟତି ।୩୪।**
**ଯଦା ଗ୍ରହଗ୍ରସ୍ତ ଇବ କ୍ୱଚିଦ୍ଧସତ୍ୟାକ୍ରନ୍ଦତେ ଧ୍ୟାୟତି ବନ୍ଦତେ ଜନମ୍ ।**
**ମୁହୁଃ ଶ୍ୱସନ୍ ବକ୍ତି ହରେ ଜଗତ୍ପତେ ନାରାୟଣେତ୍ୟାତ୍ମମତିର୍ଗତତ୍ରପଃ ।୩୫।**

---

ସମସ୍ତ ପ୍ରାଣୀଙ୍କୁ ଉତ୍ତମରୂପେ ପୂଜା କରିବା ଏହିପରି ଭାବରେ କାମାଦି ଷଡ଼ରିପୁଙ୍କର ଦମନ କ[illegible] ପୁରୁଷ ଭଗବାନ୍ ବାସୁଦେବଙ୍କଠାରେ ଭକ୍ତି କରିବ । ସେହି ଭକ୍ତି ଅର୍ଜନ କଲେ ଶ୍ରୀହରି ପାଦପଦ୍ମରେ ରତି ସମର୍ପଣ କରିବାର କ୍ଷମତା ଜନ୍ମେ । ୩୦-୩୩ ।

ଭଗବତ୍ ବାତ୍ସଲ୍ୟାଦି ଅତୁଳନୀୟ ଗୁଣ, ଲୀଳା ବିସ୍ତାରିତ ରାମ କୃଷ୍ଣାଦି ମୂର୍ତ୍ତି ଦ୍ୱାରା ଅନୁଷ୍ଠିତ ରାବଣ ବଧାଦି ବୀରକୀର୍ତ୍ତି ଶ୍ରବଣ କରି ଯେତେବେଳେ ଆନନ୍ଦରେ ରୋମାଞ୍ଚ ଓ ଅଶ୍ରୁପାତ ହୁଏ ଏବଂ ମୁକ୍ତକଣ୍ଠରେ ନାମ ଗୁଣ ଗାନ, ରୋଦନ ଓ ନୃତ୍ୟ ପ୍ରଭୃତି ଅବସ୍ଥା ଲାଭ କରାଯାଇ ପାରେ । ୩୪ ।

ଯେତେବେଳେ ଗ୍ରହମାନଙ୍କ କର୍ତ୍ତୃକ ଆବିଷ୍ଟ ହୋଇ କେତେବେଳେ ହାସ୍ୟ କେତେବେଳେ କ୍ରନ୍ଦନ କେତେବେଳେ ଶ୍ରୀକୃଷ୍ଣଙ୍କର ଧ୍ୟାନ, ଭଗବତଭକ୍ତ ମାନଙ୍କର ବନ୍ଦନା, ନିର୍ଲ୍ଲେପ ଭାବରେ ବାରମ୍ବାର ଶ୍ୱାସ ପରିତ୍ୟାଗ ପୂର୍ବକ ଶ୍ରୀକୃଷ୍ଣଙ୍କଠାରେ ରତି ସମର୍ପଣକରି ହେ ହରେ ! ହେ ଜଗତ୍‌ପତେ ! ହେ ନାରାୟଣ ଇତ୍ୟାଦି କହି ଭଗବାନଙ୍କୁ ଲାଭ କରି ଯାଇ ପାରେ । ୩୫ ।

---

ସକଳ ଭୂତ୍ରେ ଭଗବାନ
ଅଛନ୍ତି ବୋଲି ଜାଣି ପୁଣ
ମନ କର୍ମରେ ପ୍ରାଣୀ ସେବ
ସୁରୁକ ସଙ୍ଗେ କରି ଭାବ ।୩୨।
ଏ ଭକ୍ତିଯୋଗ ବଳେ ପ୍ରାଣୀ
ଅରି ଷଡ଼ବର୍ଗ ଜିଣି
ବିଷ୍ଣୁ ବିଷୟେ ଲଭେ ରତି
ଏ ଭାବେ ସଂସାରୁ ତରନ୍ତି ।୩୩।
ଏବେ ଅସୁର ପୁତ୍ରେ ଶୁଣ
ଯେଣେ ଜୀବର ପରିତ୍ରାଣ
ବିଷ୍ଣୁର କଲ ଯେତେ କର୍ମ
ଯେବା ଅଧିକ ଗୁଣ ଗ୍ରାମ

ଲୀଳା ଶରୀରେ ଯେତେ କଲ
ଅନନ୍ତବୀର୍ଯ୍ୟ ଗୁଣ ଖେଳା
ସେ କଥା ଶୁଣି କର୍ଣ୍ଣଦ୍ୱାରେ
ପୁଲକେ ଯାହାର ଶରୀରେ
ଆନନ୍ଦେ ଅଶ୍ରୁଜଳ ବହେ
କଣ୍ଠୁ ଗଦ୍ଗଦେ ବାଣୀ କହେ
ଆନନ୍ଦେ ଗାଏ କୃଷ୍ଣ ବାଣୀ
ଉଚ୍ଚେ କାନ୍ଦଇ ତାହା ଶୁଣି
ନୃତ୍ୟ କରଇ ବେନି ପାଦେ
ହସି ଡାକଇ ଉଚ୍ଚନାଦେ ।୩୦।
ଭୂତ ଗନ୍ଧର୍ବ ଗ୍ରହ ଯେହ୍ନେ
ଲାଗିଲେ ଭୋଳ ହୋନ୍ତି ଜନେ

କ୍ରନ୍ଦନ କରି ଉଚ୍ଚ ରବେ
ହୁଁକାର ଭାବ କୃଷ୍ଣଭାବେ
ଜଗତ କୃଷ୍ଣ ପ୍ରାୟେ ମଣେ
ନମଇଁ ଜନଙ୍କ ଚରଣେ
ଭୂରେ ବୋଲଇ ହରି ହରି
ହେ ଜଗନ୍ନାଥ ଦଇତାରି
ହେ ନାରାୟଣ ଯଦୁପତି
ଭବ-ସାଗରୁ କର ଗତି
ହୃଦେ ଗୋବିନ୍ଦ ନାମ ଛନ୍ତି
ନିର୍ଲ୍ଲଜ ପ୍ରାୟେ ବହେ ମତି ।୩୫।

ତଦା ପୁମାନ୍ ମୁକ୍ତସମସ୍ତବନ୍ଧନସ୍ତଦ୍ଭାବଭାବାନୁକୃତାଶୟାକୃତିଃ ।
ନିର୍ଦ୍ଦଗ୍ଧବୀଜାନୁଶୟୋ ମହୀୟସା ଭକ୍ତିପ୍ରୟୋଗେଣ ସମେତ୍ୟଧୋକ୍ଷଜମ୍ ।୩୬।
ଅଧୋକ୍ଷଜାଲମ୍ଭମିହାଶୁଭାତ୍ମନଃ ଶରୀରିଣଃ ସଂସୃତିଚକ୍ରଶାତନମ୍ ।
ତଦ୍‌ବ୍ରହ୍ମନିର୍ବାଣସୁଖଂ ବିଦୁର୍ବୁଧାସ୍ତତୋ ଭଜଧ୍ୱଂ ହୃଦୟେ ହୃଦୀଶ୍ୱରମ୍ । ୩୭ ।
କୋଽତିପ୍ରୟାସୋଽସୁରବାଳକା ହରେରୁପାସନେ ସ୍ୱେ ହୃଦି ଛିଦ୍ରବତ୍ ସତଃ ।
ସ୍ୱସ୍ୟାତ୍ମନଃ ସଖ୍ୟୁରଶେଷଦେହିନାଂ ସାମାନ୍ୟତଃ କିଂ ବିଷୟୋପପାଦନୈଃ ।୩୮।

---

ଯେତେବେଳେ ପୁରୁଷ ସମସ୍ତ ବନ୍ଧନରୁ ମୁକ୍ତ ହୁଏ ମ୍ଲାନାଦି ଭାବ ଯେତେବେଳେ ତାହାର ଶରୀର ଓ ମନକୁ ଅଧିକାର କରେ ଓ ସମସ୍ତ ଜ୍ଞାନ ଦଗ୍ଧ ହୋଇଯାଏ ଏହି ଅବସ୍ଥାରେ ପ୍ରବଳ ଭକ୍ତି ଯୋଗରେ ସେ ଇନ୍ଦ୍ରିୟର ଅଗୋଚର ଶ୍ରୀ ବିଷ୍ଣୁଙ୍କୁ ଲାଭ କରେ । ୩୬ ।

ସଂସାରରେ ରାଗାଦି ଯୁକ୍ତ ଶରୀର ବିଶିଷ୍ଟ ବ୍ୟକ୍ତି ପକ୍ଷରେ ମନେ ମନେ ଶ୍ରୀବିଷ୍ଣୁଙ୍କ ସ୍ପର୍ଶକୁ ସଂସାର ଚକ୍ରର ନିବର୍ତ୍ତକ, ବ୍ରହ୍ମ ନିର୍ବାଣ ସୁଖ ବୋଲି ପଣ୍ଡିତମାନେ କହିଥାନ୍ତି । ସୁତରାଂ ତୁମ୍ଭେମାନେ ହୃଦୟରେ ସେହି ଈଶ୍ୱର ଶ୍ରୀ ବିଷ୍ଣୁଙ୍କୁ ଭଜନ କର । ୩୭ ।

ହେ ଅସୁର ବାଳକଗଣ ! ନିଜର ହୃଦୟାକାଶରେ ସର୍ବଦା ବର୍ତ୍ତମାନ, ଜୀବର ପରମ ହିତକର ହରି ଉପାସନା କଣ କଠିନ ? ଆଦୌ ନୁହେଁ, ଶୂକର, କୁକୁର ପ୍ରଭୃତି ମଧ୍ୟ ବିଷୟ ସୁଖରେ ସର୍ବଦା ମତ୍ତ । ସୁତରାଂ ବିଷୟ ସୁଖରେ କି ଲାଭ, କିଛି ନାହିଁ । ୩୮ ।

---

ଏମନ୍ତ ଭାବେ ଯେତେବେଳେ
ଭଜଇ କୃଷ୍ଣ ପାଦମୂଳେ
ଅଶେଷ କର୍ମ ବନ୍ଧ ପାଶ
କୃଷ୍ଣ ସ୍ମରଣେ ହୋଏ ନାଶ
କୃଷ୍ଣ ଚରଣେ ଭାବ କରେ
ଅଶେଷ ବନ୍ଧନୁଁ ନିସ୍ତରେ
କୃଷ୍ଣ ଭାବନେ ହୋଏ ଶୁଦ୍ଧି
ଚେତନା ଅହଂକାର ବୁଦ୍ଧି
ଏମନ୍ତ ବାହ୍ୟ ଅଭ୍ୟନ୍ତର
ନିର୍ମ୍ମଳେ ପ୍ରକାଶେ ଶରୀର
କର୍ମ୍ମ ବାସନା ବୀଜ ବଳେ
ଏ ଜୀବ ସର୍ବଥିରେ ଶୟୁଳେ

କୃଷ୍ଣ ଭକତି ଯୋଗବଳେ
ପ୍ରକାଶେ ପ୍ରଳୟ ଅନଳେ
ସେ ଅଗ୍ନି ତେଜେ କର୍ମ ବୀଜ
ତକ୍ଷଣେ କଲେ ସେ ଦହିଯ
କର୍ମ୍ମ ବିନାଶେ ଜୀବ ତରେ
ନିଶ୍ଚିନ୍ତେ କୃଷ୍ଣଆଶ୍ରେ କରେ ।୩୬।
କୃଷ୍ଣ ଆଶ୍ରୟ ପ୍ରାଣିଙ୍କର
ଶୁଭ ଅଶୁଭ ହୋଏ ଦୂର
ଏ ଶୁଭାଶୁଭ ଚକ୍ରେ ଥାଇ
ପ୍ରାଣୀ ଅଶେଷ ଜନ୍ମ ପାଇ
ସଂସାର ଚକ୍ର ଦୃଢ ପାଶ
ହରି ଭଜନେ ହୁଏ ନାଶ,

ଏ ଜୀବବନ୍ଧୁଁ ମୋକ୍ଷ ହୋଇ
ବ୍ରହ୍ମ ନିର୍ବାଣେ ପଶେ ଯାଇଁ
ପଣ୍ଡିତଜନଙ୍କର ମତ
କୃଷ୍ଣ ଭଜନେ ବ୍ରହ୍ମ ତତ୍ତ୍ୱ
ବାଳକେ ମୋର ବୋଲ କର
ବେଳହୁଁ ଗୋବିନ୍ଦ ସୁମର ।୩୭।
ହରିଙ୍କ ଭଜ ଦୃଢମନେ
କି ଦୁଃଖ କୃଷ୍ଣ ଉପାସନେ
ହରି ଅଶେଷ ପ୍ରାଣିଦେହେ
ହୃଦ ଆକାଶ ପ୍ରାୟେ ରହେ
ଆତ୍ମାର ସଖା ପଦ୍ମନାଭ
ଅନ୍ୟ ଭଜନେ କିବା ଲାଭ ।୩୮।

**ରାୟଃ କଳତ୍ରଂ ପଶବଃ ସୁତାଦୟୋ ଗୃହା ମହୀ କୁଞ୍ଜରକୋଷଭୂତୟଃ ।**
**ସର୍ବେଽର୍ଥକାମାଃ କ୍ଷଣଭଙ୍ଗୁରାୟୁଷଃ କୁର୍ବନ୍ତି ମର୍ତ୍ତ୍ୟସ୍ୟ କିୟତ୍ ପ୍ରିୟଂ ଚଳାଃ । ୩୯ ।**
**ଏବଂ ହି ଲୋକାଃ କ୍ରତୁଭିଃ କୃତା ଅମୀ କ୍ଷୟିଷ୍ଣବଃ ସାତିଶୟା ନ ନିର୍ମଳାଃ ।**
**ତସ୍ମାଦଦୃଷ୍ଟଶ୍ରୁତଦୂଷଣଂ ପରଂ ଭକ୍ତ୍ୟୈକୟେଶଂ ଭଜତାତ୍ମଲବ୍ଧୟେ । ୪୦ ।**
**ଯଦର୍ଥ ଇହ କର୍ମାଣି ବିଦ୍ୱନ୍ମାନ୍ୟସକୃନ୍ନରଃ ।**
**କରୋତ୍ୟତୋ ବିପର୍ଯ୍ୟାସମମୋଘଂ ବିନ୍ଦତେ ଫଳମ୍ । ୪୧ ।**
**ସୁଖାୟ ଦୁଃଖମୋକ୍ଷାୟ ସଂକଳ୍ପ ଇହ କର୍ମିଣଃ ।**
**ସଦାପ୍ନୋତୀହୟା ଦୁଃଖମନୀହାୟାଃ ସୁଖାବୃତଃ । ୪୨ ।**

---

ସ୍ତ୍ରୀ, ପୁତ୍ର, ଧନ, ସମ୍ପଦ, ଗୋ, ମହିଷୀ, ହସ୍ତୀ, ଘୋଟକ, ଭୂସମ୍ପତ୍ତି, ଧନାଗାର ଓ ଅନ୍ୟାନ୍ୟ ଭୋଗୋପକରଣ ସମ୍ପତ୍ତି ସମସ୍ତହିଁ ଅସ୍ଥିର । ଏହି ସମସ୍ତ ଅର୍ଥ କାମ କ୍ଷଣଭଙ୍ଗୁରାୟୁ ମର୍ତ୍ତ୍ୟବାସୀ ଜୀବର କି ଉପକାର କରିବ ? କିଛି ନୁହେଁ । ୩୯ ।

ଶାସ୍ତ୍ର ପ୍ରସିଦ୍ଧ ଯଜ୍ଞାଦି ପୁଣ୍ୟଲବ୍ଧ ସ୍ୱର୍ଗାଦି ଲୋକ କ୍ଷଣଭଙ୍ଗୁର ଓ ସ୍ପର୍ଦ୍ଧାଦି ଦୋଷରେ ଦୂଷିତ । ସୁତରାଂ ନିର୍ମଳ ନୁହେଁ । ହେ ଭ୍ରାତୃଗଣ ! ଶ୍ରୀହରିଙ୍କର ଶ୍ରୀଚରଣ ଲଭିବାରେ ପୂର୍ବୋକ୍ତ ଭକ୍ତି ଯୋଗଆଶ୍ରୟ କରି ଦୃଷ୍ଟ ଓ ଶ୍ରୁତ ଦୋଷ ବର୍ଜିତ ପରମେଶ୍ୱରଙ୍କୁ ଭଜନା କର । ୪୦ ।

ପଣ୍ଡିତମ୍ମନ୍ୟ ବ୍ୟକ୍ତିମାନେ ସଂସାରରେ ବିଷୟ ସୁଖ ଲଭି ନିମିତ୍ତ ପୁନଃ ପୁନଃ କାର୍ଯ୍ୟ କରିଥାନ୍ତି କିନ୍ତୁ ଫଳତଃ ବିପରୀତ ଦୁଃଖାତ୍ମକ ଫଳ ଭୋଗ କରିଥାନ୍ତି । ୪୧ ।

କର୍ମ ମାର୍ଗରେ ସୁଖଲାଭ ଏବଂ ଦୁଃଖ ନିବୃତ୍ତି ନିମନ୍ତେ କର୍ମୀମାନେ କୃତସଂକଳ୍ପ କିନ୍ତୁ କର୍ମାନୁଷ୍ଠାନ ପୂର୍ବରୁ ନିଷ୍କାମତା ହେତୁ ପୁରୁଷ ସୁଖାବୃତ ଥାଏ କିନ୍ତୁ କର୍ମାନୁଷ୍ଠାନ କରି କାମନା ସାଗରରେ ଭାସମାନ ହୁଏ ଫଳତଃ କେବଳ ଦୁଃଖ ଲାଭ କରେ । ୪୨ ।

---

ଦେଖ ଏ ଧନ ଦାର-ସୁତ
ପଶୁ କୁଞ୍ଜର ଗୃହକ୍ଷେତ୍ର
ନାନା ସମ୍ପଦ ଅର୍ଥ କାମ
କ୍ଷଣ-ଭଙ୍ଗୁର ଯେ ଏମାନ
ସ୍ୱପ୍ନର ପ୍ରାୟେ ମିଥ୍ୟା ହୋନ୍ତି
ଜୀବକୁଁ କିବା ଏ କରନ୍ତି
ସମ୍ପଦ ନୁହଇଁ ନିଶ୍ଚଳ
ଯେସନେ ସିନ୍ଧୁର କଲ୍ଲୋଳ ।୩୯।
ଏହା ନ ଜାଣି ସର୍ବଜନେ
ଏ'ମାୟା ନିଗମ ବଚନେ
ଯଜ୍ଞ ଆରମ୍ଭେ କରେ କର୍ମ
ଶ୍ରୁତି ସଂକୁଳେ ହୋଏ ଭ୍ରମ

ସେ ଯଜ୍ଞଫଳ ଦେନି ଲୋକେ
ଆବୋର ଭୁଞ୍ଜି ଏକ ଏକେ
କର୍ମ' ସରିଲେ ପୁଣି ଚଳେ
ଭ୍ରମଇ ଏ ମାୟା ଶୟଳେ.
ଅନନ୍ତ କୃତକର୍ମ ଫଳ
କେବେହେଁ ନୁହଇଁ ନିର୍ମଳ
ଏ କର୍ମ ଦୂରେ ପରିହର
ଆତ୍ମାକୁ ମାୟାରୁ ଉଦ୍ଧର
ଅନ୍ତରେ ଆତ୍ମ-ସୁଖ-ଲଭେ
କୃଷ୍ଣଚରଣ ଶରଣ ଭାବେ । ୪୦ ।
ଯେ ଅର୍ଥେ କର୍ମ ଇହଲୋକେ
କରଇ ପ୍ରାଣୀ ଏକ ଏକେ

ସେ କର୍ମ ଯେବେ ହିଁରପାଦେ
ଅର୍ପଇ ନାହିଁ ସେ ଆନନ୍ଦେ .
ନିମିଷେ ହରିଙ୍କି ନ ଭାବେ
ସେ ବିପରୀତ ଫଳ ଲଭେ ।୪୧।
ଦୁଃଖ ବିନାଶେ ସୁଖ ଅର୍ଥେ
ପ୍ରାଣୀ ଭ୍ରମନ୍ତି ଏ ଜଗତେ
ବାଞ୍ଛିତେ ଦୁଃଖ ଭୁଞ୍ଜି ନିତ୍ୟେ
ସୁଖେ ବସିଇ ଅବାଞ୍ଛିତେ
ଅଶେଷ କାମ ଭୋଗ ଅର୍ଥେ
କର୍ମ' କରଇ ପ୍ରାଣୀ ନିତ୍ୟେ
ସେ ଫଳ ପରଙ୍କର ପାଇଁ
ମିଳଇ ଅବା ନ ମିଳଇ

କାମାନ୍ କାମୟତେ କାମ୍ୟୈର୍ଯଦର୍ଥମିହ ପୂରୁଷଃ ।
ସ ବୈ ଦେହସ୍ତୁ ପାରକ୍ୟୋ ଭଙ୍ଗୁରୋ ଯାତ୍ୟୁପୈତି ଚ । ୪୩ ।
କିମୁ ବ୍ୟବହିତାପତ୍ୟଦାରାଗାରଧନାଦୟଃ ।
ରାଜ୍ୟକୋଷଗଜାମାତ୍ୟଭୃତ୍ୟାପ୍ତା ମମତାସ୍ପଦାଃ । ୪୪ ।
କିମେତୈରାତ୍ମନସ୍ତୁଚ୍ଛୈଃ ସହ ଦେହେନ ନଶ୍ୱରୈଃ ।
ଅନର୍ଥୈରର୍ଥସଂକାଶୈର୍ନିତ୍ୟାନନ୍ଦରସୋଦଧେଃ । ୪୫ ।
ନିରୂପ୍ୟତାମିହ ସ୍ୱାର୍ଥଃ କିୟାନ୍ ଦେହଭୃତୋଽସୁରାଃ ।
ନିଷେକାଦିଷ୍ୱବସ୍ଥାସୁ କ୍ଲିଶ୍ୟମାନସ୍ୟ କର୍ମଭିଃ । ୪୬ ।
କର୍ମାଣ୍ୟାରଭତେ ଦେହୀ ଦେହେନାତ୍ମାନୁବର୍ତ୍ତିନା ।
କର୍ମଭିସ୍ତନୁତେ ଦେହମୁଭୟଂ ତ୍ୱବିବେକତଃ । ୪୭ ।

---

ସଂସାରରେ ଯେଉଁ ଦେହ ନିମିତ୍ତ ପୁରୁଷ କାମ୍ୟ କର୍ମ ଅନୁଷ୍ଠାନ କରିଥାଏ ସେହି ଦେହ ଅନିତ୍ୟ, ପରକୀୟ (ଶୃଗାଳାଦି ଭକ୍ଷ୍ୟ), ଭଙ୍ଗୁର ଅର୍ଥାତ୍ ବିଧ୍ୱଂସୀ । ଏହି ଦେହ କ୍ଷଣଭଙ୍ଗୁର ବୋଲି କେତେବେଳେ କେତେବେଳେ ଆତ୍ମାକୁ ତ୍ୟାଗ କରେ । କେତେବେଳେ ବା ଫେରିଆସେ, ଯେଉଁ ଦେହର ଏହି ଅବସ୍ଥା ସେତେବେଳେ ନିଜର ଦେହ ଅପେକ୍ଷା ଦୂର ସମ୍ପର୍କିତ ପୁତ୍ର, ସ୍ତ୍ରୀ, ଗୃହ, ଧନ, ରାଜ୍ୟ, ରତ୍ନାଗାର, ହସ୍ତୀ, ମନ୍ତ୍ରୀ ଭୃତ୍ୟ ପ୍ରଭୃତି ସ୍ନେହଭାଜନ ସମସ୍ତଙ୍କ କଥା କଣ କହିବା ? । ୪୩-୪୪ ।

ଦେହ ତୁଲ୍ୟ କ୍ଷଣ ବିନାଶୀ, ଅର୍ଥ ତୁଲ୍ୟ ପ୍ରତୀୟମାନ, ଅତି ତୁଚ୍ଛ, ପୁତ୍ର କଳତ୍ରାଦି ଦ୍ୱାରା ନିତ୍ୟ ଆନନ୍ଦ ରସ ସମୁଦ୍ର ସ୍ୱରୂପ ଭକ୍ତଜନମାନଙ୍କର କି ଉପକାର ସାଧିତ ହେବ ? । ୪୫ ।

ହେ ଅସୁରମାନେ ! ପୂର୍ବ ସଞ୍ଚିତ କର୍ମ ବଶରେ ଦେହ ଧାରଣ କରି ସ୍ତ୍ରୀ ସମ୍ଭୋଗ ପ୍ରଭୃତି ସମ୍ପାଦନ କଲେ କେଉଁ ସୁଖ ଅଳ୍ପ ନ କରିବ ତାହା ତୁମ୍ଭେମାନେ ସ୍ଥିର କର । ୪୬ ।

( ଦେହ ଓ ଆତ୍ମା ପୃଥକ୍ । ଏହା ବୁଝାଇବାକୁ ଯାଇ କହୁ ଅଛନ୍ତି ) ଆତ୍ମାର ଅନୁବର୍ତ୍ତନକାରୀ ଦେହଦ୍ୱାରା ଜୀବ କର୍ମ କରେ । ପୁଣି କର୍ମ ଫଳରେ ଦେହ ଲାଭ ହୁଏ । ଏହିପରି ଦେହ ଓ କର୍ମ, କର୍ମ ଓ ଦେହ ଏହି ପ୍ରଣାଳୀରେ ଜୀବ ପୁନଃ ପୁନଃ ସଂସାରରେ ଗତାୟାତ କରୁଥାଏ । ଫଳରେ ଏ ଉଭୟ ଅଜ୍ଞାନ

---

ଯେ ଦେହ ପାଇଁ କର୍ମମାନ
କରଇ,ତାକୁ ଭକ୍ଷେ ଶ୍ୱାନ ।୪୨,୪୩
ଏ ଦାରା ସୁତ ଗୃହ ଧନ
ରାଜଭଣ୍ଡାର ଭୃତ୍ୟ ଜନ
ମମତା ଆବୃତେ ଏ ଥାନ୍ତି
ହରନ୍ତି ପୁଣି ନ ହରନ୍ତି
ଏ ତୁଚ୍ଛ ପ୍ରାୟ ଦେହ ତୁଲ୍ୟେ
ସର୍ବେ ନାଶନ୍ତି ଅନ୍ତକାଳେ

ଅନର୍ଥ ଅର୍ଥ ପ୍ରାୟେ ମଣି
ମାୟା ଫାଶରେ ସର୍ବ ପ୍ରାଣୀ;
ଏ ଯେଉଁ ଆନନ୍ଦ ସାଗରେ
ଶତ୍ରୁ ମଜ୍ଜାଅ ନିରନ୍ତରେ
ଦେହ ଧାରଣେ ଏହି ଲଭ
ଅସୁର ମତ ଛାଡ଼ ଭାବ ।୪୪,୪୫।
ଦେଖ ଏ ସଂସାର ଧାରଣ
ଜନ୍ମରୁ ଯାବତ ମରଣ

ଏ ମଧ୍ୟେ ଯାବତ ଉପାୟେ
ଜୀବର କ୍ଳେଶମାତ୍ର ହୋଏ ।୪୬।
କର୍ମ ସଂଯୋଗେ ଦେହ ବହି
କରନ୍ତେ କର୍ମହିଁ ସଞ୍ଚଇ
ଜନ୍ମ ମରଣ କର୍ମଫଳେ,
ଚଳଇ ଅବିବେକ ବଳେ ।୪୭।

ତସ୍ମାଦର୍ଥାଶ୍ଚ କାମାଶ୍ଚ ଧର୍ମାଶ୍ଚ ଯଦପାଶ୍ରୟାଃ ।
ଭଜତାନୀହୟାତ୍ମାନମନୀହଂ ହରିମୀଶ୍ୱରମ୍ । ୪୮ ।
ସର୍ବେଷାମପି ଭୂତାନାଂ ହରିରାତ୍ମେଶ୍ୱରଃ ପ୍ରିୟଃ ।
ଭୂତୈର୍ମହଦ୍ଭିଃ ସ୍ୱକୃତୈଃ କୃତାନାଂ ଜୀବସଂଜ୍ଞିତଃ । ୪୯ ।
ଦେବୋଽସୁରୋ ମନୁଷ୍ୟୋ ବା ଯକ୍ଷୋ ଗନ୍ଧର୍ବ ଏବ ବା ।
ଭଜନ୍ମୁକୁନ୍ଦଚରଣଂ ସ୍ୱସ୍ତିମାନ୍ ସ୍ୟାଦ୍ୟଥା ବୟମ୍ । ୫୦ ।
ନାଲଂ ଦ୍ୱିଜତ୍ୱଂ ଦେବତ୍ୱମୃଷିତ୍ୱଂ ବାସୁରାତ୍ମଜାଃ ।
ପ୍ରୀଣନାୟ ମୁକୁନ୍ଦସ୍ୟ ନ ବୃତ୍ତଂ ନ ବହୁଜ୍ଞତା । ୫୧ ।
ନ ଦାନଂ ନ ତପୋ ନେଜ୍ୟା ନ ଶୌଚଂ ନ ବ୍ରତାନି ଚ ।
ପ୍ରୀୟତେଽମଲୟା ଭକ୍ତ୍ୟା ହରିରନ୍ୟଦ୍ବିଡମ୍ବନମ୍ । ୫୨ ।

---

ପ୍ରସୂତ ତେଣୁ ଧର୍ମ, ଅର୍ଥ, କାମ, ଯାହାର ଅଧୀନ ସେହି ନିରୁପାଧିକ ପରମାତ୍ମା ପରମେଶ୍ୱରଙ୍କ ନିଷ୍କାମ ରୂପେ ଭଜନା କର । ୪୭,୪୮ ।

ସ୍ୱରଚିତ ମହାଭୂତ ସାହାଯ୍ୟରେ ସମ୍ପନ୍ନ ସମସ୍ତପ୍ରାଣୀଙ୍କର ଜୀବ ନାମକ ଆତ୍ମା ଈଶ୍ୱର ହରିଙ୍କର ପ୍ରିୟ । ଦେବ, ଅସୁର, ମନୁଷ୍ୟ, ଯକ୍ଷ, ଗନ୍ଧର୍ବ ଯେ ହେଉନ୍ତୁ ପଛକେ ଆମ୍ଭେମାନେ ଯେପରି ଭଗବତ୍ ଚରଣ, ଭଜନା ଦ୍ୱାରା ମଙ୍ଗଳ ଲାଭ କରୁଅଛୁ ସେମାନେ ମଧ୍ୟ ସେହିପରି ମଙ୍ଗଳଲାଭ କରନ୍ତୁ । ୪୯,୫୦ ।

ହେ ଅସୁରବାଳକମାନେ ! ନିର୍ମଳ ଭକ୍ତିଯୋଗରେ ଶ୍ରୀହରି ଯେପରି ପ୍ରୀତ ହୁଅନ୍ତି, ଦ୍ୱିଜତ୍ୱ ଦେବତ୍ୱ, ଋଷିତ୍ୱ ସଦ୍‌ବୃତ୍ତି ଓ ଜ୍ଞାନ, ଦାନ, ଯଜ୍ଞ, ତପସ୍ୟା, ଶୌଚ, ବ୍ରତ ପ୍ରଭୃତି କୌଣସିଥିରେ ସେ ସେପରି ପ୍ରୀତ ହୁଅନ୍ତି ନାହିଁ, ଭକ୍ତିବିହୀନ ସମସ୍ତ ବିଡ଼ମ୍ବନା ମାତ୍ର, ଭକ୍ତିହିଁ କୃଷ୍ଣପ୍ରୀତିର ଏକମାତ୍ର ସମ୍ବଳ ।୫୧,୫୨

---

ଏ ଯେଉଁ ଧର୍ମ ଅର୍ଥ କାମ
ଏ ତିନି ଜୀବର ସେ ଭ୍ରମ
ଏଣେ ଭ୍ରମଇ ନିରନ୍ତରେ
କ୍ଷଣେ ନ ରହେ ସୁଖ ଘରେ
ଏଣୁ ସଂଶୟ ଦୂର କରି
ଅନ୍ତରେ ଭଜ ନରହରି ।୪୮।
ଆତ୍ମାର ପ୍ରିୟ ଯେ ଈଶ୍ୱର
ତାଙ୍କ ନିର୍ମିଳେ ଆତ୍ମେ କର
ଏ ସୂକ୍ଷ୍ମଭୂତ ମହାଭୂତେ
ଜନ୍ମ କରାଏ ସ୍ୱଆୟତେ

ସଂଯୋଗେ ଶରୀର ପ୍ରକାଶେ
କର୍ମ ସରିଲେ ପ୍ରାଣୀ ନାଶେ ।୪୯।
ଦେବ ଅସୁର ନର ଯେବେ
ଯକ୍ଷ ଗନ୍ଧର୍ବ ହରିଭାବେ
ଭଜନ୍ତି ମୁକୁନ୍ଦଚରଣ
ସେ ଜନ୍ମ ପରମ କାରଣ ।୫୦।
ବିପ୍ର ଦେବତା ଋଷି ହୋଇ
ଯେବେ କୃଷ୍ଣଙ୍କୁ ନ ଭଜଇ
ଅନେକ ବିଦ୍ୟା ବାଦ କରେ
ସ୍ୱକୃତ କର୍ମେ ଦିନ ହରେ

ଅନେକ ଦାନ ତପ ସାଧି
ଅଷ୍ଟାଙ୍ଗ ଯୋଗ କର୍ମ ବିଧି
ଯଜ୍ଞ ଶଉଚ ବ୍ରତ ଯେତେ
ନାନା ଉପାୟ ଏ ଜଗତେ
ଅଜ୍ଞାନ ବିଡ଼ମ୍ବଣ ଏହି
ଏଣେ ଗୋବିନ୍ଦଙ୍କ ନପାଇ ।୫୧,୫୨

ତତୋ ହରୌ ଭଗବତି ଭକ୍ତିଂ କୁରୁତ ଦାନବାଃ ।
ଆତ୍ମୌପମ୍ୟେନ ସର୍ବତ୍ର ସର୍ବଭୂତାତ୍ମନୀଶ୍ୱରେ । ୫୩ ।
ଦୈତେୟା ଯକ୍ଷରକ୍ଷାଂସି ସ୍ତ୍ରିୟଃ ଶୂଦ୍ରା ବ୍ରଜୌକସଃ ।
ଖଗା ମୃଗାଃ ପାପଜୀବାଃ ସନ୍ତି ହ୍ୟଚ୍ୟୁତତାଂ ଗତାଃ । ୫୪ ।
ଏତାବାନେବ ଲୋକେଽସ୍ମିନ୍ ପୁଂସଃ ସ୍ୱାର୍ଥଃ ପରଃ ସ୍ମୃତଃ ।
ଏକାନ୍ତଭକ୍ତିର୍ଗୋବିନ୍ଦେ ଯତ୍ ସର୍ବତ୍ର ତଦୀକ୍ଷଣମ୍ । ୫୫ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ବାଳାନୁଶାସନଂ ନାମ ସପ୍ତମୋଽଧ୍ୟାୟଃ । ୭ ।

---

ହେ ଦାନବଗଣ । ତେଣୁ ଆତ୍ମତୁଲ୍ୟ ସମସ୍ତ ଜୀବଙ୍କୁ ପରମେଶ୍ୱର ରୂପେ ଭକ୍ତି କର । ୫୩ ।

ଦୈତ୍ୟମାନେ, ଯକ୍ଷ ରାକ୍ଷସମାନେ, ସ୍ତ୍ରୀମାନେ, ଶୂଦ୍ରମାନେ, ବ୍ରଜବାସୀମାନେ, ପକ୍ଷୀମାନେ, ମୃଗମାନେ ଅର୍ଥାତ୍ ଯେଉଁ ଦୈତ୍ୟମାନେ ତୃଣାବର୍ତ୍ତ, ଶଙ୍ଖଚୂଡ଼, ତାଡ଼କା, ଧେନୁକ, ଯାମଳାର୍ଜ୍ଜୁନ, ବକ, କେଶୀ ଇତ୍ୟାଦି ପାପଜୀବ ହୋଇ ଭକ୍ତିଯୋଗ ହେତୁ ମୁକ୍ତିଲାଭ କରିଥିଲେ । ୫୪ ।

ସଂସାରରେ ପୁରୁଷମାନଙ୍କ ପକ୍ଷରେ ବିଷ୍ଣୁଭକ୍ତି ଲାଭ ଅପେକ୍ଷା ଶ୍ରେଷ୍ଠ ସ୍ୱାର୍ଥସିଦ୍ଧି କିଛି ନାହିଁ । ଗୋବିନ୍ଦଠାରେ ଭକ୍ତି କରିବା ମନୁଷ୍ୟ ଜୀବନର ଏକମାତ୍ର କର୍ତ୍ତବ୍ୟ । ୫୫ ।

---

ନିର୍ମ୍ମଳ ଭକ୍ତି ଅନ୍ତର୍ଗତେ
ଯେବା ଭଜଇ ଅବିରତେ
ତେବେ ଲଭଇ ଭଗବାନ
ଅନ୍ୟଥା ସର୍ବ ବିଡ଼ମ୍ବନ
ଏଣୁ ଗୋବିନ୍ଦ ପାଦେ ଭଜ
ଅସୁର ବୁଦ୍ଧି ଦୂରେ ତେଜ
ଯେ ଆତ୍ମ ସୁବୁଦ୍ଧି ବିବେକ
ଆତ୍ମ ସମାନେ ସର୍ବ ଦେଖ
ସକଳ ଘଟେ ଏକା ହରି
ସୂକ୍ଷ୍ମ ସ୍ୱରୂପେ ଛନ୍ତି ପୂରି । ୫୩ ।

ଏ ଭାବ ଜାଣି ଏ ଶାସ୍ତ୍ରେ
ଅନେକ ପ୍ରାଣୀ ନିସ୍ତରିଲେ
ଅସୁର ଯକ୍ଷ ରକ୍ଷଗଣ
ସ୍ତ୍ରିଏ ଗୋପାଳ ଶୂଦ୍ର ଜନ
ମୃଗ ପତଙ୍ଗ ପାପିଜୀବେ
ସର୍ବେ ତରିଲେ କୃଷ୍ଣଭାବେ
ଏ ଜୀବଲୋକେ ଏ ଦୁର୍ଲ୍ଲଭ
ଏକାନ୍ତ ଚିତ୍ତେ ହରିଭାବ
ଜ୍ଞାନ-ଲୋଚନେ ସର୍ବ ଦେଖ
ଆତ୍ମାକୁ ଆତ୍ମାଭାବେ ରଖ । ୫୪, ୫୫ ।

ବୋଲଇ ବିପ୍ର ଜଗନ୍ନାଥ
ଜନ ନିସ୍ତାରେ ଭାଗବତ
ସପ୍ତମ ସ୍କନ୍ଧେ ହରିଲୀଳା
ଭବ ତରଣ କରି ଭେଳା
ଅସୁର ପୁତ୍ରଙ୍କର ଆଗେ
ସେ ପ୍ରହ୍ଲାଦ ଅନୁରାଗେ
ଏତେ କହିଲେ ଧର୍ମ୍ମ-ବାଣୀ
ଶୁଣି ସଂସାରୁ ତରେ ପ୍ରାଣୀ





**ବିଶଦାର୍ଥ—**

ପୂର୍ବ ଅଧ୍ୟାୟର ଶେଷଭାଗରେ ପ୍ରହ୍ଲାଦ ନାରଦଙ୍କ ଠାରୁ ଉପଦେଶ ପାଇଥିବାର ପ୍ରକାଶ କରିବାରୁ ବୟସ୍ୟ ଦୈତ୍ୟବାଳକ ମାନଙ୍କର ସନ୍ଦେହ ଜନ୍ମିଲା—ଏତ କ୍ଷୁଦ୍ର ବାଳକ, ରାଜ ପ୍ରାସାଦରେ ଥାଏ, ନାରଦଙ୍କ ସହିତ ଏହାର ସାକ୍ଷାତ ହେଲା କିପରି ଏବଂ ନାରଦ ଏହାକୁ ଉପଦେଶ ଦେଲେ କିପରି ? ଓ କେଉଁଠାରେ । ବୟସ୍ୟମାନଙ୍କର ଏହି ସନ୍ଦେହ ଦୂରକରିବାକୁ ପ୍ରହ୍ଲାଦ ନିଜର ପୂର୍ବଜନ୍ମ-ବୃତ୍ତାନ୍ତ ବୟସ୍ୟମାନଙ୍କୁ ଶୁଣାଇ ଥିଲେ । ପିତା ହିରଣ୍ୟକଶିପୁ ଯେତେବେଳେ ପ୍ରହ୍ଲାଦଙ୍କର ଜନନୀ ଦିତିଙ୍କୁ ଇନ୍ଦ୍ର ବଳପୂର୍ବକ ହରଣ କରି ନେଇ ଯାଉଥିଲେ, ପଥମଧ୍ୟରେ ନାରଦ ହିରଣ୍ୟକଶିପ ପତ୍ନୀଙ୍କର ଦୁରବସ୍ଥା ଦର୍ଶନ କରି ଇନ୍ଦ୍ରଙ୍କୁ ଭର୍ତ୍ସନା କରି କହିଲେ, "ଦିତି ନିରପରାଧିନୀ ସତୀ, ତାହାଙ୍କ ପ୍ରତି ତୁମ୍ଭେ କୌଣସି ପ୍ରକାର ଅତ୍ୟାଚାର କରିବା ଅନୁଚିତ । ସେହିଦିନରୁ ହିରଣ୍ୟ କଶିପୁ ମନ୍ଦର ପର୍ବତରୁ ଫେରିବା ପର୍ଯ୍ୟନ୍ତ ଦିତି ନାରଦଙ୍କ ଆଶ୍ରମରେ ରହିଥିଲେ । ସେତେବେଳେ ସେ ଗର୍ଭବତୀ । ମାତୃଗର୍ଭରେ ଥିବାବେଳେ ନାରଦ ମାତାଙ୍କୁ ଯେଉଁ ଉପଦେଶ ମାନ ଦେଇଥିଲେ, ତାହାହିଁ ପ୍ରହ୍ଲାଦଙ୍କର ବୟସ୍ୟମାନଙ୍କ ପ୍ରତି ଉପଦେଶର ଭିତ୍ତି । ପ୍ରହ୍ଲାଦ ନାରଦ କଥିତସାଂଖ୍ୟ ତତ୍ତ୍ୱ ବନ୍ଧୁମାନଙ୍କୁ ଶୁଣାଇଥିଲେ । ଏଠାରେ ପ୍ରହ୍ଲାଦ ଯେଉଁ ତତ୍ତ୍ୱ ଶୁଣାଇଲେ ତାହା କପିଳ ପ୍ରଦର୍ଶିତ ତତ୍ତ୍ୱର ବିଶେଷ ବ୍ୟାଖ୍ୟା ବୋଲି କହିଲେ ଅଯୁକ୍ତ ହେବ ନାହିଁ । ନାନାଶାସ୍ତ୍ରରେ ନାନା ତତ୍ତ୍ୱଦ୍ୱାରା ବୁଦ୍ଧିର ଜାଗରଣାଦି ପ୍ରବାହ ନିବାରକ ଯୋଗ, ତ୍ରିଗୁଣାତ୍ମକ କର୍ମର ବୀଜ ବିନାଶ ବିଷୟରେ ନାନାଉପାୟ ବର୍ଣ୍ଣିତ ହୋଇଥିଲେ ମଧ୍ୟ ଭକ୍ତପ୍ରବର ନାରଦ ଭକ୍ତିଯୋଗର ଶ୍ରେଷ୍ଠତା ପ୍ରତି ପାଦନ କରି ପ୍ରହ୍ଲାଦ ଜନନୀଙ୍କ ନିକଟରେ ସେହି ତତ୍ତ୍ୱ ବ୍ୟାଖ୍ୟା କରିଥିଲେ । ନିଷ୍କାମ ଭକ୍ତି ସାଧନ ଶ୍ରୀକୃଷ୍ଣଚରଣାରବିନ୍ଦ ପ୍ରାପ୍ତିର ଶ୍ରେଷ୍ଠ ଉପାୟ ବୋଲି ଏହି ଅଧ୍ୟାୟରେ ବର୍ଣ୍ଣନା କରାଯାଇଅଛି । ସେହି ଭକ୍ତିସାଧନର ପନ୍ଥା ନିର୍ଦ୍ଦେଶ କରିବାକୁ ଯାଇ ପ୍ରହ୍ଲାଦ କହିଲେ ଭକ୍ତି ଆମ୍ଭମାନଙ୍କ ପକ୍ଷରେ ଦୁର୍ଲ୍ଲଭ ନୁହେଁ । "ଭକ୍ତିର ଉପାଦାନ ଅନ୍ୟ ସ୍ଥାନରୁ ସଂଗ୍ରହ କରିବାକୁ ହୁଏ ନାହିଁ । ଆମ୍ଭମାନଙ୍କର ଅନ୍ତର ମଧ୍ୟରେ ତାହା ବିଦ୍ୟମାନ ରହିଅଛି । ମନହିଁ ଭଗବତ୍ ଭକ୍ତି ଲଭର ପରମ ଉପାୟ । ସୁତରାଂ ହୃଦୟମଧ୍ୟରେ ଶ୍ରୀକୃଷ୍ଣଚରଣ ଚିନ୍ତନା କର । ଚକ୍ଷୁଦ୍ୱାରା ଭଗବାନଙ୍କର ରୂପ ଦର୍ଶନ, ଶ୍ରୋତ୍ରଦ୍ୱାରା ତାହାଙ୍କର ନାମ ଶ୍ରବଣ ଓ କୀର୍ତ୍ତନ ଏବଂ ଭକ୍ତି ସାଧନର ବିଭିନ୍ନ ପନ୍ଥା ବୋଲି ନିର୍ଦ୍ଦେଶ କରା ଯାଇଅଛି । ଏହି ଭକ୍ତି ସାଧନର ଅଧିକାରୀ ଯେ କେବଳମନୁଷ୍ୟ, ତାହା ନୁହେଁ- ସୁର, ଅସୁର ବା ନର, ପଶୁ , ପକ୍ଷୀ ପ୍ରଭୃତି ସମସ୍ତେ ଜାତିବର୍ଣ୍ଣ ନିର୍ବିଶେଷରେ ନିର୍ମଳ ଚିତ୍ତରେ ସେହି ଶ୍ରୀହରି ଚରଣରେ ଭକ୍ତି କରି ପାରନ୍ତି । ଏଥିର ଉଦାହରଣ ସ୍ୱରୂପ ବୃତ୍ରାସୁର ପ୍ରଭୃତି ଅସୁରଗଣ, ଶଙ୍ଖଚୂଡ଼ ପ୍ରଭୃତି ଯକ୍ଷଗଣ, ବିଭୀଷଣ ପ୍ରଭୃତି ରାକ୍ଷସଗଣ, ପୂତନାଦି ସ୍ତ୍ରୀଗଣ, ଗୁହକାଦି ଶୂଦ୍ରଗଣ, ଯମଳାର୍ଜ୍ଜୁନାଦି ବନ୍ୟ ତରୁଗଣ, ଜଟାୟୁ, ବକ ପ୍ରଭୃତି ପକ୍ଷୀଗଣ, କେଶୀ ଓ ମାରିଚ ପ୍ରଭୃତି ମୃଗପଶୁଗଣ କିପରି ଭଗବଦ୍ କୃପା ଲଭ କରିଥିଲେ ତାହା ମଧ୍ୟ ବୟସ୍ୟମାନଙ୍କୁ ପ୍ରହ୍ଲାଦ ଶୁଣାଇଥିଲେ । ଦେବ, ଅସୁର, ଯକ୍ଷ, ରାକ୍ଷସ, ପଶୁ, ପକ୍ଷୀ, ସ୍ଥାବର, ଜଙ୍ଗମ କେହି ଭଗବଦ୍ କୃପାରୁ ବଞ୍ଚିତ ନୁହନ୍ତି । ଶ୍ରୀ ଗୋବିନ୍ଦଙ୍କ ଠାରେ ଏକାନ୍ତ ଭକ୍ତି ଅର୍ଜ୍ଜନ କଲେ ସମଗ୍ର ବିଶ୍ୱ ହରିମୟ ହୋଇଯାଏ । ସୁତରାଂ ହରିଭକ୍ତି ମାନବ ଜୀବନର ସର୍ବଶ୍ରେଷ୍ଠ ସମ୍ବଳ । ଏହି ହରିଭକ୍ତି ଦ୍ୱାରା ଚେତନ ଅଚେତନ, ସ୍ଥାବର ଜଙ୍ଗମ, କୀଟ ପତଙ୍ଗ ସମସ୍ତଙ୍କଠାରେ ଭଗବାନଙ୍କର ବିଦ୍ୟମାନତା ଅନୁଭବ କରାଯାଏ ।"

## ଅ ଷ୍ଟ ମ ଅ ଧ୍ୟା ୟ ।

ଅଷ୍ଟମେଽତ୍ରରକ୍ଷା ସୂନୁଂ ଜିଘ୍ନନ୍ ଦୈତ୍ୟୋ ହତଃ ସ୍ୱୟମ୍ ।
ଆବିର୍ଭୂୟ ନୃସିଂହେନ ସ ଚ ବ୍ରହ୍ମାଦିଭିଃ ସ୍ତୁତଃ । ୦ । ( ଶ୍ରୀଧରସ୍ୱାମୀ )

ଶ୍ରୀନାରଦ ଉବାଚ ।

ଅଥ ଦୈତ୍ୟସୁତାଃ ସର୍ବେ ଶ୍ରୁତ୍ୱା ତଦନୁବର୍ଣ୍ଣିତମ୍ ।
ଜଗୃହୁର୍ନିରବଦ୍ୟତ୍ୱାନ୍ନୈବ ଗୁର୍ବନୁଶିକ୍ଷିତମ୍ । ୧ ।
ଅଥାଚାର୍ଯ୍ୟସୁତସ୍ତେଷାଂ ବୁଦ୍ଧିମେକାନ୍ତସଂସ୍ଥିତାମ୍ ।
ଆଲକ୍ଷ୍ୟ ଭୀତସ୍ତ୍ୱରିତୋ ରାଜ୍ଞ ଆବେଦୟଦ୍ୟଥା । ୨ ।
କୋପାବେଶଚଲଦ୍‌ଗାତ୍ରଃ ପୁତ୍ରଂ ହନ୍ତୁଂ ମନୋ ଦଧେ ।
କ୍ଷିପ୍ତ୍ୱା ପରୁଷୟା ବାଚା ପ୍ରହ୍ଲାଦମତଦର୍ହଣମ୍ । ୩ ।

---

## ନରସିଂହ ଅବତାର ଓ ହିରଣ୍ୟକଶିପୁ ବଧ ।

ଅଷ୍ଟମ ଅଧ୍ୟାୟରେ ହିରଣ୍ୟ କଶିପୁ ଅତି କ୍ରୋଧରେ ପ୍ରହ୍ଲାଦଙ୍କୁ କଷ୍ଟ ଦିଅନ୍ତେ ଭଗବାନ୍ ନୃସିଂହ ଆବିର୍ଭାବ ହୋଇ ହିରଣ୍ୟକଶିପୁକୁ ବଧ କରିବା ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀନାରଦ କହିଲେ :—

ପ୍ରହ୍ଲାଦଙ୍କର ନିର୍ଦ୍ଦୋଷ ବାକ୍ୟ ଶ୍ରବଣ କରି ଦୈତ୍ୟବାଳକମାନେ ତାହାହିଁ ଗ୍ରହଣ କରିଥିଲେ ଗୁରୁଙ୍କର ଉପଦେଶ ଗ୍ରହଣ କଲେ ନାହିଁ । ୧ ।

ବାଳକମାନଙ୍କୁ ଭଗବଦ୍ ଅନୁରାଗୀ ଦେଖି ଗୁରୁ ଭୀତ ଭାବରେ ଅବିଳମ୍ବେ ରାଜାଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇଥିଲେ । ୨ ।

ରାଜା ହିରଣ୍ୟକଶିପୁ କ୍ରୋଧାନ୍ୱିତ ହୋଇ କମ୍ପିତ କଳେବରରେ ପୁତ୍ରକୁ ବଧ କରିବାକୁ ଇଚ୍ଛା କରିଥିଲେ । ୩ ।

---

ଅଷ୍ଟମେ ନୃସିଂହାବତାର । ହିରଣ୍ୟ କଶିପୁ ସଂହାର ॥

ଶ୍ରୀନାରଦ ଉବାଚ—

ଏମନ୍ତେ ପ୍ରହ୍ଲାଦ ବାଣୀ
ବାଳକେ ସାବଧାନେ ଶୁଣି
ସ୍ୱଚିନ୍ତ ଶୁଣି ମନେ ମନ
ନିନ୍ଦନ୍ତି ଗୁରୁଙ୍କ ବଚନ
ଏଣେ ଆମ୍ଭର କାର୍ଯ୍ୟ ନାହିଁ
ଏମନ୍ତ ଭଲ ସର୍ବେ ଯାଇଁ
ଗୁରୁଙ୍କ ଆଗେ ଜଣାଇଲେ
ବିଶେଷି ସମସ୍ତ କହିଲେ । ୧ ।

ବାଳ ବଚନ ଶୁଣି ଗୁରୁ
ମନେ ପାଇଲେ ଚିନ୍ତା ଗରୁ
ଏକାନ୍ତ ବୁଦ୍ଧିତ ଏହାର
ଅନ୍ୟେ ଅଲକ୍ଷ୍ୟ ଅଗୋଚର
ଶତ୍ରୁର ପକ୍ଷ ଆବୋରିଲା
ବାଳକ ବୁଦ୍ଧି ନାଶ କଲା
ଯେବେ ଏହାର ବୋଲେ ଥିବେ
ସର୍ବ ବାଳକ ନାଶ ଯିବେ
ଏମନ୍ତ ହୃଦୟେ ବିଚାରି
ରାଜ-ଦଣ୍ଡକୁ ଭୟ କରି

ଶୀଘ୍ରେ ରାଜାର ପାଶେ ବସି
ବିସ୍ତାରି କହିଲେ ଆଶ୍ୱାସି । ୨ ।
ରାଜନ ଶୁଣି ସର୍ବ କଥା
ମନେ ପାଇଲା ଗୁରୁ ଚିନ୍ତା
ପୁତ୍ରର ଅନ୍ୟାୟ ବଚନ
ଶୁଣି ଅସୁର ଛନ ଛନ
କୋପେ କମ୍ପିଲା ତା ଶରୀର
କାନନେ ଯେସନେ ସମୀର
ଅନେକ ମତେ ବିଚାରିଲା
ପୁତ୍ର ମାରଣେ ମନ ଦେଲା

ଅବେକ୍ଷମାଣଃ ପାପେନ ତିରଶ୍ଚୀନେନ ଚକ୍ଷୁଷା ।
ପ୍ରଶ୍ରୟାବନତଂ ଦାନ୍ତଂ ବଦ୍ଧାଞ୍ଜଳିମବସ୍ଥିତମ୍ ।
ସର୍ପଃ ପଦାହତଇବ ଶ୍ୱସନ୍ ପ୍ରକୃତିଦାରୁଣଃ । ୪ ।
ଶ୍ରୀହିରଣ୍ୟକଶିପୁରୁବାଚ । ହେ ଦୁର୍ବିନୀତ ମନ୍ଦାତ୍ମନ୍ କୁଲଭେଦକରାଧମ ।
ସ୍ତବ୍ଧଂ ମଚ୍ଛାସନୋଦ୍ବୃତ୍ତଂ ନେଷ୍ୟେ ତ୍ୱାଦ୍ୟ ଯମାଳୟମ୍ । ୫ ।
କ୍ରୁଦ୍ଧସ୍ୟ ଯସ୍ୟ କମ୍ପନ୍ତେ ତ୍ରୟୋଲୋକାଃ ସହେଶ୍ୱରାଃ ।
ତସ୍ୟ ମେଽଭୀତବନ୍ମୂଢ଼ ଶାସନଂ କିଂ ବଲୋଽତ୍ୟଗାଃ । ୬ ।
ଶ୍ରୀ ପ୍ରହ୍ଲାଦଉବାଚ-ନ କେବଲଂ ମେ ଭବତଶ୍ଚ ରାଜନ୍ ସ ବୈ ବଲଂ ବଲିନାଂ ଚାପରେଷାମ୍ ।
ପରେଽବରେଽମୀ ସ୍ଥିରଜଙ୍ଗମା ଯେ ବ୍ରହ୍ମାଦୟୋ ଯେନ ବଶଂ ପ୍ରଣୀତାଃ । ୭ ।

---

ଦାରୁଣ ପ୍ରକୃତି ହିରଣ୍ୟକଶିପୁ ପଦାହତ ସର୍ପତୁଲ୍ୟ ଘନ ଘନ ନିଶ୍ୱାସ ପ୍ରଶ୍ୱାସ ପରିତ୍ୟାଗ କରି ବିନୀୟ ନମ୍ର, ସମ ଦମାଦି ଯୁକ୍ତ, ତିରସ୍କାର ଅଯୋଗ୍ୟ, କୃତାଞ୍ଜଳିପୁଟରେ ଅବସ୍ଥିତ ପ୍ରହ୍ଲାଦକୁ କଠୋର ବାକ୍ୟରେ ତିରସ୍କାର କରି ରୋଷପୂର୍ଣ୍ଣ ଚକ୍ଷୁରେ ଚାହିଁ କଲେ । ୪ ।

ଶ୍ରୀ ହିରଣ୍ୟକଶିପୁକହିଲେ :—ହେ ଦୁର୍ବିନୀତ ! ହେ କୁଳଭେଦକର ଅର୍ଥାତ୍ କୁଳାଧମ ! ହେ ମନ୍ଦମତେ ତୁ ମୋର ଆଦେଶ ଲଙ୍ଘନ କରିଅଛୁ । ତୋପରି ଅବାଧ ପୁତ୍ରକୁ ଆଜ ମୁଁ ଯମାଳୟକୁ ପ୍ରେରଣ କରିବି ।୫

ରେ ମୂର୍ଖ ! ମୁଁ କ୍ରୁଦ୍ଧ ହେଲେ ସର୍ବଲୋକପାଳସହିତ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ କମ୍ପି ଉଠେ । ତୁ ହୀନବଳ ହୋଇ ନିର୍ଭୀକ ଚିତ୍ତରେ ମୋର ସେହି ଆଦେଶ ଲଙ୍ଘନ କରିଅଛୁ । ୬ ।

ଶ୍ରୀପ୍ରହ୍ଲାଦ କହିଲେ—ହେ ରାଜନ୍ ! ମୁଁ କାହିଁକି ବ୍ରହ୍ମାଦି ଦେବଗଣଙ୍କଠାରୁ ଆରମ୍ଭକରି ସ୍ଥାବର ଜଙ୍ଗମ ପର୍ଯ୍ୟନ୍ତ ସମସ୍ତ ବିଶ୍ୱ ସୃଷ୍ଟି ସେହି ବିଷ୍ଣୁଙ୍କର ଅଧୀନ । ସେହି ପରମପୁରୁଷହିଁ ଆପଣଙ୍କର ମୋର ଓ ଅନ୍ୟାନ୍ୟ ସମସ୍ତଙ୍କର ବଳ ଦାତା ।୭।

---

ଗୁରୁ-ପୁତ୍ରଙ୍କ ବାକ୍ୟ ଶୁଣି
ପ୍ରଚଣ୍ଡ କୋପେ ସ୍ୱାରମଣି
ପାପ ନୟନେ ବକ୍ରେ ଚାହିଁ
ପାପିଷ୍ଠ ପଣେ କରି ଭୟେ
ପ୍ରହ୍ଲାଦ ପିତାର ଅଗ୍ରତେ
କରଅଞ୍ଜଳି ଦେଇ ମାଥେ
ବିନୟଭାବେ ଅବନତ
ସ୍ୱଭାବ ଶୀଳ ଶାନ୍ତଦାନ୍ତ
ଚରଣେ ନମସ୍କାର ତଳେ
ସର୍ବ ବାଳକ ସଙ୍ଗମେଳେ
ଏମନ୍ତ ପୁତ୍ରକୁ ଅନାଇ
ଚିତ୍ତେ ପ୍ରଳୟ କୋପ ବହି

ଗର୍ଜ୍ଜଇ ମନେ କରି କୋପ
ପାଦ ପ୍ରହାରେ ଯେହ୍ନେ ସର୍ପ
ସ୍ୱଭାବେ ଦାରୁଣ ଅସୁର
ଜଳଇ ଯେହ୍ନେ ଦିବାକର
ପ୍ରଳୟାନଳ କୋପ ବହି
ବୋଲଇ ପୁତ୍ର-ମୁଖ ଚାହିଁ ।୩,୪।

ହିରଣ୍ୟକଶିପୁରୁବାଚ—

ଆରେ ଦୁର୍ବୃତ୍ତ ମନ୍ଦ ବୁଦ୍ଧି !
ଅଧମ ଦୁଷ୍ଟ କୁଳଭେଦ !
ମୋହର କୋପେ ତିନିପୁର
ଭୟେ କମ୍ପନ୍ତି ଥରହର
ତ୍ରାସେ କମ୍ପନ୍ତି ଦିଗପାଳେ
ଗଗନେ ନକ୍ଷତ୍ରମଣ୍ଡଳେ
ନିର୍ଭୟ ଚିତ୍ତେ ମୂଢ଼ପଣେ
ମୋ ଆଜ୍ଞା ଭଙ୍ଗୁ ଅପ୍ରମାଣେ
ତୁ ପୁତ୍ର ମୋର କୁଳାଙ୍ଗାର
ଆଜ ପେଶିବି ଯମପୁର
କାହାର ବଳେ ଦୁଷ୍ଟପଣେ
ମୋ ବୋଲ ଭଙ୍ଗୁ ଅକାରଣେ ।୫,୬

ଶ୍ରୀପ୍ରହ୍ଲାଦ ଉବାଚ—

ଶୁଣ ପିଅର ମୋର ବାଣୀ
ତୁ ଯେ ତ୍ରୈଲୋକ୍ୟ ସ୍ୱାରମଣୀ
ଏ କଥା ଅନୁଚିତ ତୋରି
କହଇ ଶୁଣ ନୃପବର
ଶୁଣ ଯାହାର ବଳେ ମୁହିଁ
ଜୀବକୁ ସମାନ ମଣଇ

ସ ଈଶ୍ୱରଃ କାଳଉରୁକ୍ରମୋଽସାବୋଜଃସହଃସତ୍ତ୍ୱବଲେନ୍ଦ୍ରିୟାତ୍ମା ।
ସ ଏବ ବିଶ୍ୱଂ ପରମଃ ସ୍ୱଶକ୍ତିଭିଃ ସୃଜତ୍ୟବତ୍ୟତ୍ତିଗୁଣତ୍ରୟେଶଃ । ୮ ।
ଜହ୍ୟାସୁରଂ ଭାବମିମଂ ତ୍ୱମାତ୍ମନଃ ସମଂ ମନୋ ଧତ୍ସ୍ୱ ନ ସନ୍ତି ବିଦ୍ୱିଷଃ ।
ଋତେଽଜିତାଦାତ୍ମନ ଉତ୍ପଥେ ସ୍ଥିତାତ୍ ତଦ୍ଧି ହ୍ୟନନ୍ତସ୍ୟ ମହତ୍ ସମର୍ହଣମ୍ । ୯ ।

---

ପରମ ପରାକ୍ରମଶାଳୀ, କାଳରୂପୀ ଈଶ୍ୱର ଁ ଶାରୀରିକ ବଳ, ମାନସିକ ବଳ, ଧୈର୍ଯ୍ୟ, ଦେହଶକ୍ତି ପ୍ରଭୃତି ସର୍ବଶକ୍ତିର କେନ୍ଦ୍ର ସ୍ୱରୂପ ଏବଂ ଗୁଣତ୍ରୟର ନାୟକ ସ୍ୱରୂପ । ନିଜର ଶକ୍ତି ପ୍ରଭାବରେ ବିଶ୍ୱର ସୃଷ୍ଟି, ପାଳନ ଓ ସଂହାର କରିଥାନ୍ତି । ୮ ।

( ପିତା ! ଯଦି ତୁମ୍ଭେ ଭାବ ବିଷ୍ଣୁ ତୁମ୍ଭର ଶତ୍ରୁ ସେ ତୁମ୍ଭର ବଳଦାତା ହେଲେ କିପରି ? ) ତୁମ୍ଭେ ଆସୁରୀ ଭାବ ପରିତ୍ୟାଗ କର । ତୁମ୍ଭର ମନହିଁ ତୁମ୍ଭର ଶତ୍ରୁ । ଶତ୍ରୁ, ମିତ୍ର, ନିରପେକ୍ଷ ଭାବ ଦ୍ୱାରା ଚିତ୍ତ ଶୁଦ୍ଧିକର, କାରଣ ସର୍ବତ୍ର ସମଦର୍ଶନ ଭଗବତ୍ ପୂଜାର ଶ୍ରେଷ୍ଠ ଉପହାର । ୯ । *

---

ତୋର ମୋହର ଆଦି କରି
ଅପରେ ଯେତେ ଦେହଧାରୀ
ଜଗତେ ମହାବଳୀ ଯେତେ
ସ୍ଥାବର ଜଙ୍ଗମ ସହିତେ
ବ୍ରହ୍ମାଦି ଯେତେ ସୁର ଦେବା
ଯାର ଚରଣେ କରେ ସେବା । ୭ ।
ସେ ହରି କାଳ କର୍ମରୂପୀ
ଜଗଦୀଶ୍ୱର ବିଶ୍ୱବ୍ୟାପୀ
ପ୍ରାଣିଙ୍କ ବଳ ପ୍ରାଣ ସେହି
ବାହ୍ୟ ଅନ୍ତରେ ବ୍ୟାପି ରହି

ଇନ୍ଦ୍ରିଦେବତା ଇନ୍ଦ୍ରିଗଣ
ଇନ୍ଦ୍ରିଙ୍କ ବିଷୟ କାରଣ
ସେ ବିଶ୍ୱ ସଂସାର ପାଳଇ
ତ୍ରିଗୁଣ ମାୟା ସଙ୍ଗେ ନେଇ
ଭୁଞ୍ଜଇ ଅଶେଷ ଶରୀରେ
କ୍ରୀଡ଼ାର ଅନ୍ତ ଅନ୍ତ କରେ । ୮ ।
ଏହା ତୁ ବୁଝି ତାକୁ ସ୍ମର
ଅସୁର ବୁଦ୍ଧି କର ଦୂର
ଆତ୍ମାକୁ ଆତ୍ମଜ୍ଞାନେ ରଖ
ସମେ ସକଳ ଘଟେ ଦେଖ

ଯେ ଭାବେ ରିପୁ ମିତ୍ର ନାହିଁ
ସେ ଭାବେ ରହ ମନ ଧ୍ୟାୟି
ମିତ୍ର ଉଦାସ ଶତ୍ରୁ ସଣେ
ମନହୁଁ ଅନ୍ୟ ନାହିଁ ଜଣେ
ଏ ଭାବ ଚିତ୍ତ ହୁଅ ସ୍ଥିର
କୃଷ୍ଣ ସନ୍ତୋଷେ କର୍ମ କର । ୯ ।

---

* ୯ । ଶ୍ରୀମଦ୍ ଭଗବଦ୍ଗୀତାରେ କଥିତ ହୋଇଅଛି—
"ସମ ଶତ୍ରେ ଚ ମିତ୍ରେ ଚ ତଥା ମାନାପମାନୟୋ
ଶୀତୋଷ୍ଣ ସୁଖ ଦୁଃଖେଷୁ ସମଃ ସଙ୍ଗ ବିବର୍ଜିତଃ ।"
ଅର୍ଥାତ ଯେ ଶତ୍ରୁ ମିତ୍ରରେ ସମଭାବାପନ୍ନ, ମାନାପମାନରେ ସମଭାବାପନ୍ନ, ଶୀତ, ଗ୍ରୀଷ୍ମ, ସୁଖ ଓ ଦୁଃଖରେ ନିର୍ବିକାର ଚିତ୍ତ, ଆସକ୍ତି ହୀନ, ସେହିଁ ମୋର ଭକ୍ତ ।

ଦସ୍ୟୂନ୍ ପୁରା ଷଣ୍ନ ବିଜିତ୍ୟ ଲୁମ୍ପତୋ ମନ୍ୟନ୍ତ ଏକେ ସ୍ୱଜିତା ଦିଶୋ ଦଶ ।
ଜିତାତ୍ମନୋଜ୍ଞସ୍ୟ ସମସ୍ୟ ଦେହିନାଂ ସାଧୋଃ ସ୍ୱମୋହପ୍ରଭବାଃ କୁତଃ ପରେ ।୧୦।

ଶ୍ରୀ ହିରଣ୍ୟକଶିପୁରୁବାଚ ।

ବ୍ୟକ୍ତଂ ତ୍ୱଂ ମର୍ତ୍ତୁକାମୋଽସି ଯୋଽତିମାତ୍ରଂ ବିକତ୍ଥସେ ।
ମୁମୂର୍ଷୂଣାଂ ହି ମନ୍ଦାତ୍ମନ୍ ନନୁ ସ୍ୟୁର୍ବିକ୍ଳବା ଗିରଃ ।୧୧।
ଯସ୍ତ୍ୱୟା ମନ୍ଦଭାଗ୍ୟୋକ୍ତୋ ମଦନ୍ୟୋ ଜଗଦୀଶ୍ୱରଃ ।
କ୍ୱାସୌ ଯଦି ସ ସର୍ବତ୍ର କସ୍ମାତ୍ ସ୍ତମ୍ଭେ ନ ଦୃଶ୍ୟତେ ।୧୨।

---

ଯଦି ତୁମେ କହ ମୁଁ ଦିଗ୍‌ବିଜୟ କରି ଦଶଦିଗ ଜୟ କରିଅଛି ସୁତରାଂ ମୋ ସମାନ ଆଉ କିଏ ଅଛି । (ତାହାର ଉତ୍ତରରେ ମୁଁ କହୁଅଛି ) ଆପଣଙ୍କ ତୁଲ୍ୟ ବ୍ୟକ୍ତିମାନେ ଦଶଦିଗ ଜୟ କରିଥିଲେ ମଧ୍ୟ ବିବେକାଦି ସର୍ବସ୍ୱ ଲୁଣ୍ଠନକାରୀ ଦମାଦି ରିପୁମାନଙ୍କୁ ଜୟ କରି ନାହାନ୍ତି । ଆପଣ ଅଜିତେନ୍ଦ୍ରିୟ ବୋଲି ଏପରି ଅବିବେକତା ପ୍ରକାଶ କରୁଅଛନ୍ତି କିନ୍ତୁ ଜିତେନ୍ଦ୍ରିୟ ସର୍ବତ୍ର ସମଦର୍ଶୀ, ସାଧୁ ପଣ୍ଡିତମାନଙ୍କର ଅବିବେକ ଶତ୍ରୁ କଦାପି ସମ୍ଭବ ପାରନ୍ତି ନାହିଁ । ୧୦ ।

ଶ୍ରୀହିରଣ୍ୟକଶିପୁ କହିଲେ—

ତୁ ଅତ୍ୟନ୍ତ ଶ୍ଲାଘା କରୁଅଛୁ । ତୁ ନିଶ୍ଚୟ ମୃତ୍ୟୁ କାମନା କଲୁଣି । ତେଣୁ ଏପରି ଅନ୍ୟାୟ ବାକ୍ୟ କହୁଅଛୁ ।୧୧ ।

ରେ ମନ୍ଦଭାଗ୍ୟ ! ତୁ ଯେ କହୁଛୁ ମୋ ଭିନ୍ନ ଅନ୍ୟ ପରମେଶ୍ୱର ଅଛି, ଯଦି ତାହାହିଁ ସତ୍ୟ ହୁଏ ଏବଂ ଯଦି ସେ ସର୍ବତ୍ର ବିଦ୍ୟମାନ ଥାଏ ତେବେ ସମ୍ମୁଖସ୍ଥ ସ୍ତମ୍ଭ ମଧ୍ୟରେ ମୁଁ ତାକୁ ଦେଖୁନାହିଁ କାହିଁକି ? ।୧୨

---

ତୁ ଯେ ବୋଲଉ ବୀରମଣି
ତ୍ରୈଲୋକ୍ୟ ଦଶଦିଗ ଜିଣି
ଏ ତିନି ଭୁବନ ଆବୋରି
ଭୁଞ୍ଜି ତୁ ଅକଣ୍ଟକ ଶିରୀ
ମନେ ବିଶ୍ବର କରୁ ତୁହି
ସଂସାରେ ରିପୁ ମୋର ନାହିଁ
ଏହେ ତାତ ଦୋଷ କରି ନାହି
କହିବି ଶୁଣ ମନ ଦେଇ
ବ୍ରହ୍ମାଣ୍ଡେ ଯେତେ ଗୁଣ ଅଛି
ସେ ଗୁଣ ପିଣ୍ଡମଧ୍ୟେ ଲକ୍ଷି
ସଂସାରମଧ୍ୟେ ଯେତେ ଗୁଣ
ତୁ ଏବେ ଏ ଦେହେ ପ୍ରମାଣ
ଯେ ଷଡ଼ରିପୁ କାମଆଦି
ହୃଦୟ ମଧ୍ୟେ ଛନ୍ତି ଭେଦି
ମନକୁ କରି ସେନାପତି
ଆମ୍ଭର ସମ୍ପଦ ଲୁଟନ୍ତି
ଏ ଦଶ ଇନ୍ଦ୍ରି, ଦିଗପାଳେ
ଆମ୍ଭକୁ ନାଶନ୍ତି ଏ ବଳେ
ଏହାଙ୍କୁ ଦେହେ ନ ଜିଣାରୁ
"ମୁଁ ବୀର" ବୋଲି ଗର୍ବ କରୁ
କାହାକୁ ଜିଣିଲୁ ଜଗତେ
ଏବେହେଁ ଦୃଢ଼କରି ଚିତ୍ତେ ।୧୦।

ଶ୍ରୀନାରଦ ଉବାଚ—

ଏମନ୍ତେ ପ୍ରହଲ୍ଲାଦ ବାଣୀ
ଅସୁର ଦେହ କମ୍ପେ ଶୁଣି
ବୋଲଇ ପୁତ୍ରମୁଖ ଚାହିଁ
ନିଶ୍ଚେ ମରିବୁ ଆଜ ତୁହି
ଅଧିକ ଯେତେ କଥା କହୁ
ତୁ ଏ ଅସୁର ଜନ୍ମ ନୋହୁ
ମୃତ୍ୟୁ ଯାହାର ସନ୍ନିଧାନେ,
ଜ୍ଞାନ ହରଇ ତାର ମନେ
ଆମ୍ଭର ଗତି ନ ପ୍ରମାଣି
ବାତୁଳ ପ୍ରାୟେ କହୁ ବାଣୀ ।୧୧।
ଜୀବନେ ଆଶ ନାହିଁ ତୋର
ବଚନ କହୁ ଅଗୋଚର
ଏ ତିନିପୁରେ ମୁଁ ଈଶ୍ୱର
ମୋ ଠାରୁ କେ ବା ଅଛି ଆର
କାହାର ବୋଲେ ତୁ ପାମର
ମୋ ବାକ୍ୟେ ଅବଜ୍ଞା ତୋହର
ସ୍ଥାବର ଜଙ୍ଗମ ସହିତେ
ମୁହିଁ ପାଳଇ ଏ ଜଗତେ

ସୋଽହଂ ବିକତ୍ଥମାନସ୍ୟ ଶିରଃ କାୟାଦ୍ଧରାମି ତେ ।
ଗୋପାୟୀତ ହରିସ୍ତ୍ୱାଦ୍ୟ ଯସ୍ତେ ଶରଣମୀପ୍‌ସିତମ୍ । ୧୩ ।
ଏବଂ ଦୁରୁକ୍ତୈର୍ମୁହୁରର୍ଦ୍ଦୟନ୍ ରୁଷା ସୁତଂ ମହାଭାଗବତଂ ମହାସୁରଃ ।
ଖଡ୍‌ଗଂ ପ୍ରଗୃହ୍ୟୋତ୍ପତିତୋ ବରାସନାତ୍ ସ୍ତମ୍ଭଂ ତତାଡାତିବଳଃ ସ୍ୱମୁଷ୍ଟିନା ।୧୪।
ତଦୈବ ତସ୍ମିନ୍ନିନଦୋଽତିଭୀଷଣୋ ବଭୂବ ଯେନାଣ୍ଡକଟାହମସ୍ଫୁଟତ୍ ।
ଯଂ ବୈ ସ୍ୱଧିଷ୍ଣ୍ୟୋପଗତଂ ତ୍ୱଜାଦୟଃ ଶ୍ରୁତ୍ୱା ସ୍ୱଧାମାତ୍ୟୟମଙ୍ଗ ମେନିରେ ।୧୫।

---

ମୁଁ ପ୍ରକୃତ ଈଶ୍ୱର ମୁଁ ତୋହର ଅହଙ୍କାର ଚୂର୍ଣ୍ଣକରି ତୋହର ଶିରଚ୍ଛେଦ କରିବି । ତୋହର ହରି ତୋତେ ରକ୍ଷାକରୁ । ୧୩ ।

ମହାବଳ ମହାସୁର ହିରଣ୍ୟ କଶିପୁ ଭକ୍ତ ଶ୍ରେଷ୍ଠ ପୁତ୍ର ପ୍ରହ୍ଲାଦକୁ ପୁନଃ ପୁନଃ ପୀଡ଼ାଦେଇ ଖଡ୍ଗ ଗ୍ରହଣ କରି ଅତି ବେଗରେ ସିଂହାସନରୁ ଉଠି ସ୍ତମ୍ଭରେ ତୀବ୍ର ମୁଷ୍ଟ୍ୟାଘାତ କରିଥିଲା । ୧୪ ।

ତତ୍‌କ୍ଷଣାତ୍ ସେହି ସ୍ତମ୍ଭରୁ ଅତି ଭୀଷଣ ଶବ୍ଦ ଉତ୍ଥିତ ହେଲା । ସେହି ଶବ୍ଦରେ ବ୍ରହ୍ମାଣ୍ଡ ରୂପ କଟାହ ଯେପରି ଭଗ୍ନ ହେଲାପରି ବୋଧ ହେଲା । ହେ ଅଙ୍ଗ ! (ଯୁଧିଷ୍ଠିର), ସେହି ଶବ୍ଦ ଶ୍ରବଣ କରି ବ୍ରହ୍ମାଦି ଦେବଗଣ ମନେକଲେ ଯେ ବ୍ରହ୍ମଲୋକ ବିନାଶ ପ୍ରାପ୍ତ ହେଲା । ୧୫ ।

---

ମୋଠାରୁ ଅଛି ଯେବେ ଭଲେ
ଈଶ୍ୱର ଏ ତିନି ଭୁବନେ
ତୁ ଯେବେ ବୋଲୁ ମୋର ହରି
ଦୃଶ୍ୟ ଅଦୃଶ୍ୟ ଛନ୍ତି ପୂରି
ଆଜ ତୁ ମୋହର ସମକ୍ଷେ
ହରିଙ୍କି ଦେଖାଅ ପ୍ରତ୍ୟକ୍ଷେ
ସେ ସର୍ବସ୍ଥାନେ ଯେବେ ଥାଇ
ଏ ସ୍ତମ୍ଭେ କିପାଁ ନ ଦିଶଇ
ତୁ ଯେବେ ବୋଲୁ ମୋର ସଖା
ପ୍ରତ୍ୟକ୍ଷ ସ୍ତମ୍ଭମଧ୍ୟେ ଦେଖା
ଆଜ ଛେଦିବି ତୋର ଶିର
ଆସି ରଖୁ ତୋ ଚକ୍ରଧର ।୧୨,୧୩
ଏମନ୍ତେ ପିତାର ବଚନେ
ଭୟ ପଶିଲା ତାର ମନେ

ବାଳକ କୃଷ୍ଣର ବିଶ୍ୱାସେ
ଚହିଁଲେ ସ୍ତମ୍ଭେ ଦଶଦିଶେ
ଦେଖିଲା ସ୍ତମ୍ଭମଧ୍ୟେ ହରି
ଶଙ୍ଖ କମଳ ଚକ୍ର ଧରି
ଉଦଣ୍ଡ ଗଦା ଶୋଭେ କରେ
ଦିଶଇ ସ୍ତମ୍ଭର ଭିତରେ
ବୋଲଇ ପିତା ମୁଖ ଚାହିଁ
କରପାଲି ବେନି କରି ଦେଇ
ଦେଖ ଏ ସ୍ତମ୍ଭମଧ୍ୟେ ହରି
ପ୍ରତ୍ୟକ୍ଷେ ଛନ୍ତି ବିଜେ କରି
ଏମନ୍ତ ପୁତ୍ର ମୁଖୁଁ ଶୁଣି
କୋପେ ଅସୁର ନୃପମଣି
ହେଉଁ ଉଠିଲା ଶିର ଢୁଣି
ଖଡ଼ଗ କରେ ବୀରମଣି

ପୁତ୍ରକୁ ଚାହିଁ କୋପ ଦୃଷ୍ଟି
ଓଷ୍ଠ ଚାପିଣ ଦନ୍ତ ପାଟି
ତୀକ୍ଷ୍ଣ ଖଡ଼ଗ ଧରି କରେ
ଆସିନୁ ଉଠି କୋପଭରେ
ସ୍ତମ୍ଭକୁ ଚାହିଁ କୋପ ଦୃଷ୍ଟି
ପ୍ରହାର କଲା ବାମମୁଷ୍ଟି । ୧୪
ତକ୍ଷଣେ ଘୋର ନାଦକରି
ସ୍ତମ୍ଭ ଭିତରେ ନରହରି
ଅତି ଭୀଷଣ ଘୋର ନାଦେ
ବ୍ରହ୍ମାଣ୍ଡ ପୂରିଲା ଶବଦେ
ବ୍ରହ୍ମାଦି ଭୁବନ ପାଳକେ
ଭୟେ କମ୍ପିଲେ ଏକେ ଏକେ
ଶବଦ ଶୁଭେ ଘଡ଼ଘଡ଼
ବ୍ରହ୍ମାଣ୍ଡ ପଡ଼ିଲା କି ଝିଡ଼ି । ୧୫ ।

**ସ ବିକ୍ରମନ୍ ପୁତ୍ରବଧେପ୍ସୁରୋଜସା ନିଶମ୍ୟ ନିର୍ହ୍ରାଦମପୂର୍ବମଦ୍ଭୁତମ୍ ।**
**ଅନ୍ତଃ ସଭାୟାଂ ନ ଦଦର୍ଶ ତତ୍ପଦଂ ବିତତ୍ରସୁର୍ୟେନ ସୁରାରିଯୂଥପାଃ ।୧୬।**
**ସତ୍ୟଂ ବିଧାତୁଂ ନିଜଭୃତ୍ୟଭାଷିତଂ ବ୍ୟାପ୍ତିଞ୍ଚ ଭୂତେଷ୍ୱଖିଳେଷୁ ଚାତ୍ମନଃ ।**
**ଅଦୃଶ୍ୟତାତ୍ୟଦ୍ଭୁତରୂପମୁଦ୍ୱହନ୍ ସ୍ତମ୍ଭେ ସଭାୟାଂ ନ ମୃଗଂ ନ ମାନୁଷମ୍ ।୧୭।**
**ସ ସତ୍ତ୍ୱମେନଂ ପରିତୋ ବିପଶ୍ୟନ୍ ସ୍ତମ୍ଭସ୍ୟ ମଧ୍ୟାଦନୁନିର୍ଜିହାନମ୍ ।**
**ନାୟଂ ମୃଗୋ ନାପି ନରୋ ବିଚିତ୍ରମହୋ କିମେତନ୍ନୃମୃଗେନ୍ଦ୍ରରୂପମ୍ ।୧୮।**
**ମୀମାଂସମାନସ୍ୟ ସମୁତ୍ଥିତୋଽଗ୍ରତୋ ନୃସିଂହରୂପସ୍ତଦଲଂ ଭୟାନକମ୍ ।୧୯।**
**ପ୍ରତପ୍ତଚାମୀକରଚଣ୍ଡଲୋଚନଂ ସ୍ଫୁରତ୍ସଟାକେଶରଜୃମ୍ଭିତାନନମ୍ ।**
**କରାଳଦଂଷ୍ଟ୍ରଂ କରବାଳଚଞ୍ଚଳକ୍ଷୁରାନ୍ତଜିହ୍ୱଂ ଭ୍ରୁକୁଟୀମୁଖୋଲ୍ବଣମ୍ ।୨୦।**

---

ସେହି ମହାଧ୍ୱନି ଶ୍ରବଣ କରି ଦୈତ୍ୟଶ୍ରେଷ୍ଠ ଗଣ ଅତ୍ୟନ୍ତ ଭୀତ ହୋଇଲେ, ଅତ୍ୟନ୍ତ ବଳ ପରାକ୍ରମଶାଳୀ ପୁତ୍ରବଧ କାମୀ ହିରଣ୍ୟ କଶିପୁ ସେହି ଅପୂର୍ବ ଅଦ୍ଭୁତ ଶବ୍ଦ ଶ୍ରବଣ କରି ସଭାରେ ଏପରି ଶବ୍ଦ କିଏ କଲା, ତହିଁର କର୍ତ୍ତା କିଏ ତାହା ଦେଖି ପାରିଲା ନାହିଁ । ୧୬ ।

ନିଜଭୃତ୍ୟ ପ୍ରହ୍ଲାଦ ପୂର୍ବେ ପିତାଙ୍କୁ କହିଥିଲେ ଏହି ସ୍ତମ୍ଭ ମଧ୍ୟରେ ଭଗବାନ ଅଛନ୍ତି, ଏହା ଯେ ସତ୍ୟ ଏବଂ ଭଗବାନ୍ ଯେ ସର୍ବତ୍ର ବିଦ୍ୟମାନ ଅଛନ୍ତି, ତାହା ଯେ ସତ୍ୟ ଏହା ସପ୍ରମାଣ କରିବା ନିମିତ୍ତ ପଶୁ ନୁହେଁ, ନର ନୁହେଁ ଅର୍ଥାତ୍ ଅର୍ଦ୍ଧେକ ନର, ଅର୍ଦ୍ଧେକ ପଶୁ ରାଜସିଂହ ଏପରି ଏକ ଅଦ୍ଭୁତ ନୃସିଂହ ମୂର୍ତ୍ତି ଧାରଣ କରି ଭଗବାନ ସଭାମଧ୍ୟରେ ଦୃଶ୍ୟମାନ ହୋଇଲେ । ୧୭ ।

ଦୈତ୍ୟରାଜ ହିରଣ୍ୟ କଶିପୁ ସେହି ମହାଶବ୍ଦର କାରଣ ନିର୍ଦ୍ଦେଶ ନିମିତ୍ତ ଚତୁର୍ଦ୍ଦିଗରେ ବିସ୍ତୃତ ଦୃଷ୍ଟିପାତ କରୁଥିଲା ଏମନ୍ତ ସମୟରେ ଦେଖିଲା ସ୍ତମ୍ଭ ମଧ୍ୟରୁ ଅର୍ଦ୍ଧ ନର, ଅର୍ଦ୍ଧ ପଶୁ ସ୍ୱରୂପ ଏକ ଅଦ୍ଭୁତ ପ୍ରାଣୀ ବହିର୍ଗତ ହୋଇଅଛି । ତାହା ଦେଖି "ଅହୋ କି ଆଶ୍ଚର୍ଯ୍ୟ" ଏହି ଚିନ୍ତା କରିବାକୁ ଲାଗିଲା । ଏହି ଭୟାନକ ନୃପଶୁ ରୂପ କେଉଁଠାରୁ ଆସିଲା ହିରଣ୍ୟ କଶିପୁ ଏହା ବିଚାର କରୁଅଛି ଏମନ୍ତ ସମୟରେ ଦେଖିଲା ସମ୍ମୁଖରେ ଶ୍ରୀହରି ନୃସିଂହ ରୂପେ ଉପସ୍ଥିତ । ୧୮,୧୯ ।

---

ଅଦ୍ଭୁତ ଘୋର ନାଦ ଶୁଣି
କୋପେ ଧାଇଁଲା ଖଡ୍ଗ ଘେନି
ଦେଖି କମ୍ପିଲେ ଦିଗପାଳ
ଧଇଲା ପ୍ରହଲ୍ଲାଦ ବାଳ
ଦେଖାଇ ସ୍ତମ୍ଭେ କେହି ନାହିଁ
ବୋଲଇ ପୁତ୍ରମୁଖ ଚାହିଁ
ଆଜ ପେଷିବି ଯମପୁର
ଦେଖା ତୋ କାହିଁ ଚକ୍ରଧର ।୧୬।

ସେ ପ୍ରଭୁ ଭକତ-ବତ୍ସଳ
ଦେଖିଲେ ଭୃତ୍ୟର ବିକଳ
ଯେ ହରି ସର୍ବଭୂତେ ପୂରି
ଭକ୍ତ ବଚନ ସତ୍ୟ କରି
ସ୍ତମ୍ଭ ମଧ୍ୟରୁ ଦଇତ୍ୟାରି
ନରକେଶରୀ ରୂପଧରି
ଅଦ୍ଭୁତ ରୂପ ଦେବରାଏ
ନୁହେ ମନୁଷ୍ୟ ପଶୁକାୟେ ।୧୭।

ଅଦ୍ଭୁତ ରୂପ ଭୟଙ୍କର
ଦେଖି ବିଚାରଇ ଅସୁର
ଏ ରୂପ ଦେଖିଲିତ ନାହିଁ
ସ୍ତମ୍ଭେ ଏ ପ୍ରକାଶିଲା କାହିଁ ।୧୮,୧୯
ଦଗ୍ଧ କାଞ୍ଚନ ପ୍ରାୟେ ବର୍ଣ୍ଣ
କର୍କଶ ପିଙ୍ଗଳ ଲୋଚନ
ସ୍ଫୁରିତ କେଶର କମ୍ପନେ
ଜଳଦେ ଉଡ଼ିଲେ ଗଗନେ

ସ୍ତବ୍ଧୋର୍ଦ୍ଧ୍ୱକର୍ଣ୍ଣଂ ଗିରିକନ୍ଦରାଦ୍‌ଭୁତ ବ୍ୟାତ୍ତାସ୍ୟନାସଂ ହନୁଭେଦଭୀଷଣମ୍ ।
ଦିବିସ୍ପୃଶତ୍ କାୟମଦୀର୍ଘପୀବରଗ୍ରୀବୋରୁବକ୍ଷଃସ୍ଥଳମଳ୍ପମଧ୍ୟମମ୍ ।୨୧।
ଚନ୍ଦ୍ରାଂଶୁଗୌରୈଶ୍ଛୁରିତଂ ତନୂରୁହୈର୍ବିଷ୍ୱଗ୍‌ଭୁଜାନୀକଶତଂ ନଖାୟୁଧମ୍ ।
ଦୁରାସଦଂ ସର୍ବନିଜେତରାୟୁଧପ୍ରବେକବିଦ୍ରାବିତଦୈତ୍ୟଦାନବମ୍ । ୨୨ ।

---

( ସେହି ନୃସିଂହଙ୍କ ରୂପ କିପରି ତାହା ନିମ୍ନୋକ୍ତ ତିନୋଟି ଶ୍ଳୋକରେ ବର୍ଣ୍ଣିତ ହୋଇଅଛି )

ନୃସିଂହଙ୍କ ଚକ୍ଷୁ ଉପରୁ ସୁବର୍ଣ୍ଣ ତୁଲ୍ୟ ଭୟାନକ ତାହାଙ୍କର ମୁଖର କେଶ ଓ କଣ୍ଠ ରୋମାବଳୀଦ୍ୱାରା ବିସ୍ତୃତ, ଦନ୍ତପଂକ୍ତି ଅତି ଉନ୍ନତ ଏବଂ ଖଡ୍‌ଗ ତୁଲ୍ୟ ଚଞ୍ଚଳ ଓ କ୍ଷୁରଧାର ତୁଲ୍ୟ ତୀକ୍ଷ୍ଣ, ତାହାଙ୍କର ଜିହ୍ୱା ଏବଂ ଭ୍ରୁକୁଟୀଯୁକ୍ତ ମୁଖ ଦ୍ୱାରା ତାହାଙ୍କର ମୂର୍ତ୍ତି ଅତ୍ୟନ୍ତ ଭୟାନକ ଦେଖା ଯାଉଥିଲା । ୨୦ ।

ତାହାଙ୍କର କର୍ଣ୍ଣଦ୍ୱୟ ଅତି ଦୀର୍ଘ ଓ ଉନ୍ନତ, ତାହାଙ୍କର ଅତି ପ୍ରଶସ୍ତ ମୁଖ ଓ ନାସିକା ଗିରି କନ୍ଦର ତୁଲ୍ୟ ବିସ୍ତୃତ ଓ ଗମ୍ଭୀର । କପୋଳର ପ୍ରାନ୍ତ ଦ୍ୱୟ ବିଦୀର୍ଣ୍ଣ, ତେଣୁ ଅତି ଭୟାନକ । ତାହାଙ୍କର ଶରୀର ଆକାଶ ସ୍ପର୍ଶୀ ଗ୍ରୀବା, ଖର୍ବ ଓ ସ୍ଥୂଳ, ବକ୍ଷସ୍ଥଳ ବିଶାଳ ଏବଂ ଉଦରାଦି ମଧ୍ୟ ଭାଗ ହ୍ରସ୍ୱ । ୨୧ ।



( ସ୍ତମ୍ଭରେ ନୃସିଂହଙ୍କ ଆବିର୍ଭାବ )

ଚନ୍ଦ୍ର କିରଣ ତୁଲ୍ୟ ଗୌରବର୍ଣ୍ଣ ରୋମାବଳୀ ତାହାଙ୍କର ଶରୀରରେ ପରିବ୍ୟାପ୍ତ, ସୁତରାଂ ଚତୁର୍ଦ୍ଦିଗରେ ବିସ୍ତୃତ ଭୁଜ ସମୂହରେ ସେ ବିରାଜିତ । ନଖ ସ୍ୱରୂପ ଅସ୍ତ୍ର ଅତି କଠୋର, ନିଜର ଚକ୍ରାଦି ଏବଂ ବଜ୍ରାଦି ଶ୍ରେଷ୍ଠ ଅସ୍ତ୍ର ସମୂହ ଦ୍ୱାରା ସେ ଦୈତ୍ୟ ଦାନବଙ୍କୁ ଘାତ ଓ ତ୍ରସ୍ତ କରୁଅଛନ୍ତି । ୨୨ ।

---

ବିସ୍ତାର ତୁଣ୍ଡ ବେଳିକଳେ
ଜିହ୍ୱା ବୁଲଇ ଅନ୍ତରାଳେ
ବିକଟ ଦନ୍ତ ବେଣିପାନ୍ତି
ନିଷ୍ଠୁର ଚଞ୍ଚଳ ଭ୍ରୂକୁଟି
ଊର୍ଦ୍ଧ୍ୱେ ଚଳଇ କର୍ଣ୍ଣ ଦୁଇ
ଗିରି ଗୁହାର ପ୍ରାୟେ ହୋଇ

ନାସିକା ରନ୍ଧ୍ର ଅନ୍ଧକାର
ହନୁ ବିଶେଷେ ଭୟଙ୍କର
ଅଦୂର ସ୍ଥୂଳ ଗ୍ରୀବା ଦେଶ
ଶରୀର ସ୍ପର୍ଶେ ଆକାଶ
ବିସ୍ତାର ବକ୍ଷସ୍ଥଳ ସାଜେ
କ୍ଷୀଣ ଉଦର ଯେ ବିରାଜେ

ଚନ୍ଦ୍ର ଗଉର ତନୂରୁହେ
ବିଶ୍ୱ ପୂରିତ ବିଶ୍ୱଦେହେ
କରଚରଣ ନଖାୟୁଧ
ଯା ଦେଖି କମ୍ପିଲେ ବିବୁଧ
ଅସୁରେ ପଳାଇଲେ ତ୍ରାସେ
ଭୟେ ଲୁଚିଲେ ଦଶଦିଶେ ।୨୦-୨୨

ପ୍ରାୟେଣ ମେଽୟଂ ହରିଣୋରୁମାୟିନା ବଧଃ ସ୍ମୃତୋଽନେନ ସମୁଦ୍ୟତେନ କିମ୍ ।
ଏବଂ ବ୍ରୁବଂସ୍ତ୍ୱଭ୍ୟପତଦ୍ ଗଦାୟୁଧୋ ନଦନ୍ନୃସିଂହଂ ପ୍ରତି ଦୈତ୍ୟକୁଞ୍ଜରଃ ।୨୩।
ଅଲକ୍ଷିତୋଽଗ୍ନୌ ପତିତଃ ପତଙ୍ଗମୋ ଯଥା ନୃସିଂହୌଜସି ସୋଽସୁରସ୍ତଦା ।
ନ ତଦ୍ୱିଚିତ୍ରଂ ଖଲୁ ସତ୍ତ୍ୱଧାମନି ସ୍ୱତେଜସା ଯୋ ନୁ ପୁରାପିବତ୍ ତମଃ ।୨୪।
ତତୋଽଭିପଦ୍ୟାଭ୍ୟହନନ୍ମହାସୁରୋ ରୁଷା ନୃସିଂହଂ ଗଦୟୋରୁବେଗୟା ।
ତଂ ବିକ୍ରମନ୍ତଂ ସଗଦଂ ଗଦାଧରୋ ମହୋରଗଂ ତାର୍କ୍ଷ୍ୟସୁତୋ ଯଥାଗ୍ରହୀତ୍ ।୨୫।
ସ ତସ୍ୟ ହସ୍ତୋତ୍କଲିତସ୍ତଦାସୁରୋ ବିକ୍ରୀଡ଼ତୋ ଯଦ୍ୱଦହିର୍ଗରୁତ୍ମତଃ ।
ଅସାଧ୍ୱମନ୍ୟନ୍ତ ହୃତୌକସୋଽମରା ଘନଚ୍ଛଦା ଭାରତ ସର୍ବଧିଷ୍ଣ୍ୟପାଃ । ୨୬ ।

---

ନୃସିଂହ ମୂର୍ତ୍ତି ଦେଖି ଦୈତ୍ୟ ରାଜ ଚିନ୍ତା କଲା ଯେ ମହାମାୟାବି ବିଷ୍ଣୁ ଏହିପରି ଭାବରେ ମୋର ମୃତ୍ୟୁର ଉପାୟ କଳ୍ପିତ କରିଅଛି, ପୁଣି ଭାବିଲା ମୋର ଭୀତ ହେବାର କାରଣ କଣ ? ଏହା ଭାବି ଗଦା ହସ୍ତରେ ସିଂହନାଦ କରି ଯୁଦ୍ଧ ନିମନ୍ତେ ନୃସିଂହଙ୍କର ସମ୍ମୁଖୀନ ହେଲା । ୨୩ ।

ଅସୁରରାଜ ସେହି ହିରଣ୍ୟକଶ୍ୟପୁ ନୃସିଂହଙ୍କର ତେଜାଗ୍ନିରେ ପତଙ୍ଗ ତୁଲ୍ୟ ମିଶିଗଲା । କାରଣ ସତ୍ତ୍ୱ ପ୍ରକାଶ ପରମେଶ୍ୱରଙ୍କ ଦର୍ଶନ ପତିତ ବ୍ୟକ୍ତି ପକ୍ଷରେ ଆଶ୍ଚର୍ଯ୍ୟ ଜନକ ନୁହେଁ, କାରଣ ସୃଷ୍ଟି ପୂର୍ବରୁ ସମସ୍ତ ଅନ୍ଧକାରମୟ ଥିଲା । ସେତେବେଳେ ଶ୍ରୀହରି ସେହି ପ୍ରଳୟକାଳୀନ ଅନ୍ଧକାର ନିଜ ତେଜଦ୍ୱାରା ଦୂରୀଭୂତ କରିଥିଲେ । ୨୪ ।

ତଦନନ୍ତର ହିରଣ୍ୟକଶିପୁ ନୃସିଂହଙ୍କ ସମକ୍ଷରେ ଉପସ୍ଥିତହୋଇ କ୍ରୋଧରେ ଅତି ବେଗରେ ଗଦା ଘୂର୍ଣ୍ଣାୟମାନ କରି ନୃସିଂହଙ୍କ ଉପରେ ପ୍ରହାର କରିବାକୁ ଉଦ୍ୟତ ହୋଇଥିଲା । ସେତେବେଳେ ଗଦାଧରହରି ଗରୁଡ଼ ମହାସର୍ପକୁ ଗ୍ରହଣ କଲାପରି ସେହି ବିକ୍ରମଶାଳୀ ଗଦାହସ୍ତ ଦୈତ୍ୟରାଜଙ୍କୁ ଗ୍ରହଣ କରିଥିଲେ । ୨୫ ।

ହେ ଭାରତ (ଯୁଧିଷ୍ଠିର) ! ଗରୁଡ଼ ଯେପରି ସର୍ପ ଭକ୍ଷଣ ସମୟରେ ସର୍ପକୁ କେତେବେଳେ ହାତରୁ ଛାଡ଼ିଦିଏ, କେତେବେଳେ ଧରିରଖେ ସେହିପରି ନୃସିଂହ ଦୈତ୍ୟରାଜ ହିରଣ୍ୟକଶ୍ୟପୁକୁ ଆକ୍ରମଣ କରି ପୁଣି ଛାଡ଼ିଦେଲେ । ଏହା ଦେଖି ମେଘାନ୍ତରାଳରେ ଯେଉଁ ହୃତସର୍ବସ୍ୱ ଲୋକପାଳମାନେ ଅବସ୍ଥାନ କରୁଥିଲେ ସେମାନେ ନିଜର ଅମଙ୍ଗଳ ଘଟିବ ବୋଲି ଭାବିଲେ । ୨୬ ।

---

ଏମନ୍ତ ରୂପ ଦେଖି ଆଗେ
ଦାନବପତି ମହାରାଗେ
ଗଦା ବୁଲାଇ ଅତିଖରେ
ଧାଇଁଲା ନୃସିଂହ ଉପରେ
ଘୋର ଶବଦେ ମହାମାର
ଦେଖି କମ୍ପିଲେ ସୁର ନର
ଯେ ହରି ମାୟାବିଙ୍କ ବର
ତାହା କି ଜାଣିବ ଅସୁର
ଧାଇଁଲା ତୋଳି ଗଦା ହସ୍ତେ
ଅଗ୍ନି କି ପତଙ୍ଗ ଯେମନ୍ତେ

ଗଦା ଉଠାଇ ମହାମାର
ପେଟିଲା ନୃସିଂହ ଉପର
ପୁଣି ପ୍ରହାର ବାମକକ୍ଷେ
ଦେବେ ଦେଖନ୍ତି ଅନ୍ତରୀକ୍ଷେ
ଅତି ବିକ୍ରମ ତେଜ ଦେଖି
ନୃସିଂହ ଉନ୍ମୀଳେ ନିରେଖି
କରି ପ୍ରସାରି ନରହରି
ତକ୍ଷଣେ ଅସୁରକୁ ଧରି
ଗଦାହିଁ ଅଛି ତାର ହସ୍ତେ
ସର୍ପକୁ ଗରୁଡ଼ ଯେମନ୍ତେ ।୨୩-୨୫

ତକ୍ଷଣେ ଦାନବ ନୃପତି
ହସ୍ତରୁ ଗଲା ଚିନ୍ତାଗତି
ଗରୁଡ଼ ହସ୍ତୁ ଯେହ୍ନେ ନାଗ
ଗଲା ପଳାଏ ଅତି ବେଗ
ଓଷ୍ଠ କାମୋଡ଼ି ଅତି ବଳେ
ଦେଖି ଡରିଲେ ଦିଗପାଳେ
ଅସାଧ୍ୟ ଦେଖି ଦିଗପାଳେ
ଡରେ ଲୁଚିଲେ ମେଘମାଳେ ।୨୬

ତଂ ମନ୍ୟମାନୋ ନିଜବୀର୍ଯ୍ୟଶଙ୍କିତଂ ଯଦ୍ଧସ୍ତମୁକ୍ତୋ ନୃହରିଂ ମହାସୁରଃ ।
ପୁନସ୍ତମାସଜ୍ଜତ ଖଡ୍‌ଗଚର୍ମଣୀ ପ୍ରଗୃହ୍ୟ ବେଗେନ ଗତଶ୍ରମୋ ମୃଧେ । ୨୭ ।
ତଂ ଶ୍ୟେନବେଗଂ ଶତଚନ୍ଦ୍ରବର୍ତ୍ମଭିଶ୍ଚରନ୍ତମଚ୍ଛିଦ୍ରମୁପର୍ଯଧୋ ହରିଃ ।
କୃତ୍ୱାଟ୍ଟହାସଂ ଖରମୁତ୍ସ୍ୱନୋଲ୍ବଣଂ ନିମୀଲିତାକ୍ଷଂ ଜଗୃହେ ମହାଜବଃ । ୨୮ ।
ବିଷ୍ୱକ୍ ସ୍ଫୁରନ୍ତଂ ଗ୍ରହଣାତୁରଂ ହରିର୍ବ୍ୟାଳୋ ଯଥାଖୁଂ କୁଳିଶାକ୍ଷତତ୍ୱଚମ୍ ।
ଦ୍ୱାର୍ଯୂର ଆପାତ୍ୟ ଦଦାର ଲୀଳୟା ନଖୈର୍ଯଥାହିଂ ଗରୁଡୋ ମହାବିଷମ୍ । ୨୯ ।

---

ଯେତେବେଳେ ହିରଣ୍ୟ କଶିପୁ ନୃସିଂହଙ୍କ ହସ୍ତରୁ ମୁକ୍ତ ହେଲେ ସେତେବେଳେ ତାହାର ସମାସନୋଦତ ହେଲା ଏବଂ ତାହାର ଭୟରେ ନୃସିଂହ ଶଙ୍କିତ ଏହା ଭାବି ଖଡ୍ଗ ଓ ଚର୍ମ ଗ୍ରହଣ ପୂର୍ବକ ଅତି ବେଗରେ ଯୁଦ୍ଧରେ ନୃସିଂହଙ୍କୁ ପୁନର୍ବାର ଆକ୍ରମଣ କଲା । ୨୭ ।

ଶ୍ୟେନ ପକ୍ଷୀ ତୁଲ୍ୟ ବେଗବାନ୍ ଖଡ୍ଗ ଓ ଚର୍ମଦ୍ୱାରା ଆଚ୍ଛାଦିତ ଏବଂ ଅନ୍ୟର ପ୍ରହାର ଯେପରି ତାହାର ଶରୀରରେ ନ ଲାଗେ ସେଥିପାଇଁ ଅଧଃ ଊର୍ଦ୍ଧ୍ୱରେ ବିଚରଣଶୀଳ ହିରଣ୍ୟକଶିପୁକୁ ଲକ୍ଷ୍ୟକରି ନୃସିଂହଦେବ ଘୋର ଶବ୍ଦରେ ଭୀଷଣ ତୀବ୍ର ଅଟ୍ଟହାସ୍ୟ କରିଥିଲେ । ସେହି ଶବ୍ଦରେ ଭୀତ ଦୈତ୍ୟରାଜ ଚକ୍ଷୁ ବୁଜିଥିଲେ ଏବଂ ସେହି ଅବସ୍ଥାରେ ହରି ତାହାକୁ ଗ୍ରହଣ କରିଥିଲେ । ୨୮ ।

ଶ୍ରୀ ନୃସିଂହଦେବଙ୍କର ଆକ୍ରମଣରେ ଦୈତ୍ୟରାଜ ବିବଶାଙ୍ଗ ହୋଇ ପଡ଼ିଲା । ଇନ୍ଦ୍ରଙ୍କର ବଜ୍ରାଘାତରେ ଯାହାର ଚର୍ମ ବିଦୀର୍ଣ୍ଣ ହୋଇ ନ ଥିଲା ସେହି ହିରଣ୍ୟକଶିପୁକୁ ସର୍ପ ମୂଷିକକୁ ଆକ୍ରମଣ କଲାପରି ସେହି ସର୍ବସ୍ରଷ୍ଟାଙ୍କର ଦ୍ୱାର ଦେଶରେ ନିଜର ଊରୁରେ ପକାଇ ମହା ବିଷଧର ସର୍ପକୁ ଗରୁଡ଼ ଆକ୍ରମଣ କଲାପରି ଶ୍ରୀହରି ଅବଲୀଳା କ୍ରମେ ନିଜର ନଖାଘାତରେ ବିଦାରଣ କରିଥିଲେ । ୨୯ । *

---

ନୃସିଂହ ହସ୍ତ ଯାକେ ଗଲା
ଦେବେ ଭାଳନ୍ତି ଶୂନ୍ୟେ ମିଳି
ପୁଣି ଅସୁର ନାଦ କରି
କରେ ଖଡ୍‌ଗ ଚର୍ମ୍ମ ଧରି
ଚର୍ମ୍ମେ ଶୋଭିତ ଶତଚନ୍ଦ୍ର
ଦୁର୍ଜ୍ଜୟ ଅସୁର ନରେନ୍ଦ୍ର
ଖଡ୍‌ଗମଣ୍ଡଳ ଗତି ଦେଖି
ଭୟେ ବୁଜିଲେ ଦେବେ ଆଖି
ଶୂନ୍ୟେ ଉଡ଼ଇ ବାହୁବଳେ
ପୁଣି ମିଳଇ ଭୂମିତଳେ

ଚଣ୍ଡାଟ୍ଟହାସେ ନରହରି
କୋପେଣ ଅସୁରକୁ ଧରି
ହୃଦେ ଚିପନ୍ତେ ପୁଣି ଗଲା
ତଳେ ପଡ଼ିଲା ମହାବଳୀ
ବିସ୍ତୃତ ଧଇଲେ ଅତି ବେଗେ
ବଳେ ଉଛୁଳେ ଦଶ ଦିଗେ
ଦୃଢେଣ ଚିପିଲେ ଅଧରେ
ଯେହ୍ନେ ମଞ୍ଜାର ମୂଷା ଧରେ
ସ୍ୱଭାବେ ଦୁର୍ଜ୍ଜୟ ଅସୁର
ବଜ୍ରହୁଁ କଠିନ ଶରୀର

ଊରୁ ଉପରେ ତାକୁ ପାଡ଼ି
ଉତ୍ତାନେ ପକାଇଲେ ଭିଡ଼ି
ବାମ ଦକ୍ଷିଣେ ବେନି କରେ
ଲୀଳା ମାତ୍ରକେ ନଖାଙ୍କୁରେ
ବିଶେଷେ ହୁଁକାର ନାଦ କରି
ହୃଦୟ କମଳ ବିଦାରି
ଦେବେ ଦେଖନ୍ତି ଥାଇ ଶୂନ୍ୟେ
ସର୍ପକୁ ଗରୁଡ଼ ଯେସନେ ।୨୭-୨୯

---

* ହିରଣ୍ୟକଶିପୁ ବ୍ରହ୍ମାଙ୍କ ନିକଟରୁ ବରଲାଭ କରିଥିଲା ଗୃହମଧ୍ୟରେ ବା ବାହାରେ ଭୂମିରେ ବା ଆକାଶରେ ଅସ୍ତ୍ର ବା ଶସ୍ତ୍ରରେ ଦିବାରାତ୍ରିରେ ତାହାର ମୃତ୍ୟୁ ଘଟିବ ନାହିଁ । ତେଣୁ ଚତୁର ଚୂଡ଼ାମଣି ଶ୍ରୀହରି ତାହାକୁ ଦ୍ୱାର ଦେଶରେ ନିଜର ଊରୁରେ ନଖାଘାତରେ ସନ୍ଧ୍ୟା କାଳରେ ବଧ କରିଥିଲେ ।

**ସଂରମ୍ଭଦୁଷ୍ପ୍ରେକ୍ଷ୍ୟକରାଳଲୋଚନୋ ବ୍ୟାତ୍ତାନନାନ୍ତଂ ବିଲିହନ୍ ସ୍ୱଜିହ୍ୱୟା ।**
**ଅସୃକ୍‌ଲବାକ୍ତାରୁଣକେଶରାନନୋ ଯଥାନ୍ତ୍ରମାଳୀ ଦ୍ୱିପହତ୍ୟୟା ହରିଃ । ୩୦ ।**
**ନଖାଙ୍କୁରୋତ୍‌ପାଟିତହୃତ୍‌ସରୋରୁହଂ ବିସୃଜ୍ୟ ତସ୍ୟାନୁଚରାନୁଦାୟୁଧାନ୍ ।**
**ଅହନ୍ ସମସ୍ତାନ୍ନଖଶସ୍ତ୍ରପାର୍ଷ୍ଣିଭିର୍ଦୋର୍ଦଣ୍ଡଯୂଥୋଽନୁପଥାନ୍ ସହସ୍ରଶଃ । ୩୧ ।**
**ସଟାବଧୂତା ଜଳଦାଃ ପରାପତନ୍ ଗ୍ରହାଶ୍ଚ ତଦ୍‌ଦୃଷ୍ଟିବିମୁଷ୍ଟରୋଚିଷଃ ।**
**ଅମ୍ଭୋଧୟଃ ଶ୍ୱାସହତା ବିଚୁକ୍ଷୁଭୁର୍ନିର୍ହ୍ରାଦଭୀତା ଦିଗିଭା ବିଚୁକ୍ରୁଶୁଃ । ୩୨ ।**
**ଦ୍ୟୌସ୍ତତ୍‌ସଟୋତ୍‌କ୍ଷିପ୍ତବିମାନସଙ୍କୁଳା ପ୍ରୋତ୍‌ସର୍ପତ କ୍ଷ୍ମା ଚ ପଦାଭିପୀଡିତା ।**
**ଶୈଳାଃ ସମୁତ୍‌ପେତୁରମୁଷ୍ୟ ରଂହସା ତତ୍ତେଜସା ଖଂ କକୁଭୋ ନ ରେଜିରେ ।୩୩।**

---

ଦୈତ୍ୟବଧ ହେତୁ, ନୃସିଂହଙ୍କର ଭୟାନକ ଓ ଦୁର୍ନିରୀକ୍ଷ୍ୟ କେଶର ଓ ମୁଖ ରକ୍ତ ବିନ୍ଦୁରେ ଅରୁଣ ବର୍ଣ୍ଣ ହସ୍ତି ବଧ ନାରୀ ସିଂହ ତୁଲ୍ୟ ନାଡ଼ୀ ସମୂହ ଦ୍ୱାରା ମାଳା ଧାରଣ କରିଥିଲା । ବିକସିତ ମୁଖପ୍ରାନ୍ତ ଜିହ୍ୱାଦ୍ୱାରା ଅବଲେହନ ପୂର୍ବକ ଭୀଷଣ ମୂର୍ତ୍ତିରେ ସେ ତାହାର ଅନୁଚରମାନଙ୍କୁ ବଧ କରିଥିଲେ । ୩୦ ।

(ଦୈତ୍ୟବଧ ନିମିତ୍ତ ନୃସିଂହଙ୍କର ଅସଂଖ୍ୟନଖ ବିଶିଷ୍ଟ ବାହୁଦଣ୍ଡ ହୋଇଥିଲା) ସେହି ବାହୁଦଣ୍ଡରେ ନଖାଙ୍କୁର ଦ୍ୱାରା ଦୈତ୍ୟରାଜର ହୃତ୍‌ପିଣ୍ଡ ଉତ୍ପାଟନ କରି ତାହାକୁ ପରିତ୍ୟାଗ କରିଥିଲେ । ତଦନ୍ତର ଅସ୍ତ୍ର ଶସ୍ତ୍ରଧାରୀ ସହସ୍ର ସହସ୍ର ଦୈତ୍ୟାନୁଚରଗଣଙ୍କୁ ସେହି ନଖାସ୍ତ୍ର ଦ୍ୱାରା ବଧ କରିଥିଲେ । ୩୧ ।

ନୃସିଂହଙ୍କର ଜଟା ପ୍ରକମ୍ପନରେ ମେଘମାଳା ବିଶୀର୍ଣ୍ଣ, ସୂର୍ଯ୍ୟାଦି ଗ୍ରହଗଣ ତାହାଙ୍କ ଦୃଷ୍ଟି ପାତରେ ମ୍ଳାନପ୍ରଭ, ତାହାଙ୍କର ଶ୍ୱାସ ବାୟୁରେ ମହା ସମୁଦ୍ର ଉଦ୍‌ବେଳିତ ଏବଂ ଦିଗ୍‌ଗଜମାନେ ତାହାଙ୍କ ଭୟରେ ଭୀତ ହୋଇ ଉଚ୍ଚନାଦ କରିଥିଲେ । ୩୨ ।

ଶ୍ରୀ ନୃସିଂହଙ୍କର ଜଟା ଘାତରେ ବିପର୍ଯ୍ୟସ୍ତ ବିମାନ ଶ୍ରେଣୀ ସଙ୍କୁଳ ସ୍ୱର୍ଗରାଜ୍ୟ ଯେପରି ସ୍ୱସ୍ଥାନରୁ ଊର୍ଦ୍ଧ୍ୱକୁ ଘୁଞ୍ଚି ଯାଇଥିଲା । ତାହାଙ୍କର ପାଦଘାତରେ ପୃଥିବୀ କମ୍ପିତ ହୋଇଥିଲା । ତାହାଙ୍କର ବେଗରେ ଅଚଳ ପର୍ବତ ସଚଳ ହୋଇଥିଲା । ତାହାଙ୍କର ତେଜରେ ଆକାଶମଣ୍ଡଳ ଏବଂ ଦିଗ୍‌ମଣ୍ଡଳ ନିଷ୍ପ୍ରଭ ହୋଇ ଯାଇଥିଲା । ୩୩ ।

---

ଅସୁର ହୃଦୟ ରୁଧିରେ
ଉଜ୍ଜ୍ୱଳ ଲଲାଟ କେଶରେ
ସିଂହ ଯେସନେ ଗଜମୁଣ୍ଡେ
ବସି ବିଦାରେ ଧରି ତୁଣ୍ଡେ
ଅସୁର ହୃଦୟ-କମଳ
ବିଦାରି ଅନ୍ତ କଲେ ମାଳ ।୩୦।
କୋପେ ଚାହାନ୍ତେ ଦଶଦିଶେ
ଦୈତ୍ୟେ ମିଳିଲେ ଆସି ପାଶେ
ନାନା ଆୟୁଧ ଧରି କରେ
ପିଟିଲେ ନୃସିଂହ ଉପରେ

ତାହାଙ୍କୁ ଦେଖି ତତକ୍ଷଣ
ନଖେ ବିଦାରି କଲେ ରଣ
ସହସ୍ରେ ସହସ୍ରେ ଅସୁର
ସମରେ ଗଲେ ଯମପୁର । ୩୧ ।
ଅସୁର ବଳ ରଣେ ମାରି
କୋପେ ଧାଇଁଲେ ନରହରି
ଜଟା କମ୍ପନ ଘୋର ବାତେ
ମେଘେ ଉଡ଼ିଲେ ଶୂନ୍ୟ ପଥେ
ଶବଦ ଶୁଭେ ଘଡ଼ ଘଡ଼
ଗଗନ ମାର୍ଗେ ପଡ଼େ ଦୂର

ଗ୍ରହ ନକ୍ଷତ୍ର ମାଳ ମାଳ
ସ୍ୱର୍ଗୁଁ ପଡ଼ିଲେ ମହୀତଳ
ଊର୍ଦ୍ଧ୍ୱେ ଚାହାନ୍ତେ କୋପାନଳେ
ଦେଖି ଡରିଲେ ଦିଗପାଳେ
ନିଃଶ୍ୱାସ ବାତେ ସିନ୍ଧୁ ଜଳ
ଉନ୍ନତ ଲହରି ସଙ୍କୁଳ
ଦେବେ ଗଗନୁ ଗଲେ ତ୍ରାସେ
ଗଜେ ଉଡ଼ିଲେ ଅଷ୍ଟ ଦିଶେ ।୩୨।
ଶ୍ୱାସ-କ୍ଷେପଣ ବାତ ବଳେ
ବିମାନେ ଆକାଶ ମଣ୍ଡଳେ

ତତଃ ସଭାୟାମୁପବିଷ୍ଟମୁତ୍ତମେ ନୃପାସନେ ସମ୍ଭୃତତେଜସଂ ବିଭୁମ୍ ।
ଅଲକ୍ଷିତଦ୍ୱୈରଥମତ୍ୟମର୍ଷଣଂ ପ୍ରଚଣ୍ଡବକ୍ତ୍ରଂ ନ ବଭାଜ କଶ୍ଚନ । ୩୪ ।
ନିଶାମ୍ୟ ଲୋକତ୍ରୟମସ୍ତକଜ୍ୱରଂ ତମାଦିଦୈତ୍ୟଂ ହରିଣା ହତଂ ମୃଧେ ।
ପ୍ରହର୍ଷବେଗୋତ୍କଳିତାନନା ମୁହୁଃ ପ୍ରସୂନ ବର୍ଷୈର୍ବବୃଷୁଃ ସୁରସ୍ତ୍ରିୟଃ । ୩୫ ।
ତଦା ବିମାନାବଳିଭିର୍ନଭସ୍ତଳଂ ଦିଦୃକ୍ଷତାଂ ସଙ୍କୁଳମାସ ନାକିନାମ୍ ।
ସୁରାନକା ଦୁନ୍ଦୁଭୟୋଽଥ ଜଘ୍ନିରେ ଗନ୍ଧର୍ବମୁଖ୍ୟା ନନୃତୁର୍ଜଗୁଃ ସ୍ତ୍ରିୟଃ । ୩୬ ।

---

ତଦନନ୍ତର ସଭା ମଧ୍ୟରେ ଉତ୍ତମ ନୃପାସନରେ ଅଭିବିଷ୍ଟ ଅମିତତେଜା, ଅପ୍ରତିଭଟ୍, କ୍ରୋଧାବିଷ୍ଟ, କରାଳବଦନ ପ୍ରଭୁ ନୃସିଂହଙ୍କ ସମ୍ମୁଖକୁ ଅଗ୍ରସର ହୋଇ କୌଣସି ଭକ୍ତ ଭୟରେ ସେବା କରିବାକୁ ସାହସୀ ହେଲେ ନାହିଁ । ୩୪ ।

ତ୍ରିଲୋକର ଶିରବ୍ୟଥା କଷ୍ଟକର ହେଲପରି ଦୈତ୍ୟଶ୍ରେଷ୍ଠ ହିରଣ୍ୟକଶିପୁ ଯୁଦ୍ଧରେ ନୃସିଂହଙ୍କ କର୍ତ୍ତୃକ ନିହତ ହୋଇଅଛି ଦେଖି ସୁରଲଳନାମାନେ ଅତ୍ୟନ୍ତ ଆହ୍ଲାଦରେ ତାହାଙ୍କର ମସ୍ତକୋପରି ଘନ ଘନ ପୁଷ୍ପବର୍ଷଣ କରିଥିଲେ । ୩୫ ।

ସେତେବେଳେ ନୃସିଂହ ଦେବଙ୍କୁ ଦେଖିବା ନିମିତ୍ତ ଆଗତ ଦେବତାମାନେ ବିମାନ ସମୂହରେ ଆକାଶମଣ୍ଡଳରେ ବ୍ୟାପ୍ତ ହୋଇ ରହିଥିଲେ । ଦେବତାମାନେ ପଟହ, ଦୁନ୍ଦୁଭି ନିନାଦନ କରିବାକୁ ଲାଗିଲେ ଏବଂ ଅପ୍ସରାମାନେ ନୃତ୍ୟ କରିବାକୁ ଲାଗିଲେ ଏବଂ ଗନ୍ଧର୍ବମାନେ ସଙ୍ଗୀତ ଆରମ୍ଭ କରିଥିଲେ । ୩୬ ।

---

ପଡ଼ିଲେ ସ୍ଥାନ ଭ୍ରଷ୍ଟ ହୋଇ
ପାଦ ବିଘାତେ କମ୍ପେ ମହୀ
ନୃସିଂହ ଶରୀର ପବନେ
ପର୍ବତେ ଉଡ଼ିଲେ ଗଗନେ
ଦିଗ ଆକାଶ ତେଜ ନାଶେ
ଧୂମ ଯେ ପ୍ରକାଶେ ଆକାଶେ
ଦିଗ ଅଦୃଶ୍ୟ ଧୂମାକୁଳେ
ନିର୍ଘାତ ଗଗନ ମଣ୍ଡଳେ । ୩୩ ।
ଏମନ୍ତେ ଅସୁର ସଂହାରି
ସଭାର ମଧ୍ୟେ ବିଜେ କରି
ବସିଲେ ଅସୁର ଆସନେ
ଯାହା ପୂଜନ୍ତି ତ୍ରିଭୁବନେ
ଦେଖି ଅସୁରେ ପଳାଇଲେ
ଯେ ଅବା ଅବଶେଷ ଥିଲେ
ଶସ୍ତ୍ର ଧରନ୍ତା ନାହିଁ କେହି
ଭାଜିଲେ ଚଉଦିଗ ଚାହିଁ । ୩୪ ।
ଏମନ୍ତେ ଅସୁର ସଂହାରି
ବିଜେ କରନ୍ତି ନରହରି
ହିରଣ୍ୟକଶିପୁ ଅସୁର
ତ୍ରୈଲୋକ୍ୟ ମୁଣ୍ଡେ ଥିଲା ଜ୍ୱର
ସଂଗ୍ରାମେ ହରି ତା ଜୀବନ
ସୃଷ୍ଟି ରଖିଲେ ଭଗବାନ
ଖଣ୍ଡିତ ଅସୁର ପ୍ରମାଦେ
ବିବୁଧେ ପରମ ଆନନ୍ଦେ
ନନ୍ଦନବନୁଁ ପୁଷ୍ପ ତୋଳି
ଶୂନ୍ୟେ ସକଳ ଦେବେ ମିଳି
ହରଷ ଲୋଚନେ ଅନାଇ
ମଙ୍ଗଳ ସ୍ୱରେ ଗୀତ ଗାଇ
ମିଳି ସାନନ୍ଦେ ସୁରନାରୀ
ଆନନ୍ଦେ ପୁଷ୍ପବୃଷ୍ଟି କରି । ୩୫ ।
ଶୂନ୍ୟେ ଅସୁର ଭୟେ ଭାଜି
ଥିଲେ ଯେ ଦଶ ଦିଗେ ହଜି
ଗଗନେ ବିମାନ ସଙ୍କୁଳେ
ମିଳି ବିବୁଧ ଦିଗପାଳେ
ଦୁନ୍ଦୁଭି ବାଦ୍ୟ ନାଦ କଲେ
ଗନ୍ଧର୍ବେ ଅପସରା ମେଳେ
ହରଷେ ନୃତ୍ୟ ଗୀତ କରି
ଛନ୍ତି ଆନନ୍ଦେ ମୋଦଭରି । ୩୬ ।

ତତୋପବ୍ରଜ୍ୟ ବିବୁଧା ବ୍ରହ୍ମେନ୍ଦ୍ରଗିରିଶାଦୟଃ ।
ଋଷୟଃ ପିତରଃ ସିଦ୍ଧା ବିଦ୍ୟାଧରମହୋରଗାଃ । ୩୭ ।
ମନବଃ ପ୍ରଜାନାଂ ପତୟୋ ଗନ୍ଧର୍ବାପ୍‌ସରଚାରଣାଃ ।
ଯକ୍ଷାଃ କିମ୍ପୁରୁଷା ସ୍ତାତ ବେତାଳା ସିଦ୍ଧକିନ୍ନରାଃ । ୩୮ ।
ତେ ବିଷ୍ଣୁପାର୍ଷଦାଃ ସର୍ବେ ସୁନନ୍ଦକୁମୁଦାଦୟଃ-
ମୂର୍ଦ୍ଧ୍ନି ବଦ୍ଧାଞ୍ଜଳିପୁଟା ଆସୀନଂ ତୀବ୍ରତେଜସମ୍ ।
ଈଡ଼ିରେ ନରଶାର୍ଦ୍ଦୂଳଂ ନାତିଦୂରଚରାଃ ପୃଥକ୍ । ୩୯ ।

ଶ୍ରୀବ୍ରହ୍ମୋବାଚ ।

ନତୋଽସ୍ମ୍ୟନନ୍ତାୟ ଦୁରନ୍ତଶକ୍ତୟେ ବିଚିତ୍ରବୀର୍ଯ୍ୟାୟ ପବିତ୍ରକର୍ମଣେ ।
ବିଶ୍ୱସ୍ୟ ସର୍ଗସ୍ଥିତିସଂଯମାନ୍ ଗୁଣୈଃ ସ୍ୱଲୀଳୟା ସଂ ଦଧତେଽବ୍ୟୟାତ୍ମନେ ।୪୦।

---

ବ୍ରହ୍ମା, ଇନ୍ଦ୍ର, ଶିବ, ଦେବଗଣ, ଋଷିଗଣ, ପିତୃଗଣ, ସିଦ୍ଧ, ବିଦ୍ୟାଧର, ମହୋରଗ, ପ୍ରଜାପତି, ଚତୁର୍ଦ୍ଦଶ ମନୁ ଯକ୍ଷ ଗନ୍ଧର୍ବ, ଅପସରା, ଚାରଣ, କିମ୍ପୁରୁଷ, ବିଷ୍ଣୁପାର୍ଷଦ, କିନ୍ନର, ବେତାଳ, ସୁନନ୍ଦ, କୁମୁଦ ପ୍ରଭୃତି ଏଠାରେ ସମବେତ ହୋଇ ସିଂହାସନରେ ଉପବିଷ୍ଟ ଉଗ୍ରତେଜା ଶ୍ରୀ ନରସିଂହ ଦେବଙ୍କୁ ପୃଥକ୍ ପୃଥକ୍ ଭାବରେ ସ୍ତବ କରିବାକୁ ଲାଗିଲେ । ୩୭,୩୮ ।

ଶ୍ରୀବ୍ରହ୍ମା କହିଲେ—

ଯେ ଦୁରନ୍ତ ଶକ୍ତି, ବିଚିତ୍ରବୀର୍ଯ୍ୟ, ପବିତ୍ରକର୍ମୀ, ନିଜର ଲୀଳାଗୁଣରେ ବିଶ୍ୱର ସୃଷ୍ଟି ସ୍ଥିତି, ଓ ପ୍ରଳୟ ଲୀଳାମାତ୍ରେ ବିଧାନ କରୁ ଅଛନ୍ତି ସେହି ଭକ୍ତବତ୍ସଳ ଅବ୍ୟୟାତ୍ମା ଅନନ୍ତ ଦେବଙ୍କୁ ପ୍ରଣାମ କରୁଅଛି । ୪୦ ।

---

ବ୍ରହ୍ମା ଶଙ୍କର ଇନ୍ଦ୍ର ଭୁଲେ
ଋଷିଏ ପିତୃ ସିଦ୍ଧ ମେଳେ
ଉରଗ ବିଦ୍ୟାଧରଗଣ
ମନୁଏ ପ୍ରଜାପତି ପୁଣ
ମିଳିଲେ ଗୁହ୍ୟକ ଚାରଣ
ଯକ୍ଷ କିଂପୁରୁଷ ଏ ମାନ
ଆଉରି ବେତାଳ କିନ୍ନର
ଏ ଆଦି ଅଶେଷ ଅମର
ସନକ ସୁନନ୍ଦ କୁମୁଦ
ମିଳିଲେ ବିଷ୍ଣୁ ପାରଷଦ

କର ଅଞ୍ଜଳି ଶିରେ ଦେଇ
ମିଳିଲେ ବିଷ୍ଣୁ ପାଶେ ଯାଇ
ପ୍ରଚଣ୍ଡ ତେଜ ଦେଖି ଡରେ
ଭୟେ ରହିଲେ କିଛିଦୂରେ
ରହିଲେ ଯୂଥ ଯୂଥ ହୋଇ
ସମୀପେ ନ ପାରନ୍ତି ଯାଇ
ଭୟେ ଶଙ୍କିତ ହୃଦପାଲେ
ସ୍ତୁତି କରନ୍ତି ପାଦମୂଳେ ।୩୭-୩୯

ଶ୍ରୀବ୍ରହ୍ମୋବାଚ—

ବ୍ରହ୍ମା ନୃସିଂହ ମୁଖ ଚାହିଁ
ବୋଲଇ ଶିରେ କର ଦେଇ

ନମସ୍ତେ ଅନନ୍ତ ମୂରତି
ଦୁରନ୍ତ ବୀର୍ଯ୍ୟ ତୋର ଶକ୍ତି
ବିଚିତ୍ରବୀର୍ଯ୍ୟ ଶୁଦ୍ଧକର୍ମା
ଅଶେଷ ତୋହର ମହିମା
ଗୁଣ ସଂଯୋଗେ ଲୀଳାମତେ
ସଂସାର ସୃଷ୍ଟି ସ୍ଥିତି ଅନ୍ତେ
ଅଶେଷ ତୋହର ମହିମା
କେ କହିପାରେ ଗୁଣ ସୀମା ।୪୦।

ଶ୍ରୀଇନ୍ଦ୍ର ଉବାଚ ।

ପ୍ରତ୍ୟାନୀତାଃ ପରମ ଭବତା ତ୍ରାୟତା ନଃ ସ୍ୱଭାଗା
ଦୈତ୍ୟାକ୍ରାନ୍ତଂ ହୃଦୟକମଲଂ ତଦ୍‌ଗୃହଂ ପ୍ରତ୍ୟବୋଧି । ୪୧ ।
କାଲଗ୍ରସ୍ତଂ କିୟଦିଦମହୋ ନାଥ ଶୁଶ୍ରୂଷତାଂ ତେ ।
ମୁକ୍ତିସ୍ତେଷାଂ ନହି ବହୁମତା ନାରସିଂହାପରୈଃ କିମ୍ । ୪୨ ।

---

ଶ୍ରୀରୁଦ୍ର କହିଲେ—

ହେ ଭକ୍ତବତ୍ସଳ ! ତୁମ୍ଭେ କୋପ କରନାହିଁ, କାରଣ ଏ ଅସୁର ତୁମ୍ଭର କୋପ ଯୋଗ୍ୟ ନୁହେଁ । ସହସ୍ର ଯୁଗ ଯୁଗାନ୍ତ ତୁମ୍ଭର କୋପାନଳ । ଏହି ଅସୁର ତୁମ୍ଭ ପକ୍ଷରେ ତୁଛ । ଅସୁର ପୁତ୍ର ତୁମ୍ଭର ଭକ୍ତ ପ୍ରହ୍ଲାଦକୁ ରକ୍ଷା କର । ୪୧ ।

ଶ୍ରୀଇନ୍ଦ୍ର କହିଲେ—

ହେ ପରମେଶ୍ୱର ! ଆପଣ ଦୈତ୍ୟର ଅତ୍ୟାଚାରରୁ ଆମ୍ଭମାନଙ୍କୁ ରକ୍ଷାକରି ଆମ୍ଭମାନଙ୍କର ଯଜ୍ଞ ଭାଗର ପୁନରୁଦ୍ଧାର ସାଧନ କରି ଅଛନ୍ତି । ଆମ୍ଭମାନଙ୍କର ହୃଦୟ କମଳ ଚିରକାଳ ଆପଣଙ୍କର ନିବାସ ସ୍ଥଳ । ତାହା ଅଦ୍ୟାପି ଦୈତ୍ୟାକ୍ରାନ୍ତ ହୋଇ ମୁଦ୍ରିତ ଥିଲି । ଆପଣ ତାହାର ବିକାଶ ସାଧନ କରିଅଛନ୍ତି । ହେ ନାଥ ! ଆପଣ ତ୍ରୈଲୋକ୍ୟର ଐଶ୍ୱର୍ଯ୍ୟ ରକ୍ଷା ନିମନ୍ତେ ଦୈତ୍ୟବଧ କରିଅଛନ୍ତି । କେବଳ ତାହା ନୁହେଁ କାରଣ ଆପଣଙ୍କ ଭକ୍ତ ପକ୍ଷରେ ଐଶ୍ୱର୍ଯ୍ୟାଦି ଅତି ତୁଚ୍ଛ, ଯେହେତୁ ତାହା କାଳକ୍ରମେ ବିନଷ୍ଟ ହୁଏ । ହେ ନର ଓ ସିଂହାକାରରେ ଆବିର୍ଭୂତ ପରମାତ୍ମା ! ଆପଣଙ୍କର ଭକ୍ତମାନଙ୍କର ପକ୍ଷରେ ମୁକ୍ତି ଅକିଞ୍ଚିତ୍କର ସେତେବେଳେ ଐଶ୍ୱର୍ଯ୍ୟାଦି ସେମାନଙ୍କ ପକ୍ଷରେ କିଛି ନୁହେଁ । ଏହା ବୋଲିବା ବାହୁଲ୍ୟ ମାତ୍ର । ୪୨ ।

---

ଶ୍ରୀରୁଦ୍ର ଉବାଚ—

ଯୁଗାନ୍ତ କାଳ ତୋର କୋପ
ଯିବେ ଅସୁର ଅଳପ
ତୁ ନାଥ ଭକତ ବତ୍ସଳ
ତାର ତନୟ ଏବେ ପାଳ.
ଏ ସର୍ବେ ତୋହର କିଙ୍କର
ଜଗତ ତୋର ଲୀଳା ଘର ।୪୧।

ଶ୍ରୀଇନ୍ଦ୍ରବାଚ—

ଇନ୍ଦ୍ର ବୋଇଲେ ମୁଖ ବହି
ନୃସିଂହ କର ତ୍ରାହି ତ୍ରାହି
ଏ ମହାସୁର ଅତି ବେଗ
ଯଜ୍ଞେ ଆମ୍ଭର ହବିର୍ଭାଗ
ବଳେ ଭୁଞ୍ଜଇ ଏ ଆକର୍ଷି
ଆମ୍ଭ ହୃଦୟ-ପଦ୍ମେ ପଶି
ତୁ ନାଥ ସର୍ବ ପ୍ରାଣୀଙ୍କର
ହୃଦୟ-ପଦ୍ମ ତୋର ଘର
ସେ ପଦ୍ମ ଅସୁର ଶଙ୍କାଙ୍କେ
ମୁଦ୍ରିତ ଥିଲା ଅତରେକେ
ତୁ ଏବେ ରବି ରୂପ ଧରି
ହୃଦୟ-ପଦ୍ମ ଭେଦ କରି
ତୋହ ଗୃହ ତୁ ମାର୍ଜିଲୁ
ଆମ୍ଭଙ୍କୁ ଯଜ୍ଞଭାଗ ଦେଲୁ
ଏ ଭବ ସଂସାର ସାଗରେ
ପ୍ରାଣୀ ଜୀବନ ନିରନ୍ତରେ
ଅଙ୍କନ କରେ କାଳେ ଗ୍ରସ୍ତ
କିବା କହିବୁ ତୋ ଅଗତ
ତୋର ସେବକ ପ୍ରାଣୀଙ୍କର
ତୁ ନାଥ ଶରଣ ସୋଦର ।୪୨।

ଶ୍ରୀଋଷୟ ଊଚୁଃ ।

ତ୍ୱଂ ନସ୍ତପଃପରମମାତ୍ଥ ଯଦାତ୍ମତେଜୋ ଯେନେଦମାଦିପୁରୁଷାତ୍ମଗତଂସସର୍କ୍ଥ ।
ତଦ୍ୱିପ୍ରଲୁପ୍ତମମୁନାଦ୍ୟ ଶରଣ ପାଳ ରକ୍ଷାଗୃହୀତବପୁଷା ପୁନରନ୍ୱମଂସ୍ଥାଃ । ୪୩ ।

ଶ୍ରୀପିତର ଊଚୁଃ

ଶ୍ରାଦ୍ଧାନି ନୋଽଧିବୁଭୁଜେ ପ୍ରସଭଂ ତନୂଜୈର୍ଦତ୍ତାନି ତୀର୍ଥସମୟେଽପ୍ୟପିବତ୍ ତିଳାମ୍ବୁ ।
ତସ୍ୟୋଦରାନ୍ନଖବିଦୀର୍ଣ୍ଣବପାଦ୍ ଯଆର୍ଚ୍ଛତ୍ତସ୍ମୈ ନମୋ ନୃହରୟେଽଖିଳଧର୍ମଗୋପ୍ତ୍ରେ ।୪୪

---

ଶ୍ରୀଋଷିମାନେ କହିଲେ—

ହେ ଆଦି ପୁରୁଷ ! ତୁମ୍ଭେ ଯେଉଁ ତେଜଃ ମୂର୍ତ୍ତି ପ୍ରଭାବରେ ଏହି ବିଶ୍ୱସୃଷ୍ଟି ସାଧନ କରିଅଛ ତୁମ୍ଭର ସେହି ଅନୁତ୍ତମ ତେଜରୂପ ତପାନୁଷ୍ଠାନ ସାଧନ କରିବା ଆମ୍ଭମାନଙ୍କୁ ଅନୁମତି ଦେଇଅଛ, ଆମ୍ଭମାନଙ୍କର ସେହି ତପ ଏହି ଅସୁର ଦ୍ୱାରା ସମ୍ପୂର୍ଣ୍ଣବିନଷ୍ଟ ହୋଇଥିଲା । ତୁମ୍ଭେ ତ୍ରିଲୋକ ରକ୍ଷା କରିବା ଯେଉଁ ନୃସିଂହ ମୂର୍ତ୍ତି ଧାରଣ କରି ଅସୁର ସଂହାର କଲ ତଦ୍ୱାରା ଆମ୍ଭମାନଙ୍କର ତପସ୍ୟା ପୁନଃ ପ୍ରବର୍ତ୍ତନ କଲ । ହେ ଶରଣାଗତ ପାଳକ ! ତୁମ୍ଭଙ୍କୁ ଆମ୍ଭମାନଙ୍କର ନମସ୍କାର । ୪୩ ।

ଶ୍ରୀପିତୃଗଣ କହିଲେ—

ଆମ୍ଭମାନଙ୍କର ପୁତ୍ରମାନେ ଶ୍ରାଦ୍ଧ ଦିବସରେ ଯେଉଁ ପିଣ୍ଡ ପ୍ରଦାନ କରନ୍ତି ଏବଂ ତୀର୍ଥ ଜଳରେ ଏବଂ ତିଳ ଜଳ ପ୍ରଦାନ କରନ୍ତି ତାହା ଏହି ଅସୁର ବଳପୂର୍ବକ ଅପହରଣ କରିଥିଲା, ତାହାର ଉଦର ନଖଦ୍ୱାରା ବିଦାରଣ କରି ତୁମ୍ଭେ ସେହି ସମସ୍ତ ପିଣ୍ଡାଦି ଆହରଣ କରିଅଛ । ସେହି ସର୍ବଲୋକ ପାଳକ, ଧର୍ମ ରକ୍ଷକ ନୃସିଂହଙ୍କୁ ଆମ୍ଭମାନଙ୍କର ନମସ୍କାର । ୪୪ ।

---

ଶ୍ରୀଋଷୟଊଚୁଃ—
ତୋର ଚରଣ ଧ୍ୟାନ ଅର୍ଥେ
ତପ ସମାଧି ଏ ଜଗତେ
ତୋର ବଚନେ ଆମ୍ଭେ ରହି
ସଂସାରେ ବିପ୍ରତନୁ ବହି
ସେ ତପ ସାଧିବାର କଷ୍ଟ
ବଳେ ହିରଣ୍ୟ କଲା ଦୁଷ୍ଟ
ତୋର ବଚନେ ତୋତେ ସେବି
ଦୃଢେ ସଦାରବିନ୍ଦେ ଭାବି
ସେ ମନ ଭାଙ୍ଗିଲା ଆମର
ନିଜ ପ୍ରତାପେ ଏ ଅସୁର
ଏବେ ଏହାକୁ ନାଶ କରି
ଆମ୍ଭର ତପ ରକ୍ଷାକରି
ରଖିଲୁ ବିପ୍ର ଋଷି ଧର୍ମ
ତୁ ନାଥ ସର୍ବ କୁଳଧର୍ମ । ୪୩ ।

ଶ୍ରୀପିତର ଊଚୁଃ—
ଆମ୍ଭର ଶ୍ରାଦ୍ଧ କର୍ମ ଯେତେ
ପୁତ୍ରେ କରନ୍ତେ ବେଦମତେ
ଆମ୍ଭ ଦିବସା ଶ୍ରାଦ୍ଧକାଳେ
ଅସୁର ଭୁଞ୍ଜେ ଆସି ବଳେ
ତିଳ ଉଦକ ଯେତେ ତୀର୍ଥେ
ପୁତ୍ରେ କରନ୍ତି ବେଦମତେ
ସେ ଶ୍ରାଦ୍ଧ ଜଳ ପାନ କରେ
ଅର୍ପିତ ଦାନ ବଳେ ହରେ
ଆମ୍ଭର ତିଳ ପିଣ୍ଡ ଯେତେ
ଥିଲା ଅସୁର ଗର୍ଭଗତେ
ନଖ ଅଙ୍କୁରେ ତାହା ଧରି
ଆମ୍ଭଙ୍କୁ ଦେଲୁ ନରହରି ।୪୪ ।

ଶ୍ରୀସିଦ୍ଧା ଊଚୁଃ ।

ଯୋ ନୋ ଗତିଂ ଯୋଗସିଦ୍ଧାମସାଧୁରହାରଷୀଦ୍‌ଯୋଗତପୋବଲେନ ।
ନାନାଦର୍ପଂ ତଂ ନଖୈର୍ବିଦଦାର ତସ୍ମୈ ତୁଭ୍ୟଂ ପ୍ରଣତାଃ ସ୍ମୋ ନୃସିଂହ । ୪୫ ।

ଶ୍ରୀବିଦ୍ୟାଧରା ଊଚୁଃ ।

ବିଦ୍ୟାଂ ପୃଥକ୍ ଧାରଣୟାନୁରାଦ୍ଧାଂ ନ୍ୟଷେଧଦଜ୍ଞୋ ବଲବୀର୍ଯ୍ୟଦୃପ୍ତଃ ।
ସ ଯେନ ସଂଖ୍ୟେ ପଶୁବଦ୍ଧତସ୍ତଂ ମାୟାନୃସିଂହଂ ପ୍ରଣତାଃ ସ୍ମ ନିତ୍ୟମ୍ । ୪୬ ।

ଶ୍ରୀନାଗା ଊଚୁଃ ।

ଯେନ ପାପେନ ରତ୍ନାନି ସ୍ତ୍ରୀରତ୍ନାନି ହୃତାନି ନଃ ।
ଯଦ୍‌ବକ୍ଷଃପାଟନେନାସାଂ ଦତ୍ତାନନ୍ଦ ନମୋସ୍ତୁ ତେ । ୪୭ ।

---

ଶ୍ରୀସିଦ୍ଧମାନେ କହିଲେ—

ହେ ନୃସିଂହ ! ଯେଉଁ ଅସାଧୁ ଦୈତ୍ୟ ଆମ୍ଭମାନଙ୍କର ଯୋଗସିଦ୍ଧ ଅଣିମାଦି ଗତି ଯୋଗବଳ ଓ ତପୋବଳ ଅପହରଣ କରିଥିଲା ସେହି ନାନା ଦର୍ପଶାଳୀ ଦୈତ୍ୟକୁ ଆପଣ ନଖଦ୍ୱାରା ବିଦାରଣ କରିଅଛନ୍ତି । ଆପଣଙ୍କ ଚରଣରେ ଆମ୍ଭେମାନେ ନମସ୍କାର କରୁଅଛୁ । ୪୫ ।

ଶ୍ରୀବିଦ୍ୟାଧରମାନେ କହିଲେ—

ଯେଉଁ ବଳବୀର୍ଯ୍ୟ ଗର୍ବିତ, ଅଜ୍ଞ ଅସୁର ନାନା ସଂଯମଲବ୍ଧ ଶକ୍ତିକୁ ନିରାକରଣ କରିଥିଲା ସେହି ଅସୁରକୁ ଆପଣ ଯୁଦ୍ଧରେ ପଶୁତୁଲ୍ୟ ବଧ କରିଅଛନ୍ତି । ଆପଣ ମାୟାରେ ନୃସିଂହ ମୂର୍ତ୍ତି ଧାରଣ କରିଅଛନ୍ତି । ଆପଣଙ୍କୁ ଆମ୍ଭମାନଙ୍କର ନମସ୍କାର । ୪୬ ।

ଶ୍ରୀନାଗମାନେ କହିଲେ—

ଯେଉଁ ପାପାତ୍ମା ଅସୁର ଆମ୍ଭମାନଙ୍କର ଫଣାସ୍ଥିତ ମଣି ଏବଂ ଆମ୍ଭମାନଙ୍କର ସ୍ତ୍ରୀକୁ ଅପହରଣ କରିଥିଲା ଆପଣ ତାହାର ବକ୍ଷ ବିଦାରଣ କରି ସ୍ତ୍ରୀମାନଙ୍କର ଆନନ୍ଦ ଉତ୍ପାଦନ କରିଅଛନ୍ତି । ଆପଣଙ୍କୁ ଆମ୍ଭମାନଙ୍କର ନମସ୍କାର । ୪୭ ।

---

ଶ୍ରୀସିଦ୍ଧାଊଚୁଃ—

ଆମ୍ଭର ଯୋଗ ସିଦ୍ଧିଗତି
ବଳେ ହରିଲା ଦୈତ୍ୟପତି
ତାହାକୁ ନଖେ ବିଦାରିଲ
ତୁ ନାଥ ଆମ୍ଭଙ୍କୁ ରଖିଲୁ
ତୋର ଚରଣେ ନମସ୍କାର
ଯେଣୁ ତୁ ଶରଣ ସୋଦର ।୪୫।

ଶ୍ରୀବିଦ୍ୟାଧରା ଊଚୁଃ—

କର ପ୍ରସାରି ବିଦ୍ୟାଧରେ
ବୋଲନ୍ତି ନୃସିଂହ ଛାମୁରେ
ଆମ୍ଭର ଅନ୍ତର୍ଦ୍ଧାନ ଗତି
ବଳେ ହରିଲା ଦୈତ୍ୟପତି
ତାହାକୁ ପଶୁ ବଧ ପ୍ରାୟେ
ସଂହାର କଲ ଦେବରାୟେ
ମାୟା ନୃସିଂହ ଭୟଙ୍କର
ତୁମ୍ଭେ ଯେ ଶରଣ ସୋଦର ।୪୬।

ଶ୍ରୀନାଗା ଊଚୁଃ—

ଆମ୍ଭର ଶିରେ ଯେତେ ମଣି
ଯେ ସ୍ନେହେ ଉତ୍ତମ ରମଣୀ
ସବୁ ହରିଲା ବାହୁବଳେ
ଅଥୟ ଅବନୀମଣ୍ଡଳେ
ସେ ଭୟ ନିବାରି ଗୋବିନ୍ଦ
ଆମ୍ଭଙ୍କୁ ଦେଲୁ ତୁ ଆନନ୍ଦ
ତୁ ନାଥ ସଂସାର-ଭଞ୍ଜର
ତୋର ଚରଣେ ନମସ୍କାର ।୪୭।

ଶ୍ରୀମନବ ଊଚୁଃ ।
ମନବୋ ବୟଂ ତବ ନିଦେଶକାରିଣୋ ଦିତେନ ଦେବ ପରିଭୂତସେତବଃ ।
ଭବତା ଖଳଃ ସ ଉପସଂହୃତଃ ପ୍ରଭୋ କରବାମ ତେ କିମନୁଶାଧି କିଙ୍କରାନ୍ ।୪୮।
ଶ୍ରୀପ୍ରଜାପତୟ ଊଚୁଃ ।
ପ୍ରଜେଶାଃ ବୟଂ ତେ ପରେଶାଭିସୃଷ୍ଟା ନ ଯେନ ପ୍ରଜା ବୈ ସୃଜାମୋ ନିଷିଦ୍ଧାଃ ।
ସ ଏଷ ତ୍ୱୟା ଭିନ୍ନବକ୍ଷାନୁଶେତେ ଜଗନ୍ମଙ୍ଗଳଂ ସତ୍ତ୍ୱମୂର୍ତ୍ତେଽବତାରଃ । ୪୯ ।
ଶ୍ରୀଗନ୍ଧର୍ବା ଊଚୁଃ ।
ବୟଂ ବିଭୋ ତେ ନଟନାଟ୍ୟ ଗାୟକା ଯେନାତ୍ମସାଦ୍ବୀର୍ଯ୍ୟବଲୌଜସା କୃତାଃ ।
ସ ଏଷ ନୀତୋ ଭବତା ଦଶାମି ମାଂ କିମୁତ୍ପଥସ୍ଥଃ କୁଶଳାୟ କଳ୍ପତେ । ୫୦ ।

ଶ୍ରୀମନୁଗଣ କହିଲେ—ହେ ଦେବ ! ଆମ୍ଭେମାନେ ଆପଣଙ୍କର ଆଜ୍ଞାବହ । ଯେଉଁ ଦୈତ୍ୟ ଆମ୍ଭମାନଙ୍କର ବର୍ଣ୍ଣାଶ୍ରମ ଧର୍ମ ବିନାଶ କରିଥିଲା, ସେହି ଖଳକୁ ଆପଣ ବିନାଶ କରିଅଛନ୍ତି । ହେ ପ୍ରଭୋ ! ଆମ୍ଭେମାନେ ଆପଣଙ୍କର କି କାର୍ଯ୍ୟ କରିବୁ । ସେବକମାନଙ୍କ ପ୍ରତି ସେହି ଅନୁମତି ପ୍ରଦାନ କରନ୍ତୁ । ୪୮।

ଶ୍ରୀପ୍ରଜାପତିମାନେ କହିଲେ—

ହେ ପରେଶ ! ପ୍ରଜାସୃଷ୍ଟି ନିମିତ୍ତ ପ୍ରଜାପତିମାନଙ୍କୁ ଆପଣ ସୃଷ୍ଟି କରି ଅଛନ୍ତି ମାତ୍ର ଏହି ଦୈତ୍ୟ ଠାରୁ ବାଧାପ୍ରାପ୍ତ ହୋଇ ଆମ୍ଭେମାନେ ପ୍ରଜାସୃଷ୍ଟି କରିବାକୁ ଅକ୍ଷମ ହୋଇଥିଲୁ । ଆପଣ ତାହାର ବକ୍ଷ ବିଦାରଣ କରି ତାହାକୁ ବଧ କରି ଅଛନ୍ତି । ହେ ସତ୍ତ୍ୱ ମୂର୍ତ୍ତି ! ତୁମ୍ଭର ଅବତାର ଜଗତ ପକ୍ଷରେ ହିତକର । ୪୯ ।

ଶ୍ରୀଗନ୍ଧର୍ବମାନେ କହିଲେ—

ହେ ବିଭୋ ! ଆମ୍ଭେମାନେ ଆପଣଙ୍କର ନଟ ଓ ନଟୀ ସ୍ୱରୂପ ଗାୟକ । ବଳବୀର୍ଯ୍ୟ ଗର୍ବିତ ଦୈତ୍ୟରାଜ ଆମ୍ଭମାନଙ୍କୁ ଅଯଥା ନିର୍ଯ୍ୟାତନ କରୁଥିଲା । ଆପଣ ତାହାର ମରଣ ଘଟାଇ ଅଛନ୍ତି । ବିପଥଗାମୀ ବ୍ୟକ୍ତି କି କଦାପି ମଙ୍ଗଳ ଲାଭ କରିପାରେ ? । ୫୦ ।

ଶ୍ରୀମନୁଉବାଚ—
ବିଧାତା ବଂଶ ଅବତରି
ତୋହର ଆଜ୍ଞା ଶିରେ ଧରି
ମନୁ ବୋଲାଉଁ ଏ ଜଗତେ
ଆମ୍ଭେ ଯେ ତୋହର ଆଶ୍ରିତେ
ଧର୍ମେ ସଂସାର ଜନ ପାଳୁ
ତୁ ନାଥ ପରମ ଦୟାଳୁ
ତୋର କିଙ୍କର ଆମ୍ଭ ଦେହି
କିବା କରିବୁ ଆଜ୍ଞା ଦିଅ । ୪୮ ।

ଶ୍ରୀପ୍ରଜାପତୟ ଊଚୁ—
ତୋ ପ୍ରଜା ସୃଷ୍ଟିର ପାଳନେ
ଆମ୍ଭଙ୍କୁ ସର୍ଜ୍ଜି ବିଧିମାନେ
ରଖିଲୁ ପ୍ରଜାପାଳ କରି
ଆମ୍ଭେ ତୋ ଆଜ୍ଞା ଶିରେ ଧରି
ସୃଷ୍ଟି ପାଳନ କରୁ ଭଲେ
ମାନବ ପ୍ରଜାପତି ତୁଲେ
ଅସୁର ଭୟ ଶତ୍ରୁ ବହି
ସ୍ଥାନେ ନ ପାରୁ ଆମ୍ଭେ ରହି
ସେ ଆଜି ତୋର ନଖ ଘାତେ
ମରି ଶୋଇଲା ଭୂମିଗତେ
ତୁ ସତ୍ତ୍ୱ ମୂର୍ତ୍ତି ଦାମୋଦର
ଏ ତୋ ନୃସିଂହ ଅବତାର
ଜଗତ ମଙ୍ଗଳ ବିଧାନ
ସଂସାର ରଖ ଭଗବାନ । ୪୯ ।

ଶ୍ରୀଗନ୍ଧର୍ବାଊଚୁଃ—
ହେ ନାଥ ତୋହର ବଚନେ
ନିତ୍ୟେ ଦେବଙ୍କ ସନ୍ନିଧାନେ
ନୃତ୍ୟ ଖଟଣି ଗୀତ ସ୍ୱରେ
ଖଟୁ ଯେ ଥିଲୁ ନିରନ୍ତରେ
ଏବେ ତାଣ୍ଡବେ ଦୈତ୍ୟ ପାଶେ
ନିତ୍ୟେହେଁ ଖଟୁ ଅବକାଶେ
ଭୟେ ନ ପାରୁ ସ୍ଥାନେ ରହି
ତାହାର ଆଜ୍ଞା ଶିରେ ବହି
ଉତ୍ପଥ ପାପିଜନଙ୍କର
କେବେହେଁ ନାହିଁ ସୁଖ ସାର ।୫୦

ଶ୍ରୀଚାରଣାଊଚୁଃ ।
ହରେ ତବାଙ୍ଘ୍ରିପଙ୍କଜଂ ଭବାପବର୍ଗମାଶ୍ରିତାଃ ।
ଯଦେଷ ସାଧୁହୃଚ୍ଛୟସ୍ତ୍ୱୟାସୁରଃ ସମାପିତଃ । ୫୧ ।
ଶ୍ରୀଯକ୍ଷାଊଚୁଃ ।
ବୟମନୁଚରମୁଖ୍ୟାଃ କର୍ମଭିସ୍ତେ ମନୋଜ୍ଞୈସ୍ତ ଇହ ଦିତିସୁତେନ ପ୍ରାପିତା ବାହକତ୍ୱମ୍ ।
ସ ତୁ ଜନପରିତାପଂ ତତ୍କୃତଂ ଜାନତା ତେ ନରହର ଉପନୀତଃ ପଞ୍ଚତାଂ ପଞ୍ଚବିଂଶ ।୫୨।
ଶ୍ରୀକିଂପୁରୁଷା ଊଚୁଃ ।
ବୟଂ କିଂପୁରୁଷାସ୍ତ୍ୱନ୍ତୁ ମହାପୁରୁଷ ଈଶ୍ୱରଃ ।
ଅୟଂ କୁପୁରୁଷୋ ନଷ୍ଟୋ ଧିକ୍‌କୃତଃ ସାଧୁଭିର୍ଯଦା । ୫୩ ।

---

ଶ୍ରୀଚାରଣମାନେ କହିଲେ—

ହେ ହରି ! ଆପଣ ସଂସାର ନିବର୍ତ୍ତକ । ଆପଣଙ୍କର ଚରଣ କମଳରେ ଆମ୍ଭେମାନେ ଆଶ୍ରିତ । ସାଧୁମାନଙ୍କର ଭୟୋତ୍ପାଦକ ଏହି ଅସୁରକୁ ଆପଣ ବିନାଶ କରିଅଛନ୍ତି । ଆପଣଙ୍କୁ ଆମ୍ଭମାନଙ୍କର ପ୍ରଣାମ ।୫୧

ଶ୍ରୀଯକ୍ଷମାନେ କହିଲେ—

ହେ ଚତୁର୍ବିଂଶତି ତତ୍ତ୍ୱାତ୍ମକ ! ଉତ୍କୃଷ୍ଟ କର୍ମ ସମ୍ପାଦନ ଫଳରେ ଆମ୍ଭେମାନେ ଆପଣଙ୍କର ପ୍ରଧାନ ଅନୁଚରରୂପେ ଜାତ ହୋଇ ଅଛୁ । ଦୈତ୍ୟଶ୍ରେଷ୍ଠ ଆମ୍ଭମାନଙ୍କୁ ତାହାର ଶିବିକା ବାହକ କରି ରଖିଥିଲା । ହେ ନରହରି ! ଲୋକତାପ କାରୀ ଅସୁର ଗତିବିଧି ଅବଗତ ହୋଇ ଆପଣ ତାହାକୁ ବଧ କରିଅଛନ୍ତି । ଆପଣଙ୍କୁ ଆମ୍ଭମାନଙ୍କର ନମସ୍କାର । ୫୨ ।

କିମ୍ପୁରୁଷ ମାନେ କହିଲେ—

ହେ ପ୍ରଭୋ ! ଆମ୍ଭେମାନେ ଅତି ତୁଚ୍ଛ ପ୍ରାଣୀ । ଆପଣ ପରମେଶ୍ୱର । ସାଧୁଜନ ଗର୍ହିତ ଦୁଷ୍ଟ ଦୈତ୍ୟକୁ ଆପଣ ବିନାଶ କରିଅଛନ୍ତି । ଆପଣଙ୍କର ଆମ୍ଭେମାନେ କି ସ୍ତୁତି କରିପାରିବାକୁ ସମର୍ଥ । ୫୩ ।

---

ଶ୍ରୀଚାରଣା ଊଚୁଃ—
ହେ ହରି ଚରଣ ତୋହର
ଭବାପବର୍ଗ ସୁଖ ଘର
ସଂସାର ନିବୃତ୍ତି କାରଣ
ହେ ନାଥ ତୋହର ଚରଣ
ସେ ପାଦ ସେବା ଆମ୍ଭେ ଛାଡ଼ି
ଅସୁର ଘରେ ବନ୍ଦୀ ପଡ଼ି
ସେ ମନ ଦୁଃଖ ଏବେ ଗଲା
ଯେଣୁ ଅସୁର ମାର ମଲା । ୫୧ ।

ଯକ୍ଷା ଊଚୁଃ—
ସେବକ ଲୋକ ଆମ୍ଭେ ତୋର
କରନ୍ତେ ଚରଣେ କଙ୍କର
ଅନେକ ପୁଣ୍ୟେ ସାଧି ପୂର୍ବେ
ତୋର ଚରଣେ ଥିଲୁ ଆମ୍ଭେ
ଆମ୍ଭଙ୍କୁ ଦିତି ସୁତ ନେଇ
ବାହନ କରେ ଦୁଃଖ ଦେଇ
ଏ ପୁଣି ଜନ ପରତାପେ
ପ୍ରାଣ ଛାଡ଼ିଲା ତୋର କୋପେ ।୫୨

କିଂପୁରୁଷା ଊଚୁଃ—
ତୁ ମହାପୁରୁଷ ଈଶ୍ୱର
ଆମ୍ଭେ କଙ୍କର ନାଥ ତୋର
କୁତ୍ସିତ ପୁରୁଷ ଏ ଦୁଷ୍ଟ
ସାଧୁ ବର୍ଜ୍ଜିତ ମହାନଷ୍ଟ
ଉଚିତ କର୍ମ୍ମ ଏ ନ କଲା
ତୋର ପ୍ରତାପେ ନାଶ ଗଲା ।୫୩

ଶ୍ରୀବୈତାଳିକା ଊଚୁଃ ।

ସଭାସୁ ସତ୍ରେଷୁ ତବାମଳଂ ଯଶୋ ଗୀତ୍ୱା ସପର୍ଯ୍ୟାଂ ମହତୀଂ ଲଭାମହେ ।
ଯସ୍ତାମନୈଷୀଦ୍ୱଶମେଷ ଦୁର୍ଜନୋ ଦିଷ୍ଟ୍ୟା ହତସ୍ତେ ଭଗବନ୍ ଯଥାମୟଃ ।୫୪।

ଶ୍ରୀକିନ୍ନରା ଊଚୁଃ ।

ବୟମୀଶ କିନ୍ନରଗଣାସ୍ତବାନୁଗା ଦିତିଜେନ ବିଷ୍ଟିମମୁନାନୁକାରିତାଃ ।
ଭବତା ହରେ ସ ବୃଜିନୋଽବସାଦିତୋ ନରସିଂହ ନାଥ ବିଭବାୟ ନୋ ଭବ ।୫୫।

ଶ୍ରୀବିଷ୍ଣୁପାର୍ଷଦା ଊଚୁଃ ।

ଅଦ୍ୟୈତଦ୍ଧରିନରରୂପମଦ୍ଭୁତଂ ତେ ଦୃଷ୍ଟଂ ନଃ ଶରଣଦ ସର୍ବଲୋକଶର୍ମ ।
ସୋଽୟଂ ତେ ବିଧିକର ଈଶ ବିପ୍ରଶପ୍ତସ୍ତସ୍ୟେଦଂ ନିଧନମନୁଗ୍ରହାୟ ବିଦ୍ମଃ ।୫୬।

ଶ୍ରୀବୈତାଳିକମାନେ କହିଲେ—

ହେ ଭଗବାନ୍ ! ଯଜ୍ଞକ୍ଷେତ୍ର ଓ ସଭାରେ ଆମ୍ଭେମାନେ ଆପଣଙ୍କର ନିର୍ମଳ ଯଶୋଗାନ କରି ବିଶେଷ ସମ୍ମାନ ଲାଭ କରି ଥାଉ । ଦୈତ୍ୟବର ଆମ୍ଭମାନଙ୍କର ସେହି ସମ୍ମାନ ନଷ୍ଟ କରିଅଛି । ବ୍ୟାଧି ତୁଲ୍ୟ ପରିତ୍ୟଜ୍ୟ ଦୁଷ୍ଟକୁ ଆପଣ ଆମ୍ଭମାନଙ୍କର ସୌଭାଗ୍ୟକ୍ରମେ ବଧ କରିଅଛନ୍ତି । ଆପଣଙ୍କୁ ଆମ୍ଭମାନଙ୍କର ନମସ୍କାର । ୫୪ ।

ଶ୍ରୀକିନ୍ନରମାନେ କହିଲେ—

ହେ ଈଶ ! ଆମ୍ଭେମାନେ ଆପଣଙ୍କର ଅନୁଚର ଦୈତ୍ୟବର ଆମ୍ଭମାନଙ୍କୁ ସର୍ବଦା ବିନା ବେତନରେ କାର୍ଯ୍ୟ କରାଉ ଥିଲା । ହେ ହରେ ! ହେ ନରସିଂହ ! ହେ ନାଥ ! ଆପଣ ପାପାତ୍ମା ଅସୁରକୁ ବଧ କରି ଅଛନ୍ତି । ଆପଣ ଆମ୍ଭମାନଙ୍କର ମଙ୍ଗଳ ବିଧାନ କରନ୍ତୁ । ୫୫ ।

ଶ୍ରୀବିଷ୍ଣୁପାର୍ଷଦଗଣ କହିଲେ—

ହେ ଶରଣଦାତା ! ତୁମ୍ଭର ଏହି ସର୍ବଲୋକ ସୁଖାବହ ଅଦ୍ଭୁତ ନୃସିଂହ ମୂର୍ତ୍ତି ଆଜି ଆମ୍ଭେମାନେ ଦେଖିଲୁ । ହେ ଈଶ ! ଏହି ଦୈତ୍ୟ ସନକ, ସନନ୍ଦ ପ୍ରଭୃତିଙ୍କ ଦ୍ୱାରା ଶାପଗ୍ରସ୍ତ ହେଲେହେଁ ତୁମ୍ଭର କିଙ୍କର କିନ୍ତୁ ତୁମ୍ଭେ ତାହାକୁ ବଧ କରି ଶାପମୁକ୍ତ କଲ । ତାହା ତୁମ୍ଭର ଅନୁଗ୍ରହ ଭିନ୍ନ ଅନ୍ୟ କିଛି ନୁହେଁ । ୫୬ ।

ବୈତାଳିକା ଉଚୁଃ—
ଆମ୍ଭେ ସାଧୁଙ୍କ ସଭାମଧ୍ୟେ
ଯଜ୍ଞ ଆରମ୍ଭ ପରିବନ୍ଧେ
ତୋର ନିର୍ମଳ ଯଶ ଗାଇ
ସତ୍କାର ପୂଜା ଧର୍ମ୍ମ ପାଇ
ଆନନ୍ଦେ ଭୁଞ୍ଜୁ ସାଧୁମେଳେ
ଏ ମହାସୁର ତାହା ବଳେ
ତୋହର ଯଶ ନାଶ କଲା
ଆମ୍ଭଙ୍କୁ ମହା କଷ୍ଟ ଦେଲା
ଏ ଆମ୍ଭ ଦେହେ ବ୍ୟାଧି ଥିଲା
ତୋର ପ୍ରତାପେ ନାଶ ଗଲା ।୫୪।

କିନ୍ନରାଉଚୁଃ—
ତୋର କିଙ୍କରଗଣ ଆମ୍ଭେ
ତୋ ଅନୁଗ୍ରହେ ଥାଉଁ ଦମ୍ଭେ
ଏ ଦିତିସୂତ ମହାନଷ୍ଟ
ଆମ୍ଭଙ୍କୁ ଦେଲା ମହାକଷ୍ଟ
ତୁ ଏ ଅସୁର ନାଶ କଲୁ
ଆମ୍ଭର ମାନ ଉଦ୍ଧରିଲୁ
ତୁ ନାଥ ଦେବଙ୍କର ଦେବ
ଆମ୍ଭର ମଙ୍ଗଳ ବିଭବ ।୫୫।

ବିଷ୍ଣୁପାର୍ଷଦା ଉଚୁଃ—
ହେ ନାଥ ଏ ରୂପ ତୋହର
ଅଦ୍ଭୁତ ମହାଭୟଙ୍କର
ନୟନେ ଦେଖି ସର୍ବଜନେ
ଭୟେ କମ୍ପିଲେ ତ୍ରିଭୁବନେ
ତାହାଙ୍କ କର୍ମ୍ମଦାତା ତୁହି
ଆମ୍ଭଙ୍କୁ କର ନାଥ ତ୍ରାହି

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ
ହିରଣ୍ୟକଶିପୁବଧୋ ନାମ ଅଷ୍ଟମୋଽଧ୍ୟାୟଃ । ୮ ।

ଯେଣୁ ନାଶିଲୁ ମହାସୁର
ଆମ୍ଭଙ୍କ ଅନୁଗ୍ରହ କର । ୫୬ ।
ଏମନ୍ତେ ନୃସିଂହ ସମୀପେ
ସ୍ତୁତି ବଚନେ ଏକ ଏକେ
କହି ରହିଲେ ତୋଷମନେ
ଏବେ ହୋ ଶୁଣ ସାଧୁଜନେ
ନାରଦ ଯୁଧିଷ୍ଠି ଅଗତେ
ଯାହା କହିଲେ ଭଗବତେ
ଅଦ୍ଭୁତ ନୃସିଂହ ଚରିତ
କହିଲା ଦାସ ଜଗନ୍ନାଥ ।



**ଭାବାର୍ଥ—**

ଶୁକ୍ର ତନୟ ଷଣ୍ଡାମର୍କ ଶିଷ୍ୟମାନଙ୍କୁ ଯେଉଁ ନୀତିଶାସ୍ତ୍ର ଶିକ୍ଷା ଦେଇଥିଲେ ତଦପେକ୍ଷା ପ୍ରହ୍ଲାଦଙ୍କର ଉପଦେଶ ଓ ଭକ୍ତିତତ୍ତ୍ୱ ଆହୁରି ହିତକର ବୋଧ ହୋଇଥିଲା । ରାଜା ହିରଣ୍ୟକଶ୍ୟପୁ ପୁତ୍ରର ବିଷ୍ଣୁଭକ୍ତି ପ୍ରସଙ୍ଗ ଶ୍ରବଣ କରି ତାହାଙ୍କୁ ବଧ କରିବାକୁ ସ୍ଥିର କଲା । ପାପାତ୍ମା ଅସୁର ନାନାପ୍ରକାର ଉପାୟ କଲେ ସୁଦ୍ଧା କୌଣସି ପ୍ରକାରେ ପ୍ରହ୍ଲାଦଙ୍କୁ ବଧ କରି ପାରିଲା ନାହିଁ । ହରିଭକ୍ତ ପ୍ରହ୍ଲାଦ ହରିଙ୍କର ସର୍ବତ୍ର ବିଦ୍ୟମାନତା ବିଷୟ ପିତାଙ୍କ ନିକଟରେ ପ୍ରତିପାଦନ କରନ୍ତେ, ସେ ତହିଁରେ ଅତ୍ୟନ୍ତ କ୍ରୁଦ୍ଧ ହୋଇ କହିଲା, "ତୁ କହୁଅଛୁ ହରି ସର୍ବତ୍ର ବିଦ୍ୟମାନ, ଏହି ସଭାମଧ୍ୟସ୍ଥ ସ୍ତମ୍ଭ ମଧ୍ୟରେ ହରି ଯଦି ଥାଏ, ତାହା ହେଲେ ମୋତେ ଅବିଳମ୍ବେ ଦେଖା ନଚେତ୍ ତୋହର ଶିରଚ୍ଛେଦନ କରିବି । ଦେଖିବି ତୋହର ହରି କିପରି ତୋତେ ରକ୍ଷା କରିବ ।" ଏହା କହିବା ମାତ୍ରେ ଭକ୍ତବତ୍ସଳ ବାଞ୍ଛାକଳ୍ପତରୁ ସର୍ବାନ୍ତର୍ଯ୍ୟାମି ଶ୍ରୀହରି ସେଠାରେ ଆବିର୍ଭୂତ ହେଲେ । ହଠାତ୍ ଘୋର ଗର୍ଜନ ହେଲା, ସେଥିରେ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଶବ୍ଦାୟମାନ ହେଲା । ହିରଣ୍ୟକଶ୍ୟପୁ, ଏହି ଶବ୍ଦର କାରଣ ଅନୁସନ୍ଧାନ କରୁ କରୁ ହଠାତ୍ ସ୍ତମ୍ଭ ମଧ୍ୟରୁ ନର ଓ ସିଂହରୂପଧାରୀ ଏକ ଅଦ୍ଭୁତ ଜୀବ ବହିର୍ଗତ ହେଲା । ବ୍ରହ୍ମାଙ୍କର ବର ଅନୁସାରେ ହିରଣ୍ୟକଶ୍ୟପୁ ଦିବସ ବା ରାତ୍ରିରେ କିମ୍ବା ଗୃହ ମଧ୍ୟରେ ବା ବାହାରେ ଅସ୍ତ୍ର ଶସ୍ତ୍ର ଦ୍ୱାରା କୌଣସି ପ୍ରକାରେ ନିହତ ହେବାର ନୁହେଁ । ତେଣୁ ଶ୍ରୀହରି ନୃସିଂହ ରୂପରେ କାହାକୁ ଗୃହର ଦ୍ୱାର ଦେଶରେ ଏବଂ ସାୟଂକାଳରେ ନଖଦ୍ୱାରା ବିଦାରଣ କରି ବଧ କରିଥିଲେ । ଏହା ଦେଖି ଲୋକପାଳଗଣ, ବ୍ରହ୍ମାଦି ଦେବଗଣ, ଗନ୍ଧର୍ବ, କିନ୍ନର, ନାଗ ପିତୃଗଣ ସେଠାରେ ଉପସ୍ଥିତ ହୋଇ ନୃସିଂହଙ୍କର କୋପ ଶାନ୍ତି ନିମିତ୍ତ ନାନାବିଧ ସ୍ତୁତି ଦ୍ୱାରା ପ୍ରାର୍ଥନା କରିଥିଲେ । ହିରଣ୍ୟ କଶ୍ୟପୁ ଶତ୍ରୁ ହେଲେ ମଧ୍ୟ ତାହା ପ୍ରତି କରୁଣା ପ୍ରଦର୍ଶନ ଏବଂ ତାହାର ମୁକ୍ତି ପ୍ରଦାନ ପ୍ରତିପାଦିତ ହୋଇ ଅଛି । ସମସ୍ତେ ଶ୍ରୀହରିଙ୍କୁ ସ୍ତୁତିକଲେ ମଧ୍ୟ ତାଙ୍କର କୋପ ଶାନ୍ତି ହେଲା ନାହିଁ । ଶ୍ରୀହରି ଭକ୍ତପ୍ରତି ସର୍ବଦା ପ୍ରସନ୍ନ । ତେଣୁ ବ୍ରହ୍ମାଦି ଦେବଗଣ ଲକ୍ଷ୍ମୀଙ୍କୁ ତାଙ୍କ କୋପଶାନ୍ତି ନିମିତ୍ତ ପଠାଇ ସୁଦ୍ଧା ବ୍ୟର୍ଥ ହେଲେ । ପରେ ପ୍ରହ୍ଲାଦଙ୍କୁ ପଠାଇଲେ, ଏହା ପରବର୍ତ୍ତୀ ଅଧ୍ୟାୟରେ ବର୍ଣ୍ଣିତ । ଭକ୍ତାଧୀନ ଭଗବାନ୍ ପ୍ରହ୍ଲାଦଙ୍କୁ ଦେଖିବା ମାତ୍ରେ ପ୍ରୀତ ହୋଇଥିଲେ । ଏହା ପର ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି ।



# ନ ବ ମ ଅ ଧ୍ୟା ୟ

ନବମେ ବ୍ରହ୍ମଣା ଭୀତ୍ୟା ପ୍ରେଷିତୋଽସୁରବାଳକଃ ।
କୋପଂ ପ୍ରଶମୟନ୍ନସ୍ତୌତ୍ ନୃସିଂହମତିଭୀଷଣମ୍ । ୦ । (ଶ୍ରୀଧରସ୍ୱାମୀ)

ଶ୍ରୀନାରଦ ଉବାଚ ।

ଏବଂ ସୁରାଦୟଃ ସର୍ବେ ବ୍ରହ୍ମରୁଦ୍ରପୁରଃସରାଃ ।
ନୋପୈତୁମଶକନ୍ମନ୍ୟୁସଂରମ୍ଭଂ ସୁଦୁରାସଦମ୍ । ୧ ।
ସାକ୍ଷାତ୍ ଶ୍ରୀପ୍ରେଷିତା ଦେବୈର୍ଦୃଷ୍ଟ୍ୱା ତଂ ମହଦଦ୍ଭୁତମ୍ ।
ଅଦୃଷ୍ଟାଶ୍ରୁତପୂର୍ବତ୍ୱାତ୍ ସା ନୋପେୟାୟ ଶଙ୍କିତା । ୨ ।
ପ୍ରହ୍ଲାଦଂ ପ୍ରେଷୟାମାସ ବ୍ରହ୍ମାବସ୍ଥିତମନ୍ତିକେ ।
ତାତ ପ୍ରଶମୟୋପେହି ସ୍ୱପିତ୍ରେ କୁପିତଂ ପ୍ରଭୁମ୍ । ୩ ।

---

## ପ୍ରହ୍ଲାଦର ଭଗବତ୍ ସ୍ତୁତି ।

ନବମ ଅଧ୍ୟାୟରେ ନୃସିଂହ ରୂପ ଦେଖି ବ୍ରହ୍ମା ଅତିଶୟ ଭୀତ ହୋଇ ପ୍ରହ୍ଲାଦଙ୍କୁ କହନ୍ତେ
ସେ ଭୟଙ୍କର ନୃସିଂହଙ୍କୁ ସ୍ତବଦ୍ୱାରା ସନ୍ତୁଷ୍ଟ କଲେ । ୦ ।

ନାରଦ କହିଲେ—

ବ୍ରହ୍ମା ରୁଦ୍ର ପ୍ରମୁଖ ଦେବଗଣଗ ଦୂରରେ ଥାଇ ସ୍ତବ କରୁଥିଲେ । କ୍ରୋଧ ବଶତଃ ଦୁର୍ଦ୍ଧର୍ଷ ନରସିଂହଙ୍କ ପାଖକୁ ଯିବାକୁ ସାହସ କଲେ ନାହିଁ । ୧ ।

ଶ୍ରୀ ନୃସିଂହଙ୍କର କ୍ରୋଧ ଶାନ୍ତ ନିମନ୍ତେ ବ୍ରହ୍ମାଦି ଦେବଗଣ ସ୍ୱୟଂ ଲକ୍ଷ୍ମୀଙ୍କୁ ପ୍ରେରଣ କଲେ । କିନ୍ତୁ ସେ ମଧ୍ୟ ସେହି ଅଦୃଷ୍ଟ ପୂର୍ବ ଏବଂ ଅଶ୍ରୁତ ପୂର୍ବ ଅଦ୍ଭୁତ ରୂପ ଦେଖି ଭୟରେ ତାଙ୍କ ନିକଟକୁ ଯିବାକୁ ସାହସ କଲେ ନାହିଁ । ୨ ।

ସେତେବେଳେ ବ୍ରହ୍ମା ନିକଟସ୍ଥ ପ୍ରହ୍ଲାଦଙ୍କୁ ପ୍ରେରଣ କଲେ ଏବଂ କହିଲେ ହେ ବତ୍ସ । "ତୋହର ପିତାଙ୍କ ପ୍ରତି କ୍ରୁଦ୍ଧ ନୃସିଂହ ଦେବଙ୍କ ନିକଟକୁ ଗମନ କରି ତାହାଙ୍କୁ ଶାନ୍ତ କର" । ୩ ।

---

ନୃସିଂହପାଶେ ବ୍ରହ୍ମା ଡରେ, ପଶି ନ ପାରି ପ୍ରହ୍ଲାଦରେ । କହନ୍ତି ସେସ୍ତୁ କରି ସ୍ତବ, ନବମ ଅଧ୍ୟାୟ ପ୍ରସ୍ତାବ

ଶ୍ରୀନାରଦଉବାଚ—

ବ୍ରହ୍ମାଦି ଯେତେ ଦେବଗଣେ
ନୃସିଂହ ମୂରତି ଭୀଷଣେ
କାତରେ ନାନା ସ୍ତୁତି କଲେ
ସମୀପେ ରହି ନ ପାରିଲେ । ୧ ।
ଲକ୍ଷ୍ମୀ ଅଣାଇ ଦେବଗଣେ
ବିଶ୍ୱାସି ମିଳିଲେ ଚରଣେ
ବୋଇଲେ ଯାଅ ଜଗମାତ
ଶାନ୍ତ କରାଅ ତୋର କାନ୍ତ
ଦେବଙ୍କ ବଚନେ କମଳା
ଭୟେ କେତେହେଁ ଦୂରଗଲା
ଅଦୃଷ୍ଟ ଉଗ୍ର ରୂପ ଚାହିଁ
ସନ୍ନିଧେ ନ ପାରିଲା ଯାଇ । ୨ ।
ନିକଟେ ପ୍ରହ୍ଲାଦ ଆଣି
ବିଶ୍ୱାସେ କହେ କୁଶପାଣି
ନୃସିଂହ ପାଶେ ଯାଅ ତୁହି
ସ୍ତୁତିରେ ତୋଷ କର ଯାଇ । ୩ ।

ଇତ୍ୟେତ ନାରଦେ ପ୍ରାହ ପ୍ରଜନ୍ ମହାଭାଗବତୋଽର୍ଭକଃ ।
ଉପେତ୍ୟ ଭୁବି କାୟେନ ନନାମ ବଧ୍ଧାଞ୍ଜଳିଃ । ୪ ।
ସ୍ୱପାଦମୂଲେ ପତିତଂ ତମର୍ଭକଂ ବିଲୋକ୍ୟ ଦେବଃ କୃପୟା ପରିପ୍ଲୁତଃ ।
ଉତ୍ଥାପ୍ୟ ତଚ୍ଛୀର୍ଷ୍ଣ୍ୟଦଧାତ୍ କରାମ୍ବୁଜଂ କାଲାହି ବିତ୍ରସ୍ତଧିୟାଂ କୃତାଭୟମ୍ । ୫ ।
ସ ତତ୍ କରସ୍ପର୍ଶଧୁତାଖିଳାଶୁଭଃ ସପଦ୍ୟଭିବ୍ୟକ୍ତପରାତ୍ମଦର୍ଶନଃ ।
ତତ୍ପାଦପଦ୍ମଂ ହୃଦି ନିର୍ବୃତୋ ଦଧୌ ହୃଷ୍ୟତ୍ତନୁଃ କ୍ଲିନ୍ନହୃଦଶ୍ରୁଲୋଚନମ୍ । ୬ ।
ଅସ୍ତୌଷୀଦ୍ଧରିମେକାଗ୍ରମନସା ସୁସମାହିତଃ ।
ପ୍ରେମଗଦ୍ଗଦୟା ବାଚା ତନ୍ନ୍ୟସ୍ତହୃଦୟେକ୍ଷଣଃ । ୭ ।

ହେ ରାଜନ୍ ! ମହାଭାଗବତ ଅର୍ଭକ ଅର୍ଥାତ୍ ପ୍ରହ୍ଲାଦ ବ୍ରହ୍ମାଙ୍କ ବାକ୍ୟ ସ୍ୱୀକାର କରି ଧୀରେ ଧୀରେ ତାହାଙ୍କ ନିକଟବର୍ତ୍ତୀ ହୋଇ କୃତାଞ୍ଜଳି ପୂର୍ବକ ଭୂମିରେ ନିପତିତ ହୋଇ ପ୍ରଣାମ କରିଥିଲେ ।୪।

ସେହି ବାଳକ ପ୍ରହ୍ଲାଦ ପାଦତଳେ ନିପତିତ ହୋଇଥିବାର ଦେଖି ଶ୍ରୀ ନୃସିଂହ ଦୟାର୍ଦ୍ର ହୃଦୟରେ ତାହାକୁ ଉତ୍ତୋଳନ କରିଥିଲେ ଏବଂ କାଳସର୍ପ ଭୟରେ ଉଦ୍‌ବିଗ୍ନ ଲୋକମାନଙ୍କର ଭୟ ନିବାରଣକାରୀ କରକମଳ ତାହାର ମସ୍ତକରେ ସ୍ଥାପନ କରିଥିଲେ । ୫ ।

ଶ୍ରୀ ନୃସିଂହଙ୍କର କର ସ୍ପର୍ଶରେ ପ୍ରହ୍ଲାଦର ଅମଙ୍ଗଳ ବିଦୂରିତ ହେଲା ଏବଂ ସେ ସେହି କରସ୍ପର୍ଶ ହେତୁରୁ ତତ୍ତ୍ୱଜ୍ଞାନ ଲାଭ କଲା । ତାହାର ଶରୀର ରୋମାଞ୍ଚ ହେତୁ କଣ୍ଟକିତ ହେଲା ଏବଂ ତାହାର ହୃଦୟ ପ୍ରେମାର୍ଦ୍ର ହେଲା ଏବଂ ନୟନଯୁଗଳ ଆନନ୍ଦାଶ୍ରୁରେ ପରିପୂର୍ଣ୍ଣ ହେଲା । ପ୍ରହ୍ଲାଦ ଆନନ୍ଦିତ ହୋଇ ନୃସିଂହଙ୍କର ପାଦଦ୍ୱୟ ହୃଦୟରେ ଧାରଣ କଲା । ୬ ।

ପ୍ରହ୍ଲାଦ ଶ୍ରୀହରିଙ୍କ ପ୍ରତି ଦୃଷ୍ଟି ସ୍ଥାପନ କରି ଏବଂ ସମାହିତ ଚିତ୍ତ ହୋଇ ନିବିଷ୍ଟ ଚିତ୍ତରେ ପ୍ରେମ ଗଦ୍‌ଗଦ ବାକ୍ୟରେ ଏକାଗ୍ର ମନରେ ଶ୍ରୀହରିଙ୍କୁ ସ୍ତବ କରିଥିଲେ । ୭ ।

ଭୟେ ନ ପାରୁ ଆତ୍ମ ରହି
ତକ୍ଷଣେ ଧାତା ଆଜ୍ଞା ପାଇ
ନୃସିଂହ ନିକଟେ ମିଳିଲା
କର ଅଞ୍ଜଳି ଶିରେ ଦେଲା
ଚରଣତଳେ ଶିର ଦେଇ
ନମିଲା ଦଣ୍ଡପ୍ରାୟ ହୋଇ । ୪ ।
ଦେଖି ନୃସିଂହ ଦୟା ଚିତ୍ତେ
ଆନନ୍ଦେ ଧରି ତାକୁ ହସ୍ତେ
ଭୂମିରୁ ତୋଳି ବସାଇଲେ
ହସ୍ତପଙ୍କଜ ଶିରେ ଦେଲେ
ସେ ପଦ୍ମକରର ମହିମା
କି ଗୁଣେ କରିବା ଉପମା
କାଳ ଭୁଜଙ୍ଗ ଭୟ ପାଇ
ଯେ ଜନ ଶରଣ ପଶଇ
ସେ ପଦ୍ମକର ରଖେ ତାରେ
ବେଗେ ପଶଇ ସୁଖ ଘରେ । ୫ ।
ନୃସିଂହ କର ଲାଗି ଶିରେ
ଅଶୁଭ ଗଲା ଅତି ଦୂରେ
ତକ୍ଷଣେ ଜ୍ଞାନ ପ୍ରକାଶିଲା
ଆନନ୍ଦେ ଅସୁରର ବାଳା
ନୃସିଂହଚରଣ କମଳେ
ମନ ନିବେଶି ସୁଜନ୍ମଳେ
ପ୍ରେମ ପୁଲକ ତାର ଦେହ
ଆନନ୍ଦେ ଅଶ୍ରୁଜଳ ବହ
ଏକାଗ୍ର ମନ ଦୃଢ କରି
ସେ ରୂପ ଅନ୍ତର୍ଗତେ ଭରି
ଚରଣେ ଦେଇ ବେନି ପାଣି
କଣ୍ଠ ଗଦ୍ଗଦେ କହେ ବାଣୀ
ବ୍ରହ୍ମାଦି ଦେବଙ୍କ ବିଷୟେ
ଯେତେଣେ ନୃସିଂହ ଦୟା ବହେ
ଆମ୍ଭର ନିସ୍ତାରଣ ଅର୍ଥେ
ସଂସାର ତରିବ ଯେମନ୍ତେ
ବେନି ପଚାଶ ପଦ ଶ୍ଳୋକେ
ସ୍ତୁତି କରଇ ଏକ ଏକେ ।୬, ୭।

ଶ୍ରୀପ୍ରହ୍ଲାଦ ଉବାଚ ।

**ବ୍ରହ୍ମାଦୟଃ ସୁରଗଣା ମନୟୋଽଥ ସିଦ୍ଧାଃ ସତ୍ତ୍ୱୈକତାନଗତୟୋ ବଚସାଂ ପ୍ରବାହୈଃ ।**
**ନାରାଧିତୁଂ ପୁରୁଗୁଣୈରଧୁନାପି ପିପ୍ରୁଃ କିଂ ତୋଷ୍ଟୁମର୍ହତି ସ ମେ ହରିରୁଗ୍ରଜାତେଃ ॥୮॥**
**ମନ୍ୟେ ଧନାଭିଜନରୂପତପଃଶ୍ରୁତୌଜସ୍ତେଜଃପ୍ରଭାବବଲପୌରୁଷ ବୁଦ୍ଧିଯୋଗାଃ ।**
**ନାରାଧନାୟ ହି ଭବନ୍ତି ପରସ୍ୟ ପୁଂସୋ ଭକ୍ତ୍ୟା ତୁତୋଷ ଭଗବାନ୍ ଗଜଯୂଥପାୟ ॥୯॥**
**ବିପ୍ରାଦ୍ଦ୍ୱିଷଡ୍‌ଗୁଣଯୁତାଦରବିନ୍ଦନାଭପାଦାରବିନ୍ଦବିମୁଖାତ୍ ଶ୍ୱପଚଂ ବରିଷ୍ଠମ୍ ।**
**ମନ୍ୟେ ତଦର୍ପିତମନୋ ବଚନେହିତାର୍ଥପ୍ରାଣଂ ପୁନାତି ସ କୁଳଂ ନ ତୁ ଭୂରିମାନଃ ॥୧୦॥**

ଶ୍ରୀପ୍ରହ୍ଲାଦ କହିଲେ —

ବ୍ରହ୍ମାଦି ଦେବଗଣ, ମୁନିଗଣ, ସିଦ୍ଧଗଣ ଏବଂ ଏକାଗ୍ରଚିତ୍ତ ଜ୍ଞାନୀଗଣ ଧନୀଗୁଣୀଙ୍କର ସୁକ୍ତ ବାକ୍ୟାବଳୀ ଦ୍ୱାରା ଯାହାଙ୍କର ଆରାଧନା କରିବାକୁ ଅସମର୍ଥ ଉଗ୍ର ସ୍ୱଭାବ ଅସୁର ଜାତ ମୁଁ ତାହାଙ୍କର ସ୍ତୁତି କଲେ ତାଙ୍କର କିପରି ପ୍ରୀତି ଜନ୍ମିବ । ୮ ।

ଧନ, କୁଳମର୍ଯ୍ୟାଦା, ସୌନ୍ଦର୍ଯ୍ୟ, ତପସ୍ୟା, ଶାସ୍ତ୍ରାଲୋଚନା, ଇନ୍ଦ୍ରିୟନିପୁଣତା, କାନ୍ତି, ପ୍ରତାପ, ବଳ, ଉଦ୍ୟମ, ପ୍ରଜ୍ଞା, ଅଷ୍ଟାଙ୍ଗଯୋଗ, ଏହି ଦ୍ୱାଦଶ ପ୍ରକାର ଗୁଣ କୌଣସିଥିରେ ଶ୍ରୀହରିଙ୍କର ପ୍ରୀତି ଜନ୍ମେ ନାହିଁ କାରଣ ଗଜେନ୍ଦ୍ରର ଧନମାନ କିଛିହିଁ ନ ଥିଲା । କେବଳ ଭକ୍ତିଦ୍ୱାରା ସେ ଶ୍ରୀହରିଙ୍କର ପ୍ରୀତି ଉତ୍ପାଦନ କରି ପାରିଥିଲା । ୯ ।

ପୂର୍ବ କଥିତ ଧନାଦି ଗୁଣଯୁକ୍ତ ଭଗବତ୍ ଭକ୍ତି ବିମୁଖ ବ୍ରାହ୍ମଣ ଅପେକ୍ଷା ଯେ ଶ୍ରୀହରି ଚରଣରେ ମନ, ବାକ୍ୟ, ଚେଷ୍ଟା, ପ୍ରୟୋଜନ ଓ ପ୍ରାଣ ସମର୍ପଣ କରିଅଛି ସେହି ଚଣ୍ଡାଳକୁ ମଧ୍ୟ ମୁଁ ପ୍ରଶଂସା କରେ । କାରଣ ସେ କୁଳ ପବିତ୍ର କରେ ମାତ୍ର ହରିଭକ୍ତି ବିହୀନ ବ୍ରାହ୍ମଣ ତାହା କରି ନ ପାରେ । ସେ କେବଳ ଗର୍ବହିଁ ପୋଷଣ କରେ । ୧୦ ।

ଶ୍ରୀପ୍ରହ୍ଲାଦ ଉବାଚ—

ବ୍ରହ୍ମାଦି ମୁନି ସୁରଗଣେ
ସ୍ୱଭାବ ସାତ୍ତ୍ୱିକ ଲକ୍ଷଣେ
ଅମୃତ ବଚନ ପ୍ରବାହେ
ନିର୍ମଳ ଗୁଣ ବହି ଦେହେ
ନାନା ପ୍ରକାରେ ବହୁଗୁଣେ
ଆରାଧି ନ ପାରି ଚରଣେ
ସେ ହରି କାହିଁ ମୋତେ ତୋଷ
ସ୍ୱଭାବେ ଅସୁରର ବଂଶ ।୮।
ଧାନ, ସତ୍‌କୁଳ, ଅବା ରୂପ
ପଣ୍ଡିତ-ପଣ, ତେଜ ତପ,
ବଳ, ପୌରୁଷ, ବୁଦ୍ଧି, ଯୋଗ,
ଓଜ, ବିଭୂତି, ବାର ମାର୍ଗ
ଏ ଆଦି ଯେତେ ଗୁଣ ଗ୍ରାମ
ନୁହନ୍ତି କୃଷ୍ଣ ତୋଷେ କ୍ଷମ
କେବଳ ଭକ୍ତିଯୋଗେ ତୋଷ
ଗଜେନ୍ଦ୍ରେ ହୋଇଛି ପ୍ରକାଶ । ୯ ।
ଦ୍ୱାଦଶ ଗୁଣେ ବିପ୍ର ଯୁକ୍ତ
ସେ ଯେବେ ନୁହେଁ ବିଷ୍ଣୁଭକ୍ତ
ସେ ବିପ୍ର ଅଶ୍ରେଷ୍ଠ ବୋଲାଇ
ସଂସାରୁ ତରିବ ସେ କାହିଁ ?
ଯେବେ ଦ୍ୱାଦଶ ଗୁଣ ଧରେ
ସେ ବିପ୍ର ସଂସାର ଦେବଭାବେ
ସ୍ୱଭାବେ ସତ୍ୟ, ଶମ, ଦମ
ଅହିଂସା, ତପ କ୍ଷମା-ଧର୍ମ
ଆର୍ଜ୍ଜବ, ଦାନ, ବ୍ରତ, ଧୃତି,
ଶଉଚ, ଶ୍ରୁତ, ଆଦି କୃତି
ଦ୍ୱାଦଶ ବ୍ରାହ୍ମଣ ଲକ୍ଷଣ
ବେଦେ ବର୍ଣ୍ଣିତ ଏତେ ଗୁଣ
ଏମନ୍ତ ବିପ୍ର ହୋଇ ଯେବେ
ଭକ୍ତି ନ କରେ କୃଷ୍ଣ ଭାବେ
ସେ ବିପ୍ର ଶ୍ୱପଚ ବୋଲାଇ
ସଂସାରୁ ତରିବ ସେ କାହିଁ ?
ଚଣ୍ଡାଳ ଜନ୍ମ ହୋଇ ଯେବେ
ମନ ଅର୍ପଇ କୃଷ୍ଣ ଭାବେ
ଆତ୍ମା ପବିତ୍ର ବେଗେ କରେ
ଚଣ୍ଡାଳ କୁଳକୁ ଉଦ୍ଧରେ
ବ୍ରାହ୍ମଣ ସର୍ବ ମାନ୍ୟ ହୋଇ
ଆତ୍ମା ଉଦ୍ଧରି ନ ପାରଇ । ୧୦ ।

**ନୈବାତ୍ମନଃ ପ୍ରଭୁରୟଂ ନିଜଲାଭପୂର୍ଣ୍ଣୋ ମାନଂ ଜନାଦବିଦୁଷଃ କରୁଣୋ ବୃଣୀତେ ।
ଯଦ୍ୟଜ୍ଜନୋ ଭଗବତେ ବିଦଧୀତ ମାନଂ ତଚ୍ଚାତ୍ମନେ ପ୍ରତିମୁଖସ୍ୟ ଯଥା ମୁଖଶ୍ରୀଃ ।୧୧।
ତସ୍ମାଦହଂ ବିଗତବିକ୍ଲବ ଈଶ୍ୱରସ୍ୟ ସର୍ବାତ୍ମନା ମହି ଗୃଣାମି ଯଥାମନୀଷମ୍ ।
ନୀଚୋଽଜୟା ଗୁଣବିସର୍ଗମନୁପ୍ରବିଷ୍ଟଃ ପୂୟେତ ଯେନ ହି ପୁମାନନୁବର୍ଣ୍ଣିତେନ ।୧୨।
ସର୍ବେ ହ୍ୟମୀ ବିଧିକରାସ୍ତବ ସତ୍ତ୍ୱଧାମ୍ନୋ ବ୍ରହ୍ମାଦୟୋ ବୟମିତେଶ ନ ଚୋଦ୍ୱିଜନ୍ତଃ ।
କ୍ଷେମାୟ ଭୂତୟ ଉତାତ୍ମସୁଖାୟ ଚାସ୍ୟ ବିକ୍ରୀଡିତଂ ଭଗବତୋ ରୁଚିରାବତାରୈଃ ।୧୩।**

---

ପରମେଶ୍ୱର ଅଜ୍ଞ ବ୍ୟକ୍ତି ପୂଜା ଗ୍ରହଣ କରନ୍ତି ନାହିଁ କାରଣ ସେ ସ୍ୱୟଂ ଆନନ୍ଦ ମୟ ଭାବରେ ପୂର୍ଣ୍ଣ ସେ କରୁଣାମୟ, କୃପାବଶରେ ଭକ୍ତର ପୂଜା ଗ୍ରହଣ କରିଥାନ୍ତି । ଯେଉଁ ଧନାଦିଦ୍ୱାରା ସେବକ ଭଗବାନଙ୍କର ପୂଜା କରେ ତହିଁରେ ସେବକ ନିଜେ ତୃପ୍ତି ଲାଭକରେ, ଯେପରି ତିଳକ ଧାରଣ କରି ଶୋଭା ବୃଦ୍ଧି ହେଲେ ଦର୍ପଣରେ ପ୍ରତିବିମ୍ବ ଦେଖାଯାଏ । ବାସ୍ତବରେ ଦର୍ପଣାଦିରେ ପ୍ରତିଫଳିତ ପ୍ରତିବିମ୍ବର ତିଳକାଦିର କୌଣସି ଶୋଭା ନ ଥାଏ । (ଏଠାରେ ଭଗବାନ ମୁଖ ସ୍ୱରୂପ, ତିଳକାଦି ପୂଜା ସ୍ୱରୂପ, ପ୍ରତିବିମ୍ବ ରୂପ ସେବକର ଶୋଭା ସ୍ୱରୂପ ପୂଜା ବା ପୂଜା ନିମିତ୍ତ ତୃପ୍ତି ଆସି ଉପସ୍ଥିତ ହୁଏ । ସାଧାରଣ ମନୁଷ୍ୟପରି ଧନାଦି ଲାଗି ଭଗବାନ୍ ଆଗ୍ରହାନ୍ୱିତ ନୁହନ୍ତି । ପୂଜାଦି ନ କଲେ ତାହାଙ୍କର ଆନନ୍ଦାଦିର ଅଭାବ ହୁଏ ନାହିଁ) । ୧୧ ।

(ଭକ୍ତି ଦ୍ୱାରାହିଁ ଭଗବାନ୍ ପ୍ରୀତ ହୁଅନ୍ତି ) ମୁଁ ଅତି ନୀଚ, ନିର୍ଗୁଣ ହେଲେ ମଧ୍ୟ ନିର୍ଭୀକ ଭାବରେ ମୋହର ଜ୍ଞାନାନୁସାରେ ଅତ୍ୟନ୍ତ ଯତ୍ନ ସହକାରେ ଈଶ୍ୱରଙ୍କର ମହିମା ଗାନ କରିବି, କାରଣ ଅବିଦ୍ୟା ବଶରେ ସଂସାରରେ ଜନ୍ମହୋଇ କେବଳ ହରିମହିମା କୀର୍ତ୍ତନ କଲେ ଅବିଦ୍ୟାରୁ ନିଷ୍କୃତି ଲାଭ କରି ଜୀବ ଶୁଦ୍ଧ ଓ ମୁକ୍ତ ହୁଏ । ୧୨ ।

ହେ ଈଶ ! ଭୟୋଦ୍ୱିଗ୍ନ ବ୍ରହ୍ମାଦି ଦେବଗଣ ସତ୍ତ୍ୱମୂର୍ତ୍ତି ଆପଣଙ୍କର ଭକ୍ତ । ଏମାନେ ମୋପରି ଅସୁରଗଣଙ୍କ ତୁଲ୍ୟ ଶତ୍ରୁଭାବରେ ଭକ୍ତ ନୁହନ୍ତି । ଆପଣଙ୍କ ଲୀଳାର ମନୋଜ୍ଞ ମୂର୍ତ୍ତିରେ ଆପଣ ଯେଉଁ ସମସ୍ତ କ୍ରୀଡ଼ା ସମ୍ପାଦନ କରିଥାନ୍ତି, ତଦ୍ଦ୍ୱାରା ଜଗତରେ କଲ୍ୟାଣ, ସମୃଦ୍ଧି ଏବଂ ସୁଖାନୁଭବ ହୋଇଥାଏ । ଆପଣଙ୍କର ମୂର୍ତ୍ତି କଦାପି ଭୟୋତ୍ପାଦନ କରି ନ ପାରେ । ୧୩ ।

---

ଯେ ହରି ନିଜ ଲାଭେ ପୂର୍ଣ୍ଣ
ଆତ୍ମା ପ୍ରକାଶ ନିରଞ୍ଜନ
ସେ କାହିଁ ବାଞ୍ଛିବ ସକଳେ
ଆତ୍ମାର ପୂଜା ମାନସଂକେ
ଯେଣୁ ଦୟାଳୁ ସେ ବୋଲାଇ
ଏଣୁ ଭରସା ପ୍ରାଣୀ ପାଇ
କରନ୍ତି ପୂଜା ବିଧି ଯାହା
ଆତ୍ମା ମଙ୍ଗଳ ମାତ୍ର ତାହା
ସ୍ୱଭାବେ ନିଜ ମୁଖ ବେଶ
ଯେସନେ ଦର୍ପଣେ ପ୍ରକାଶ ।୧୧।

ତେଣୁ ଭରସା ପାଇ ମୁହିଁ
ଈଶ୍ୱର ମହିମା ବର୍ଣ୍ଣଇ
ଯଦ୍ୟପି ନୀଚ ଦେହ ମୋର
ସ୍ତବନେ ନାହିଁ ଅଧିକାର
ତଥାପି ବୁଦ୍ଧି ଯେତେ ମୋର
ସ୍ତୁତି କରିବି ତୋ ଛାମୁର
ଅବିଦ୍ୟା ବଳେ ଏ ସଂସାରେ
ଏ ଜୀବ ଅଶେଷ ଶରୀରେ
କର୍ମ୍ମର ବଳେ ସଞ୍ଚରଇ
ହରି ଭଜନେ ନିସ୍ତରଇ । ୧୨।

ତୁ ସତ୍ତ୍ୱଧାମ ଦାମୋଦର
ଆମ୍ଭେ ଯେ ତୋହର କିଙ୍କର
ବ୍ରହ୍ମାଦି ଯେତେ ଦେବଗଣେ
ସେ ସର୍ବେ ତୋହର ଚରଣେ
ତୋତେ ଡରନ୍ତି ଭୟ ଚିତ୍ତେ
ପାଦେ ସେବନ୍ତି ଅବିରତେ
ଏଣୁ ସଂସାର କ୍ଷେମ ଅର୍ଥେ
ତୋ ଅବତାର ଏ ଜଗତେ ।୧୩।

**ତଦ୍ୟଚ୍ଛ ମନ୍ୟୁମସୁରଶ୍ଚ ହତସ୍ତ୍ୱୟାଦ୍ୟ ମୋଦେତ ସାଧୁରପି ବୃଶ୍ଚିକସର୍ପହତ୍ୟା ।**
**ଲୋକାଶ୍ଚ ନିର୍ବୃତିମିତାଃ ପ୍ରତିଯନ୍ତି ସର୍ବେ ରୂପଂ ନୃସିଂହ ବିଭୟାୟ ଜନାଃ ସ୍ମରନ୍ତି ।୧୪।**
**ନାହଂ ବିଭେମ୍ୟଜିତ ତେଽତିଭୟାନକାସ୍ୟଜିହ୍ୱାର୍କନେତ୍ରଭ୍ରୁକୁଟୀରଭସୋଗ୍ରଦଂଷ୍ଟ୍ରାତ୍ ।**
**ଆନ୍ତ୍ରସ୍ରଜଃକ୍ଷତଜକେଶରଶଙ୍କୁକର୍ଣ୍ଣାନ୍ନିର୍ହ୍ରାଦଭୀତଦିଗିଭାଦରିଭିନ୍ନଖାଗ୍ରାତ୍ ।୧୫।**
**ତ୍ରସ୍ତୋଽସ୍ମ୍ୟହଂ କୃପଣବତ୍ସଳ ଦୁଃସହୋଗ୍ରସଂସାରଚକ୍ରକଦନାଦ୍ ଗ୍ରସତାଂ ପ୍ରଣୀତଃ ।**
**ବଦ୍ଧଃ ସ୍ୱକର୍ମଭିରୁଶତ୍ତମ ତେଽଙ୍ଘ୍ରିମୂଳଂ ପ୍ରୀତୋଽପବର୍ଗଶରଣଂ ହ୍ୱୟସେ କଦା ନୁ ।୧୬।**

---

ତେଣୁ ହେ ନୃସିଂହ ! ଆପଣ କ୍ରୋଧ ସମ୍ବରଣ କରନ୍ତୁ । ଯାହାପାଇଁ ଆପଣଙ୍କର ଏପରି କ୍ରୋଧ ସେ ଅସୁର ଆଜି ନିହତ ହୋଇଅଛି । । ସମସ୍ତେ ପ୍ରୀତ ହୋଇ ଅଛନ୍ତି । କାରଣ ସର୍ପପକାଶ ସର୍ପ, ବୃଶ୍ଚିକ ପ୍ରଭୃତି ନିହତ ହେଲେ ସାଧୁଜନମାନେ ମଧ୍ୟ ତୁଷ୍ଟି ଲାଭ କରନ୍ତି । ଲୋକେ ଶାନ୍ତି ଲାଭ କରି ଆପଣଙ୍କର କ୍ରୋଧ ଉପଶମ ପ୍ରତୀକ୍ଷା କରୁଅଛନ୍ତି । ଆପଣ କ୍ରୋଧ ସମ୍ବରଣ କରନ୍ତୁ ଏହାହିଁ ପ୍ରାର୍ଥନା । କାରଣ ଲୋକମାନଙ୍କର ଭୟ ନିବାରଣ ନିମନ୍ତେ ଆଉ କ୍ରୋଧର ପ୍ରୟୋଜନ ନାହିଁ । ଆପଣଙ୍କର ଏହି ମୂର୍ତ୍ତି ସ୍ମରଣ କଲେ ସମସ୍ତ ଭୟ ପଳାୟନ କରେ । ୧୪ ।

ହେ ଅଜିତ ! ଆପଣଙ୍କର ଅତି ଭୟାନକ ମୁଖ, ଜିହ୍ୱା, ସୂର୍ଯ୍ୟତୁଲ୍ୟ ନେତ୍ର, ଭ୍ରୂକୁଟି ସଞ୍ଚାଳନ, ଉଗ୍ରଦନ୍ତ ପଂକ୍ତି, ନାଡ଼ିମାନ, ରକ୍ତାକ୍ତ କେଶର, ଶଙ୍କୁ ତୁଲ୍ୟ ଉନ୍ନତ କର୍ଣ୍ଣ, ଦିଗ୍ଗଜ ମାନଙ୍କର ଭୀତି ପ୍ରଦ ଗମ୍ଭୀର ନଖ, ଗର୍ଜନ, ଶତ୍ରୁ ଭେଦକାରୀ ନଖର ଅଗ୍ର ଭାଗ ଦେଖି ମୁଁ ଭୀତ ହୋଇ ନାହିଁ । ୧୫ ।

ହେ କୃପଣ ବତ୍ସଳ (ଦୀନ ନାଥ) ! ନିଜ କର୍ମ ବଶରେ ହିଂସ୍ର ସ୍ୱଭାବ ଅସୁର ଯୋନି ପ୍ରାପ୍ତ ହୋଇ ସଂସାର ଚକ୍ରର ଦୁଃସହ ଦାରୁଣ କ୍ଳେଶରେ ଅତ୍ୟନ୍ତ ଉଦ୍‌ବିଗ୍ନ ହୋଇଅଛି । ହେ ଭୁବନ ସୁନ୍ଦର ! ଆପଣ କେବେ ପ୍ରୀତ ହୋଇ ମୋତେ ମୋକ୍ଷ ସ୍ୱରୂପ ଆଶ୍ରୟ ପ୍ରଦାନକରି ଆପଣଙ୍କ ପାଦମୂଳକୁ ଆହ୍ୱାନ କରିବେ ? । ୧୬ ।

---

ଏଣୁ ଏ କୋପ ତୁ ସଂହର
ତୁ ନାଥ ଜଗତ ସୋଦର
ତୁ ଏ ଅସୁର ନାଶ କଲୁ
ସଂସାର ଭୟ ନିବାରିଲୁ
ଆନନ୍ଦ ସାଧୁଙ୍କର ମନେ
ସର୍ପ ବୃଶ୍ଚିକ ନାଶେ ଯେସନେ
ଲୋକେ ଆନନ୍ଦେ ସ୍ଥିର ମନେ
ଭଜିଲେ ତୋହର ଚରଣେ
ଏବେ ଏ ରୂପ ଭୟଙ୍କର
ଲୋକଙ୍କ ଭୟକୁ ସଂହର ।୧୪।
ଶୁଣ ହେ ପ୍ରଭୁ ଚକ୍ରଧର
ଏରୂପ ମହା ଭୟଙ୍କର

ଜିହ୍ୱା ତର୍ଜିଲ ସୌଦାମିନୀ
ଆଦିତ୍ୟ ପ୍ରାୟେ ନେତ୍ର ବେନି
ଭ୍ରୂକୁଟି କୁଟିଳ ପ୍ରଚଣ୍ଡ
ଦଂଷ୍ଟ୍ରା କରାଳ ପାଟି ତୁଣ୍ଡ
ଅସୁର ହୃଦୟ ରୁଧିରେ
ତା ଅନ୍ତ ପୁଷ୍ପମାଳ ଉରେ
କେଶର ଦଶେ ଶୋଣବର୍ଣ୍ଣ
ରୁଧିରେ ରଙ୍ଗ ବେନି କର୍ଣ୍ଣ
ତୋହର ଘୋର ନାଦ ଶୁଣି
ପ୍ରଳୟ ବଜ୍ର ପ୍ରାୟ ମଣି
ଅଇରାବତ ଆଦି ନାଗେ
ପଳାଇ ଗଲେ ଅଷ୍ଟଦିଗେ ;

ଅରି ବିଦାରି ନଖ କାନ୍ତି
ଅସୁର ରୁଧିର ପିବନ୍ତି
ଏମନ୍ତ ରୂପ ତୋର ଦେଖି
ହେ ନାଥ ! ମୋର ଭୟ ନାହିଁ ।୧୫
ତୁ ନାଥ ! ଶରଣ ବତ୍ସଳ
ଅବାୟ ଆମ୍ଭ ଆଦିମୂଳ
ତୋର ସଂସାର ଚକ୍ରେ ପଡ଼ି
ଆମ୍ଭର ନିଜ ପଥ ଛାଡ଼ି
ସେ ମାୟାଚକ୍ର ମୋତେ ଘେରି
କାଳେ ଭ୍ରମାଇ ନାନା ଯୋନି
ସ୍ୱକର୍ମେ ବନ୍ଧ ମୋ ଜୀବନ
ଏଣୁ ହରିଲି ନିଜ ଜ୍ଞାନ

ଯସ୍ମାତ୍ ପ୍ରିୟାପ୍ରିୟବିୟୋଗସଂଯୋଗଜନ୍ମଶୋକାଗ୍ନିନା ସକଳଯୋନିଷୁ ଦହ୍ୟମାନଃ ।
ଦୁଃଖୌଷଧଂ ତଦପି ଦୁଃଖମତଦ୍ଧିୟାହଂ ଭୂମନ୍ ଭ୍ରମାମି, ବଦ ମେ ତବ ଦାସଯୋଗମ୍ ।୧୭
ସୋଽହଂ ପ୍ରିୟସ୍ୟ ଦରପଃ ସୁହୃଦେବତାୟା ଲୀଳାକଥାସ୍ତବ ନୃସିଂହ ବିରିଞ୍ଚିଗୀତାଃ ।
ଅଞ୍ଜସ୍ତିତର୍ମ୍ୟନୁଗୃଣନ୍ ଗୁଣବିପ୍ରମୁକ୍ତୋ ଦୁର୍ଗାଣି ତେ ପଦଯୁଗାଳୟହଂସସଙ୍ଗଃ ।୧୮ ।

---

ଦାସ୍ୟ ଭାବହିଁ ଆପଣଙ୍କର ପ୍ରିୟ । ସୁତରାଂ କିପରି ସେ ଉପାୟ ଅବଲମ୍ବନ କରିବାକୁ ହେବ ତାହା ମୋତେ ଉପଦେଶ ଦିଅନ୍ତୁ । ପ୍ରିୟ ବିୟୋଗ ଓ ଅପ୍ରିୟ ସଂଯୋଗ ଦ୍ୱାରା ଉତ୍ପନ୍ନ ଶୋକାଗ୍ନି ଦ୍ୱାରା ଦହ୍ୟମାନ ହୋଇ ମୁଁ ନାନାଯୋନିରେ ଭ୍ରମଣ କଲି । କିନ୍ତୁ ଦୁଃଖର ପ୍ରତିକାର କିଣ ତାହା ବୁଝିଲି ନାହିଁ । ଯାହା ଦୁଃଖର ପ୍ରତିକାର ବୋଲି ଦେଖେ ତାହା ମଧ୍ୟ ଦୁଃଖମୟ । ଅତଏବ ଦେହାଦିର ଅଭିମାନରେ ମୁଗ୍‌ଧ ହୋଇଅଛି । ହେ ପ୍ରଭୋ ! ନିସ୍ତାରର ନିଦାନ ସ୍ୱରୂପ ଆପଣଙ୍କର ଦାସ-ଯୋଗ ମୋତେ ଉପଦେଶ ଦେଇ କୃତାର୍ଥ କରନ୍ତୁ । ୧୭ ।

ହେ ନୃସିଂହ ! ଆପଣଙ୍କ ପାଦପଦ୍ମ ଦ୍ୱୟ ଆଶ୍ରୟ କାରୀ, ମହାଜନୀ ଭକ୍ତ ସଙ୍ଗବଳରେ ମୁଁ ରାଗାଦି ପରିହାର କରି ପ୍ରିୟ ସୁହୃତ ଓ ପରମଦେବତା ସ୍ୱରୂପ ଆପଣଙ୍କର ମହିମାମୟୀ ଲୀଳା ପ୍ରସଙ୍ଗ କୀର୍ତ୍ତନ କରି ସମସ୍ତ ଦୁଃଖ ତୃଣ ତୁଲ୍ୟ ତୁଚ୍ଛ ମନେ କରି ଅତିକ୍ରମ କରିବି । ୧୮ । *

---

ଏବେ ତୋହର ପାଦମୂଳେ
ଶରଣ ପଶିଲି ନିଷ୍ଠୁଳେ
ତୋତେ ନ ଭଜି ନାରାୟଣ
ମୋର ଜୀବନ ଗତି ଶୂନ
ଏ ଘୋର ସଂସାର ସାଗରେ
ଜନ୍ମ ମରଣ ଅଭ୍ୟନ୍ତରେ
ସଂଯୋଗ ବିଯୋଗେ ଅଜ୍ଞାନ
ଶୋକ ଅନଳେ ଦହେ ମନ

ଏ ଦେହେ ସର୍ବ ଦୁଃଖ ବ୍ୟାଧି
ତୋହର ଚରଣ ଔଷଧି
ସେ ପାଦ ଛାଡ଼ି ମୁହିଁ ଦୂରେ
ଭ୍ରମଇ ଘୋର ଅନ୍ଧକାରେ
ଏବେ ଏମନ୍ତ ଆଜ୍ଞା କର
ଯେମନ୍ତେ ପାଦ ସେବେଁ ତୋର ୧୬।୧୭
ତୁ ନାଥ ପ୍ରାଣୀଙ୍କ ଜୀବନ
ପ୍ରିୟ ଦେବତା ବନ୍ଧୁଜନ

ତୋର ଚରିତ ଲୀଳା କଥା
ବିରିଞ୍ଚି-ସନ୍ତତେ ଗୀତା
ମୁଁ ତୋର ଲୀଳା ଗୁଣ ଗୁଣି
ତରିବି ଭବ ତରଙ୍ଗିଣୀ
ତୋ ପାଦ-ପଦ୍ମବନ ମଧ୍ୟେ
ଯେ ହଂସ ଖେଳନ୍ତି ଆନନ୍ଦେ
ତାହାଙ୍କ ସଙ୍ଗୀ ମୋତେ କର
ଏ ମାୟା ସଂସାରୁ ଉଦ୍ଧର ।୧୮।

---

* ଭଗବାନଙ୍କ ଠାରେ ଦାସ୍ୟ ପ୍ରବୃତ୍ତି ଭକ୍ତିମାର୍ଗର ପ୍ରଥମ ସୋପାନ । ଦାସ୍ୟ ପ୍ରବୃତ୍ତି ହେତୁ ଭଗବତ୍ ଅନୁଗ୍ରହରୁ ସାଧୁସଙ୍ଗ ଲାଭ ହୁଏ । ତଦ୍ୱାରା ରାଗ ନିବୃତ୍ତି ହୁଏ ଏବଂ ବୀତରାଗ ହେଲେ ଭଗବତ୍ ଗୁଣ କୀର୍ତ୍ତନ କରିବାର ଶକ୍ତି ଜନ୍ମେ । ତଦ୍ୱାରା ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ ତ୍ରିବିଧ ଦୁଃଖ ନିବୃତ୍ତି ହୁଏ ।

**ବାଲସ୍ୟ ନେହ ଶରଣଂ ପିତରୌ ନୃସିଂହ ନାର୍ତ୍ତସ୍ୟ ଚାଗଦମୁଦନ୍ୱତି ମଜ୍ଜତୋ ନୌଃ ।**
**ତପ୍ତସ୍ୟ ତତ୍ପ୍ରତିବିଧିର୍ଯ ଇହାଞ୍ଜସେଷ୍ଟସ୍ତାବଦ୍ବିଭୋ ତନୁଭୃତାଂ ତ୍ୱଦୁପେକ୍ଷିତାନାମ୍ ।୧୯**
**ଯସ୍ମିନ୍ ଯତୋ ଯର୍ହି ଯେନ ଚ ଯସ୍ୟ ଯସ୍ମାଦ୍ ଯସ୍ମୈ ଯଥା ଯଦୁତ ଯସ୍ତ୍ୱପରଃ ପରୋ ବା ।**
**ଭାବଃ କରୋତି ବିକରୋତି ପୃଥକ୍ ସ୍ୱଭାବଃ ସଞ୍ଚୋଦିତସ୍ତଦଖିଳଂ ଭବତଃ ସ୍ୱରୂପମ୍ ।୨୦।**
**ମାୟା ମନଃ ସୃଜତି କର୍ମମୟଂ ବଲୀୟଃ କାଲେନ ଚୋଦିତଗୁଣାନୁମତେନ ପୁଂସଃ ।**
**ଛନ୍ଦୋମୟଂ ଯଦଜୟାର୍ପିତ ଷୋଡଶାରଂ ସଂସାରଚକ୍ରମଜ କୋଽତିତରେତ୍ତ୍ୱଦନ୍ୟଃ ।୨୧**

ଦୁଃଖ ନିବୃତ୍ତିର ବହୁ ଉପାୟ ଥିଲେ ମଧ ଦାସ୍ୟ ବ୍ୟତୀତ ଗତି ନାହିଁ । ଦୁଃଖିତ ବ୍ୟକ୍ତିର ଦୁଃଖ ନିବୃତ୍ତି ନିମନ୍ତେ ଯେଉଁ ଉପାୟମାନ ବିଦ୍ୟମାନ ଅଛି; ତାହା ଆପଣଙ୍କର କରୁଣା ଭିନ୍ନ କିଛିହିଁ କାର୍ଯ୍ୟକାରୀ ନୁହେଁ କାରଣ ପିତା ମାତାଙ୍କ କର୍ତ୍ତୃକ ସୁରକ୍ଷିତ ବାଳକର ମଧ ମୃତ୍ୟୁ ଘଟେ । ଯଥାବିହିତ ଔଷଧ ପ୍ରୟୋଗ ସତ୍ତ୍ୱେ ରୋଗୀର ମଧ ପ୍ରାଣ ନଷ୍ଟ ହୁଏ । ସମୁଦ୍ରରେ ବୁଡ଼ିଯାଉଥିବା ବ୍ୟକ୍ତିର ପ୍ରାଣ ନୌକା ମଧ ରକ୍ଷାକରି ନ ପାରେ । ନୌକା ସହିତ ନୌଯାତ୍ରୀ ଜଳରେ ବୁଡ଼ି ପ୍ରାଣ ହରାଏ । ଅତଏବ ହେ ପ୍ରଭୋ ! ହେ ନୃସିଂହ ! ତୁମ୍ଭର କରୁଣାହିଁ ଦୁଃଖ ନିବୃତ୍ତିର ଏକମାତ୍ର ଉପାୟ । ୧୯ ।

ଯଦି କୌଣସିଠାରେ ରକ୍ଷାର ଉପାୟ ଲକ୍ଷିତ ହୁଏ ତାହା ମଧ ଆପଣଙ୍କର ବିଭୂତି । ଇହଲୋକରେ ପିତାମାତା ଏବଂ ପରଲୋକରେ ବ୍ରହ୍ମାଦିଦେବଗଣ କର୍ତ୍ତାରୂପେ ଯେ ଅଧିକରଣରେ ଯେ ନିମିତ୍ତ ଯେଉଁ କାଳରେ ଯେ ହେତୁରୁ କର୍ତ୍ତାକର୍ତ୍ତୃକ ପ୍ରେରିତ ହୋଇ ଯାହା ସମ୍ବନ୍ଧରେ,ଯାହାଠାରୁ,ଯାହାକୁ ଅର୍ପଣ କରିବା ନିମିତ୍ତ ଯେଉଁ ଇପ୍ସିତ କର୍ମ ଅନୁଷ୍ଠାନ ବା ରୂପାନ୍ତରିତ କରନ୍ତି ସେ ସମସ୍ତ ଆପଣଙ୍କର ସ୍ୱରୂପ ।୨୦

ହେ ଅଜ ! ଆପଣଙ୍କର ଅଂଶ ସ୍ୱରୂପ ଜୀବର ଈକ୍ଷଣ ରୂପ ଅନୁଗ୍ରହରେ କାଳ ପ୍ରେରିତ ଗୁଣମୟୀ ମାୟା, ପଞ୍ଚଜ୍ଞାନେନ୍ଦ୍ରିୟ, ପଞ୍ଚକର୍ମେନ୍ଦ୍ରିୟ, ମନ ଓ ପଞ୍ଚମହାଭୂତ ଏହି ଷୋଡ଼ଶ ବିକାର ବିଶିଷ୍ଟ କର୍ମମୟ, ବାସନାମୟ, ଦୁର୍ଜ୍ଜୟ ସଂସାର ଚକ୍ରାତ୍ମକ ମନଃ ପ୍ରଧାନ ଲିଙ୍ଗ ଶରୀରର ସୃଜନ କରନ୍ତି । ସେହି ମନୋମୟ ସଂସାର ଚକ୍ରର ଆବର୍ତ୍ତନର ଉପଦ୍ରବରୁ ରକ୍ଷାପାଇବାଲାଗି ତୁମ୍ଭରଚରଣ ବ୍ୟତୀତ ଅନ୍ୟ କି ଉପାୟ ଅଛି ?।୨୧

ବାଳକ ରକ୍ଷଣ ସଂସାରେ
ପିତା ମାତାହିଁ ନାହିଁ ପରେ
ଅଗାଧ ସମୁଦ୍ର ଲଙ୍ଘନେ
ପ୍ରାଣିଙ୍କି ନଉକା ଯେସନେ
ପଥ ତୃଷିତ ପ୍ରାଣୀ ଯେତେକ
ଜୀବନ ରଖେ ଜଳ ପାନେ
ବ୍ୟାଧିରେ ଆର୍ତ୍ତ ହେଲେ ଜନ
ଔଷଧ ହୁଅଇ ଶରଣ
ମାତ୍ର ତୋ ପାଦ କୃପା ବିନେ
ଏ କେହି ନୁହନ୍ତି କାରଣେ
ଏମନ୍ତ ତୋହର ଚରଣ
ଏବେ ମୁଁ ଗଲି ତୋ ଶରଣ ।୧୯।

ହେ ନାଥ ତୋର ମାୟାବଳେ
ପ୍ରକୃତି ଏ ମାୟା ଶୟଳେ
କାଳର ବଳେ ସଙ୍ଗ ହୋଇ
ଯେତେ ଯାହାକୁ ନିଯୋଜଇ
ଯେ ଫଳ ଯାର ହସ୍ତେ ଦେଇ
ଯହୁଁ ଆଣଇ ଯାର ହୋଇ
ଯେ ଯାକୁ ଯେମନ୍ତ ଭାବଇ
ଯହିଁ ଯାହାକୁ ନେଇ ଥୋଇ
ଜୀବକୁ କରେ ନାନା ଗତି
ଏମନ୍ତେ ପ୍ରଧାନ ପ୍ରକୃତି
ସେ ଜୀବ ତୋର ସଙ୍ଗେ ରହେ
ଭବେ ଭ୍ରମଇ ସର୍ବଦେହେ ।୨୦।

ସେ ଜୀବ ତୋର ଅଂଶୁ ଜାତ
ତୋହର ବଶ ଏ ଜଗତ
କାଳର ବଳେ ବଶ ହୋଇ
ଦେହ ବନ୍ଧନେ ବନ୍ଧ ଦେଖି
ସଂସାର ଚକ୍ର ଷୋଡ଼ଶରେ
କର୍ମେ ଭ୍ରମଇ ଅତି ଖରେ
ଦଶ ଇନ୍ଦ୍ରିୟ ମନ ସଙ୍ଗ
ଶବ୍ଦ ସ୍ପରଶ ରୂପ ଗନ୍ଧ
ରସେ ରସଇ ସର୍ବ କାଳେ
ଏମନ୍ତେ ଭ୍ରମେ ଇନ୍ଦ୍ରିମେଳେ
ଏମନ୍ତ ଚକ୍ରେ ମନ ବସି
କର୍ମ ବିଷୟ ରସେ ରସି

ସ ତ୍ୱଂ ହି ନିତ୍ୟବିଜିତାତ୍ମଗୁଣଃ ସ୍ୱଧାମ୍ନା କାଲୋ ବଶୀକୃତବିସୃଜ୍ୟବିସର୍ଗଶକ୍ତିଃ ।
ଚକ୍ରେ ବିସୃଷ୍ଟମଜୟେଶ୍ୱରଷୋଡ଼ଶାରେ ନିଷ୍ପୀଡ୍ୟମାନମୁପକର୍ଷ ବିଭୋ ପ୍ରପନ୍ନମ୍ ।୨୨।
ଦୃଷ୍ଟାମୟା ଦିବି ବିଭୋଽଖିଲଧିଷ୍ଣ୍ୟପାନାମାୟୁଃ ଶ୍ରିୟୋ ବିଭବ ଇଚ୍ଛତି ଯାନ୍ ଜନୋଽୟଂ ।
ଯେଽସ୍ମତ୍‌ପିତୁଃ କୁପିତହାସବିଜୃମ୍ଭିତଭ୍ରୂବିସ୍ଫୂର୍ଜିତେନ ଲୁଳିତା ସ ତୁ ତେ ନିରସ୍ତଃ ।୨୩।
ତସ୍ମାଦମୂସ୍ତନୁଭୃତା ମହମାଶିଷୋ ଜ୍ଞ ଆୟୁଃ ଶ୍ରିୟଂ ବିଭବମୈନ୍ଦ୍ରିୟମାବିରିଞ୍ଚ୍ୟାତ୍ ।
ନେଚ୍ଛାମି ତେ ବିଲୁଳିତାନୁରୁବିକ୍ରମେଣ କାଳାତ୍ମନୋପନୟ ମାଂ ନିଜଭୃତ୍ୟପାର୍ଶ୍ୱମ୍ ।୨୪।

---

ହେ ଈଶ୍ୱର ! ଆପଣ ଜ୍ଞାନ ଶକ୍ତିବଳରେ ନିତ୍ୟ, ସ୍ୱକୀୟ ବୁଦ୍ଧିଗୁଣକୁ ପରାଜିତକରି ମାୟା ପ୍ରେରକରୂପେ କାର୍ଯ୍ୟ ଓ କାରଣ ଶକ୍ତିକୁ ବଶୀଭୂତକରି ଅଛନ୍ତି । ହେ ବିଭୋ ! ଆପଣ ଦୟାପରବଶ ହୋଇ ଅବିଦ୍ୟାମୟି ଷୋଡ଼ଶ ବିକାର ବିଶିଷ୍ଟ ସଂସାର ଚକ୍ରରେ ନିପତିତ ଓ ଇକ୍ଷୁଦଣ୍ଡ ତୁଲ୍ୟ ନିଷ୍ପୀଡ଼ିତମାନ ଶରଣାଗତ ମୋତେ ନିଜ ଗୃହ ବୈକୁଣ୍ଠଧାମକୁ ଓ ଗୋଲକଧାମକୁ ନିଆଇ ଅଧିକାରୀ କରି କୃତାର୍ଥ କରନ୍ତୁ ।୨୨।

ହେ ବିଭୋ ! ଲୋକ ଯେ ଆକାଙ୍‌କ୍ଷା କରନ୍ତି ସ୍ୱର୍ଗରେ ଲୋକପାଳଗଣଙ୍କର ସମ୍ପଦ ଉନ୍ନତି ଓ ଆୟୁ ପ୍ରଭୃତି ସେ ସମସ୍ତ ମୁଁ ଦେଖି ଅଛି, ମୋର ପିତାଙ୍କର କୋପ ବା ହାସ୍ୟ ଓ ତଦ୍ଭାବ ଭ୍ରୂଭଙ୍ଗି, ତାହା ଦେଖି ଅମରଗଣ କମ୍ପିତ ହେଉଥିଲେ । ମୋର ସେହି ପିତା ଆପଣଙ୍କର ଅନୁଗ୍ରହରୂପ ନିଗ୍ରହରେ କବଳିତ ହୋଇ ଅଛନ୍ତି । ଅତଏବ ହେ ପରମେଶ୍ୱର ! ଆପଣଙ୍କର ଚରଣ ଛାୟାରେ ମୋତେ ଆଶ୍ରୟ ଦେଇ ମୋର ତ୍ରିତାପ ଜ୍ୱାଳା ଶାନ୍ତ କରନ୍ତୁ । ୨୩ ।

ହେ ପରମେଶ୍ୱର ! ଆପଣଙ୍କ କରୁଣାରୁ କିଞ୍ଚିନ୍ମାତ୍ର ମତ, ଅପର ବିବେକ ବୁଦ୍ଧି ଲାଭ କରିଥିବାରୁ ଦେହଧାରୀର ଏ ସମସ୍ତ ଭୋଗ, ସାଧାରଣ ଜୀବଠାରୁ ବିଧାତାଙ୍କ ପର୍ଯ୍ୟନ୍ତ ସମସ୍ତ ଜୀବଙ୍କର ପରମାୟୁ ଶ୍ରୀ; ଇନ୍ଦ୍ରିୟ ଭୋଗ୍ୟ ବିଭବ, ପ୍ରଖର ବିକ୍ରମ; କାଳସ୍ୱରୂପ ଆପଣଙ୍କ କର୍ତ୍ତୃକ ବିନଷ୍ଟମାନ ଅଣିମାଦି ଅଷ୍ଟୈଶ୍ୱର୍ଯ୍ୟ ପାଇବା ଲାଗି ମୁଁ ଆଦୌ ଇଚ୍ଛା କରୁ ନାହିଁ । ଆପଣ କରୁଣା କରି ଆପଣଙ୍କ ଭୃତ୍ୟମାନଙ୍କ ନିକଟରେ ମୋତେ ପହଞ୍ଚାଇ ଦିଅନ୍ତୁ । ୨୪ ।

---

ଚକ୍ରେ ଭ୍ରମଇ ଦୁଃଖ ସହି
ତୋ ବିନୁ ତାର ମୋକ୍ଷ ନାହିଁ ।୨୧
ନିତ୍ୟ ବିଜିତ ଆତ୍ମାଗୁଣ
ସ୍ୱତେଜବଳେ ନାରାୟଣ
ଏ କାଳ ଆତ୍ମା ବଶ କରି
ବିସର୍ଗ ଶକ୍ତି କି ବିସ୍ତାରି
ଯେ ସୃଷ୍ଟି କାଳଚକ୍ରେ ଥୋଇ
ସେ ଚକ୍ରେ ଜୀବକୁ ବସାଇ
ପେଡ଼ଇ ଇକ୍ଷୁଦଣ୍ଡ ପ୍ରାୟେ
ତେଣୁ ଡରଇ ମୋର କାୟେ
ଏବେ ମୁଁ ଚରଣ ଅଶ୍ରିତ
ଚକ୍ରୁ ଉଦ୍ଧର ନାଥ ମୋତେ ।୨୨

ମୁଁ ଏବେ ଦେଖିଲି ପ୍ରତ୍ୟକ୍ଷେ
ହେ ନାଥ ତୋହର ସମକ୍ଷେ
ବ୍ରହ୍ମାଣ୍ଡ ମଧ୍ୟେ ଯେତେ ଦେବା
ମନୁଷ୍ୟ କରେ ତାଙ୍କ ସେବା
ଇଚ୍ଛନ୍ତି ଅଇଶ୍ୱର୍ଯ୍ୟ ଭୋଗ
ସାନ୍ତ୍ୱିକ ସୁଯୋଗ ଉଦ୍ଭବ
ଏ ଦେବେ ମୋର ପିତା ତ୍ରାସେ
ଦଣ୍ଡେ ନ ଥିଲେ ଅବକାଶେ
ତାହାର ଭ୍ରୂ କୁଟି କୁଟିଳେ
ଭୟେ ସଶଙ୍କ ଅନ୍ତରଳେ
ତୁ ଏବେ ତାହାକୁ ନିବାରି
ରଖିଲୁ ସର୍ବ ଦେବ ଶିରୀ ।୨୩

ତେଣୁ ଯେ ପ୍ରାଣିଙ୍କ ଆଶିଷ
ଯେ ଫଳ ଏ ଭୂତ ଭବିଷ୍ୟ
ଆୟୁ ସମ୍ପଦ ଭୋଗ ଅର୍ଥ
ଇନ୍ଦ୍ରିୟ ସୁଖର ପ୍ରାପତ
ସେ ସର୍ବ ବାଞ୍ଛା ତୋର ବଳେ
କାଳ ହରଇ ଅବହେଳେ
ତେଣେ ମୋହର କାର୍ଯ୍ୟ ନାହିଁ
ତୋ ପାଦେ ରଖ ହରିରାୟି ।୨୪

**କୁତ୍ରାଶିଷଃ ଶ୍ରୁତସୁଖା ମୃଗତୃଷ୍ଣିରୂପାଃ କ୍ୱେଦଂ କଳେବରମଶେଷରୁଜାଂ ବିରୋହଃ ।**
**ନିର୍ବିଦ୍ୟତେ ନ ତୁ ଜନୋ ଯଦପୀତିବିଦ୍ୱାନ୍ କାମାନଳଂ ମଧୁଲବୈଃ ଶମୟନ୍ ଦୁରାପୈଃ ॥**
**କ୍ୱାହଂ ରଜଃପ୍ରଭବ ଈଶ ତମୋଽଧିକେଽସ୍ମିନ୍ ଜାତଃ ସୁରେତରକୁଲେ କ୍ୱ ତବାନୁକମ୍ପା ।**
**ନ ବ୍ରହ୍ମଣୋ ନ ତୁ ଭବସ୍ୟ ନ ବୈ ରମାୟା ଯନ୍ମେଽର୍ପିତଃ ଶିରସି ପଦ୍ମକରଃ ପ୍ରସାଦଃ ।୨୬**
**ନୈଷା ପରାବରମତିର୍ଭବତୋ ନନୁ ସ୍ୟାଜ୍ଜନ୍ତୋର୍ଯଥାଽଽତ୍ମସୁହୃଦୋ ଜଗତସ୍ତଥାପି ।**
**ସଂସେବୟା ସୁରତରୋରିବ ତେ ପ୍ରସାଦଃ ସେବାନୁରୂପମୁଦୟୋ ନ ପରାବରତ୍ୱମ୍ ।୨୭**

---

ମରୀଚିକା ତୁଲ୍ୟ କେବଳ ଦୃଷ୍ଟି ଓ ଶ୍ରୁତି ସୁଖକର ସ୍ୱର୍ଗୈଶ୍ୱର୍ଯ୍ୟାଦି ଭୋଗୋପକରଣରେ କି ଫଳ ? ତାହା କେବଳ ସ୍ପର୍ଦ୍ଧା, ଅସୂୟା, ରାଗ ଦ୍ୱେଷ ଓ ବିନାଶ ଇତ୍ୟାଦି ଦୁଃଖ ସମୂହର ଖଣି ସ୍ୱରୂପ । ଯଦି କେହି କହି ତହିଁରେ ସୁଦ୍ଧା ଶାରୀରିକ ସୁଖ ଅଛି, ତେବେ ସେ ସୁଖ ଭୋଗ କରିବାର ଅବସର ନାହିଁ, କାରଣ ଏ ଦେହ ନାନାବିଧ ରୋଗର ଖଣି । କଷ୍ଟଲଭ୍ୟ ମଧୁ ତୁଲ୍ୟ ସୁଖ କଣିକା ଦ୍ୱାରା ଅଭିଳାଷ ଅଗ୍ନି ପ୍ରଶମନରେ ବ୍ୟଗ୍ର ବ୍ୟକ୍ତି ଏ ସମସ୍ତ ଜାଣି ମଧ୍ୟ ନିର୍ବେଦ ପ୍ରାପ୍ତ ହୁଏ ନାହିଁ କାରଣ ସେ କାମାନଳରେ ଆହୂତି ପ୍ରଦାନ କରିବାକୁ ଅଧୀର । ତାହା ପକ୍ଷରେ ନିର୍ବେଦର ସୁଯୋଗ କାହିଁ ? । ୨୫ ।

ହେ ଈଶ ! ମୁଁ ରଜଃ ପ୍ରକୃତି ଏବଂ ତମଃ ପ୍ରଧାନ ଅସୁର କୁଳରେ ଜନ୍ମଗ୍ରହଣ କରିଅଛି । ସୁତରାଂ କାହିଁ ମୁଁ କାହିଁ ଆପଣଙ୍କର କୃପା ଯାହା ବ୍ରହ୍ମା, ଶିବ, ଲକ୍ଷ୍ମୀ ମଧ୍ୟ ଲଭି କରିବାକୁ ସମର୍ଥ ନୁହନ୍ତି; ତୁମ୍ଭର ସେହି କର ପଦ୍ମ ତୁମ୍ଭର ଅନୁଗ୍ରହ ସ୍ୱରୂପ ମୋହର ମସ୍ତକରେ ଅର୍ପିତ ହେଲା । ୨୬ ।

ଦେବତାମାନେ ଉତ୍ତମ ଅସୁରମାନେ ନୀଚ—ଏହି ବିଷମ ବୁଦ୍ଧି ସମସ୍ତଙ୍କର ହୋଇଥାଏ କିନ୍ତୁ ଆପଣ ଅସାଧାରଣ ପୁରୁଷ । ଆପଣଙ୍କଠାରେ ଏପରି ବୁଦ୍ଧି କଦାଚ ସମ୍ଭବ ନ ପାରେ, କାରଣ ଆପଣ ଜଗତର ହିତକର୍ତ୍ତା । ଯେଉଁ ବ୍ୟକ୍ତି ଆପଣଙ୍କର ସେବା କରେ ସେବାନୁସାରେ ଆପଣଙ୍କ କୃପା ଜାତ ହୁଏ, ଯେପରି ସୁରତରୁ ଅଭିଳଷିତ ଦ୍ରବ୍ୟ ପ୍ରଦାନ କରିପାରିଲେ ମଧ୍ୟ ପ୍ରାର୍ଥନା କାରୀର ପ୍ରାର୍ଥନା ଅନୁସାରେ ଫଳ ପ୍ରଦାନ କରିଥାଏ ସେହିପରି ଆପଣ ମଧ୍ୟ ସେବା ଦ୍ୱାରା ଜୀବର ଧର୍ମ ବୁଦ୍ଧି ଉତ୍ପାଦନ କରିଥାନ୍ତି । ଯେତେବେଳେ ଆପଣଙ୍କର ଦେବତା ଓ ଅସୁରଙ୍କଠାରେ ତୁଲ୍ୟ ଦୃଷ୍ଟି ସେତେବେଳେ ମୁଁ ଅସୁର ବୋଲି ମୋତେ ନିର୍ବାଣ କରିବାର କୌଣସି କାରଣ ନାହିଁ । ୨୭ ।

---

ତୋ ମାୟା ଅଶେଷ ସଂସାରେ
ସ୍ୱପ୍ନ ମୃଗତୃଷ୍ଣା ପ୍ରକାରେ
ଏ କଳେବରର ମହିମା
ଅଶେଷ ରୋଗଙ୍କର ସୀମା
ଏ ସର୍ବ ଶ୍ରୁତିମୁଖେ ଶୁଣି
ସ୍ୱର୍ଗ ପ୍ରାପ୍ତି ପରମାଣି
ଅଛଇ ତୋର ମାୟାମୋହେ
କେବେହେଁ ବିରକତ ନୋହେ
କାମ ଅନଳ ମଧୁ ଲବେ
କେମନ୍ତେ ଲଭିବା ସମ୍ଭବେ ।୨୫।

ମୋହର ଜନ୍ମ ରଜ ଗୁଣେ
ଅଧିକ ତାମସ ଲକ୍ଷଣେ
ଅସୁରକୁଳେ ଜାତ ମୁହିଁ
ତୋ ଅନୁକମ୍ପା ଅବା କାହିଁ
ହେ ନାଥ ମୋର ଶିରେ ଆଣି
ପ୍ରସନ୍ନେ ଦେଲୁ ପଦ୍ମ-ପାଣି
ତୋର ପ୍ରସନ୍ନ ପଦ୍ମନାଭ
ବ୍ରହ୍ମା ଶଙ୍କରେ ସୁଦୁର୍ଲଭ
କମଳା ତୋର ପାଦେ ଥାଇ
ସେବା ପାଇବ ତାହା କାହିଁ ? ।୨୬

ତୋର ମହିମା ଧ୍ୱବଗ୍ରାହି ।
ପର ଅପର ତୋର ନାହିଁ
ଏ ଜୀବ ପରାପର ଜାଣେ
ସଂସାର ଗତ ନ ପ୍ରମାଣେ
ଉତ୍ତମ ସେବା ତୋ ଚରଣେ
ଯେ ପ୍ରାଣୀ କରେ ଅନକ୍ଷଣେ
ସେ ପାଦ ତାକୁ ଦୟା କରେ
ପ୍ରସନ୍ନ କଳ୍ପଦ୍ରୁମ ତାରେ
ସେବାନୁରୂପେ ଫଳପାଇ
ପର ଅପର ତୋର ନାହିଁ । ୨୭ ।

ଏବଂ ଜନଂ ନିପତିତଂ ପ୍ରଭବାହିକୂପେ କାମାଭିକାମମନୁ ଯଃ ପ୍ରପତନ୍ ପ୍ରସଙ୍ଗାତ୍ ।
କୃତ୍ୱାତ୍ମସାତ୍ ସୁରର୍ଷିଣା ଭଗବାନ୍ ଗୃହୀତଃ ସୋଽହଂ କଥଂ ନୁ ବିସୃଜେ ତବ ଭୃତ୍ୟ ସେବାମ୍ ॥
ମତ୍ପ୍ରାଣରକ୍ଷଣମନନ୍ତ ପିତୁର୍ବଧଶ୍ଚ ମନ୍ୟେ ସ୍ୱଭୃତ୍ୟଋଷିବାକ୍ୟମୃତଂ ବିଧାତୁମ୍ ।
ଖଡ୍ଗଂ ପ୍ରଗୃହ୍ୟ ଯଦବୋଚଦସଦ୍‌ବିଧିତ୍ସୁସ୍ତ୍ୱାମୀଶ୍ୱରୋ ମଦପରୋଽବତୁ କଂ ହରାମି । ୨୯
ଏକସ୍ତ୍ୱମେବ ଜଗଦେତଦମୁଷ୍ୟ ଯତ୍ତ୍ୱମାଦ୍ୟନ୍ତୟୋଃ ପୃଥଗବସ୍ୟସି ମଧ୍ୟତଶ୍ଚ ।
ସୃଷ୍ଟ୍ୱା ଗୁଣବ୍ୟତିକରଂ ନିଜମାୟୟେଦଂ ନାନେବ ତୈରବସିତସ୍ତଦନୁପ୍ରବିଷ୍ଟଃ । ୩୦ ।

---

ହେ ଭଗବାନ୍ ! ଏହିପରି ସର୍ପଯୁକ୍ତ ସଂସାର କୂପରେ ଅଭିଲଷିତ ଦ୍ରବ୍ୟ ଅନୁସନ୍ଧାନ ନିମିତ୍ତ ନିପତିତ ପ୍ରାଣୀମାନଙ୍କର ଅନୁସରଣ କରି ମୁଁ ସେମାନଙ୍କର ସଙ୍ଗ ବଶତଃ ସେହି କୂପରେ ନିପତିତ ହୋଇ ଥିଲି । ଦେବର୍ଷି ନାରଦ ମୋତେ ତଦବସ୍ଥ ଦେଖି ସ୍ୱକୀୟ ଜନରୂପେ ଗ୍ରହଣ କଲେ ଏବଂ ମୋହର କର୍ଣ୍ଣରେ ହରିନାମ ମହାମନ୍ତ୍ର ପ୍ରଦାନ କଲେ । ମୁଁ କିପରି ଆପଣଙ୍କର ଭୃତ୍ୟ ସେବା ପରିତ୍ୟାଗ କରିବି । ୨୮ ।

ହେ ଅନନ୍ତ ! ନିତାନ୍ତ ଗର୍ହିତ କାର୍ଯ୍ୟରେ ପ୍ରବୃତ୍ତ ମୋର ପିତା ମୋତେ ଈଶ୍ୱରାରାଧନା ନିଯୁକ୍ତ ଦେଖି ଖଡ୍ଗୋତ୍ତୋଳନ ପୂର୍ବକ ଯେତେବେଳେ ମୋତେ କହିଲେ "ମୋ ଭିନ୍ନ ଆଉ ଈଶ୍ୱର କିଏ ଅଛି, ମୁଁ ତୋହର ଶିରଚ୍ଛେଦନ କରିବି, ତୋର ଈଶ୍ୱର ତୋତେ ରକ୍ଷା କରୁ" ସେତେବେଳେ ଆପଣ ମୋର ପ୍ରାଣ ରକ୍ଷା ଲାଗି ମୋ ବଧ ସାଧନରେ ଉଦ୍ୟତ ମୋର ପିତାଙ୍କୁ ବଧ କଲେ । ତାହା ନିଜ ଭୃତ୍ୟ ନାରଦଙ୍କର ବାକ୍ୟ ସ-ପ୍ରମାଣ କରିବା ଉଦ୍ଦେଶ୍ୟରେ ବୋଲି ମୁଁ ମନେ କଲି । ୨୯ ।

ସମଗ୍ର ଜଗତ ଆପଣଙ୍କଠାରୁ ଭିନ୍ନ ନୁହେଁ । ଆପଣ ଏ ବିଶ୍ୱର ଆଦ୍ୟରେ କାରଣରୂପେ ଏବଂ ଅନ୍ତରେ ପ୍ରଳୟାବସାନରେ ଅବଧିରୂପେ ପୃଥକ୍ ଭାବରେ ଅବସ୍ଥାନ କରନ୍ତି । ତାହାର ମଧ୍ୟାବସ୍ଥାରେ ମଧ ଆପଣ ନିଜ ମାୟାରେ ଗୁଣ ପରିଣାମାତ୍ମକ ଜଗତ ସୃଜନ କରି ସେହି ଜଗତରେ ଅନୁପ୍ରବିଷ୍ଟ ହୋଇ ସତ୍ତ୍ୱ ଗୁଣରେ ପାଳନ, ରଜୋଗୁଣରେ ସୃଷ୍ଟି ଏବଂ ତମ ଗୁଣରେ ସଂହାର କରନ୍ତି । ତେଣୁ ଆପଣ ଏକା ବିଶ୍ୱସ୍ୱରୂପ ହୋଇ, ମଧ୍ୟ ନାନାରୂପରେ ପ୍ରତୀୟମାନ ହୁଅନ୍ତି । ୩୦ ।

---

ଏମନ୍ତେ ଭବବନ୍ଧ କୂପେ
ଅତି ପୀଡ଼ିତ କାଳସର୍ପେ
ସେ କୂପେ ପଡ଼ି ସର୍ବଜନେ
କାମ କରନ୍ତି ନିତ୍ୟ ମନେ
ତାହାଙ୍କ ସଙ୍ଗେ ପଛେ ଥାଇ
ସେ କାମ କରୁଥିଲି ମୁହିଁ
ନାରଦ ମୁନି ମହାଶୟ
ସେ ମୋତେ କଲେ ଅନୁଗ୍ରହ
ଏଣୁ ସାଧୁଙ୍କ ସଙ୍ଗେ ହେବ
ତୋ ସେବା କେମନ୍ତେ ଛାଡ଼ିବ । ୨୮ ।

ଅନନ୍ତ ! ମୋ ପ୍ରାଣ ରକ୍ଷଣ
ପିତୃର ମରଣ କାରଣ
ଭକ୍ତ ବାକ୍ୟ ରକ୍ଷଣ ଅର୍ଥେ
ତୋ ଅବତାର ଏ ଜଗତେ
ମୋ ପିତା ତେଗ ଧରି ହସ୍ତେ
ପ୍ରତିଜ୍ଞା କଲା ମୋ ଅଗ୍ରତେ
ବୋଇଲା ଦେଖା ତୋ ଠାକୁର
ନୋହିଲେ ଛେଦିବି ତୋ ଶିର
ମୁହିଁ ଈଶ୍ୱର ତ୍ରିଜଗତେ
ମୋ ତୁଲେ କେବା ଅଛି ପରେ

ଏଣୁ ମୋ ବାକ୍ୟ ସତ୍ୟ କରି
ତୋ ଅବତାର ନରହରି । ୨୯ ।
ତୁ ଏ ଜଗତେ ଦେହ ଧରି
ଜନଙ୍କ ମଧ୍ୟେ ଅବତରି
ପ୍ରକାଶୁ ସ୍ଥୂଳ-ସୂକ୍ଷ୍ମରୂପେ
ନିର୍ଲେପ ରୂପେ ରହୁ ଏକେ
ତ୍ରିଗୁଣେ ସର୍ବ୍ବ ଗୁଣମୟେ
ମାୟା ପ୍ରକାଶୁ ନାନାଦେହେ
ବିହରୁ ଗୁଣମଧ୍ୟେ ପଶି
କେ କହୁ ତୋରୂପ ବିଶେଷି । ୩୦ ।

**ତ୍ୱଂ ବା ଇଦଂ ସଦସଦୀଶ ଭବାଂସ୍ତତୋଽନ୍ୟୋ ମାୟା ଯଦାତ୍ମ ପରବୁଦ୍ଧିରିୟଂ ହ୍ୟପାର୍ଥା ।**
**ଯଦ୍ ଯସ୍ୟ ଜନ୍ମ ନିଧନଂ ସ୍ଥିତିରୀକ୍ଷଣଞ୍ଚ ତଦ୍ ବୈ ତଦେବ ବସୁକାଳବଦଷ୍ଟିତର୍ୱୋଃ ।୩୧।**
**ନ୍ୟସ୍ୟେଦମାତ୍ମନି ଜଗଦ୍ ବିଲୟାମ୍ବୁମଧ୍ୟେ ଶେଷେତ୍ମନା ନିଜସୁଖାନୁଭବୋ ନିରୀହଃ ।**
**ଯୋଗେନ ମୀଲିତଦୃଗାତ୍ମନିପୀତନିଦ୍ରସ୍ତୁର୍ଯ୍ୟେ ସ୍ଥିତୋ ନ ତୁ ତମୋ ନ ଗୁଣାଂଶ୍ଚ ଯୁଙ୍କ୍ଷେ ॥**

---

ହେ ପରମେଶ୍ୱର ! ପରିଦୃଶ୍ୟମାନ, କାର୍ଯ୍ୟକାରଣାତ୍ମକ ଜଗତ୍ ଆପଣଙ୍କଠାରୁ ଭିନ୍ନ ନୁହେଁ । କିନ୍ତୁ ଏହା ଆପଣଙ୍କର ସ୍ୱରୂପ ମାତ୍ର ହେଲେହେଁ ଆପଣ ଏହି ଜଗତ୍‌ଠାରୁ ପୃଥକ୍; କାରଣ ଆପଣ ଏହି ଜଗତର ଆଦି ଓ ଅନ୍ତରେ ପୃଥକ୍ ଭାବରେ ଅବସ୍ଥାନ କରନ୍ତି । ତେଣୁ ଏହା ଆତ୍ମୀୟ; ଏହା ପର ଏ ବୁଦ୍ଧି ମିଥ୍ୟା ମାୟା ମାତ୍ର ! ଯାହାଠାରୁ ଯାହାର ଜନ୍ମ ପ୍ରକାଶ, ସ୍ଥିତି ଓ ନିଧନ ସଂଘଟିତ ହୁଏ ସେହି ଜଗତ ତାହାରହିଁ ସ୍ୱରୂପ ଯେପରି ବୀଜ କାରଣ ଓ ବୃକ୍ଷ କାର୍ଯ୍ୟ । ବୃକ୍ଷ ପୃଥିବୀମୟ ବୀଜ ଭିନ୍ନ ଅନ୍ୟ କିଛି ନୁହେଁ । ବୀଜ ମଧ୍ୟ ପୃଥିବୀର ସୂକ୍ଷ୍ମାଂଶ ଭିନ୍ନ ଅନ୍ୟ କିଛି ନୁହେଁ । ସୁତରାଂ କାର୍ଯ୍ୟ ଓ କାରଣ ବସ୍ତୁତଃ ଅଭିନ୍ନ । ଏହିପରି କାର୍ଯ୍ୟ କାରଣାତ୍ମକ ନିଖିଳ ଜଗତ୍ ପରମ କାରଣଙ୍କ ଠାରୁ ଭିନ୍ନ ନୁହେଁ । ୩୧ ।

ହେ ଭଗବାନ୍ ! ଆପଣ ପ୍ରଳୟାବସାନରେ ପୃଥକ୍ ଅବସ୍ଥା ଆଶ୍ରୟ କରି ଅବସ୍ଥାନ କରନ୍ତି । ଆପଣ ଏ ଜଗତକୁ ସ୍ୱୟଂ ଆତ୍ମା ମଧ୍ୟରେ ନିକ୍ଷେପ କରି ପ୍ରଳୟ ବାରିଧି ମଧ୍ୟରେ ଶୟନ କରିଥାନ୍ତି । ସେହି ନିଷ୍କ୍ରିୟ ଅବସ୍ଥାରେ ଆପଣଙ୍କର କେବଳ ସ୍ୱୀୟ ସୁଖ ଅନୁଭୂତ ହୋଇଥାଏ । ତମୋଗୁଣ ବୃତ୍ତି ରୂପା ଯେଉଁ ନିଦ୍ରା ଜୀବକୁ ଅଭିଭୂତ କରେ ଏ ଅନନ୍ତ ଶୟନ ତାହା ନୁହେଁ । ବାହ୍ୟ ବୃତ୍ତି ନ ଥିବାରୁ ତାହାକୁ ନିଦ୍ରା ବୋଲି ମନେ କରାଯାଏ । କିନ୍ତୁ ଯଥାର୍ଥରେ ଆପଣ ଯୋଗାଶ୍ରୟ କରି ନେତ୍ରଦ୍ୱୟ ମୁଦ୍ରିତ କରି ସ୍ୱପ୍ରକାଶ ଦ୍ୱାରା ନିଦ୍ରାକୁ ଜୟ କରି ଜାଗ୍ରତ ଅବସ୍ଥାରେ ବିଷୟ ସମୂହ ଅବଲୋକନ କରୁଥାନ୍ତି । ୩୨ ।

ଯେତେବେଳେ ଅନନ୍ତ ଶୟନରେ ଯୋଗ ନିଦ୍ରାରେ ଆପଣ ଅଭିଭୂତ ରହି ସୁଖାନୁଭବ କରୁଥାନ୍ତି ସେହି ଅବସ୍ଥାର ଶେଷରେ ଆପଣଙ୍କର ସମାଧି ଶେଷ ହେଲେ ଆପଣ ନିଜର ମାୟାଙ୍କୁ ପ୍ରଭାବରେ ପ୍ରକୃତିର ସତ୍ତ୍ୱାଦି ଗୁଣଗ୍ରାମ କାର୍ଯ୍ୟ ସମ୍ପାଦନ ନିମିତ୍ତ ପ୍ରେରଣ କରନ୍ତି । ସେତେବେଳେ ଆପଣଙ୍କର ନାଭି ଦେଶରୁ

---

ସତ୍ତ ଅସତ୍ତ ଏ ଜଗତ
ତୋ ଠାରୁଁ ନାହିଁ ଭିନ୍ନମତ
ମାୟାରେ ଆତ୍ମ ପର କରେ
ବୃଥାର୍ଥ ବୁଦ୍ଧିରେ ବିଶ୍ୱରେ
ପ୍ରକାଶ ସ୍ଥିତି ଅନ୍ତ ସୃଷ୍ଟି
ତରୁ ପଲ୍ଲବ ଯେହ୍ନେ ଅଷ୍ଟି ।୩୧।

ତୁ ଏ ଜଗତେ ଆତ୍ମାବଳେ
ଆତ୍ମାରେ ଥାଉ ଅନ୍ତକାଳେ
ସୃଷ୍ଟି ସଂହାର ମହାଜଳେ
ନାଗ-ଶୟନେ ତୁ ନିଶ୍ଚଳେ
ତୋ ନିଜ ସୁଖେ ଅନୁଭବ
ନିରୀହ ରୂପ ପଦ୍ମନାଭ

ମୁଦ୍ରିତ ଲୋଚନ ନିଶ୍ୱର
ନିଦ୍ରାକୁ ହୃଦୟେ ସଂହାର
ତୁରୀୟେ ସୁଖେ ରହୁ ତୁହି
ତ୍ରିଗୁଣେ ତୋର କାର୍ଯ୍ୟ ନାହିଁ ।୩୨।

**ତସ୍ୟୈବ ତେ ବପୁରିଦଂ ନିଜକାଲଶକ୍ତ୍ୟା ସଞ୍ଚୋଦିତପ୍ରକୃତିଧର୍ମ୍ମଣ ଆତ୍ମଗୂଢ଼ମ୍ ।**
**ଅମ୍ଭସ୍ୟନନ୍ତଶୟନାଦ୍ ବିରମତ୍ସମାଧେର୍ନାଭେରଭୂତ୍ ସ୍ୱକଣିକାବଟବନ୍ମହାବ୍ଜମ୍ ।୩୩।**
**ତତ୍ସମ୍ଭବଃ କବିରତୋଽନ୍ୟଦପଶ୍ୟମାନସ୍ତ୍ୱାଂ ବୀଜମାତ୍ମନି ତତଂ ସ ବହିର୍ବିଚିନ୍ତ୍ୟ ।**
**ନାବିନ୍ଦଦବ୍ଦଶତମପ୍ସୁ ନିମଜ୍ଜମାନୋ ଜାତେଽଙ୍କୁରେ କଥମୁ ହୋପଲଭେତ ବୀଜମ୍ ।୩୪**
**ସ ତ୍ୱାତ୍ମଯୋନିରତିବିସ୍ମିତ ଆଶ୍ରିତୋଽବ୍ଜଂ କାଲେନ ତୀବ୍ରତପସା ପରିଶୁଦ୍ଧଭାବଃ ।**
**ତ୍ୱାମାତ୍ମନୀଶ ଭୁବି ଗନ୍ଧମିବାତିସୂକ୍ଷ୍ମଂ ଭୂତେନ୍ଦ୍ରିୟାଶୟମୟେ ବିତତଂ ଦଦର୍ଶ ।୩୫।**

---

ସେହି କାରଣ ବାରିଧିର ଶେଷାଂଶରେ ଏହି ବ୍ରହ୍ମାଣ୍ଡ ସ୍ୱରୂପ ମହାପଦ୍ମ ଜାତ ହୁଏ । ସେହି ପଦ୍ମ ପୂର୍ବେ ଆପଣଙ୍କଠାରେ ଲୀନ ହୋଇଥିଲା । ଅତି କ୍ଷୁଦ୍ର ବଟ ବୀଜରୁ ଯେପରି ପ୍ରକାଣ୍ଡ ବଟ ବୃକ୍ଷ ଜନ୍ମେ ସେହିପରି ଆପଣଙ୍କ ନାଭିରୁ ଲୋକତ୍ରୟ ପ୍ରକାଶକ ଏହି ମହାପଦ୍ମ ପ୍ରକଟିତ ହୋଇଅଛି ।୩୩।

ସେହି ପଦ୍ମରୁ ଉତ୍ପନ୍ନ ବ୍ରହ୍ମା ସେହି ପଦ୍ମ ଭିନ୍ନ ଅନ୍ୟ କିଛି ଦେଖି ପାରିଲେ ନାହିଁ, ସେତେବେଳେ ସେ ଚିନ୍ତା କଲେ ଯେ ଏହି ପଦ୍ମ ବା ମୁଁ କେଉଁଠାରୁ ଉତ୍ପନ୍ନ ହେଲୁ । ଏହି ପଦ୍ମର ଉପାଦାନ ବା କାରଣ କିଏ ? ସେତେବେଳେ ସେ ଏହି ପଦ୍ମନାଡ଼ ଅବଲମ୍ବନ କରି ଶତବର୍ଷ ପର୍ଯ୍ୟନ୍ତ ସେହି କାରଣ ଜଳରେ ମଗ୍ନ ହୋଇ ରହିଲେ । କିନ୍ତୁ ତାହାର ମୂଳ କେଉଁଠାରେ ଏବଂ ତାହାର ବୀଜ କେଉଁଠାରେ ତାହା ବୁଝି ପାରିଲେ ନାହିଁ । ଏହା ଯଥାର୍ଥ କାରଣ ବୀଜରୁ ଅଙ୍କୁର ଉତ୍ପନ୍ନ ହେଲେ ବୀଜର ଯଥାର୍ଥ ସତ୍ତା ଅନୁଭବ କରାଯାଇ ନ ପାରେ । ବୀଜ ଓ ଅଙ୍କୁର ମିଶିଯାଏ । ସୁତରାଂ ବ୍ରହ୍ମା ଯେ ବିଫଳ କାମ ହେଲେ ସେଥିରେ ଅସ୍ୱାଭାବିକତା କିଛି ନାହିଁ ।୩୪।

ହେ ଈଶ ! କମଳଯୋନି ବ୍ରହ୍ମା କୌଣସି ପ୍ରକାରେ ନିଜର ଜନ୍ମ କାରଣ ବୁଝି ନ ପାରି ଅତି ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ, ସେ ସେହି ପୟୋଧିରୁ ଫେରିଆସି ପୁନଶ୍ଚ ନିଜର ଜନ୍ମସ୍ଥାନ ପଦ୍ମକୁ ଆଶ୍ରୟ କରି ଦୀର୍ଘକାଳ ବ୍ୟାପୀ କଠୋର ତପସ୍ୟା କରିଥିଲେ । ତପସ୍ୟା ପ୍ରଭାବରେ ତାହାଙ୍କର ଚିତ୍ତ ନିର୍ମଳ ହୁଅନ୍ତେ ପୃଥିବୀର ଗନ୍ଧଗୁଣ ଯେପରି ପୃଥିବୀରେ ଅବସ୍ଥାନ କରେ । ସେହିପରି ନିଜକୁ ପଞ୍ଚଭୂତ ଓ ଏକାଦଶ ଇନ୍ଦ୍ରିୟାତ୍ମକ ନିଜ ଦେହରେ ପରିବ୍ୟାପ୍ତ ଦେଖିଲେ ।୩୫।

---

ସେ ଗୁଣମୟ ତୋ ଶରୀରେ
ଚେତଇ ନିଦ୍ରା ଅଭ୍ୟନ୍ତରେ
କାଳର ବେଳେ ତୋ ନୟନେ
ଯୋଗ ସମାଧି ଅବସାନେ
ତୋ ନାଭିମଧ୍ୟୁଁ ଜଳ କଣେ
ବୀଜ ପ୍ରକାଶେ ତତକ୍ଷଣେ
ବୀଜୁଁ ଯେସନେ ବଟ ହୋଇ
ପଦ୍ମ ମୃଣାଳ ପ୍ରକାଶଇ ।୩୩।
ସେ ପଦ୍ମ ମଧ୍ୟୁଁ ବ୍ରହ୍ମା ଜାତ
ନ ଜାଣେ ଆତ୍ମାର ଉଦନ୍ତ

ତୁ ବୀଜ ଆତ୍ମା ତା ଶରୀରେ
ପ୍ରକାଶୁ ବାହ୍ୟ ଅଭ୍ୟନ୍ତରେ
ତାହା ନ ଜାଣି ବେଦମୁଖ
ବାହାରେ ଖୋଜିଲା ଅନେକ
କାହୁଁ ଅଇଲି ବୋଲି ଚିନ୍ତି
ଭୟେ ଭ୍ରମଇ ପ୍ରଜାପତି
ପୁଣି ପଶିଲା ପଦ୍ମନାଳେ
ଶତେ ବରଷ ଯୋଗବଳେ
ଅଙ୍କୁର ମାର୍ଗେ ବୀଜ ଲୋଡ଼ି
ଭ୍ରମିଲା ବହୁ ଦୁଃଖେ ପଡ଼ି

ଲକ୍ଷି ନ ପାରି ମହାଜଳେ
ପୁଣି ଉଠିଲା ପଦ୍ମନାଳେ
ଭ୍ରମଇ ପଦ୍ମନାଡ଼େ ଥାଇ
ତୋ ଅନ୍ତ ପାଇବ ସେ କାହିଁ
ତୋତେ ନ ପାଇ ପ୍ରଜାପତି
ତପ ସାଧନେ କଲା ମତି
ଅନେକ କାଳ ସାଧି ତପ
ତୋ ରୂପ ଦେଖିଲା ସମୀପ
ତୋ ରୂପ କରି ଅନୁମାନେ
ଭୂମିରୁ ଗନ୍ଧମାତ୍ରା ଯେହ୍ନେ ।୩୪,୩୫

**ଏବଂ ସହସ୍ରବଦନାଙ୍ଘ୍ରିଶିରଃ କରୋରୁନାସାଦ୍ୟ କର୍ଣ୍ଣନୟନାଭରଣାୟୁଧାଢ୍ୟମ୍ ।**
**ମାୟାମୟଂ ସଦୁପଲକ୍ଷିତସନ୍ନିବେଶଂ ଦୃଷ୍ଟ୍ୱା ମହାପୁରୁଷମାପ ମୁଦଂ ବିରିଞ୍ଚିଃ ।୩୬।**
**ତସ୍ମୈ ଭବାନ୍ ହୟଶିରସ୍ତନୁଂ ହି ବିଭ୍ରଦ୍ ବେଦଦ୍ରୁହାବତିବଲୌ ମଧୁକୈଟଭାଖ୍ୟୌ ।**
**ହତ୍ୱାନୟଚ୍ଛ୍ରୁତିଗଣାଂଶ୍ଚ ରଜସ୍ତମଶ୍ଚ ସତ୍ତ୍ୱଂ ତବ ପ୍ରିୟତମାଂ ତନୁମାମନନ୍ତି ।୩୭।**
**ଇତ୍ଥଂ ନୃତିର୍ଯ୍ୟଗୃଷିଦେବଝଷାବତାରୈର୍ଲୋକାନ୍ ବିଭାବୟସି ହଂସି ଜଗତ୍ପ୍ରତୀପାନ୍ ।**
**ଧର୍ମ୍ମଂ ମହାପୁରୁଷ ପାସି ଯୁଗାନୁବୃତ୍ତଂ ଛନ୍ନଃ କଲୌ ଯଦଭବସ୍ତ୍ରିଯୁଗୋଽଥ ସ ତ୍ୱମ୍ ।୩୮।**
**ନୈତନ୍ମନସ୍ତବ କଥାସୁ ବିକୁଣ୍ଠନାଥ ସଂପ୍ରୀୟତେ ଦୁରିତଦୁଷ୍ଟମସାଧୁ ତୀବ୍ରମ୍ ।**
**କାମାତୁରଂ ହର୍ଷଶୋକଭୟୈଷଣାର୍ତ୍ତଂ ତସ୍ମିନ୍ କଥଂ ତବ ଗତିଂ ବିମୃଶାମି ଦୀନଃ ।୩୯।**

---

ଉପଯୁକ୍ତ ଆଭରଣ ଏବଂ ଯଥାଯୋଗ୍ୟ ଅସ୍ତ୍ରଯୁକ୍ତ ସହସ୍ର ବଦନ ଚରଣ ମସ୍ତକ, ହସ୍ତ, ଉରୁ, ନାସା ଉଦର, କର୍ଣ୍ଣ ଓ ନୟନଯୁଗଳ ସଂଯୁକ୍ତ ନିଜର ବିରାଟ ମୂର୍ତ୍ତି ଏବଂ ପାତାଳ ପର୍ଯ୍ୟନ୍ତ ସେହି ମୂର୍ତ୍ତିର ପାଦ ସନ୍ନିବେଶ ବ୍ରହ୍ମା ଆପଣାର ଏପରି ମାୟାମୟ ମହାପୁରୁଷ ମୂର୍ତ୍ତି ଦର୍ଶନ କରି ଆନନ୍ଦ ଅନୁଭବ କରିଥିଲେ ।୩୬

ହେ ଦେବ ! ଆପଣ ହୟଗ୍ରୀବ ମୂର୍ତ୍ତି ଧାରଣକରି ରଜ ଓ ତମପ୍ରଧାନ ବଳଦୃପ୍ତ ବେଦବିଦ୍ୱେଷ୍ଟା ମଧୁ ଓ କୈଟଭ ନାମକ ଦୈତ୍ୟଦ୍ୱୟଙ୍କୁ ବଧକରି ସେମାନଙ୍କ କର୍ତ୍ତୃକ ଅପହୃତ ଶ୍ରୁତି ସମୂହ ଉଦ୍ଧାରକରି ବ୍ରହ୍ମାଙ୍କୁ ସମର୍ପଣକରିଥିଲେ କାରଣ ସତ୍ତ୍ୱ ମୂର୍ତ୍ତିହିଁ ଆପଣଙ୍କର ପ୍ରିୟତମ ମୂର୍ତ୍ତି । ଏହା ଋଷିମାନେ କୀର୍ତ୍ତନ କରିଥାନ୍ତି ।୩୭

ହେ ମହାପୁରୁଷ ! ଏପରି ନର, ତିର୍ଯ୍ୟକ୍, ଋଷି, ଦେବ ଓ ମତ୍ସ୍ୟାବତାର ପରିଗ୍ରହ କରି ଲୋକ ସମୂହଙ୍କୁ ରକ୍ଷାକରି ଏବଂ ଜଗତରେ ପ୍ରତିକୂଳାଚାରୀ ଅସୁରମାନଙ୍କୁ ବଧ କର । ତୁମ୍ଭେ ତ୍ରିଯୁଗରେ ଯୁଗଧର୍ମ ପ୍ରତିପାଳନ କର ବୋଲି ତ୍ରିଯୁଗ ନାମରେ ପ୍ରସିଦ୍ଧ । କଳି କାଳରେ ତୁମ୍ଭେ ପ୍ରଚ୍ଛନ୍ନ ବୋଲି ତୁମ୍ଭର ତ୍ରିଯୁଗ ନାମ ସାର୍ଥକ ହୋଇଅଛି ।୩୮ ।

ହେ କୁଣ୍ଠାପ୍ରାପ୍ତ ମାନବର କୁଣ୍ଠା ନିବର୍ତ୍ତକ ! ହର୍ଷ, ଶୋକ, ଭୟ ପୀଡ଼ିତ, ପାତକାଦୁଷ୍ଟ, ତୀବ୍ର, ଅସାଧୁ ମୋର ମନ ତୁମ୍ଭକଥାରେ ପ୍ରୀତନୁହେଁ । ଏପରିଅସାଧୁ ମନରେ ମୁଁ କିପରି ତୁମ୍ଭର ତତ୍ତ୍ୱ ବିଚାରକରିବି ?।୩୯

---

ସହସ୍ର ବଦନ ନୟନ
ସହସ୍ର ଶିର ନାସା କର୍ଣ୍ଣ
ସହସ୍ର ଉର ହସ୍ତ ପାଦ
ସହସ୍ର ଭୁଜେ ଶସ୍ତ୍ରାୟୁଧ
ସେ ମାୟାମୟ ରୂପ ସୁଖେ
ବିଧାତା ଦେଖିଲ ସମ୍ମୁଖେ ।୩୬।
ତୋହର ଦେଖି ଦିବ୍ୟ ବେଶ
ବିଧାତା ଲଭିଲ ହରଷ
ବ୍ରହ୍ମାର ଅର୍ଥେ ପଦ୍ମନାଭ
ରୂପ ପ୍ରକାଶି ହୟଗ୍ରୀବ
ବିଷ୍ଣୁର ଯୋଗନିଦ୍ରା କାଳେ
ଶ୍ରବଣ-ମଳ ପଡ଼ି ତଳେ

ରଜ ତାମସ ଗୁଣେ ଜାତ
ମଧୁକୈଟଭ ବେନି ଦୈତ୍ୟ
ଦେବ ହେଳନ ମହାଘୋର
ତେଜ ପ୍ରଚଣ୍ଡ ଭୟଙ୍କର
ତାହାଙ୍କୁ ମାରି ଶ୍ରୁତିଗଣେ
ବ୍ରହ୍ମାଙ୍କୁ କଲୁ ସମର୍ପଣେ ।୩୭।
ଏହି ପ୍ରକାରେ ନରହରି
ନୃପଶୁ ଋଷିରୂପ ଧରି
ଦେବତା ଜଳଜନ୍ତୁ ରୂପେ
ତୋ ଅବତାର ମହୀକଳେ
ଦୁଷ୍ଟ ନିବାରି ସନ୍ତ ପାଳୁ
ତୁ ନାଥ ପରମ ଦୟାଳୁ

ଯୁଗାନୁଧର୍ମେ ପାଳୁ ନାଥ
କଳିରେ ନୋହୁ ତୁ ବେକତ
ଏ ଯୁଗେ ଛନ୍ନ ରୂପ ହୋଇ
ଏଣୁ ତ୍ରିଗୁଣ ତୁ ବୋଲାଇ ।୩୮।
ନିରତେ ମାୟାଜଡ଼େ ଛନ୍ନ
ପାପ ସଂକଳେ ଦୁଷ୍ଟ ମନ
ଏଣୁ ତୋ କଥାମୃତେ ରତି
ନ କରିପାରେ ଦୃଢ଼ ମତି
କାମ ସଂକଳେ ମୁଁ ଆତୁର
କାହୁଁ ଜାଣିବି ଗତି ତୋର ।୩୯।

**ଜିହ୍ୱୈକତୋଽଚ୍ୟୁତ ବିକର୍ଷତି ମାବିତୃପ୍ତା ଶିଶ୍ନୋଽନ୍ୟତସ୍ତ୍ୱଗୁଦରଂ ଶ୍ରବଣଂ କୁତଶ୍ଚିତ୍ ।**
**ଘ୍ରାଣୋଽନ୍ୟତଶ୍ଚପଲଦୃକ୍ କ୍ୱ ଚ କର୍ମଶକ୍ତିର୍ବହ୍ୱ୍ୟଃ ସପତ୍ନ୍ୟ ଇବ ଗେହପତିଂ ଲୁନନ୍ତି ।୪୦।**
**ଏବଂ ସ୍ୱକର୍ମପତିତଂ ଭବ ବୈତରଣ୍ୟାମନ୍ୟୋନ୍ୟଜନ୍ମମରଣାଶନଭୀତଭୀତମ୍ ।**
**ପଶ୍ୟନ୍ ଜନଂ ସ୍ୱପରବିଗ୍ରହବୈରମୈତ୍ରଂ ହନ୍ତେତି ପାରଚର ପୀପୃହି ମୂଢ଼ମଦ୍ୟ ।୪୧।**

---

ହେ ଅଚ୍ୟୁତ ! ମୋର ଅବିତୃପ୍ତ ଜିହ୍ୱା ମଧୁରାଦି ରସ ପ୍ରତି, ଶିଶ୍ନ କାମିନୀ ପ୍ରତି, ଚର୍ମ—ସ୍ରକ୍ ଚନ୍ଦନାଦି ପ୍ରତି, ଉଦର ଭୋଜନାଦି ପ୍ରତି, ଶ୍ରବଣ ଗୀତାଦି ପ୍ରତି, ନାସିକା ସୁଗନ୍ଧ ଦ୍ରବ୍ୟ ପ୍ରତି ଚଞ୍ଚଳ ନେତ୍ର ଦୃଶ୍ୟ ରୂପ ପ୍ରତି ଏବଂ ଅନ୍ୟାନ୍ୟ କର୍ମେନ୍ଦ୍ରିୟମାନ ନିଜ ନିଜ ବ୍ୟାପାର ପ୍ରତି ଆକୃଷ୍ଟ ହେଉଅଛି । ବହୁ ପତ୍ନୀଯୁକ୍ତ ସ୍ୱାମୀକୁ ଯେପରି ସପତ୍ନୀମାନେ ନିଜ ନିଜର ଗୃହକୁ ନେବାକୁ ଟାଣନ୍ତି ସେହିପରି ପ୍ରତ୍ୟେକ ଇନ୍ଦ୍ରିୟ ମୋତେ ନିଜ ନିଜର ଭୋଗ୍ୟବସ୍ତୁ ପ୍ରତି ଆକର୍ଷଣ କରୁଥିବାରୁ ଆପଣଙ୍କ ସେବା ପ୍ରତି ମୋର ମନ ଆକୃଷ୍ଟ ହେଉ ନାହିଁ । ୪୦ ।

ସଂସାରର ସମସ୍ତ ଲୋକ ମୋପରି କ୍ଳେଶ ଭୋଗ କରନ୍ତି । ତେଣୁ ସେମାନଙ୍କୁ ଆପଣ ଉଦ୍ଧାର କରନ୍ତୁ । ( ଏହି ପ୍ରାର୍ଥନା କରି ପ୍ରହ୍ଲାଦ କହୁଅଛନ୍ତି ) । ସଂସାର ଯମ ଦ୍ୱାରରେ ଅବସ୍ଥିତ । ଏହା ମୂତ୍ର, ଶୋଣିତ ପୂର୍ଣ୍ଣ । ତପ୍ତ ବୈତରଣୀ ନଦୀରେ ପତିତ । ପରସ୍ପରର ଜନ୍ମ ମରଣରେ ଏବଂ ଆହାରରେ ଅତି ଭୀତ । ଏବ୍ୟକ୍ତି ଶତ୍ରୁ, ଏବ୍ୟକ୍ତି ମିତ୍ର ଏପରି ଭ୍ରାନ୍ତିଜନିତ ମୂଢ଼ ଲୋକଙ୍କୁ ଦେଖି ଆପଣ ପାପରେ ପରପାରରେ ସ୍ଥିତ ଓ ପାପରେ ନିତ୍ୟଯୁକ୍ତ ବ୍ୟକ୍ତି ପ୍ରତି କୃପା ପ୍ରଦର୍ଶନ କରି ସେମାନଙ୍କୁ ଉଦ୍ଧାର କରନ୍ତୁ ।୪୧।

---

ଏ ଦେହ ଇନ୍ଦ୍ରିୟଙ୍କ ଗୁଣ
ହେ ନାଥ ! ସାବଧାନେ ଶୁଣ
ଆତ୍ମା ନ ରହି ହୃଦ ଗତେ
ଚଳଇ ଇନ୍ଦ୍ରିୟ ଆୟତ୍ତେ
କ୍ଷୁଧା ଲାଗିଲେ ଜିହ୍ୱା ଧରେ
ତୃଷିତେ ତୃଷ୍ଣା ଜଳକରେ
ଉପସ୍ଥ ଧରେ କାମଭୋଗେ
ଗୁହ୍ୟ ଧରଇ ମଳୋତ୍ସର୍ଗେ
ଚର୍ମ ଧରଇ ଶୀତ ଘର୍ମେ
ଉଦର ଧରେ ଭକ୍ଷ କର୍ମେ
ଶ୍ରବଣ ଶବ୍ଦ ଅର୍ଥେ ଧରେ
ଗନ୍ଧାର୍ଥେ ନାସିକା ବରେ
ରୂପ ସଂଯୋଗେ ଦୃଷ୍ଟି ରହେ
ବଳ ବିକ୍ରମ ଶକ୍ତି ବହେ
ଏମନ୍ତେ ଇନ୍ଦ୍ରିୟଗଣ ବଳେ
ପ୍ରାଣୀ ନାଶନ୍ତି ଅବହେଳେ
ବହୁତ ସପତ୍ନୀ ଘରେ
ଗୃହସ୍ଥ ରମେ ନିରନ୍ତରେ
ସେ ଯେହ୍ନେ ପତ୍ନୀଙ୍କ ଆୟତ୍ତେ
ନିରତେ ରମେ ଯେଝା ମତେ
ସେ ନାରୀଗଣେ ତାର ଚିତ୍ତ
କରନ୍ତି ଆପଣା ଆୟତ୍ତ
ଯେ ଯାହାମତେ ସୁଖ ଚାହାନ୍ତି
ସ୍ୱାମୀ ଜୀବନ ସେ ହରନ୍ତି । ୪୦ ।
ଏମନ୍ତେ କର୍ମପାଶ ବଳେ
ବଇତରଣୀ ଭବଜଳେ
ଜନ୍ମ-ମରଣ ପ୍ରାଣୀ ବହେ
ଅନ୍ୟୋନ୍ୟ ଘଟଣ ବିଗ୍ରହେ
ସ୍ୱ-ପର ଭେଦେ ପଥ ଦୁଇ
ଯାତନା ମଧ୍ୟେ ଛନ୍ତି ପଡ଼ି
ତାହାଙ୍କ ମଧ୍ୟ ମୁହିଁ ଥାଇ
ଆତ୍ମାର ଗତି ନ ଜାଣଇ
ତୋ ପାଦେ ପଶିଲି ଶରଣ
ମୋତେ ଉଦ୍ଧର ନାରାୟଣ ।୪୧।

କୋନ୍ୱତ୍ର ତେଽଖିଲଗୁରୋ ଭଗବନ୍ ପ୍ରୟାସ ଉତ୍ତାରଣେଽସ୍ୟ ଭବସମ୍ଭବଲୋପହେତୋଃ ।
ମୂଢ଼େଷୁ ବୈ ମହଦନୁଗ୍ରହ ଆର୍ତ୍ତବନ୍ଧୋ କିଂ ତେନ ତେ ପ୍ରିୟଜନାନନୁସେବତାଂ ନଃ ।୪୨
ନୈବୋଦ୍‌ବିଜେ ପରଦୁରତ୍ୟୟ ବୈତରଣ୍ୟାସ୍ତ୍ୱଦ୍‌ବୀର୍ଯ୍ୟଗାୟନମହାମୃତମଗ୍ନଚିତ୍ତଃ ।
ଶୋଚେ ତତୋ ବିମୁଖଚେତସ ଇନ୍ଦ୍ରିୟାର୍ଥମାୟାସୁଖାୟ ଭରମୁଦ୍‌ବହତୋ ବିମୂଢ଼ାନ୍ ।୪୩
ପ୍ରାୟେଣ ଦେବ ମୁନୟଃ ସ୍ୱବିମୁକ୍ତିକାମା ମୌନଂ ଚରନ୍ତି ବିଜନେ ନ ପରାର୍ଥନିଷ୍ଠାଃ ।
ନୈତାନ୍ ବିହାୟ କୃପଣାନ୍ ବିମୁମୁକ୍ଷ ଏକୋ ନାନ୍ୟଂ ତ୍ୱଦସ୍ୟ ଶରଣଂ ଭ୍ରମତୋଽନୁପଶ୍ୟେ
। ୪୪ ।

( ଆପଣ କହିବେ ମୁଁ ଏକାକୀ କିପରି ଉଦ୍ଧାର କରିବି, ତେଣୁ ମୁଁ କହୁଅଛି । ) ହେ ଅଖିଳ ଗୁରୋ ! ହେ ଭଗବାନ୍ ! ଅଖିଳ ବ୍ରହ୍ମାଣ୍ଡର ସମସ୍ତ ଲୋକଙ୍କୁ ଉଦ୍ଧାର କରିବାକୁ ଆପଣଙ୍କର କିଛିମାତ୍ର ପ୍ରୟାସ ହେବ ନାହିଁ, କାରଣ ଆପଣ ଏକାକୀ ଏହି ବିଶ୍ୱର ସୃଷ୍ଟି ସ୍ଥିତି ଓ ସଂହାର କରନ୍ତି । ହେ ଆର୍ତ୍ତ ବନ୍ଧୋ ! ମୂଢଜନ ପ୍ରତି ମଧ୍ୟ ଆପଣଙ୍କର ମହା ଅନୁଗ୍ରହ ଅଛି । ଆପଣଙ୍କର ଭକ୍ତମାନଙ୍କର ସେବା କରି ଥିବାରୁ ସେହି ସେବା ପ୍ରଭାବରେ ମୋ ପରି ମୂଢଜନ ପରିତ୍ରାଣ ପାଇବ ଏଥିରେ ସନ୍ଦେହ ନାହିଁ । ୪୨ ।

ହେ ସର୍ବଶ୍ରେଷ୍ଠ ! ଦୁସ୍ତର ଭବ ବୈତରଣୀ ଲାଗି ମୁଁ ଭୀତ ନୁହେଁ, କାରଣ ମୁଁ ଆପଣଙ୍କର ମହାମୃତ ମୟ ମହିମା କୀର୍ତ୍ତନ କରିବାରେ ଚିତ୍ତ ସମର୍ପଣ କରି ଅଛି । କିନ୍ତୁ ଯେଉଁମାନେ ବୃଥା ଇନ୍ଦ୍ରିୟ ଅଭିଳାଷ ଲାଗି ସ୍ତ୍ରୀ ପୁତ୍ରାଦିଙ୍କର ଭାର ବହନ କରିଅଛନ୍ତି ଅଥଚ ଆପଣଙ୍କର ନାମ କୀର୍ତ୍ତନରେ ବିମୁଖ ସେହି ମୂଢ ଜନମାନଙ୍କର କି ଗତି ହେବ ? ସେଥିପାଇଁ ମୁଁ ଶୋକ କରୁଅଛି । ୪୩ ।

ମୁନିମାନେ ପ୍ରାୟ ନିଜର ମୁକ୍ତି କାମନାରେ ନିର୍ଜ୍ଜନ ବନମଧ୍ୟରେ ମୌନାବଲମ୍ବନ କରି ସାଧନ କରନ୍ତି । କିନ୍ତୁ ହେ ଦେବ ! ସେମାନେ ପରପାଇଁ ଚିନ୍ତା କରନ୍ତି ନାହିଁ । ପୂର୍ବୋକ୍ତ ଦୀନ ହୀନ ସାଧନ ବିହୀନ ଲୋକମାନଙ୍କୁ ଛାଡ଼ି ମୁଁ ମୁକ୍ତି ପାଇବାକୁ ଇଚ୍ଛା କରେ ନାହିଁ । ହେ ଦୀନବନ୍ଧୋ ! ଏହି ଦୀନ ମାନଙ୍କର ଆପଣ ଏକମାତ୍ର ଆଶ୍ରୟ ଦାତା । ଆପଣଙ୍କ ଭିନ୍ନ ଅନ୍ୟ ରକ୍ଷକ ମୁଁ ଖୋଜି ପାଉ ନାହିଁ । ଆପଣ ସେମାନଙ୍କୁ ରକ୍ଷା କରନ୍ତୁ । ୪୪ ।

ଦୁଃଖି-ଜନଙ୍କ ଦୁଃଖ ହରେ
ତୋ ସମେ ନାହିଁ ନା ସଂସାରେ
ସଂସାର ଉତ୍ପତ୍ତି ପାଳନ
ଇଷିତେ କରୁ ସଂହରଣ
ମୂଢପ୍ରାଣିଙ୍କି ତୋର ଦୟା
କେ ଜାଣିପାରେ ତୋର ମାୟା
ଆରତ ଜନ ବନ୍ଧୁ ହୋଇ
କରୁଣା-ସିନ୍ଧୁ ନାମ ବହି
ତୋ ଭୃତ୍ୟ ସେବକଙ୍କ ଚାରଣେ
ଛୁ ନାଥ ଥାଉ ଅନୁକ୍ଷଣେ ।୪୨।

ତୋର ମହିମା ଗୁଣ ଗୁଣି
କଣ୍ଟକ ଚିତ୍ତେ ପରମାଣି
ଏଣୁ ମୋହର ଭୟ ନାହିଁ
ବଇତରଣୀ ମଧ୍ୟେ ଥାଇ
ତୋତେ ବିମୁଖ ଯେତେ ଜନ
ସେ ଜଳେ ସେ ପ୍ରାଣୀ ନିମଗ୍ନ
କୁଟୁମ୍ବ ଭରଣ ନିମନ୍ତେ
ଭାର ବହଇ ଅବିରତେ
ଇନ୍ଦ୍ରିୟ-ସୁଖେ ସ୍ନେହ ଦୀନ
କୁଟୁମ୍ବ-ସ୍ନେହେ ପରାଧୀନ ।୪୩।

ଏ ଯେ ସକଳେ ମୁନିଜନେ
ନିର୍ମ୍ମଳ କଣ୍ଟକ ଚେତନେ
ମାୟା କଳନା ଦୂର କରି
ମଉନ ବ୍ରତେ ବନେ ଚରି
ବିଜନେ ରହନ୍ତି ନିରତେ
ଜପନ୍ତି ନିଜ ମୁକ୍ତି ଅର୍ଥେ
ତାହାଙ୍କ ଚିନ୍ତା କାହିଁ ଏଣେ
ଯେବା ଭିଜନ୍ତି ଭବ-ବନେ
ଭବେ ଭ୍ରମନ୍ତା ପ୍ରାଣିଙ୍କର
ତୋ ବିନୁ ରକ୍ଷା କେ ଅପର।୪୪।

**ଯନ୍ମୈଥୁନାଦି ଗୃହମେଧିସୁଖଂ ହି ତୁଚ୍ଛଂ କଣ୍ଡୂୟନେନ କରୟୋରିବ ଦୁଃଖଦୁଃଖମ୍ ।**
**ତୃପ୍ୟନ୍ତି ନେହ କୃପଣା ବହୁଦୁଃଖଭାଜଃ କଣ୍ଡୂତିବନ୍ମନସିଜଂ ବିଷହେତ ଧୀରଃ । ୪୫ ।**
**ମୌନବ୍ରତଶ୍ରୁତତପୋଽଧ୍ୟୟନ ସ୍ୱଧର୍ମବ୍ୟାଖ୍ୟାରହୋ ଜପସମାଧୟ ଆପବର୍ଗ୍ୟାଃ ।**
**ପ୍ରାୟଃ ପରଂ ପୁରୁଷ ତେ ତ୍ୱଜିତେନ୍ଦ୍ରିୟାଣାଂ ବାର୍ତ୍ତା ଭବନ୍ତ୍ୟୁତ ନ ବାତ୍ର ଦାମ୍ଭିକାନାମ୍ ।୪୬**
**ରୂପେ ଇମେ ସଦସତୀ ତବ ବେଦସୃଷ୍ଟେ ବୀଜାଙ୍କୁରାବିବ ନ ଚାନ୍ୟଦରୂପକସ୍ୟ ।**
**ଯୁକ୍ତାଃ ସମକ୍ଷମୁଭୟତ୍ର ବିଚକ୍ଷତେ ତ୍ୱାଂ ଯୋଗେନ ବହ୍ନିମିବ ଦାରୁଷୁ ନାନ୍ୟତଃ ସ୍ୟାତ୍ । ୪୭ ।**

---

ସ୍ତ୍ରୀ ସମ୍ଭୋଗାଦି ଜନିତ ସୁଖ ଅତି ତୁଚ୍ଛ । ଯେପରି ଗାତ୍ରକଣ୍ଡୂୟନ ହେଲେ ନଖଦ୍ୱାରା କଣ୍ଡୂ ନିବାରଣ ଆପାତ ସୁଖକର ହୁଏ କିନ୍ତୁ ପରେ ଅତ୍ୟନ୍ତ ଦୁଃଖପ୍ରଦ ହୋଇଥାଏ ସେହିପରି ଗୃହମେଧି ଜନମାନେ ବହୁ ଦୁଃଖର ଆଧାର ମୈଥୁନାଦିରେ କୌଣସି ପ୍ରକାର ତୃପ୍ତି ସୁଖ ଅନୁଭବ କରନ୍ତି ନାହିଁ । ତେଣୁ ବିବେକୀମାନେ କଣ୍ଡୂ ଯନ୍ତ୍ରଣା ତୁଲ୍ୟ କାମବେଦନା ସହ୍ୟ କରନ୍ତି । କାମକୁ ପ୍ରଶ୍ରୟ ଦେଇ ପରିଣାମରେ ଦୁଃଖ ଅର୍ଜ୍ଜନ କରନ୍ତି । ୪୫ ।

ହେ ସର୍ବାନ୍ତର୍ଯ୍ୟାମୀ ! ତୁଷ୍ଣୀଭବ, ଚାନ୍ଦ୍ରାୟଣାଦି ବ୍ରତ, ଶାସ୍ତ୍ର ଶ୍ରବଣ, ତପସ୍ୟା, ଅଧ୍ୟୟନ, ସ୍ୱଧର୍ମାଚରଣ, ଶାସ୍ତ୍ର ବ୍ୟାଖ୍ୟା, ନିର୍ଜ୍ଜନବାସ, ଯପ, ସମାଧି ଏହି ଦଶପ୍ରକାର ଅପବର୍ଗର ହେତୁ ଶାସ୍ତ୍ରରେ ନିର୍ଦ୍ଦିଷ୍ଟ ହୋଇଅଛି । ଅଜିତେନ୍ଦ୍ରିୟ ପୁରୁଷମାନେ ଏହି ଶାସ୍ତ୍ର ନିର୍ଦ୍ଦିଷ୍ଟ କର୍ମ ସମୂହକୁ ଜୀବିକା ସ୍ୱରୂପ କରିଥାନ୍ତି । ପୁଣି ଦାମ୍ଭିକମାନେ ଏହି ବିଷୟମାନଙ୍କୁ ଅନୁଷ୍ଠାନ କରିବାରୁ ସେମାନଙ୍କ ଭାଗ୍ୟରେ ଜୀବିକା ନିର୍ବାହ ମଧ୍ୟ କଠିନ ହୋଇଥାଏ । ୪୬ ।

ବୀଜ ଓ ଅଙ୍କୁର ତୁଲ୍ୟ ପ୍ରବାହାପନ୍ନ କାର୍ଯ୍ୟ ଓ କାରଣ ଆପଣଙ୍କରହିଁ ରୂପ । ଏହା ବେଦରେ କଳ୍ପିତ ହୋଇଅଛି । ଏତଦ୍ଭିନ୍ନ ଆପଣଙ୍କର ଅନ୍ୟରୂପ ନାହିଁ କାରଣ ଆପଣ ପ୍ରାକୃତରୂପ ବର୍ଜ୍ଜିତ ଅର୍ଥାତ୍ ବ୍ୟଷ୍ଟି ଓ ସମଷ୍ଟି ରୂପ ଏହି ବିଶ୍ୱ ଆପଣଙ୍କଠାରୁ ପୃଥକ୍ ନୁହେଁ । କାଷ୍ଠ ଘର୍ଷଣରେ ଯେପରି ଅଗ୍ନି ଜାତ ହୁଏ ସେହିପରି ସଂଯତ ପୁରୁଷମାନେ କେବଳ ଭକ୍ତିଯୋଗାଶ୍ରୟ କରି କାର୍ଯ୍ୟ ଓ କାରଣରେ ଆପଣଙ୍କର ଅନୁଗତ ହୁଅନ୍ତି । ଅନ୍ୟ କୌଣସି ପ୍ରକାରରେ ସେମାନଙ୍କର ସେ ଜ୍ଞାନ ହୁଏ ନାହିଁ । ୪୭ ।

---

ଏ ଗୃହେ ମୈଥୁନାଦି ସୁଖେ
ପ୍ରାଣୀ ନିତି ଦୁଃଖ-ଶୋକେ
କଣ୍ଡୂ ଯେସନେ ନଖ ମାରେ
ନିମେଷ କୋଟୀ ସୁଖ ତୁଟେ
କଣ୍ଡୂ ଅନ୍ତରେ ମହାଦୁଃଖ
ତେସନେ ଗୃହବନ୍ଧ-ସୁଖ
ତୋ ପାଦ-ପଦ୍ମେ ଯାର ମନ
ସେ ସେ ରହେ ଜିତାଜନ ।୪୫।
ମଉନ, ବ୍ରତ, ଶୌଚ, ତପ,
ପଠନ, ସ୍ୱଧର୍ମ ଚରିତ

ଏକାନ୍ତ-ବାସ, ଜପ ବିଧି
ନିର୍ମ୍ମଳ ନିଷ୍ଠିକ ସମାଧି
ଏ ଦଶ ଅପବର୍ଗ ଅର୍ଥେ
ଅଜିତେନ୍ଦ୍ରିୟ ସାଧେ ଯେତେ
ତାହାଙ୍କ ସୁଖ ଲେଶ ନାହିଁ
ମାତ୍ର ସଂସାରେ ଭ୍ରମୁଥାଇ
ତୋର ଚରଣ ଅବିରତ
ଜିତାଜନଙ୍କ ହୃଦେ ସ୍ଥିତ
ତୋତେ ଲଭନ୍ତି ଭବତ୍ରାସ୍ଥି !
ଦାମ୍ଭିକେ ଲଭିବେ ତା ନାହିଁ ।୪୬।

ଏ ସୃଷ୍ଟି ମଧ୍ୟେ ପଦ୍ମ-ମୁଖ
ଅସତ୍ୟ ସତ୍ୟ ତୋର ରୂପ
ବୀଜରୁ ଅଙ୍କୁର ଯେମନ୍ତ
ପ୍ରକାଶ କରେ ଏ ଜଗତ
ସେ ବୀଜ ଅଙ୍କୁର ତୋ ଦେହ
ତୋର ପ୍ରକାଶ ଏ ଜଗତ
ତୋତେ ଯେ ଭଜେ ଅବିରତେ
ତୋ ରୂପ ଜାଣଇ ସେ ଚିତ୍ତେ
ଭକତି-ଯୋଗ ମାର୍ଗେ ସାଧେ
ଅନଳ ଯେହ୍ନେ ଦାରୁମଧ୍ୟେ ।୪୭।

ତ୍ୱଂ ବାୟୁରଗ୍ନିରବନିର୍ବିୟଦମ୍ବୁମାତ୍ରାଃ ପ୍ରାଣେନ୍ଦ୍ରିୟାଣି ହୃଦୟଂ ଚିଦନୁଗ୍ରହଶ୍ଚ ।
ସର୍ବଂ ତ୍ୱମେବ ସଗୁଣୋ ବିଗୁଣଶ୍ଚ ଭୂମନ୍ ନାନ୍ୟଂ ତ୍ୱଦସ୍ତ୍ୟପି ମନୋ ବଚସା ନିରୁକ୍ତମ୍ ।୪୮।
ନୈତେ ଗୁଣା ନ ଗୁଣିନୋ ମହଦାଦୟୋ ଯେ ସର୍ବେ ମନଃପ୍ରଭୃତୟଃ ସହଦେବମର୍ତ୍ତ୍ୟାଃ ।
ଆଦ୍ୟନ୍ତବନ୍ତ ଉରୁଗାୟ ବିଦନ୍ତି ହି ତ୍ୱାମେବଂ ବିମୃଶ୍ୟ ସୁଧିୟୋ ବିରମନ୍ତି ଶବ୍ଦାତ୍ ।୪୯।
ତତ୍ତେଽର୍ହତ୍ତମ ନମଃ ସ୍ତୁତିକର୍ମପୂଜାଃ କର୍ମ ସ୍ମୃତିଶ୍ଚରଣୟୋଃ ଶ୍ରବଣଂ କଥାୟାମ୍ ।
ସଂସେବୟା ତ୍ୱୟି ବିନେତି ଷଡ଼ଙ୍ଗୟା କିଂ ଭକ୍ତିଂ ଜନଃ ପରମହଂସଗତୌ ଲଭେତ ।୫୦
ଶ୍ରୀନାରଦ ଉବାଚ । ଏତାବଦ୍‌ବର୍ଣ୍ଣିତଗୁଣୋ ଭକ୍ତ୍ୟା ଭକ୍ତେନ ନିର୍ଗୁଣଃ ।
ପ୍ରହ୍ଲାଦଂ ପ୍ରଣତଂ ପ୍ରୀତୋ ଯତମନ୍ୟୁରଭାଷତ । ୫୧ ।

---

ହେ ଭୂମନ୍ ! ଆପଣ ବାୟୁ, ଅଗ୍ନି, ପୃଥିବୀ, ଜଳ, ଆକାଶ, ଶବ୍ଦ, ପ୍ରାଣ, ଇନ୍ଦ୍ରିୟଗଣ, ହୃଦୟ, ମନ, ଦେବତା, ସଗୁଣ ଓ ନିର୍ଗୁଣ ଏ ସମସ୍ତ, ମନ ଓ ବାକ୍ୟଦ୍ୱାରା ଯାହା ପ୍ରକାଶିତ ହୁଏ ଏ ସମସ୍ତ ଆପଣଙ୍କଠାରୁ ପୃଥକ୍ ନୁହେଁ ଆପଣ ସର୍ବମୟ । ୪୮ ।

ହେ ଉରୁଗାୟ ! ଆଦି ଓ ଅନ୍ତ ବିଶିଷ୍ଟ ସତ୍ତ୍ୱ, ରଜଃ, ତମୋଗୁଣ ମହତ୍ତ୍ୱ ଓ ଅହଙ୍କାର ମନପ୍ରଭୃତି ଇନ୍ଦ୍ରିୟବର୍ଗ ଦେବଗଣ ଓ ମର୍ତ୍ତ୍ୟଗଣ ଗୁଣାଭିମାନୀ ଦେବତା ଏମାନେ ଆଦ୍ୟନ୍ତ ରହିତ । ଆପଣଙ୍କୁ ଜାଣିବାକୁ ଅକ୍ଷମ । ଏହିପରି ବିଚାର କରି ବିଜ୍ଞ ପଣ୍ଡିତମାନେ ଶାସ୍ତ୍ରାଭ୍ୟାସରୁ ବିରତ ହୋଇ ଏକମାତ୍ର ଆପଣଙ୍କର ଆରାଧନାରେ ନିଯୁକ୍ତ ଅଛନ୍ତି । ୪୯ ।

ହେ ପୂଜ୍ୟତମ ! ଆପଣଙ୍କର ପ୍ରଣିପାତ ସ୍ତୁତି, ସର୍ବ କର୍ମ ସମର୍ପଣ, ଚରଣ ଦ୍ୱୟ ସ୍ମୃତି ଓ ଗୁଣ ଶ୍ରବଣ ଏହି ଷଡ଼ଙ୍ଗ ବିଶିଷ୍ଟ ସେବା ବ୍ୟତୀତ ମନୁଷ୍ୟ କିପରି ଆପଣଙ୍କୁ ଭକ୍ତି କରି ପାରେ ? ହେ ଦୀନନାଥ ! ଆପଣଙ୍କୁ ପରମହଂସମାନେ ଲାଭ କରନ୍ତି ଏବଂ ନିବେଦନ କରୁଅଛି ଯେ ମୋର ପୂର୍ବ ପ୍ରାର୍ଥିତ ଦାସ୍ୟ ଯୋଗ ମୋତେ ପ୍ରଦାନ କରନ୍ତୁ । ୫୦ ।

ଶ୍ରୀନାରଦ କହିଲେ—ଭକ୍ତ ପ୍ରହ୍ଲାଦ ଭକ୍ତି ପୂର୍ବକ ଏହିପରି ପ୍ରାକୃତ ଗୁଣ ରହିତ ଭଗବାନ୍ ଶ୍ରୀହରିଙ୍କ ଗୁଣ ବର୍ଣ୍ଣନା କରନ୍ତେ ସେ କ୍ରୋଧ ସମ୍ବରଣ କରି ପ୍ରୀତମନରେ କହିଲେ । ୫୧ ।

---

ଗଗନ ସମୀର ଅନଳ
ଅବନୀ ଆଦି ମହାଜଳ
ମାତ୍ରା ସ୍ୱରୂପୀ ଇନ୍ଦ୍ରିୟଗଣ
ଚତୁର ଅନ୍ତର କରଣ
ତୋ ଅନୁଗ୍ରହେ ଦେହେ ରହି
ଗୁଣ ବିଗୁଣେ ଯେତେ ହୋଇ
ମନ-ବଚନେ ଯେତେ କରି
ତୁ ସର୍ବ ରୂପ ନରହରି । ୪୮ ।
ତ୍ରିଗୁଣ ମହଦହଂକାର
ମନ ପ୍ରଭୃତି ଦେବ ନର

ଏ ଆଦି-ଅନ୍ତ ମଧ୍ୟେ ଥାନ୍ତି
କେବେହେଁ ତୋତେ ନ ଜାଣନ୍ତି
ଏ ଭାବ ଜାଣି ମୁନିଜନେ
ନିଷ୍ଠେ ରହନ୍ତି ମଉନେ ।୪୯।
ହେ ନାଥ ତୋରେ ନମଃସ୍ତୁତି
ତୋ ପୂଜା କର୍ମେ ଯାର ମତି
ନିତ୍ୟେ ଚିନ୍ତନ୍ତି ତୋ ଚରଣ
ତୋ ଗୁଣ କିରତେ ଶ୍ରବଣ
ସୁପୁଣ୍ୟ କର୍ମ ଅର୍ପି ତୋତେ
ଏ ଷଡ ଅଙ୍ଗ ଭକ୍ତିମତେ

ଯେ ଅବା ସାଧନ୍ତି ଜଗତେ
ସେ ତୋତେ ଭଜନ୍ତି ହିତେ
ଏ ଭାବ ବିନା ଯେବା ଜନ
ସେ ତୋର ଭକ୍ତିରୁ ହୀନ
ତୁ ନାଥ ଅନନ୍ତ ମୂରତି
ପରମହଂସଙ୍କର ଗତି । ୫୦ ।

ଶ୍ରୀନାରଦ ଉବାଚ—

ଏମନ୍ତେ ଧର୍ମ-ସୁତ ଆଗେ
ନାରଦ ମୁନି ଅନୁରାଗେ

ଶ୍ରୀଭଗବାନୁବାଚ ।

ପ୍ରହ୍ଲାଦ ଭଦ୍ର ଭଦ୍ରଂ ତେ ପ୍ରୀତୋଽହଂ ତେଽସୁରୋତ୍ତମ ।
ବରଂ ବୃଣୀଷ୍ୱାଭିମତଂ କାମପୂରୋଽସ୍ମ୍ୟହଂ ନୃଣାମ୍ । ୫୨ ।
ମାମପ୍ରୀଣତ ଆୟୁଷ୍ମନ୍ ଦର୍ଶନଂ ଦୁର୍ଲଭଂ ହି ମେ ।
ଦୃଷ୍ଟ୍ୱା ମାଂ ନ ପୁନର୍ଜନ୍ତୁରାତ୍ମାନଂ ତପ୍ତୁମର୍ହତି । ୫୩ ।
ପ୍ରୀଣନ୍ତି ହ୍ୟଥ ମାଂ ଧୀରାଃ ସର୍ବଭାବେନ ସାଧବଃ ।
ଶ୍ରେୟସ୍କାମା ମହାଭାଗ ସର୍ବାସାମାଶିଷାଂ ପତିମ୍ । ୫୪ ।

ଶ୍ରୀନାରଦ ଉବାଚ ।

ଏବଂ ପ୍ରଲୋଭ୍ୟମାନୋଽପି ବରୈର୍ଲୋକପ୍ରଲୋଭନୈଃ ।
ଏକାନ୍ତିତ୍ୱାଦ୍ଭଗବତି ନୈଚ୍ଛତ୍ତାନସୁରୋତ୍ତମଃ । ୫୫ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ
ପ୍ରହ୍ଲାଦାନୁଚରିତେ ନାମ ନବମୋଽଧ୍ୟାୟଃ । ୯ ।

---

ଶ୍ରୀଭଗବାନ କହିଲେ—

ହେ ଅସୁରୋତ୍ତମ ! ହେ ଭଦ୍ର ପ୍ରହ୍ଲାଦ ! ମୁଁ ପ୍ରୀତ ହୋଇଅଛି । ତୁମ୍ଭର ମଙ୍ଗଳ ହେଉ । ତୁମ୍ଭେ ଅଭିଳଷିତ ବର ଗ୍ରହଣ କର । ମୁଁ ଅଭିଳଷିତ ଫଳ ଦାତା । ହେ ଆୟୁଷ୍ମନ୍ ! ମୋର ପ୍ରୀତି ସାଧନ ନ କରି କୌଣସି ଲୋକ ମୋର ଦର୍ଶନ ଲାଭ କରିବାକୁ ସମର୍ଥ ହୁଏ ନାହିଁ । ଜୀବ ମୋତେ ଦର୍ଶନ କଲେ ସେ ଆଉ ଶୋକ ଓ ମୋହାଭିଭୂତ ହୁଏ ନାହିଁ । ମୁଁ ସର୍ବ କଲ୍ୟାଣର ଅଧିପତି । ହେ ମହାଭାଗ ! ମଙ୍ଗଳାର୍ଥୀ ସାଧୁ ଓ ପଣ୍ଡିତମାନେ ସର୍ବ ଭାବରେ ମୋର ପ୍ରୀତି ସମ୍ପାଦନ କରିବାକୁ ଅଭିଳାଷୀ । ୫୨, ୫୪ ।

ଏହିପରି ଲୋକ ଲୋଭକର ବର ପ୍ରଲୋଭନ ତ୍ୟାଗ କରି ଭଗବାନଙ୍କର ଏକାନ୍ତ ଭକ୍ତ ପ୍ରହ୍ଲାଦ ସେହିବର ପାଇବାକୁ ଇଚ୍ଛା କରି ନ ଥିଲେ । ୫୫ ।

---

କହନ୍ତି ସଭାମଧ୍ୟେ ବସି
ଶୁଣ ହେ ନୃପ କୁରୁବଂଶୀ
ଅସୁର ପୁତ୍ର ବଚନ୍ତୁ ଆଗେ
ଯେତେ ବର୍ଣ୍ଣିଲ ବସ୍ତୁମାର୍ଗେ
ଶୁଣି ସନ୍ତୋଷ ନାରାୟଣ
ଯେ ହରି ପରମ କାରଣ
ସୁପ୍ରେମେ ତାଙ୍କୁ କୋଳ କରି
ପ୍ରଚଣ୍ଡ କୋପ ଦୂରକରି
କହନ୍ତି ମଧୁର ବଚନ
ଶୁଣ ହେ ଅସୁର ନନ୍ଦନ । ୫୧ ।

ଶ୍ରୀନୃସିଂହ ଉବାଚ—
ସନ୍ତୋଷେ ଜାଣିଲି ତୋ ଭାବ
ଏ ନରଲୋକେ ସୁଦୁର୍ଲଭ
ମୁଁ କାମପୂରଏ ପ୍ରାଣିର
ଆତ୍ମାଭିମତେ ମାଗ ବର । ୫୨ ।
ଯେ ପ୍ରୀତି ନ କରଇ ମୋତେ
ମୁଁ ତାଙ୍କୁ ଦୁର୍ଲଭ ଜଗତେ
ମୋତେ ଦେଖନ୍ତି ଯେ ନୟନ
ତାର କି ତାପ ପ୍ରୟୋଜନ । ୫୩
ଏ ଘେନି ଛନ୍ଦଜନ ଯେତେ
ଭାବେ ଭଜନ୍ତି ସର୍ବମତେ

ତହିଁ ପ୍ରସନ୍ନେ ବର ଦେଇ
ସର୍ବ ଆଶିଷ-ପତି ମୁହିଁ । ୫୪ ।
ଏମନ୍ତେ ବର ଲୋଭ କହି
ମନ ବଢ଼ିଲେ ଭବଗ୍ରାହୀ
ଏକାନ୍ତ ଭକ୍ତ ହୃଦେ ତାର
ବର ନ କଲା ଅଙ୍ଗୀକାର । ୫୫ ।
ଏମନ୍ତେ ମହିମା ଯାହାର
ଦେବ-ମାନବେ ଅଗୋଚର
ସେ ପ୍ରହ୍ଲଦ ପାଦଗତ
ନମଇଁ ବିପ୍ର ଜଗନ୍ନାଥ ।

## ବିଶଦାର୍ଥ—

ପୂର୍ବ ଅଧ୍ୟାୟରେ ବ୍ରହ୍ମା ପ୍ରମୁଖ ଦେବଗଣ ଉଗ୍ର ନୃସିଂହଙ୍କୁ ସ୍ତବ କରି ମଧ୍ୟ ତାହାଙ୍କର କ୍ରୋଧ ପ୍ରଶମନ କରି ନ ପାରିବାର ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ଏହି ଅଧ୍ୟାୟରେ ଭକ୍ତ ପ୍ରହ୍ଲାଦ ନୃସିଂହଙ୍କୁ ଯେଉଁ ପ୍ରାର୍ଥନା କରିଅଛନ୍ତି ତାହା ଭକ୍ତ ହୃଦୟର ଯଥାର୍ଥ ଚିତ୍ର । ପ୍ରହ୍ଲାଦର ପ୍ରାର୍ଥନାରୁ କୌଣସି ପ୍ରକାର ବରଲାଭର ଆକାଙ୍କ୍ଷା ନ ଥିଲା । ସେ କେବଳ ଭଗବାନଙ୍କର ଦାସ ହୋଇ ରହିବେ ଏହାହିଁ ତାହାଙ୍କର କାମନା । ଏହି କାମନା କଲାବେଳେ ସେ ଭଗବାନଙ୍କର ଦାସ ହେବା ଲାଗି ନିଜର ଅନୁପଯୁକ୍ତତା ମଧ୍ୟ ଅନୁଭବ କରୁଥିଲେ; ପ୍ରଧାନତଃ ସେ ଅସୁର କୁଳରେ ଜନ୍ମ ହୋଇଥିବାରୁ ନିଜକୁ ନୀଚ ବୋଲି ମନେ କରୁଥିଲେ ତଥାପି ତାଙ୍କର ହୃଦୟରେ ଦୃଢ଼ତା ଥିଲା, ବିଶ୍ୱାସ ଥିଲା ଯେ ଶ୍ରୀହରି କାହାରି ପ୍ରତି କରୁଣା ଶୂନ୍ୟ ନୁହନ୍ତି । ଭକ୍ତଶ୍ରେଷ୍ଠ ଦେବର୍ଷି ନାରଦଙ୍କଠାରୁ ମାତୃ ଗର୍ଭରେ ଅବସ୍ଥାନ କାଳରେ ସେ ଯେଉଁ ତତ୍ତ୍ୱବାଣୀ ଶୁଣିଥିଲେ ତାହା ଅଦ୍ୟାପି ତାଙ୍କର ସ୍ମୃତି ପଥରେ ଜାଗ୍ରତ ଥିଲା । ତଦ୍ ହେତୁ ଏବଂ ନୃସିଂହଙ୍କର କର ସ୍ପର୍ଶରେ ସେ ଈଶ୍ୱର କୃପାଲାଭ କରି ବାକ୍‌ପଟୁ ହୋଇଥିଲେ । ତାଙ୍କର ପ୍ରାର୍ଥନା ମଧ୍ୟରେ ଯେଉଁ ତତ୍ତ୍ୱସବୁ ତାହା ପୂର୍ବ ଅଧ୍ୟାୟରେ ବର୍ଣ୍ଣିତ ସ୍ତୁତି ମଧ୍ୟରେ ଦେଖାଯାଏ ନାହିଁ । ପ୍ରହ୍ଲାଦ ନିଜର ହିତ କାମନା ଅପେକ୍ଷା ଜଗତର ହିତ କାମନାକୁ ଶ୍ରେଷ୍ଠ ମଣୁଥିଲେ । ମନୁଷ୍ୟ କି ହେତୁରୁ ବିଷ୍ଣୁ ପଦାରବିନ୍ଦ ସେବା ଏବଂ ବିଷ୍ଣୁଗୁଣ କୀର୍ତ୍ତନରେ ପରାଙ୍ମୁଖ ହୁଏ ତାହାର କାରଣ ମଧ୍ୟ ଏହି ପ୍ରାର୍ଥନା ମଧ୍ୟରେ ରହିଅଛି । ଅବଶେଷରେ ପ୍ରହ୍ଲାଦ କହିଥିଲେ ଯୋଗୀ ଋଷିମାନେ ନାନାପ୍ରକାରେ ତପସ୍ୟାଚରଣ କରିଥାନ୍ତି । ଅରଣ୍ୟ ମଧ୍ୟରେ ରହି ନାନାପ୍ରକାର କ୍ଳେଶରେ ଇନ୍ଦ୍ରିୟ ଦମନ କରି ନିଜର ଆତ୍ମୋନ୍ନତି ସାଧନ କରନ୍ତି; ମାତ୍ର ସଂସାର ସାଗରରେ ସତତ ବୁଡ଼ି ରହି, ଧନ ଦାରାପତ୍ୟ ଆଦିରେ ଆସକ୍ତ ସାଧାରଣ ମାନବ କିପରି ସେହି ସଂସାର ସାଗରରୁ ଉତ୍ତୀର୍ଣ୍ଣ ହେବ ତହିଁର କୌଣସି ଚିନ୍ତା ସେମାନେ କରିଥାଆନ୍ତି କି ? ପ୍ରହ୍ଲାଦ କହିଲେ "ମୁଁ ନିଜକଥା ଭାବୁନାହିଁ, ମୁଁ ଭାବୁଛି ସେହି କ୍ଲିଷ୍ଟ ପ୍ରାଣୀମାନଙ୍କ କଥା । ସେମାନେ କିପରି ଆପଣଙ୍କର କରୁଣା ଲାଭକରି ସଂସାର ବନ୍ଧନରୁ ମୁକ୍ତ ହେବେ, ଭବ ବୈତରଣୀ ପାରି ହେବେ ଆପଣ ତାହାର ବ୍ୟବସ୍ଥା କରନ୍ତୁ । ନିଜର କଲ୍ୟାଣ ସାଧନ ଅପେକ୍ଷା ଯେ ବିଶ୍ୱର କଲ୍ୟାଣ ସାଧନକୁ ଜୀବନର ବ୍ରତ ବୋଲି ଗ୍ରହଣ କରିପାରେ ସେହି ଯଥାର୍ଥରେ ମହତ୍ । ଯେଉଁ ଯୋଗୀ ଋଷିମାନେ ଗଙ୍ଗା କୂଳରେ, ହିମାଳୟ ପର୍ବତରେ ବା ଅନ୍ୟ ନିର୍ଜ୍ଜନ ତୀର୍ଥରେ ତପସ୍ୟା କରି ସିଦ୍ଧିଲାଭ କରୁଅଛନ୍ତି ସେମାନଙ୍କର ସିଦ୍ଧିର ଫଳ ଯଦି ଜଗତ୍ ମଧ୍ୟରେ ବିକିରଣ କରି ନ ପାରନ୍ତି ତେବେ ସେ ସିଦ୍ଧିରେ କି ପ୍ରୟୋଜନ ? ଶ୍ରୀମଦ୍ ଭାଗବତର ଏହି ଅଧ୍ୟାୟ ପାଠ କଲାବେଳେ ମୋର ଆଧୁନିକ ଯୁଗର ଦୁଇଟି ମହାପୁରୁଷଙ୍କର ପ୍ରସଙ୍ଗ ମନେ ପଡ଼େ । ଶ୍ରୀରାମକୃଷ୍ଣ ପରମହଂସ ଓ ସ୍ୱାମୀ ବିବେକାନନ୍ଦ; ଭଗବାନ୍ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ନିମିତ୍ତମାତ୍ର କଲାପରି ଶ୍ରୀରାମକୃଷ୍ଣ ପରମହଂସ ସ୍ୱାମୀ ବିବେକାନନ୍ଦଙ୍କୁ ଜଗତର ହିତ ସାଧନରେ ବ୍ରତୀ କରାଇଥିଲେ । ନିଜର ଆଧ୍ୟାତ୍ମିକ ଉନ୍ନତି ଅପେକ୍ଷା ସ୍ୱାମୀ ବିବେକାନନ୍ଦ ଜଗତରେ ଧର୍ମ ଜୀବନର ଉନ୍ନତିକୁ ଶ୍ରେୟସ୍କର ମନେ କରିଥିଲେ । ସେଥିପାଇଁ ଭାରତର ବିଭିନ୍ନାଞ୍ଚଳରେ ତଥା ସୁଦୂର ଆମେରିକା ଓ ଇଉରୋପରେ ଧର୍ମ ଜୀବନର ଆଦର୍ଶ ଏବଂ ଭଗବତ୍ ଶକ୍ତିର ମହତ୍ତ୍ୱ ପ୍ରଚାର କରିଥିଲେ । ଭକ୍ତ ପ୍ରହ୍ଲାଦଙ୍କୁ ଏହି ଉଚ୍ଚ ଆଦର୍ଶର ପଥ ପ୍ରଦର୍ଶକ ବୋଲି ଗ୍ରହଣ କରାଯାଇ ପାରେ ।

## ଦ ଶ ମ ଅ ଧ୍ୟା ୟ ।

ଦଶମେ ତ୍ୱନୁଗୃହ୍ୟାମୁଂ ଭକ୍ତମନ୍ତର୍ହିତେ ହରୌ ।
ପ୍ରସଙ୍ଗାଦ୍ବର୍ଣ୍ଣ୍ୟତେ ରୁଦ୍ରେ କୃତୋଽନୁଗ୍ରହ ଈର୍ଯ୍ୟତେ । ୦ ।। (ଶ୍ରୀଧରସ୍ୱାମୀ )

ଶ୍ରୀନାରଦ ଉବାଚ ।

ଭକ୍ତିଯୋଗସ୍ୟ ତତ୍ସର୍ବମନ୍ତରାୟତୟାର୍ଭକଃ ।
ମନ୍ୟମାନୋ ହୃଷୀକେଶଂ ସ୍ମୟମାନ ଉବାଚ ହ । ୧ ।

ଶ୍ରୀପ୍ରହ୍ଲାଦ ଉବାଚ ।

ମା ମାଂ ପ୍ରଲୋଭୟୋତ୍ପତ୍ୟାସକ୍ତଂ କାମେଷୁ ତୈର୍ବରୈଃ ।
ତତ୍ସଙ୍ଗଭୀତୋ ନିର୍ବିଣ୍ଣୋ ମୁମୁକ୍ଷୁସ୍ତ୍ୱାମୁପାଶ୍ରିତଃ । ୨ ।
ଭୃତ୍ୟଲକ୍ଷଣଜିଜ୍ଞାସୁର୍ଭକ୍ତଂ କାମେଷ୍ୱଚୋଦୟତ୍ ।
ଭବାନ୍ ସଂସାରବୀଜେଷୁ ହୃଦୟଗ୍ରନ୍ଥିଷୁ ପ୍ରଭୋ । ୩ ।

---

### ପ୍ରହ୍ଲାଦର ବରଲାଭ ଓ ଅସୁର ସୈନ୍ୟମାନଙ୍କର ବିନାଶ ଗମନ ।

ଦଶମ ଅଧ୍ୟାୟରେ ଭକ୍ତଶ୍ରେଷ୍ଠ ସେହି ପ୍ରହ୍ଲାଦଙ୍କୁ ଅନୁଗ୍ରହ କରି ଅନ୍ତର୍ହିତ ହୁଅନ୍ତେ ପ୍ରସଙ୍ଗ କ୍ରମେ
ଭଗବାନଙ୍କର ଶିବଙ୍କ ପ୍ରତି ଅନୁଗ୍ରହ ବର୍ଣ୍ଣିତ ହୋଇଅଛି । ୦ ।

ଶ୍ରୀନାରଦ କହିଲେ— ବରଲାଭ ଭକ୍ତିଯୋଗର ଅନ୍ତରାୟ ଜାଣି ଭକ୍ତଚୂଡ଼ାମଣି ଶିଶୁ ପ୍ରହ୍ଲାଦ ଈଷତ୍ ହାସ୍ୟ କରି ନୃସିଂହଙ୍କୁ କହିଲେ । ୧ ।

ପ୍ରହ୍ଲାଦ କହିଲେ—

ହେ ପ୍ରଭୋ ! କାମନା ସଙ୍ଗ ହେତୁ ମୁଁ ଅତ୍ୟନ୍ତ ଭୀତ, ମୁଁ ମୁମୁକ୍ଷୁ ବୋଲି ଆପଣଙ୍କର ଶରଣାପନ୍ନ ହୋଇଅଛି । ମୋର ଚିତ୍ତ କାମ ମଳିନ ସୁତରାଂ ଅନ୍ୟବର ଦ୍ୱାରା ମୋତେ ପ୍ରଲୋଭିତ କରନ୍ତୁ ନାହିଁ ।୨।

ହେ ପ୍ରଭୋ ! ଭକ୍ତର ଚିହ୍ନ ଜାଣିବା ନିମନ୍ତେ ସଂସାରରେ ବୀଜ ସ୍ୱରୂପ ହୃଦୟ ଗ୍ରନ୍ଥି ତୁଲ୍ୟ ଭବ ବନ୍ଧନ କାରୀ ଅଭିଳାଷମାନ ଭକ୍ତ ନିକଟକୁ ପ୍ରେରଣ କରିଥାନ୍ତି । ୩ ।

---

ପ୍ରହ୍ଲାଦେ ଅନୁଗ୍ରହ କରି, ଅନ୍ତର ହୋଇଲେ ଦଇତାରି । ପ୍ରସଙ୍ଗେ ମୟ-ବଧ କଥା, ଦଶମ ଅଧ୍ୟାୟ ବ୍ୟବସ୍ଥା ॥

ଶ୍ରୀନାରଦ ଉବାଚ—

ବିଷ୍ଣୁର ବର ଲୋଭ ଶୁଣି
ମନେ ବିସ୍ମୟରେ ବୀରମଣି
ଭକ୍ତି ଯୋଗକୁ ବିଘ୍ନ ପ୍ରାୟେ
ମଣି ପ୍ରହ୍ଲାଦ କଲା ଭୟେ
ହସି ନୃସିଂହ ମୁଖ ଚାହିଁ
ବୋଇଲେ ଶିରେ କର ଦେଇ ।୧।

ଶ୍ରୀ ପ୍ରହ୍ଲାଦ ଉବାଚ—

ହେ ନାଥ ଶୁଣ ଚକ୍ରଧର
ବର ପ୍ରସଙ୍ଗେ ମୋର ଡର
କାମେ ଆସକ୍ତ ପ୍ରାୟେ ମଣି
ବର ଯାଚିଲୁ ଚକ୍ରପାଣି
ସ୍ୱଭାବେ କାମେ ମୁଁ ଆସକ୍ତ
ବର ଲୋଭରେ ମୋହୁ ଚିତ୍ତ
ମୋହର ମନ ତୋର ପାଦେ
ତୁ ମୋତେ ନ କର ପ୍ରମାଦେ ।୨

ଭୃତ୍ୟ ଲକ୍ଷଣ ଜାଣିବାରେ
ସ୍ୱାମୀପ୍ରଭବ ଏ ସଂସାରେ
କାମେ ଭୁଲାଇ ଭୃତ୍ୟ ଚିତ୍ତ
ଜାଣିତେ ଭକ୍ତ କି ଅଭକ୍ତ
ସଂସାର ବୀଜ ହୃଦେ ଗ୍ରନ୍ଥି
ତେଣେ ଭୁଲାଇ ମୋର ମତି ।୩।

ନାନ୍ୟଥା ତେଽଖିଲଗୁରୋ ଘଟେତ କରୁଣାତ୍ମନଃ ।
ଯସ୍ତ ଆଶିଷ ଆଶାସ୍ତେ ନ ସ ଭୃତ୍ୟଃ ସ ବୈ ବଣିକ୍ । ୪ ।
ଆଶାସାନୋ ନ ବୈ ଭୃତ୍ୟଃ ସ୍ୱାମିନ୍ୟାଶିଷ ଆତ୍ମନଃ ।
ନ ସ୍ୱାମୀ ଭୃତ୍ୟତଃ ସ୍ୱାମ୍ୟମିଚ୍ଛନ୍ ଯୋ ରାତି ଚାଶିଷଃ । ୫ ।
ଅହଂ ତ୍ୱକାମସ୍ତ୍ୱଦ୍ଭକ୍ତସ୍ତ୍ୱଞ୍ଚ ସ୍ୱାମ୍ୟନପାଶ୍ରୟଃ ।
ନାନ୍ୟଥେହାବୟୋରର୍ଥୋ ରାଜସେବକୟୋରିବ । ୬ ।
ଯଦି ଦାସ୍ୟସି ମେ କାମାନ୍ ବରାଂସ୍ତ୍ୱଂ ବରଦର୍ଷଭ ।
କାମାନାଂ ହୃଦ୍ୟସଂରୋହଂ ଭବତସ୍ତୁ ବୃଣେ ବରମ୍ । ୭ ।

ତାହା ନ ହେଲେ ଲୋକର ଅନର୍ଥ ସାଧନ ପ୍ରବୃତ୍ତି ଜନ୍ମନ୍ତା ନାହିଁ । ଆପଣ କରୁଣାମୟ, ଆପଣଙ୍କ ନିକଟରେ ଭୋଗବିଳାସ ପ୍ରାର୍ଥନା କରି ଲାଭ କଣ ? ଆପଣଙ୍କର ପ୍ରୀତି ଉତ୍ପାଦନ କରି ବଣିକ ତୁଲ୍ୟ ଭକ୍ତି କରିବାକୁ ମୁଁ ପ୍ରସ୍ତୁତ ନୁହେଁ । ୪ ।

ଯେଉଁ ଭୃତ୍ୟ ପ୍ରଭୁ ନିକଟରୁ ଅଭିଳଷିତ ପଦାର୍ଥ ଲାଭ ନିମିତ୍ତ ବ୍ୟାକୁଳ, ସେ ପ୍ରକୃତ ଭୃତ୍ୟ ନୁହେଁ । ଯେଉଁ ସ୍ୱାମୀ ଉପକାର ଦ୍ୱାରା ଭୃତ୍ୟଠାରୁ ନିଜର ପ୍ରଭୁତ୍ୱ ଇଚ୍ଛା କରେ ଏବଂ ଭୃତ୍ୟକୁ ଅଭିଳଷିତ ବସ୍ତୁ ପ୍ରଦାନ କରେ ସେ ପ୍ରଭୁ ମଧ୍ୟ ପ୍ରକୃତ ପ୍ରଭୁ ନୁହେଁ । ୫ ।

ମୁଁ ଆପଣଙ୍କର ସେପରି ଭୃତ୍ୟ ନୁହେଁ । ମୁଁ ନିଷ୍କାମ ଭକ୍ତ । ଆପଣ ମଧ୍ୟ ମୋର ଅଭିସନ୍ଧି ରହିତ ସ୍ୱାମୀ । କାମନାଭିସନ୍ଧି ସମ୍ପନ୍ନ ପ୍ରଭୁ ଓ ଭୃତ୍ୟ, ରାଜା ଓ ସେବକତୁଲ୍ୟ ସମ୍ବନ୍ଧ ଆପଣଙ୍କ ସହିତ ମୋର ନୁହେଁ । ୬ ।

ହେ ବରଦ ଶ୍ରେଷ୍ଠ । ଯଦି ମୋତେ ଅଭିଳଷିତ ବର ପ୍ରଦାନ କରନ୍ତି ତେବେ ମୁଁ ପ୍ରାର୍ଥନା କରୁଅଛି ଯେପରି କାମନା ବୀଜ ନଷ୍ଟ ହେବ ମୋତେ ସେହି ବର ପ୍ରଦାନ କରନ୍ତୁ । ୭ ।

ସେ କଥା ଭଲେ ଜାଣେ ମୁହିଁ
ଏଣୁ ଅନ୍ୟଥା ନ ଘଟଇ
ତୋତେ ଆରାଧି ପ୍ରାଣୀ ଯେବେ
ତୋର ଆଶିଷ ଇଚ୍ଛି ଭାବେ
ଭୃତ୍ୟ ଲକ୍ଷଣ ନୋହେ ଜାଣ
ସେ ଆତ୍ମ ହିତରେ ପ୍ରମାଣ
ବଣିକ ସ୍ୱଭାବ ତାହାର
ସେ ନାହିଁ ତରିବ ସଂସାର । ୪ ।
ଯେ ଭୃତ୍ୟ ଇଷ୍ଟ ଆଶା କରେ
ଭୃତ୍ୟ ନ ବୋଲି ତା ସଂସାରେ
ଯେ ସ୍ୱାମିପଣେ ଇଷ୍ଟ ଦେଇ
ତା ସ୍ୱାମିପଣ ରହେ ନାହିଁ । ୫ ।
ନିଷ୍କାମ ଭକ୍ତ ମୁହିଁ ତୋର
ତୁ ନାଥ ଭକତ ସୋଦର
ରାଜାର ସେବକ ଯେସନେ
ବର୍ତ୍ତଇ ଆଜ୍ଞା ଅଲଙ୍ଘନେ । ୬ ।
ତଥାପି ତୋର ତୋଷ ଅର୍ଥେ
ତୋ ବାକ୍ୟ ପାଳିବା ଉଚିତେ
ମାଗଇ ବର ତୋର ପାଦେ
ଯେମନ୍ତେ ନ ପଡ଼େ ପ୍ରମାଦେ
ଏମନ୍ତ ବର ଦିଅ ମୋତେ
ତୋ ମାୟା ତରଇ ଯେମନ୍ତେ
ଯେ କାମ ମୋର ହୃଦେ ରହି
ବୃକ୍ଷ ପ୍ରରୋହ ପ୍ରାୟ ହୋଇ
ପତ୍ର କୁସୁମ ଫଳ ଯେତେ
ମୂଳ ସଙ୍କୁଳେ ଉଡ଼େ ଚିତ୍ତେ
ସେ ବୃକ୍ଷ ହୃଦରେ ନ ରହୁ
ହେ ନାଥ ଏହି ବର ହେଉ । ୭ ।

ଇନ୍ଦ୍ରିୟାଣି ମନଃ ପ୍ରାଣ ଆତ୍ମା ଧର୍ମୋ ଧୃତିର୍ମତିଃ ।
ହ୍ରୀଃ ଶ୍ରୀସ୍ତେଜଃ ସ୍ମୃତିଃ ସତ୍ୟଂ ଯସ୍ୟ ନଶ୍ୟନ୍ତି ଜନ୍ମନା । ୮ ।
ବିମୁଞ୍ଚତି ଯଦା କାମାନ୍ ମାନବୋ ମନସି ସ୍ଥିତାନ୍ ।
ତର୍ହ୍ୟେବ ପୁଣ୍ଡରୀକାକ୍ଷ ଭଗବତ୍ତ୍ୱାୟ କଳ୍ପତେ । ୯ ।
ଓଁ ନମୋ ଭଗବତେ ତୁଭ୍ୟଂ ପୁରୁଷାୟ ମହାତ୍ମନେ ।
ହରୟେଽଦ୍ଭୁତସିଂହାୟ ବ୍ରହ୍ମଣେ ପରମାତ୍ମନେ । ୧୦ ।

ଶ୍ରୀଭଗବାନୁବାଚ ।

ନୈକାନ୍ତିନୋ ମେ ମୟି ଜାତ୍ୱିହାଶିଷ୍ୱ ଆଶାସତେଽମୁତ୍ର ଚ ଯେ ଭବଦ୍ୱିଧାଃ ।
ତଥାପି ମନ୍ୱନ୍ତରମେତଦତ୍ର ଦୈତ୍ୟେଶ୍ୱରାଣାମନୁଭୁଂକ୍ଷ୍ୱ ଭୋଗାନ୍ । ୧୧ ।

---

କାମନା ଅତ୍ୟନ୍ତ ନିନ୍ଦନୀୟ । ତାହା ଇନ୍ଦ୍ରିୟ ବୃତ୍ତି ବିଶେଷତଃ ମନକୁ ଦୂଷିତ କରେ ଏବଂ ପ୍ରାଣ, ଆତ୍ମା, ଧର୍ମ, ଧୈର୍ଯ୍ୟ, ବୁଦ୍ଧି, ଲଜ୍ଜା, ଶୋଭା, ତେଜ, ସ୍ମୃତି ଓ ସତ୍ୟକୁ ବିନାଶ କରେ । ୮ ।

ହେ ପୁଣ୍ଡରୀକାକ୍ଷ ! ମାନବ ଯେତେବେଳେ ସମସ୍ତକାମନା ପରିତ୍ୟାଗ କରେ ସେତେବେଳେ ଭଗବତ୍ ଐଶ୍ୱର୍ଯ୍ୟର ଅଧିକାରୀ ହୁଏ । ୯ ।

ଯେ ଷଡୈଶ୍ୱର୍ଯ୍ୟ ଶାଳୀ, ପରମପୁରୁଷ, ମହାତ୍ମା, ହରି ଅଦ୍ଭୁତ ସିଂହ ମୂର୍ତ୍ତି ଧାରଣ କରି ଅଛନ୍ତି ସେହି ପରମାତ୍ମା ପରମେଶ୍ୱରଙ୍କୁ ମୁଁ ନମସ୍କାର କରୁଅଛି । ୧୦ ।

ଶ୍ରୀଭଗବାନ୍ କହିଲେ—

ତୋହପରି ମୋଠାରେ ଯାହାର ଏକାନ୍ତ ଭକ୍ତି ସେ ଇହକାଳ ଏବଂ ପରକାଳରେ କଦାପି ମୋଠାରୁ ଭୋଗାଭିଳାଷ କାମନା କରି ନାହିଁ । ତା ହେଲେ ତୁ ଏହି ମନ୍ୱନ୍ତର ପର୍ଯ୍ୟନ୍ତ ଏହି ଭବ ଲୋକରେ ଦୈତ୍ୟେଶ୍ୱର ହୋଇ ଭୋଗ୍ୟ ଐଶ୍ୱର୍ଯ୍ୟ ଭୋଗ କର । ୧୧ ।

---

ଇନ୍ଦ୍ରିୟ ମନ ପ୍ରାଣ ସ୍ମୃତି,
ଆତ୍ମ-ସ୍ୱଧର୍ମ ଧୃତି ମତି
ଲାଜ ସମ୍ପଦ ତେଜ ଜ୍ଞାନ
ସତ୍ୟ ସନ୍ତୋଷ ବ୍ରତମାନ
ଯେ କାମେ ଏ ସର୍ବ ନଶନ୍ତି
ସେ କାମୁଁ ରଖ ଦାଶରଥି । ୮ ।
କାମ ସଂକଳ୍ପ ଯେତେ ଥାଇ
ଯେ ଜନେ ପ୍ରାଣୀ ତା ମୁଞ୍ଚଇ
ସେ ଜନେ ମିଳେ ତୋ ସମୀପେ
ତୋ ସମ ଅଇଶ୍ୱର୍ଯ୍ୟ କଳ୍ପେ । ୯ ।
ନମୋ ପୁରୁଷ ମହାତ୍ମନ
ନୃସିଂହ ରୂପୀ ଭଗବାନ
ଏମନ୍ତେ ପ୍ରହ୍ଲାଦ ବାଣୀ
ଶୁଣି କହନ୍ତି ଚକ୍ରପାଣି । ୧୦ ।
ଶ୍ରୀଭଗବାନୁବାଚ—
ଏକାନ୍ତ ଭକ୍ତ ଯେ ମୋହର
ଏ କାଟେଁ ତାହାର କେହିର
କେବେ ମୋ ଆଶିଷ ନ କଲେ
ଯେ ଭୋଗ ଇହ-ପର ଲୋକେ
ତୋର ସଦୃଶ ଭକ୍ତ ଯେତେ
ନିଷ୍କାମେ ଅଛନ୍ତି ଜଗତେ
ତୁ ଏବେ ମୋର ବୋଲ କର
ଏ ଯେତେ କାଳ ମନ୍ୱନ୍ତର
ଦୈତ୍ୟ ସଙ୍କୁଳ ମଧ୍ୟେ ରହି
ଅତୁଲ୍ୟ ଭୋଗ ଭୁଞ୍ଜୁଥାଇ । ୧୧ ।

କଥା ମଦୀୟା ଜୁଷମାଣଃ ପ୍ରିୟାସ୍ତ୍ୱମାବଶ୍ୟ ମାମାତ୍ମନି ସନ୍ତମେକମ୍ ।
ସର୍ବେଷୁ ଭୂତେଷ୍ୱଧିଯଜ୍ଞମୀଶଂ ଯଜସ୍ୱ ଯୋଗେନ ଚ କର୍ମ୍ମ ହିନ୍ୱନ୍ । ୧୨ ।
ଭୋଗେନ ପୁଣ୍ୟଂ କୁଶଳେନ ପାପଂ କଳେବରଂ କାଳଜବେନ ହିତ୍ୱା ।
କୀର୍ତ୍ତିଂ ବିଶୁଦ୍ଧାଂ ସୁରଲୋକଗୀତାଂ ବିତାୟ ମାମେଷ୍ୟସି ମୁକ୍ତବନ୍ଧଃ । ୧୩ ।
ଯ ଏତତ୍‌କୀର୍ତ୍ତୟେନ୍ନହ୍ୟଂ ତ୍ୱୟା ଗୀତମିଦଂ ନରଃ ।
ତ୍ୱାଞ୍ଚ ମାଞ୍ଚ ସ୍ମରନ୍ କାଲେ କର୍ମ୍ମବନ୍ଧାତ୍ ପ୍ରମୁଚ୍ୟତେ । ୧୪ ।

ଶ୍ରୀପ୍ରହ୍ଲାଦ ଉବାଚ ।

ବରଂ ବରୟ ଏତତ୍ତେ ବରଦେଶାନ୍ମହେଶ୍ୱରାତ୍ ।
ଯଦନିନ୍ଦତ୍ ପିତା ମେ ତ୍ୱାମବିଦ୍ୱାଂସ୍ତେଜ ଐଶ୍ୱରମ୍ । ୧୫ ।
ବିଦ୍ଧାମର୍ଷାଶୟଃ ସାକ୍ଷାତ୍ ସର୍ବଲୋକଗୁରୁଂ ପ୍ରଭୁମ୍ ।
ଭ୍ରାତୃହେତି ମୃଷାଦୃଷ୍ଟିସ୍ତ୍ୱଦ୍‌ଭକ୍ତେ ମୟି ଚାଘବାନ୍ । ୧୬ ।

---

ମୁଁ ସର୍ବଭୂତରେ ବିଦ୍ୟମାନ । ମୁଁ ଯଜ୍ଞାଧିଷ୍ଠାତା ଈଶ୍ୱର । ତୁ ଏପରି ଭାବନା କରି ମୋର ପ୍ରିୟ କଥା ଶ୍ରବଣ କର ଏବଂ ଯୋଗାଲମ୍ବନ କରି ସମସ୍ତ କର୍ମ ମୋଠାରେ ସମର୍ପଣ କରି ମୋର ପୂଜା କର ।୧୨।

ତୁ ଭୋଗ ଅର୍ଥାତ୍ ସୁଖାନୁଭବ ଦ୍ୱାରା ପ୍ରାରବ୍ଧ ପୁଣ୍ୟ ଏବଂ ଭୋଗକରି କାଳକ୍ରମେ ଦେହତ୍ୟାଗ କରି ସୁରଲୋକ ବର୍ଣ୍ଣିତ ବିଶୁଦ୍ଧ କୀର୍ତ୍ତି ବିସ୍ତାର କରି ସମସ୍ତ ବନ୍ଧନରୁ ମୁକ୍ତ ହେବୁ ଏବଂ ମୋତେ ପ୍ରାପ୍ତ ହେବୁ ।୧୩

ଯେଉଁ ବ୍ୟକ୍ତି ତୋତେ ଓ ମୋତେ ଏବଂ ଆମ୍ଭମାନଙ୍କର ଏପରି ଚରିତ୍ର ଶ୍ରବଣ କରିବେ ଏବଂ ମୋତେ ଉଦ୍ଦେଶ କରି ତୁ ଯେଉଁ ସ୍ତବ କରିଅଛୁ ତାହା କୀର୍ତ୍ତନ କରିବେ ସେହି ବ୍ୟକ୍ତି ପ୍ରାରବ୍ଧ କର୍ମ ଶେଷରେ ପାପ ପୁଣ୍ୟାତ୍ମକ କର୍ମବନ୍ଧନରୁ ମୁକ୍ତ ହେବ । ୧୪ ।

ଶ୍ରୀପ୍ରହ୍ଲାଦ କହିଲେ—

ହେ ମହେଶ୍ୱର । ଆପଣ ବ୍ରହ୍ମାଦି ସମସ୍ତ ବରଦାତାଙ୍କର ଈଶ୍ୱର । ଆପଣଙ୍କ ନିକଟରେ ମୁଁ ଏହି ମାତ୍ର ବର ପ୍ରାର୍ଥନା କରୁଅଛି ଯେ ମୋର ନିନ୍ଦନୀୟ ପିତା କ୍ରୋଧବଶତଃ ଆପଣଙ୍କର ତେଜ ଈଶ୍ୱର ଦଉ ନ ବୁଝି ଆପଣ ତାହାଙ୍କର ଭ୍ରାତୃହନ୍ତା ବିଷ୍ଣୁ ଏପରି ଭ୍ରାନ୍ତ ଧାରଣା ବଶରେ ଆପଣଙ୍କର ଭକ୍ତ ମୋ ପ୍ରତି

---

ତୁ ମୋତେ ସର୍ବଭୂତେ ଭଜ
ଯଜ୍ଞ-ଈଶ୍ୱର ରୂପେ ପୂଜ
କର୍ମ୍ମ ବିନାଶି ଯୋଗବଳେ
ସାଧ ଏ ଅବନୀ ମଣ୍ଡଳେ
ଶରୀର ଛାଡ଼ କାଳବଳେ
ପଶିବୁ ମୋ ପାଦକମଳେ ।୧୨,୧୩

ତୁ ଯେତେ ସ୍ତୁତି କଲୁ ମୋତେ
ସଂସାର ତାରଣ ନିମନ୍ତେ
ରଜନୀ ଅନ୍ତେ ପ୍ରାତଃକାଳେ
ଆନନ୍ଦେ ହୃଦୟ କମଳେ
ମୋତେ ସ୍ମରିବେ ତୋର ସଙ୍ଗେ
ପାପ ନ ରହୁ ତାଙ୍କ ଅଙ୍ଗେ
ଅଶେଷ କର୍ମ୍ମ-ବନ୍ଧ ପାଶ
ତତକ୍ଷଣେ ହୋଇବ ବିନାଶ ।୧୪।

ଏମନ୍ତେ ନରହରି ବାକ୍ୟେ
ଅସୁର ପୁତ୍ର ମନ ଶୋକେ
ବୋଲଇ ଶିରେ ଦେଇ କର
ହେ ନାଥ ଶୁଣ ଚକ୍ରଧର
ତୁ ବର-ଦାତାଙ୍କ ଈଶ୍ୱର
ପିତାର ଅର୍ଥେ ମାଗେଁ ବର
ତୁ ବ୍ରହ୍ମ ପ୍ରଭୁ ଚକ୍ରପାଣି
ତୋର ମହିମା ସେ ନ ଜାଣି
ତୋତେ ନିନ୍ଦଇ କୋପ ମନେ
ବୋଲେ ଈଶ୍ୱର ମୁଁ ଭୁବନେ

ତସ୍ମାତ୍ ପିତା ମେ ପୂୟେତ୍ ଦୁରନ୍ତାଦୁସ୍ତରାଦଘାତ ।
ପୂତସ୍ତେଽପାଙ୍ଗସଂଦୃଷ୍ଟସ୍ତଦା କୃପଣବତ୍ସଳ । ୧୭ ।

ଶ୍ରୀଭଗବାନୁବାଚ ।

ତ୍ରିଃସପ୍ତଭିଃ ପିତା ପୂତଃ ପିତୃଭିଃ ସହ ତେଽନଘ ।
ଯତ୍ ସାଧୋଽସ୍ୟ କୁଲେ ଜାତୋ ଭବାନ୍ ବୈ କୁଳପାବନଃ । ୧୮ ।
ଯତ୍ର ଯତ୍ର ଚ ମଦ୍‌ଭକ୍ତାଃ ପ୍ରଶାନ୍ତାଃ ସମଦର୍ଶିନଃ ।
ସାଧବଃ ସମୁଦାଚାରାସ୍ତେ ପୂୟନ୍ତେଽପି କୀକଟାଃ । ୧୯ ।
ସର୍ବାତ୍ମନା ନ ହିଂସନ୍ତି ଭୂତଗ୍ରାମେଷୁ କିଞ୍ଚନ ।
ଉଚ୍ଚାବଚେଷୁ ଦୈତ୍ୟେନ୍ଦ୍ର ମଦ୍‌ଭାବବିଗତସ୍ପୃହାଃ । ୨୦ ।

---

ସେ ବଡ଼ଦ୍ୱେଷ ପରାୟଣ ହୋଇଥିଲେ ଏବଂ ସର୍ବଲୋକ ଗୁରୁ ଏବଂ ପ୍ରଭୁ ଆପଣଙ୍କୁ ନିନ୍ଦା କରିଥିଲେ । ହେ କୃପଣ ବତ୍ସଳ ! ଆପଣଙ୍କର ଅପାଙ୍ଗ ଦୃଷ୍ଟିରେ ମୋର ପିତ ପବିତ୍ର ତଥାପି ଏହି ଦୁରନ୍ତ ପାପରୁ ସେ ଯେପରି ମୁକ୍ତ ହେବେ ଆପଣ କୃପାକରି ସେହି ବର ପ୍ରଦାନ କରନ୍ତୁ । ୧୬,୧୭ ।

ଶ୍ରୀଭଗବାନ କହିଲେ—

ହେ ଅନଘ ! ହେ ସାଧୁ ! ତୁମ୍ଭେ ଯେତେବେଳେ ଦୈତ୍ୟରାଜ କୁଳରେ ଜନ୍ମଗ୍ରହଣ କରି କୁଳ ପବିତ୍ର କରିଅଛ, ସେତେବେଳେ ଏକବିଂଶତ ପୁରୁଷ ସହିତ ତୁମ୍ଭର ପିତା ପବିତ୍ର ହୋଇଅଛନ୍ତି । ୧୮ ।

ଯେଉଁ ସ୍ଥାନରେ ପ୍ରଶାନ୍ତ, ସମଦର୍ଶୀ, ଉଦାର ଓ ସାଧୁ ମୋର ଭକ୍ତ ବାସ କରନ୍ତି; ସେଠାରେ ମଗଧାଦି ନିକୃଷ୍ଟ ଦେଶବାସୀମାନେ ମଧ୍ୟ ସେମାନଙ୍କର ସଙ୍ଗବଶରେ ପବିତ୍ର ହୋଇଥାନ୍ତି । ୧୯ ।

ହେ ଦୈତ୍ୟେନ୍ଦ୍ର ! ମୋର ଭକ୍ତି ବଳରେ ଯେଉଁ ମାନଙ୍କର ବାସନା ବିନଷ୍ଟ ହୋଇଅଛି, ସେମାନେ ଭ୍ରମରେ ସୁଦ୍ଧା ଉତ୍କୃଷ୍ଟ ବା ନିକୃଷ୍ଟ କୌଣସି ପ୍ରାଣୀ ପ୍ରତି ହିଂସା କରନ୍ତି ନାହିଁ । ୨୦ ।

---

ଭ୍ରାତ ମରଣେ କୋପ ବହି
ତୋହର ମହିମା ନିନ୍ଦଇ
ତୋ ଭକ୍ତ ବୋଲିକରି ମୋତେ
କ୍ରୋଧେ ହିଂସଇ ଅବିରତେ
ସେ ପାପୁଁ ପିତାକୁ ଉଦ୍ଧର
ହେ ନାଥ ମାଗେ ଏହି ବର
ଅମୃତପୂର ଦୃଷ୍ଟି ତୋର
ପଡ଼ଇ ଯାହାର ଉପର
ପବିତ୍ର ଦୃଷ୍ଟିମାତ୍ରେ ହୋଇ
ଅଙ୍ଗେ ଦୁରିତ ନ ରହଇ
ଏମନ୍ତ ଶୁଣି ତା ବଚନ
କହନ୍ତି ପ୍ରଭୁ ଭଗବାନ ।୧୫-୧୭

ଶ୍ରୀଭଗବାନୁବାଚ—

କଶ୍ୟପ ମରୀଚ ବିଧାତା
ସହିତେ ଉଦ୍ଧରିଲୁ ପିତା
ଅପର କେତେ ପିତୃ ଯେତେ
ସର୍ବେ ପବିତ୍ର ତୋ ଚରିତେ
ଏହାଙ୍କ କୁଳେ ତୋର ଜନ୍ମ
ତୁ ପୁତ୍ର ସକଳ ପାବନ । ୧୮ ।
ମୋର ଭକତ ଯହିଁ ଥାଇ
ସମଦରଶୀ ଶାନ୍ତ ହୋଇ
ଜଗତେ ସାଧୁ ସେ ବୋଲନ୍ତି
ପତିତ, ପବିତ୍ର କରନ୍ତି । ୧୯ ।
ପ୍ରାଣିଙ୍କ ହିଂସା ତାଙ୍କ ନାହିଁ
ଯେ ଉଚ୍ଚ ନୀଚେ ଦେହ ବହି
ମୋହର ଭାବେ ନିତ୍ୟେ ଥାନ୍ତି
ନିଷ୍କାମ ଭାବେ ମୋତେ ଭଜନ୍ତି
ଯେ ପୁଣି ଥାନ୍ତି ତାଙ୍କ ପଛେ
ସେ ମୋର ଭକତ ପ୍ରତ୍ୟକ୍ଷେ ।୨୦

ଭବନ୍ତି ପୁରୁଷା ଲୋକେ ମଦ୍‌ଭକ୍ତାସ୍ତ୍ୱାମନୁ ବ୍ରତାଃ ।
ଭବାନ୍ ମେ ଖଲୁ ଭକ୍ତାନାଂ ସର୍ବେଷାଂ ପ୍ରତିରୂପଧୃକ୍ । ୨୧ ।
କୁରୁ ତ୍ୱଂ ପ୍ରେତକୃତ୍ୟାନ ପିତୁଃ ପୂତସ୍ୟ ସର୍ବଶଃ ।
ମଦଙ୍ଗସ୍ପର୍ଶନେନାଙ୍ଗ ଲୋକାନ୍ ଯାସ୍ୟତି ସୁପ୍ରଜାଃ । ୨୨ ।
ପିତ୍ର୍ୟଞ୍ଚ ସ୍ଥାନମାତିଷ୍ଠ ଯଥୋକ୍ତଂ ବ୍ରହ୍ମବାଦିଭିଃ ।
ମୟ୍ୟାବେଶ୍ୟ ମନସ୍ତାତ କୁରୁ କର୍ମାଣିମତ୍‌ପରଃ । ୨୩ ।

ଶ୍ରୀନାରଦ ଉବାଚ ।

ପ୍ରହ୍ଲାଦୋପି ତଥା ଚକ୍ରେ ପିତୁର୍ଯତ୍ ସାମ୍ପରାୟିକମ୍ ।
ଯଥାହ ଭଗବାନ୍ ରାଜନ୍ନଭିଷିକ୍ତୋ ଦ୍ୱିଜାତିଭିଃ । ୨୪ ।

---

ସଂସାରରେ ଯେଉଁମାନେ ତୁମର ଚରିତ୍ର ଅନୁକରଣ କରି ମୋର ଆରାଧନା କରିବେ ସେମାନେ ମୋର ଯଥାର୍ଥ ଭକ୍ତ । ତୁମେ ମୋର ଶ୍ରେଷ୍ଠ ଭକ୍ତ ଏବଂ ତୁମେ ମୋର ଭକ୍ତମାନଙ୍କର ଗୁଣର ସ୍ଥଳ । ୨୧ ।

ହେ ଅଙ୍ଗ ! ମୋର ଅଙ୍ଗସ୍ପର୍ଶରେ ତୁମର ପିତା ସର୍ବ ପ୍ରକାରେ ପବିତ୍ର ହୋଇ ଅଛନ୍ତି । ତୁମେ ତାହାଙ୍କର ପବିତ୍ରତାର କାରଣ । ସେଥିପାଇଁ ତୁମର କଷ୍ଟ କରିବାର ଆବଶ୍ୟକ ନାହିଁ, କେବଳ ପୁତ୍ରର କର୍ତ୍ତବ୍ୟ ସ୍ୱରୂପ ଶ୍ରାଦ୍ଧ ତୁମେ ସମ୍ପାଦନ କର । ସେ ଉତ୍ତମ ଲୋକ ପ୍ରାପ୍ତ ହେବେ ଏଥିରେ ସନ୍ଦେହ ନାହିଁ । ୨୨ ।

ହେ ତାତ ! ବ୍ରହ୍ମବାଦୀମାନେ ଯେପରି ଆଦେଶ କରିଅଛନ୍ତି ତୁମେ ସେହିପରି ପିତାଙ୍କର ସିଂହାସନରେ ଆରୂଢ ହୋଇ ରାଜ୍ୟ ପାଳନ କର ଏବଂ ମୋତେ ଏକମାତ୍ର ଆଶ୍ରୟ ସ୍ଥଳ ଭାବି ମୋଠାରେ ଚିତ୍ତ ସମର୍ପଣ କର । ୨୩ ।

ଶ୍ରୀନାରଦ କହିଲେ—

ଭଗବାନଙ୍କର ବାକ୍ୟ ଶ୍ରବଣ କରି ବ୍ରାହ୍ମଣ ମାନଙ୍କ କର୍ତ୍ତୃକ ରାଜ୍ୟରେ ଅଭିଷିକ୍ତ ହୋଇ ପ୍ରହ୍ଲାଦ ପିତାଙ୍କର ପ୍ରେତକୃତ୍ୟାଦି ସମ୍ପାଦନ କରିଲେ । ୨୪ ।

---

ତୁ ମୋର ଭକ୍ତମଧ୍ୟେ ସାର
ମହିମା ବର୍ଣ୍ଣିଲୁ ମୋହର
ଏଣୁ ତୁ ବଇଷ୍ଣବବର
ମୋର ବଚନ ଏବେ କର । ୨୧ ।
ଯେବେ ଭକତଜନ ଯେତେ
ଯତ୍ନ କରନ୍ତି ପିତୃ ଅର୍ଥେ
ପୁତ୍ର ସ୍ୱଧର୍ମ୍ମ ଏ ବେଭାର
ପିତାକୁ ପ୍ରେତ୍ୟ କର ପାର

ମୋ ଅଙ୍ଗ ସ୍ପର୍ଶରୁ ତୋ ତାତ
ସ୍ୱଭାବେ ହୋଇବ ମୁକତ
ବେଦବାଦଙ୍କ ବାକ୍ୟ ଅର୍ଥେ
ତର୍ପଣ କର ପିତୃ ଅର୍ଥେ
ମୋ ପାଦେ ମନ କରି ସ୍ଥିର
ପିଣ୍ଡେ ତୁ ପିତାକୁ ଉଦ୍ଧର । ୨୨, ୨୩

ଶ୍ରୀନାରଦ ଉବାଚ —

ନୃସିଂହ ଆଜ୍ଞା ଘେନି ଶିରେ
ପିତାର କାର୍ଯ୍ୟ ଗଙ୍ଗା ତୀରେ

ଆନନ୍ଦେ ଦାନବର ବଳା
ପିତୃ ତର୍ପଣ ପିଣ୍ଡ ଦେଲା
ବିପ୍ରେ ମିଳିଲେ ବିଷ୍ଣୁ ବାକ୍ୟେ
ପ୍ରହଲାଦର ଅଭିଷେକେ
କ୍ଷିତି ମଣ୍ଡଳେ କଲେ ରାଜା
ନୃପେ କରନ୍ତି ପାଦେ ପୂଜା । ୨୪ ।

ପ୍ରସାଦସୁମୁଖଂ ଦୃଷ୍ଟ୍ୱା ବ୍ରହ୍ମା ନରହରିଂ ହରିମ ।
ସ୍ତୁତ୍ୱା ବାଗ୍‌ଭିଃ ପବିତ୍ରାଭିଃ ପ୍ରାହ ଦେବାଦିଭିର୍ବୃତଃ । ୨୫ ।

ଶ୍ରୀବ୍ରହ୍ମୋବାଚ ।

ଦେବଦେବାଖିଳାଧ୍ୟକ୍ଷ ଭୂତଭାବନ ପୂର୍ବଜ ।
ଦିଷ୍ଟ୍ୟା ତେ ନିହତଃ ପାପୋ ଲୋକସନ୍ତାପନୋଽସୁରଃ । ୨୬ ।
ଯୋଽସୌ ଲବ୍‌ଧବରୋ ମତ୍ତୋ ନ ବଧ୍ୟୋ ମମ ସୃଷ୍ଟିଭିଃ ।
ତପୋ ଯୋଗବଳୋନ୍ନଦ୍ଧଃ ସମସ୍ତନିଗମାନହନ୍ । ୨୭ ।
ଦିଷ୍ଟ୍ୟା ତତ୍ତନୟଃ ସାଧୁର୍ମହାଭାଗବତୋଽର୍ଭକଃ ।
ତ୍ୱୟା ବିମୋଚିତୋ ମୃତ୍ୟୋର୍ଦିଷ୍ଟ୍ୟା ତ୍ୱାଂ ସମିତୋଽଧୁନା । ୨୮ ।
ଏତଦ୍‌ବପୁସ୍ତେ ଭଗବାନ୍ ଧ୍ୟାୟତଃ ପରମାତ୍ମନଃ ।
ସର୍ବତୋ ଗୋପ୍ତୃ ସନ୍ତ୍ରାସାନ୍ମୃତ୍ୟୋରପି ଜିଘାଂସତଃ । ୨୯ ।

---

ପ୍ରହ୍ଲାଦଙ୍କରସ୍ତବରେ ବିଗତକ୍ରୋଧ ଭଗବାନ୍ ନୃସିଂହ ଅତ୍ୟନ୍ତପ୍ରୀତମନରେ ଅତ୍ୟନ୍ତ ପ୍ରଫୁଲ୍ଲ ବଦନରେ ଉପବିଷ୍ଟ ହୋଇଅଛନ୍ତି ଦେଖି ଦେବଗଣ ପରିବୃତ ବ୍ରହ୍ମା ପବିତ୍ରବାକ୍ୟରେ ସ୍ତବକରିବାକୁ ଲାଗିଲେ । ୨୫ ।

ଶ୍ରୀବ୍ରହ୍ମା କହିଲେ—

ହେ ଦେବ ଦେବ ! ହେ ଅଖିଳ ବ୍ରହ୍ମାଣ୍ଡ ପତି ! ହେ ଭୂତ ଭାବନ ପୂର୍ବଜ ! ଆପଣ ଲୋକ ସନ୍ତାପକାରୀ ଏହି ପାପାତ୍ମା ଅସୁରକୁ ଆମ୍ଭମାନଙ୍କର ସୌଭାଗ୍ୟକ୍ରମେ ବିନାଶ କରିଅଛନ୍ତି । ୨୬ ।

ମୋ ଠାରୁ ବରପ୍ରାପ୍ତ ହୋଇ ଏହି ଅସୁର ଦେବାସୁରଙ୍କର ଅବଧ୍ୟ ହୋଇ ଥିଲା, ଏହି ଅସୁର ତପୋବଳରେ, ଯୋଗବଳରେ ଅତ୍ୟନ୍ତ ଗର୍ବିତ ହୋଇ ସମସ୍ତ ବେଦ ବିହିତ ଧର୍ମ ନଷ୍ଟ କରିଅଛି । ୨୭ ।

ଆପଣ ତାହାର ବାଳକ ପୁତ୍ର, ସାଧୁ; ମହାଭାଗବତ ପ୍ରହ୍ଲାଦକୁ ଆମ୍ଭମାନଙ୍କ ଭାଗ୍ୟବଳରେ ମୃତ୍ୟୁ ମୁଖରୁ ରକ୍ଷା କରିଅଛନ୍ତି । ଏହି ସାଧୁ ବାଳକ ଆପଣଙ୍କର ଶରଣାଗତ । ୨୮ ।

ହେ ଭଗବାନ୍ । ଆପଣଙ୍କର ଏହି ନୃସିଂହ ରୂପ ଯେଉଁ ଲୋକେ ଚିନ୍ତାକରିବେ ସେମାନେ ଜନ୍ମାନ୍ତକାରୀ ସର୍ବ ପ୍ରକାର ଯମ ଭୟରୁ ରକ୍ଷା ପାଇବେ । ୨୯ ।

---

ଅଦ୍ଭୁତ ଦେଖି ତାର କଥା
ଆନନ୍ଦ ବଦନେ ବିଧାତା
ସର୍ବ ଦେବଙ୍କୁ ଘେନି ସଙ୍ଗେ
ମିଳିଲେ ନରସିଂହ ଆଗେ
ଆନନେ କର ଦେଇ ଶିରେ
ପବିତ୍ର ବାକ୍ୟେ ସ୍ତୁତି କରେ । ୨୫ ।

ଶ୍ରୀବ୍ରହ୍ମୋବାଚ—

ହେ ଦେବ ଦେବଙ୍କର ବର
ଅଖିଳ ଲୋକ ସୃଷ୍ଟି କର
ଭୂତ ଭାବନ ପୂର୍ବ ବିଧି
ତୁ ନାଥ କରୁଣା ଜଳଧି
ଲୋକ-ସନ୍ତାପି ଏ ଅସୁର
ହେ ନାଥ କଲୁ ତୁ ନିବାର
ମୋହର ଠାରୁଁ ବର ପାଇ
ମୋ ସୃଷ୍ଟି ମଧ୍ୟେ ମୃତ୍ୟୁ ନାହିଁ
ତପର ତେଜବନ୍ତେ ଦୁଷ୍ଟ
ନିଗମ ମାର୍ଗ କଲା ନଷ୍ଟ
ତୁ ନାଥ ତାହାକୁ ସଂହାରି
ରଖିଲୁ ବେଦ ମାର୍ଗ ଶିରୀ । ୨୬,୨୭
ଏହାର ପୁତ୍ର ମହାଭାଗ
ବିଷ୍ଣୁଭକତ ଏ ଦୁର୍ଲଭ
ତାକୁ ରଖିଲୁ ପିତା ମାରି
ମରଣ ସଙ୍କଟୁ ଉଦ୍ଧରି
ଏ ଯେ ନୃସିଂହ ରୂପ ତୋର
ଧ୍ୟାନେ ଚିନ୍ତିବେ ଯେତେ ନର

ଶ୍ରୀଭଗବାନୁବାଚ ।
ମୈବଂ ବିଭୋଽସୁରାଣାନ୍ତେ ପ୍ରଦେୟଃ ପଦ୍ମସମ୍ଭବ ।
ବରଃ କ୍ରୂରନିସର୍ଗାଣାମହୀନାମମୃତଂ ଯଥା । ୩୦ ।
ଶ୍ରୀନାରଦ ଉବାଚ ।
ଇତ୍ୟୁକ୍ତ୍ୱା ଭଗବାନ୍ ରାଜଂସ୍ତତଶ୍ଚାନ୍ତର୍ଦ୍ଦଧେ ହରିଃ ।
ଅଦୃଶ୍ୟଃ ସର୍ବଭୂତାନାଂ ପୂଜିତଃ ପରମେଷ୍ଠିନା । ୩୧ ।
ତତଃ ସଂପୂଜ୍ୟ ଶିରସା ବବନ୍ଦେ ପରମେଷ୍ଠିନମ୍ ।
ଭବଂ ପ୍ରଜାପତୀନ୍ ଦେବାନ୍ ପ୍ରହ୍ଲାଦୋ ଭଗବତ୍କଳାଃ । ୩୨ ।
ତତଃ କାବ୍ୟାଦିଭିଃ ସାର୍ଦ୍ଧଂ ମୁନିଭିଃ କମଳାସନଃ ।
ଦୈତ୍ୟାନାଂ ଦାନବାନାଞ୍ଚ ପ୍ରହ୍ଲାଦମକରୋତ୍ପତିମ୍ । ୩୩ ।

---

ଶ୍ରୀଭଗବାନ କହିଲେ—

ହେ ପଦ୍ମ ସମ୍ଭବ ! ହେ ବିଭୋ ! ଖଳ ପ୍ରକୃତି ସର୍ପକୁ ଦୁଗ୍ଧ ପାନ କରାଇଲା ପରି, ଆପଣ ଅସୁର ମାନଙ୍କୁ ଆଉ ଏପରି ବର ଦେବେ ନାହିଁ । ୩୦ ।

ଶ୍ରୀନାରଦ କହିଲେ—

ହେ ରାଜନ୍ ! ବ୍ରହ୍ମାଙ୍କ କର୍ତ୍ତୃକ ଶ୍ରୀହରି ଏହିପରି ପୂଜିତ ହୋଇ ତାହାଙ୍କୁ ଏପରି ସାବଧାନ କରାଇ ଦେଇ ଲୋକ ଲୋଚନ ଅଗୋଚରରେ ସେଠାରୁ ଅନ୍ତର୍ହିତ ହୋଇଗଲେ । ୩୧ ।

ଭଗବାନଙ୍କର ପ୍ରସ୍ଥାନ ଉତ୍ତାରୁ ପ୍ରହ୍ଲାଦ ବ୍ରହ୍ମା, ଶିବ ଓ ଭଗବାନଙ୍କର ଅଂଶ ସ୍ୱରୂପ ଅନ୍ୟ ଦେବତା ମାନଙ୍କୁ ଓ ପ୍ରଜାନଙ୍କୁ ଆରାଧନା କରି ଅବନତ ମସ୍ତକରେ ପ୍ରଣାମ କରିଥିଲେ । ୩୨ ।

ବ୍ରହ୍ମା ଶୁକ୍ରାଚାର୍ଯ୍ୟ ପ୍ରମୁଖ ମୁନିମାନଙ୍କ ସହିତ ମିଳିତ ହୋଇ ପ୍ରହ୍ଲାଦଙ୍କୁ ଦୈତ୍ୟ ଓ ଦାନବମାନଙ୍କର ଅଧିପତି କରିଥିଲେ । ୩୩ ।

---

ସେ ସର୍ବ ସଙ୍କଟୁ ତରିବେ
ସ୍ମରଣେ ମରଣ ଜିଣିବେ । ୨୮, ୨୯
ଏମନ୍ତେ ବ୍ରହ୍ମାର ବଚନ
ଶୁଣି କହନ୍ତି ଭଗବାନ

ଶ୍ରୀଭଗବାନୁବାଚ—

ଶୁଣ ବିଧାତା ମୋ ଉତ୍ତର
ତପ ସନ୍ତୋଷେ ଯେବା ବର
ନ ଦେବୁ ଅସୁରଙ୍କ ମଧ୍ୟେ
ତପ ସମାଧି ଯୋଗ ସାଧେ
ଦୁଷ୍ଟ ପ୍ରାଣିଙ୍କି ବର ଦାନ
ସର୍ପକୁ ଯେହ୍ନେ କ୍ଷୀର ପାନ । ୩୦ ।

ଶ୍ରୀନାରଦଉବାଚ—

ବ୍ରହ୍ମାଙ୍କୁ ବୋଧି ଏ ବଚନେ
ତକ୍ଷଣେ ଗଲେ ଅନ୍ତର୍ଦ୍ଧାନେ
ବ୍ରହ୍ମା ପୂଜିଲେ ନରହରି
ତକ୍ଷଣେ ଗଲେ ନିଜପୁରୀ
ଅଦୃଶ୍ୟ ପ୍ରାଣିଙ୍କ ଲୋଚନେ
ଜୟ ଶବଦ ତ୍ରିଭୁବନେ
ପ୍ରହ୍ଲାଦ ଦେଖି ଆନନ୍ଦ
ଶିରେ ବନ୍ଦିଲା ବ୍ରହ୍ମାପାଦ
ସକଳ ପ୍ରଜାପତି ଗଣେ
ନମିଲା ଦେବଙ୍କ ଚରଣେ । ୩୧, ୩୨
ସନ୍ତୋଷ ହୋଇ ପଦ୍ମଯୋନି
ସଙ୍ଗେ ସପତ ମୁନି ଘେନି
ପ୍ରହ୍ଲାଦକୁ ରାଜପଦେ
ଦୈତ୍ୟ ଦାନବଙ୍କର ମଧ୍ୟେ
ଆଶିଷ ଦେଲେ ଦେବଗଣେ
କୋଳେ ବସାଇ ଜଣେ ଜଣେ

**ପ୍ରତିନନ୍ଦ୍ୟ ତତୋ ଦେବାଃ ପ୍ରୟୁଜ୍ୟ ପରମାଶିଷଃ ।**
**ସ୍ୱଧାମାନି ଯଯୂ ରାଜନ୍ ବ୍ରହ୍ମାଦ୍ୟାଃ ପ୍ରତିପୂଜିତାଃ । ୩୪ ।**
**ଏବଂ ଚ ପାର୍ଷଦୌ ବିଷ୍ଣୋଃ ପୁତ୍ରତ୍ୱଂ ପ୍ରାପିତୌ ଦିତେଃ ।**
**ହୃଦି ସ୍ଥିତେନ ହରିଣା ବୈରଭାବେନ ତୌ ହତୌ । ୩୫ ।**
**ପୁନଶ୍ଚ ବିପ୍ରଶାପେନ ରାକ୍ଷସୌ ତୌ ବଭୂବତୁଃ ।**
**କୁମ୍ଭକର୍ଣ୍ଣଦଶଗ୍ରୀବୌ ହତୌ ତୌ ରାମବିକ୍ରମୈଃ । ୩୬ ।**
**ଶୟାନୌ ଯୁଧି ନିର୍ଭିନ୍ନହୃଦୟୌ ରାମଶାୟକୈଃ ।**
**ତଚ୍ଚିତ୍ତୌ ଜହତୁର୍ଦେହଂ ଯଥା ପ୍ରାକ୍ତନଜନ୍ମନି । ୩୭ ।**
**ତାବିହାଥ ପୁନର୍ଜାତୌ ଶିଶୁପାଲକରୂଷଜୌ ।**
**ହରୌ ବୈରାନୁବନ୍ଧେନ ପଶ୍ୟତସ୍ତେ ସମୀୟତୁଃ । ୩୮ ।**

---

ହେ ମହାରାଜ ! ବ୍ରହ୍ମାଦି ଦେବତାମାନେ ପ୍ରହ୍ଲାଦଙ୍କୁ ଆଶୀର୍ବାଦ ଓ ଅଭିନନ୍ଦନ କରି ଓ ତାଙ୍କଠାରୁ ପୂଜା ଗ୍ରହଣ କରି ନିଜ ନିଜ ଭବନକୁ ଫେରି ଯାଇଥିଲେ । ୩୪ ।

ଏହିପରି ଭାବରେ ବିଷ୍ଣୁ ପାର୍ଷଦ ଜୟ ବିଜୟ ଦିତିଙ୍କର ପୁତ୍ର ହିରଣ୍ୟକଶିପୁ ରୂପେ ସର୍ବଦା ଶତ୍ରୁଭାବରେ ଶ୍ରୀହରିଙ୍କୁ ହୃଦୟରେ ଚିନ୍ତାକରି ତତ୍‌କର୍ତ୍ତୃକ ନିହତ ହୋଇଥିଲେ । ୩୫ ।

ତଦନନ୍ତର ପୁଣି ସେମାନେ ବ୍ରାହ୍ମଣ ଅଭିଶାପରେ ରାବଣ ଓ କୁମ୍ଭକର୍ଣ୍ଣ ରୂପେ ରାକ୍ଷସ ଜନ୍ମ ଲଭି ଶ୍ରୀରାମଙ୍କ କର୍ତ୍ତୃକ ନିହତ ହୋଇଥିଲେ । ୩୬ ।

ଶ୍ରୀ ରାମଙ୍କର ସେହି ବାଣରେ ଯୁଦ୍ଧକ୍ଷେତ୍ରରେ ସେମାନଙ୍କର ହୃତ୍‌ପିଣ୍ଡ ବିଦୀର୍ଣ୍ଣ ହେବାରୁ ସେମାନେ ଶୟନାବସ୍ଥାରେ ପୂର୍ବଜନ୍ମ ତୁଲ୍ୟ ଏହି ଶ୍ରୀରାମଙ୍କୁ ଶତ୍ରୁଭାବରେ ହୃଦୟରେ ଧ୍ୟାନ କରୁ କରୁ ପ୍ରାଣ ପରିତ୍ୟାଗ କରିଥିଲେ । ୩୭ ।

ତଦନନ୍ତର ସେମାନେ ଏହି ଯୁଗରେ ଶିଶୁପାଳ ଓ ଦନ୍ତବକ୍ର ରୂପେ ଜନ୍ମଗ୍ରହଣ କରି ଶତ୍ରୁଭାବରେ ତୁମ୍ଭମାନଙ୍କ ସମ୍ମୁଖରେ ଶ୍ରୀକୃଷ୍ଣ ଅଙ୍ଗରେ ମିଶିଯାଇ ଅଛନ୍ତି । ୩ ।

---

ପୂଜିଲେ ବ୍ରହ୍ମା ଆଦି ମୂନେ
ଇନ୍ଦ୍ରାଦି ଦଶ ଦିଗପାଳେ
ଅସୁର-ପୁତ୍ର ସୁପୂଜିତେ
ସର୍ବେ ପରମାନନ୍ଦ ଚିତ୍ତେ
ସ୍ୱସ୍ଥାନେ ଗଲେ ଦେବଗଣ,
ଏବେହେ। ଧର୍ମସୁତ ଶୁଣ ।୩୩,୩୪
ଜୟ ବିଜୟ ବେନି ଭାଇ
ବିଷ୍ଣୁ ଭବନଦ୍ୱାରେ ଥାଇ
ବ୍ରହ୍ମା କୁମର ଶାପଫଳେ
ଜନ୍ମ ଲଭିଲେ ଦିତିକୋଳେ

ବଇରଭାବ ହରିପାଦେ
କରି ଲଭିଲେ ମୋକ୍ଷପଦେ
ହରିର ହସ୍ତେ ପ୍ରାଣ ଦେଇ
ପୁଣି ଜନ୍ମିଲେ ଦେହ ବହି ।୩୫।
ରାକ୍ଷସୀ ଗର୍ଭେ ଅବତାର
ରାବଣ କୁମ୍ଭକର୍ଣ୍ଣ ବୀର
ସୀତାହରଣେ ରାମ ବାଣେ
ପ୍ରାଣ ଛାଡ଼ିଲେ ଘୋର ରଣେ
ରାମ ଚରଣେ ଚିତ୍ତ ଦେଇ
ସଙ୍ଗ୍ରାମେମଲେବେନିଭାଇ ।୩୬,୩୭

ପୁଣି ଏ ଧରଣୀମଣ୍ଡଳେ
ଜନ୍ମ ହୋଇଲେ ରାଜକୁଳେ
ଯେ ଦନ୍ତବକ୍ର ଶିଶୁପାଳ
ତେଜ ସ୍ୱଭାବେ ଅନର୍ଗଳ
ବୈରାନୁବନ୍ଧେ ହରି ଦେହେ
ସାଯୁଜ୍ୟ ଲଭିଲେ ସମୂହେ ।୩୮।

ଏନଃ ପୂର୍ବକୃତଂ ଯତ୍ତଦ୍ରାଜାନଃ କୃଷ୍ଣବୈରିଣଃ ।
ଜହୁସ୍ତେଽନ୍ତେ ତଦାତ୍ମାନଃ କୀଟଃ ପେଶସ୍କୃତୋ ଯଥା । ୩୯ ।
ଯଥା ଯଥା ଭଗବତୋ ଭକ୍ତ୍ୟା ପରମୟାଽଭିଦା ।
ନୃପାଶ୍ଚୈଦ୍ୟାଦୟଃ ସାତ୍ମ୍ୟଂ ହରେସ୍ତଚ୍ଚିନ୍ତୟା ଯୟୁଃ । ୪୦ ।
ଆଖ୍ୟାତଂ ସର୍ବମେତତ୍ତେ ଯନ୍ମାଂ ତ୍ୱଂ ପରିପୃଷ୍ଟବାନ୍ ।
ଦମଘୋଷସୁତାଦୀନାଂ ହରେଃ ସାତ୍ମ୍ୟମପି ଦ୍ୱିଷାମ୍ । ୪୧ ।
ଏଷା ବ୍ରହ୍ମଣ୍ୟଦେବସ୍ୟ କୃଷ୍ଣସ୍ୟ ଚ ମହାତ୍ମନଃ ।
ଅବତାରକଥା ପୁଣ୍ୟା ବଧୋ ଯତ୍ରାଦିଦୈତ୍ୟୟୋଃ । ୪୨ ।
ପ୍ରହ୍ଲାଦସ୍ୟାନୁଚରିତଂ ମହାଭାଗବତସ୍ୟ ଚ ।
ଭକ୍ତିର୍ଜ୍ଞାନଂ ବିରକ୍ତିଶ୍ଚ ଯାଥାର୍ଥ୍ୟଞ୍ଚାସ୍ୟ ବୈ ହରେଃ । ୪୩ ।

---

ଯେପରି ପେଶକୃତ ନାମକ ପୋକ (ଘୋଟିପୋକ) କୀଟ ବିଷୟ ଚିନ୍ତା କରୁ କରୁ ସେହିରୂପ ଧାରଣ କରେ ସେହିପରି ଶ୍ରୀକୃଷ୍ଣଙ୍କ ଶତ୍ରୁ ଏହି ରାଜାମାନେ ଶତ୍ରୁଭାବରେ ହେଲେ ମଧ୍ୟ ଶ୍ରୀକୃଷ୍ଣଙ୍କୁ ଚିନ୍ତା କରୁ କରୁ ଶ୍ରୀକୃଷ୍ଣ ନିନ୍ଦା ଜନିତ ନିଖିଳ ପାପରୁ ବିମୁକ୍ତ ହୁଅନ୍ତି । ୩୯ ।

ଭେଦ ଜ୍ଞାନ ଶୂନ୍ୟ ପରମଭକ୍ତ ବିଶିଷ୍ଟ ଭକ୍ତମାନେ ଯେପରି ଭଗବତ୍ ସାଯୁଜ୍ୟ ଲାଭ କରିଅଛନ୍ତି, ସେହିପରି ଶିଶୁପାଳ ପ୍ରଭୃତି ରାଜଗଣ ଶତ୍ରୁଭାବରେ ସର୍ବଦା ଶ୍ରୀହରିଙ୍କୁ ଚିନ୍ତାକରି ଶ୍ରୀକୃଷ୍ଣ ସାଯୁଜ୍ୟ ଲାଭ କରିଅଛନ୍ତି । ୪୦ ।

ହେ ମହାରାଜ ଯୁଧିଷ୍ଠିର ! ଶତ୍ରୁଭାବରେ ଶିଶୁପାଳ ଓ ଦନ୍ତବକ୍ର ଶ୍ରୀକୃଷ୍ଣଙ୍କ ସାଯୁଜ୍ୟ ଲାଭ କରିବା ପ୍ରସଙ୍ଗ ଯାହା ମୋତେ ପ୍ରଶ୍ନ କରିଥିଲ ତାହା ମୁଁ ତୁମ୍ଭଙ୍କୁ ସମସ୍ତ କହିଲି । ୪୧ ।

ବ୍ରହ୍ମଣ୍ୟ ଦେବ ମହାତ୍ମା ଶ୍ରୀକୃଷ୍ଣଙ୍କର ପବିତ୍ର ଅବତାର ପ୍ରସଙ୍ଗ ଆଦି ଦୈତ୍ୟ ହିରଣ୍ୟ କଶିପୁ ବଧ ପ୍ରହ୍ଲାଦଙ୍କର ସମସ୍ତ ଚରିତ୍ର, ଭକ୍ତି, ଜ୍ଞାନ, ବୈରାଗ୍ୟ ଶ୍ରୀହରିଙ୍କ ସ୍ୱରୂପ, ସୃଷ୍ଟି, ସ୍ଥିତି, ପ୍ରଳୟକର୍ତ୍ତା ଶ୍ରୀହରିଙ୍କର ଗୁଣ ଓ କର୍ମମାନ ଦେବ ଓ ଦୈତ୍ୟମାନଙ୍କର ସ୍ଥିତିର ସମସ୍ତ ବିବରଣ—ଏ ସମସ୍ତ ଆନୁପୂର୍ବିକ ମୁଁ ତୁମ୍ଭ ନିକଟରେ ବର୍ଣ୍ଣନା କରି ଅଛି । ୪୨,୪୪ ।

---

ଏମନ୍ତେ ଯେତେ ରାଜାଗଣେ
ବିଷ୍ଣୁ ନିନ୍ଦିଲେ ରୂପଗୁଣେ
ଅନ୍ତେ ପାଇଲେ ବିଷ୍ଣୁ ଗତି
ଯେସନେ କୀଟ ପେଷସ୍କୃତି ।୩୯।
ଯେ ପ୍ରାଣୀ ଯେମନ୍ତ ଭଜଇ
ହରି ଭକତି ହୃଦେ ବହି
ସେହି ପ୍ରକାରେ ଲଭେ ଗତି
ଯେହ୍ନେ ଚୈଦ୍ୟ ଆଦି ନୃପତି ।୪୦

ଏବେ ହୋ ଶୁଣ ନୃପବର
ହରି ମହିମା ଅଗୋଚର
ଯେବେ ପୁଚ୍ଛିଲୁ ମୋତେ ଭାବେ
ସେ ହରି ଚରିତ ପ୍ରସ୍ତାବେ
ସେ ସର୍ବ ପ୍ରଶ୍ନ ତୋ ଅଗ୍ରତେ
କହିଲି ଯଥାଶକ୍ତି ମତେ ।୪୧।
ଏ କୃଷ୍ଣ-କଥା ସୁଧା-ରସ
ଆଦି ଅସୁରଙ୍କ ବିନାଶ

ପ୍ରହ୍ଲାଦର ଏ ଚରିତ
ସ୍ୱଭାବେ ମହାଭାଗ୍ୟବନ୍ତ
ଜ୍ଞାନ ବିରକ୍ତି ଭକ୍ତି ବଳେ
ରହିଲା କୃଷ୍ଣ ପାଦତଳେ ।୪୨,୪୩

ସର୍ଗସ୍ଥିତ୍ୟପ୍ୟୟେଶସ୍ୟ ଗୁଣକର୍ମାନୁବର୍ଣ୍ଣନମ୍ ।
ପରାବରେଷାଂ ସ୍ଥାନାନାଂ କାଲେନ ବ୍ୟତ୍ୟୟୋ ମହାନ୍ । ୪୪ ।
ଧର୍ମୋ ଭାଗବତାନାଞ୍ଚ ଭଗବାନ୍ ଯେନ ଗମ୍ୟତେ ।
ଆଖ୍ୟାନେଽସ୍ମିନ୍ ସମାମ୍ନାତମାଧ୍ୟାତ୍ମିକମଶେଷତଃ । ୪୫ ।
ଯ ଏତତ୍ ପୁଣ୍ୟମାଖ୍ୟାନଂ ବିଷ୍ଣୋର୍ବୀର୍ଯ୍ୟୋପବୃଂହିତମ୍ ।
କୀର୍ତ୍ତୟେଚ୍ଛ୍ରଦ୍ଧୟା ଶ୍ରୁତ୍ୱା କର୍ମପାଶୈର୍ବିମୁଚ୍ୟତେ । ୪୬ ।
ଏତଦ୍ୟ ଆଦିପୁରୁଷସ୍ୟ ମୃଗେନ୍ଦ୍ରଲୀଳାଂ ଦୈତ୍ୟେନ୍ଦ୍ରଯୂଥପବଧଂ ପ୍ରୟତଃ ପଠେତ ।
ଦୈତ୍ୟାତ୍ମଜସ୍ୟ ଚ ସତାଂ ପ୍ରବରସ୍ୟ ପୁଣ୍ୟଂ ଶ୍ରୁତ୍ୱାନୁଭାବମକୁତୋଭୟମେତି ଲୋକମ୍ । ୪୭
ଯୂୟଂ ନୃଲୋକେ ବତ ଭୂରିଭାଗା ଲୋକଂ ପୁନାନା ମୁନୟୋଽଭିଯନ୍ତି ।
ଯେଷାଂ ଗୃହାନାବସତୀତି ସାକ୍ଷାଦ୍ ଗୂଢ଼ଂ ପରଂବ୍ରହ୍ମ ମନୁଷ୍ୟଲିଙ୍ଗମ୍ । ୪୮ ।

---

ଯେଉଁ ଭାଗବତ ଧର୍ମ ଦ୍ୱାରା ଏବଂ ଅନ୍ୟାନ୍ୟ ଆଧ୍ୟାତ୍ମିକ ବିବରଣଦ୍ୱାରା ଭଗବାନ୍ ମନୁଷ୍ୟର ଅବଗତ ବିଷୟ ହୁଅନ୍ତି ତାହା ମୁଁ ବିସ୍ତୃତଭାବରେ ତୁମ୍ଭ ନିକଟରେ ବ୍ୟାଖ୍ୟା କରିଅଛି । ୪୫ ।

ଯେଉଁ ବ୍ୟକ୍ତି ବିଷ୍ଣୁଙ୍କର ପବିତ୍ର ଚରିତ୍ରପୂର୍ଣ୍ଣ ଏହି ପୁଣ୍ୟୋଖ୍ୟାୟିକା ଶ୍ରବଣ ଓ କୀର୍ତ୍ତନ କରେ ସେ କର୍ମ ପାଶରୁ ମୁକ୍ତ ହୁଏ । ୪୬ ।

ଯେ ଆଦି ପୁରୁଷ ବିଷ୍ଣୁଙ୍କର ଏହି ନୃସିଂହାବତାର ପ୍ରସଙ୍ଗ ହିରଣ୍ୟ କଶିପୁ ବଧ ଶୁଦ୍ଧ ଚିତ୍ତରେ ପାଠ କରନ୍ତି ଏବଂ ସାଧୁଶ୍ରେଷ୍ଠ ଦୈତ୍ୟେନ୍ଦ୍ର ପୁତ୍ର ପ୍ରହ୍ଲାଦଙ୍କର ପୁଣ୍ୟ ପ୍ରଭାବ ଶ୍ରବଣ କରନ୍ତି ତାଙ୍କର ଲେଶ ମାତ୍ର ଭୟ ନାହିଁ । ସେ ଅବଶ୍ୟ ବୈକୁଣ୍ଠ ଲୋକ ପ୍ରାପ୍ତ ହୁଅନ୍ତି । ୪୭ ।

ସଂସାରରେ ତୁମ୍ଭେମାନେ ଶ୍ରେଷ୍ଠ ଭାଗ୍ୟବାନ, କାରଣ ଲୋକପାବନ ମୁନିମାନେ ସ୍ୱତଃ ତୁମ୍ଭମାନଙ୍କ ଗୃହରେ ଉପସ୍ଥିତ ହୁଅନ୍ତି, ବିଶେଷତଃ ମନୁଷ୍ୟରୂପଧାରୀ ଶ୍ରୀକୃଷ୍ଣ ସାକ୍ଷାତ୍ ପରମବ୍ରହ୍ମ ହେଲେ ମଧ୍ୟ ତୁମ୍ଭମାନଙ୍କ ଗୃହରେ ବାସ କରନ୍ତି । ୪୮ ।

---

ବିଷ୍ଣୁର ସୃଷ୍ଟି ସ୍ଥିତି ଅନ୍ତ
ଯେ ଗୁଣ କର୍ମାନୁବର୍ତ୍ତିତ
ଦେବ ଦାନବଙ୍କର ସ୍ଥାନ
କେ ଅବା ହୋଏ କେଉଁ ଭିନ୍ନ
ଅଶେଷ ବୈଷ୍ଣବ ଧର୍ମ
ପ୍ରସ୍ତାବେ ବର୍ଣ୍ଣିଲୁ ଏମାନ
କୃଷ୍ଣ-ମହିମା ପୁଣ୍ୟ-ବାଣୀ
ଯେ ନର ଶ୍ରଦ୍ଧାମାର୍ଗେ ଶୁଣି
ଲୋକେ କହନ୍ତି ଶ୍ରଦ୍ଧା ରସେ
ସର୍ବ ଦୁରିତ ସେ ବିନାଶେ । ୪୪-୪୬

ଏ ଆଦି-ପୁରୁଷଙ୍କ କଳା
ଶ୍ରୀ ନରସିଂହଙ୍କ ରୂପ ଲୀଳା
ଅସୁର ପତି ବଧ ବାଣୀ
ଯେ ମୁଖେ କହେ କର୍ଣ୍ଣେ ଶୁଣି
ସନ୍ତ ପ୍ରବର ପୁଣ୍ୟ କଥା
ଅଶେଷ ମୁନିମଧ୍ୟେ ଗୀତା
ପ୍ରସ୍ତାବ ଶୁଣି ଜନ ମଧ୍ୟେ
ନିର୍ଭୟେ ଯାନ୍ତି କୃଷ୍ଣପାଦେ । ୪୭।
ତୁ ଯେ ପାଣ୍ଡବ କୁଳ ଖ୍ୟାତ
ନରଲୋକେ ମହାଭାଗ୍ୟବନ୍ତ

ଲୋକ ନିସ୍ତାରେ ମୁନିଗଣେ
ତୋର ଭବନେ ଅନୁକ୍ଷଣେ
ମିଳନ୍ତି ଯେଉଁ ତୋର ଘର
ତୋ ଗୃହେ ବସେ ପଦ୍ମନାଭ
ଯାର ମହିମା ଦେବଗଣେ
ଲୋଡ଼ି ନ ପାନ୍ତି ବେଦବଣେ
ଯେ ବ୍ରହ୍ମ ନିର୍ବାଣ ଦୁର୍ଲ୍ଲଭ
କୈବଲ୍ୟ ମୋକ୍ଷ ଅନୁଭବ
ଯେ ପ୍ରିୟ ସୁହୃଦ ତୋହର
ସୋଦର ମାତୁଳ କୁମର

ସ ବା ଅୟଂ ବ୍ରହ୍ମ ମହଦ୍‌ବିମୃଗ୍ୟକୈବଲ୍ୟନିର୍ବାଣସୁଖାନୁଭୂତିଃ ।
ପ୍ରିୟଃ ସୁହୃଦ୍‌ବଃ ଖଲୁ ମାତୁଲେୟ ଆତ୍ମାର୍ହଣୀୟୋ ବିଧିକୃଦ୍‌ଗୁରୁଶ୍ଚ ।୪୯ ।
ନ ଯସ୍ୟ ସାକ୍ଷାଦ୍‌ଭବପଦ୍ମଜାଦିଭୀ ରୂପଂ ଧିୟା ବସ୍ତୁତୟୋପବର୍ଣ୍ଣିତମ୍ ।
ମୌନେନ ଭକ୍ତ୍ୟୋପଶମେନ ପୂଜିତଃ ପ୍ରସୀଦତାମେଷ ସ ସାତ୍ୱତାଂ ପତିଃ ।୫୦।
ସ ଏଷ ଭଗବାନ୍ ରାଜନ୍ ବ୍ୟତନୋଦ୍‌ବିହତଂ ଯଶଃ ।
ପୁରା ରୁଦ୍ରସ୍ୟ ଦେବସ୍ୟ ମୟେନାନନ୍ତମାୟିନା । ୫୧ ।

ଶ୍ରୀରାଜୋବାଚ ।

କସ୍ମିନ୍ କର୍ମଣି ଦେବସ୍ୟ ମୟୋଽହନ୍ ଜଗଦୀଶିତୁଃ ।
ଯଥା ଚୋପଚିତା କୀର୍ତ୍ତିଃ କୃଷ୍ଣେନାନେନ କଥ୍ୟତାମ୍ । ୫୨ ।

---

ଏହି ଶ୍ରୀକୃଷ୍ଣଙ୍କର ମହା ମହିମାଶାଳୀ ବ୍ୟକ୍ତିମାନେ ସର୍ବଦା ଅନୁସନ୍ଧାନ କରି ନିରୁପାଧି, ପରମାନନ୍ଦ ସ୍ୱରୂପ ମନେ କରନ୍ତି । ସେ ତୁମ୍ଭମାନଙ୍କର ମାତୁଳେୟ, ପ୍ରିୟ, ସୁହୃତ୍ ଏବଂ ଦେହ ତୁଲ୍ୟ ସ୍ୱାଧୀନ ପୂଜନୀୟ ଓ ବଶବର୍ତ୍ତୀ ଏବଂ ଗୁରୁ । ୪୯ ।

ଯାହାଙ୍କର ତତ୍ତ୍ୱ ବ୍ରହ୍ମା, ଶିବପ୍ରଭୃତି ପ୍ରତ୍ୟକ୍ଷ ରୂପେ ଧାରଣା କରି ପାରନ୍ତି ନାହିଁ; ସେହି ଭକ୍ତବାଞ୍ଛା କଳ୍ପତରୁ ଶ୍ରୀହରି ମୌନ ବ୍ରତ, ଭକ୍ତି ଓ ଉପାସନାଦି ବିବିଧ ସାଧନା ଦ୍ୱାରା ପୂଜିତ ହୋଇ ପ୍ରସନ୍ନ ହୁଅନ୍ତି ।୫୦

ହେ ରାଜନ୍ ! ପୂର୍ବ କାଳରେ ମାୟାବୀ ମୟଦାନବ ଭଗବାନ୍ ରୁଦ୍ରଦେବଙ୍କର ଯଶ ନଷ୍ଟ କରିଥିଲା। କୃଷ୍ଣ ତାହା ଉଦ୍ଧାର କଲେ । ୫୧ ।

ଶ୍ରୀଯୁଧିଷ୍ଠିର କହିଲେ—

ଜଗଦୀଶ୍ୱର ରୁଦ୍ରଦେବଙ୍କର କୀର୍ତ୍ତି ମୟଦାନବ କପରି ନଷ୍ଟ କରିଥିଲା ଏବଂ ଶ୍ରୀକୃଷ୍ଣ ତାହା କପରି ରକ୍ଷା କଲେ ତାହା ଅନୁଗ୍ରହ କରି ମୋତେ କହନ୍ତୁ । ୫୨ ।

---

ସକଳ ଆତ୍ମା ସେ ପୂଜିତ
ଅଶେଷ ଗୁରୁ ଦଇବତ । ୪୮-୪୯
ତାହାର ମହିମା ବର୍ଣ୍ଣନେ
ଭବ ବିରଞ୍ଚି ଆଦି ଜନେ
ବସ୍ତୁ ବୁଦ୍ଧିରେ ସ୍ତବ କଲେ
କେବେହେଁ ବର୍ଣ୍ଣି ନ ପାରନ୍ତି
ମଜ୍ଜନ ଭକ୍ତି ଯୋଗେ ଭଜି
କେବେହେଁ ନ ପାରନ୍ତି ଖୋଜି
ସେ ବଇଷ୍ଣବ ଜନ ଗତି
ତା ପାଦେ ରହୁ ମୋର ମତି ।୫୦

ସେ ହରି ତୋତେ ଦୟା କରୁ
ତୋ ଯଶ ଜଗତେ ବିସ୍ତାରୁ
ପୂର୍ବେ ଯେ ଦେବାସୁର ଯୁଦ୍ଧେ
ରୁଦ୍ରଙ୍କୁ ରଖିଲ ପ୍ରମାଦେ
ସେ ତୋର କରୁ ସର୍ବ ଶୁଭ
ସର୍ବଥା ଲଭ ତାର ସ୍ତବ । ୫୧ ।
ଏମନ୍ତେ ମୁନି ମୁଖୁ ଶୁଣି
କପୋଳେ ଦେଇ ବେନି ପାଣି
ବୋଲେ ନାରଦ ମୁଖ ଚାହିଁ
ହେ ମୁନି ମୋତେ କର କାହି

ଶ୍ରୀଯୁଧିଷ୍ଠିର ଉବାଚ—

କହ କେଉଣ କାଳେ ହରି
ଈଶ୍ୱର ତ୍ରାସ ଦୂର କରି
ଅସୁର ତ୍ରାସ କଲେ ନାଶ
ଯେ ହରି ଜଗତ ବିଶ୍ୱାସ
ଏମନ୍ତେ ଧର୍ମ୍ମ-ସୁତ ବାଣୀ
ଶୁଣି କହନ୍ତି ବ୍ରହ୍ମମୁନି । ୫୨।

ଶ୍ରୀନାରଦ ଉବାଚ ।

ନିର୍ଜିତା ଅସୁରା ଦେବୈର୍ଯୁଧ୍ୟମାନେନୋପବୃଂହିତୈଃ ।
ମାୟିନାଂ ପରମାଚାର୍ଯ୍ୟଂ ମୟଂ ଶରଣମାଯଯୁଃ । ୫୩ ।
ସ ନିର୍ମାୟ ପୁରସ୍ତିସ୍ରୋ ହୈମୀରୌପ୍ୟାୟସୀର୍ବିଭୁଃ ।
ଦୁର୍ଲକ୍ଷ୍ୟାପାୟସଂଯୋଗା ଦୁର୍ବିତର୍କ୍ୟପରିଚ୍ଛଦାଃ । ୫୪ ।
ତାଭିସ୍ତେଽସୁରସେନାନ୍ୟୋ ଲୋକାଂସ୍ତ୍ରୀନ୍ ସେଶ୍ୱରାନ୍ ନୃପ ।
ସ୍ମରନ୍ତୋ ନାଶୟାଞ୍ଚକ୍ରୁଃ ପୂର୍ବବୈରମଲକ୍ଷିତାଃ । ୫୫ ।
ତତସ୍ତେ ସେଶ୍ୱରା ଲୋକା ଉପାସାଦ୍ୟେଶ୍ୱରଂ ନତାଃ ।
ତ୍ରାହି ନସ୍ତାବକାନ୍ ଦେବ ବିନଷ୍ଟାଂସ୍ତ୍ରିପୁରାଳୟୈଃ । ୫୬ ।

---

ଶ୍ରୀନାରଦ କହିଲେ—

ବିଷ୍ଣୁଙ୍କ କର୍ତ୍ତୃକ ପରିପୁଷ୍ଟ ଦେବତାମାନେ ଯୁଦ୍ଧରେ ଅସୁରମାନଙ୍କୁ ପରାଜିତ କରନ୍ତେ ସେମାନେ ଶ୍ରେଷ୍ଠ ମାୟାବୀ ମୟଙ୍କର ଶରଣାପନ୍ନ ହୋଇଥିଲେ । ୫୩ ।

ବଳଶାଳୀ ମୟ ସ୍ୱର୍ଣ୍ଣମୟ, ରୌପ୍ୟମୟ, ଲୌହମୟ ତିନୋଟି ପୁରୀ ନିର୍ମାଣ କରିଥିଲା । ସେଗୁଡ଼ିକ ଏପରି କୌଶଳରେ ନିର୍ମିତ ହୋଇଥିଲା ଯେ ତାହା କେତେବେଳେ ଆସି ଉପସ୍ଥିତ ହେଲା ଓ କେତେବେଳେ ଚାଲିଗଲା ତାହା କେହି ଜାଣି ପାରୁ ନ ଥିଲେ । ତହିଁ ମଧ୍ୟରେ ବ୍ୟବହାରୋପଯୋଗୀ ଯେଉଁ ପଦାର୍ଥ ମାନ ରହିଥିଲା ତାହାର ମଧ୍ୟ କେହି ଧାରଣା କରି ପାରୁ ନ ଥିଲେ । ୫୪ ।

ହେ ମହାରାଜ ! ସେହି ବିମାନସ୍ୱରୂପୀ ପୁରୀ ସାହାଯ୍ୟରେ ଅସୁର ସେନାପତିମାନେ ଅଲକ୍ଷିତ ଭାବରେ ପୂର୍ବ ଶତ୍ରୁତା ସ୍ମରଣ କରି ଇନ୍ଦ୍ରାଦି ଲୋକପାଳ ମାନଙ୍କ ସହିତ ତ୍ରିଲୋକ ନଷ୍ଟ ଭ୍ରଷ୍ଟ କରିବାକୁ ଲାଗିଲେ । ସେହି ଲୋକପାଳମାନେ ପ୍ରତ୍ୟକ୍ଷ ଭାବରେ ଦେବାଧିଦେବ ମହାଦେବଙ୍କୁ ଉପାସନା ଦ୍ୱାରା ପ୍ରସନ୍ନ କରାଇ କହିଲେ, "ହେ ଦେବ ! ଆମ୍ଭେମାନେ ଆପଣଙ୍କ ଭୃତ୍ୟ, ଅସୁରମାନଙ୍କ କର୍ତ୍ତୃକ ବିନଷ୍ଟ ହେଉଅଛୁ ଆମ୍ଭମାନଙ୍କୁ ରକ୍ଷା କର । ୫୫,୫୬ ।

---

ଶ୍ରୀନାରଦ ଉବାଚ—

ପୂର୍ବେ ଯେ ଦେବାସୁର ରଣେ
ଯୁଦ୍ଧ ଜିଣିଲେ ଦେବଗଣେ
ଅସୁରେ ପଳାଇ ବିକ୍ଷାଦେ
ମୟଦଇତ ଦେଖିପାଦେ
କାତରେ ପଶିଲେ ଶରଣ
ଭଗ୍ନ ସଂକଳ୍ପ ବୀରଗଣ । ୫୩ ।
ମୟ ଦଇତ ତାହା ଚାହିଁ
ଅସୁରଗଣେ ଦୟା ବହି
ବିମାନ କଲା ତିନିପୁର
ଭିତରେ ଘୋର ଅନ୍ଧକାର
କାଞ୍ଚନ-ରୌପ୍ୟ ଲୌହମୟ
ଦେଖି ବିଦଶେ କଲେ ଭୟ
ଲକ୍ଷି ନ ପାରି ତାକୁ ଭୟେ
ତା ଗତି ଯିବା ଆସିବାରେ
ବିତର୍କି ମୋହେ ପରିଚ୍ଛଦ
ପୂରିତ ଅଶେଷ ଆୟୁଧ । ୫୪ ।
ସେ ରଥେ ବସି ଦୈତ୍ୟଗଣେ
ଦେବଙ୍କୁ ଆବୋରିଲେ ରଣେ
ତିନି ଭୁବନ ଲୋକ ଶିରି
ନାଶନ୍ତି ବଇର ସୁମରି । ୫୫ ।
ଆକୁଳେ ତ୍ରିଭୁବନ ଲୋକେ
ଶିବ ଭଜିଲେ ଅତିରେକେ
ଡାକନ୍ତି ରଖ ଆମ୍ଭ ପ୍ରାଣ
ତୋ ପାଦେ ପଶିଲୁ ଶରଣ
ଭୁବନେ ରହି ନ ପାରୁଁ
ଅସୁର ଭୟେ ପଳାଉଛୁ
ତ୍ରିପୁରେ ରହି ଅଲକ୍ଷିତେ
ଲୋକ ନାଶିଲେ ଶସ୍ତ୍ରଘାତେ । ୫୬

ଅଥାନୁଗୃହ୍ୟ ଭଗବାନ୍ ମାଭୈଷ୍ଟେତି ସୁରାନ୍ ବିଭୁଃ ।
ଶରଂ ଧନୁଷି ସନ୍ଧାୟ ପୁରେଷ୍ୱସ୍ତ୍ରଂ ବ୍ୟମୁଞ୍ଚତ । ୫୭ ।
ତତୋଽଗ୍ନିବର୍ଣ୍ଣା ଇଷବ ଉତ୍ପେତୁଃ ସୂର୍ଯ୍ୟମଣ୍ଡଳାତ୍ ।
ଯଥା ମୟୂଖସନ୍ଦୋହା ନାଦୃଶ୍ୟନ୍ତ ପୁରେ ଯତଃ । ୫୮ ।
ତୈଃ ସ୍ପୃଷ୍ଟା ବ୍ୟସବଃ ସର୍ବେ ନିପେତୁଃ ସ୍ମ ପୁରୌକସଃ ।
ତାନାନୀୟ ମହାଯୋଗୀ ମୟଃ କୂପରସେଽକ୍ଷିପତ୍ । ୫୯ ।
ସିଦ୍ଧାମୃତରସସ୍ପୃଷ୍ଟା ବଜ୍ରସାରା ମହୌଜସଃ ।
ଉତ୍ତସ୍ଥୁର୍ମେଘଦଳନା ବୈଦ୍ୟୁତା ଇବ ବହ୍ନୟଃ । ୬୦ ।
ବିଲୋକ୍ୟ ଭଗ୍ନସଂକଳ୍ପଂ ବିମନସ୍କଂ ବୃଷଧ୍ୱଜମ୍ ।
ତଦାୟଂ ଭଗବାନ୍ ବିଷ୍ଣୁସ୍ତତ୍ରୋପାୟମକଳ୍ପୟତ୍ । ୬୧ ।

---

ତଦନନ୍ତର ଭଗବାନ୍ ଶଙ୍କର ଅଭୟ ଦାନ କରି ଦେବତାମାନଙ୍କ ଅନୁଗ୍ରହ, ଆଶ୍ୱାସ ବାଣୀ ଶୁଣାଇ ଧନୁରେ ପାଶୁପତ ଅସ୍ତ୍ର ଯୋଜନା କରି ନିକ୍ଷେପ କରିଥିଲେ, ତଦ୍ଦ୍ୱାରା ସୂର୍ଯ୍ୟ ମଣ୍ଡଳରୁ ଯେପରି କିରଣ ସମୂହ ନିର୍ଗତ ହୁଏ, ସେହିପରି ପାଶୁପତ ଅସ୍ତ୍ରରୁ ଅଗ୍ନି ବର୍ଣ୍ଣ ବାଣ ସମୂହ ନିର୍ଗତ ହୋଇଥିଲା, ତଦ୍ଦ୍ୱାରା ସେହି ସ୍ୱର୍ଣ୍ଣ ରୌପ୍ୟ ଓ ଲୌହମୟ ପୁରମାନ ଦୃଷ୍ଟିରୁ ଅଗୋଚର ହେଲା । ୫୭,୫୮ ।

ସେହି ପାଶୁପତ ଅସ୍ତ୍ରାଘାତରେ ଅସୁରମାନେ ନିହତ ହୋଇ ଭୂତଳରେ ନିପତିତ ହେଲେ । ମହାଯୋଗୀ ମୟ ସେହି ଅସୁରମାନଙ୍କୁ ଆନୟନକରି ଅମୃତ କୂପରେ ନିକ୍ଷେପକଲେ । ସେହି ଅମୃତର ସ୍ପର୍ଶରେ ସେମାନେ ବଜ୍ରତୁଲ୍ୟ ମହାପରାକ୍ରମଶାଳୀ ମେଘଭେଦୀ ବିଦ୍ୟୁତ୍‌ବତ୍ ଅଗ୍ନିରୁ ଉତ୍ଥିତ ହେଲେ । ୫୯,୬୦ ।

ବୃଷଭ ବାହନ ଶଙ୍କରଙ୍କୁ ଭଗ୍ନ ମନୋରଥ ଓ ଦୁଃଖିତ ଦେଖି ଭଗବାନ୍ ବିଷ୍ଣୁ, ଅସୁର ବଧ ଲାଗି ଅଦ୍ଭୁତ ଉପାୟ ଉଦ୍ଭାବନ କଲେ । ୬୧ ।

---

ଶୁଣି ଈଶ୍ୱର ତୋଷମନ
ବୋଲନ୍ତି ମଧୁର ବଚନ
ଭୟ ନ କର ତୁମ୍ଭେ କେହି
ଅସୁର ସଂହାରିବି ମୁହିଁ
ଏମନ୍ତ କହି ତ୍ରିଲୋଚନ
ହସ୍ତେ ଘେନିଲେ ଶରାସନ
ଶର ସନ୍ଧାନେ ସେ ବିମାନେ
ଧରି ବିନ୍ଧିଲେ କୋପମନେ ।୫୭।
ରୁଦ୍ର ନାରାଚ ତେଜମୟ
ପ୍ରକାଶ ସୂର୍ଯ୍ୟ-ରଶ୍ମି ପ୍ରାୟ
ଅଦୃଶ୍ୟ ପୁର ଦୃଶ୍ୟ ହୋଏ
ଭେଦିଲା ଅସୁରଙ୍କ ଦେହେ
କରି ହୃଦୟ ଶର ଛିଦ୍ର
ପଡ଼ିଲେ ମହୀତଳେ ମାତ୍ର
ଜୀବନ ଛାଡ଼ିଲେ ଥୋକାଏ
ଘୋର ପ୍ରଚଣ୍ଡ ଶରଘାଏ
ମୟ ଦଇତ ଦେଖି ତାହା
ଅସୁର ବେନି କରି ଦୟା
ମଣିଲା ଅସୁର ସମୀପେ
ପ୍ରବେଶ କଲା ସୁଧା କୂପେ
ଅମୃତ-ରସ ଜଳ ସଙ୍ଗେ
ଲାଗିଲା ଅସୁରଙ୍କ ଅଙ୍ଗେ
ବଜ୍ର ସମାନେ ଦେହ ଧରି
ଉଠିଲେ ଘୋର ନାଦ କରି
ଖରେ ଉଠିଲେ ତତକ୍ଷଣେ
ଦେଖି ଡରିଲେ ଦେବଗଣେ
ଯୁଝିନ୍ତି ନାନା ଶସ୍ତ୍ର ଘେନି
ଶବଦେ କମ୍ପଇ ମେଦିନୀ
ଭୟେ ପଳାଇ ଦେବଗଣ
ଡାକନ୍ତି ରଖ ନାରାୟଣ ।୫୮-୬୦।
ଦେଖି ଶଙ୍କର ମନୋଦୁଃଖ
ଭଗ୍ନ ସଂକଳ୍ପ ଅତିରେକ
ବିମୁଖ ଦେଖିଣ ଶଙ୍କର
ଉପାୟ କଲେ ଚକ୍ରଧର । ୬୧ ।

ବତ୍ସଶ୍ଚାସୀତ୍ତଦା ବ୍ରହ୍ମା ସ୍ୱୟଂ ବିଷ୍ଣୁରୟଂ ହି ଗୌଃ ।
ପ୍ରବିଶ୍ୟ ତ୍ରିପୁରଂ କାଲେ ରସକୂପାମୃତଂ ପପୌ । ୬୨ ।
ତେଽସୁରା ହ୍ୟପି ପଶ୍ୟନ୍ତୋ ନ ନ୍ୟଷେଧନ୍ ବିମୋହିତାଃ ।
ତଦ୍ୱିଜ୍ଞାୟ ମହାଯୋଗୀ ରସପାଳାନିଦଂ ଜଗୌ । ୬୩ ।
ସ୍ମୟନ୍ ବିଶୋକଃ ଶୋକାର୍ତ୍ତାନ୍ ସ୍ମରନ୍ ଦୈବଗତିଞ୍ଚ ତାମ୍-
ଦେବୋଽସୁରୋ ନରୋଽନ୍ୟୋ ବା ନେଶ୍ୱରୋଽସ୍ତୀହ କଶ୍ଚନ ।
ଆତ୍ମନୋଽନ୍ୟସ୍ୟ ବା ଦିଷ୍ଟଂ ଦୈବେନାପୋହିତୁଂ ଦ୍ୱୟୋଃ । ୬୪ ।
ଅଥାସୌ ଶକ୍ତିଭିଃ ସ୍ୱାଭିଃ ଶମ୍ଭୋଃ ପ୍ରାଧାନିକଂ ବ୍ୟଧାତ୍ ।
ଧର୍ମଜ୍ଞାନବିରକ୍ତ୍ୟୃଦ୍ଧିତପୋବିଦ୍ୟାକ୍ରିୟାଦିଭିଃ । ୬୫ ।

---

ବ୍ରହ୍ମା, ବତ୍ସ ଓ ବିଷ୍ଣୁ ଗୋ ରୂପରେ ମଧ୍ୟାହ୍ନ କାଳରେ ତ୍ରିପୁରରେ ପ୍ରବେଶ କରି ଅମୃତ ରସକୂପ ରକ୍ଷା ଲାଗି ଯେଉଁ ପ୍ରହରୀମାନ ନିଯୁକ୍ତ ଥିଲେ, ସେମାନଙ୍କୁ ବିଷ୍ଣୁମାୟା ଦ୍ୱାରା ମୋହିତ କରିଥିଲେ ଏବଂ ସେମାନଙ୍କ ସମ୍ମୁଖରେ ରସ କୂପର ସମସ୍ତ ଅମୃତ ପାନ କରିଥିଲେ, କିନ୍ତୁ ସେହି ପ୍ରହରୀମାନେ ନିଷେଧ କଲେ ନାହିଁ । ୬୨,୬୪ ।

ମୟ ଦାନବ ମହାଯୋଗୀ, ସେ ଯୋଗ ପ୍ରଭାବରେ ସମସ୍ତ ଅବଗତ ହୋଇ ଏହା ଦୈବଗତି ବୋଲି ଜାଣି ଶୋକ ପରିତ୍ୟାଗ କରି ଈଷତ୍ ହାସ୍ୟ ସହକାରେ ଶୋକ ପରାୟଣ ଅମୃତରସ ପାଳକମାନଙ୍କୁ କହିଲେ, "ଦେବ, ଅସୁର, ନର ବା ଅନ୍ୟ ଯକ୍ଷାଦି ସେମାନଙ୍କ ମଧ୍ୟରେ ଏପରି କେହି ନାହିଁ ଯେ ଦୈବି ଯୋଗ ଅତିକ୍ରମ କରିପାରେ, ଏପରି କ୍ଷମତାଶାଳୀ କେହି ନାହିଁ" । ୬୪ ।

ହେ ରାଜନ୍ ! ତଦନନ୍ତର ବିଷ୍ଣୁ ଧର୍ମ, ଜ୍ଞାନ, ବୈରାଗ୍ୟ, ଋଦ୍ଧି, ତପ, ବିଦ୍ୟା ଏବଂ ଅନ୍ୟାନ୍ୟ କ୍ରିୟା ଦ୍ୱାରା ନିଜର ଶକ୍ତି ସାହାଯ୍ୟରେ ଶ୍ରୀବୃଦ୍ଧି ସାଧନକରି ରଥମାନ ଉଦ୍ଧାର କରିଥିଲେ । ୬୫ ।

---

ବ୍ରହ୍ମାଙ୍କୁ ବତ୍ସରୂପ କରି
କୃଷ୍ଣ ସୁରଭି ରୂପ ଧରି
ବଦନ ରସ କୂପେ ଭରି
ନିଃଶେଷେ ପାନ କଲେ ହରି ।୬୨।
ନିଷେଧି କେହି ନ ପାରିଲେ
ଯେତେ ଅସୁର ଜଗିଥିଲେ
ସ୍ୱହିଁ ଅସୁରଙ୍କ ବଦନ
ବୋଲଇ ମୟ ଯାତୁଧାନ ।୬୩।
ଦେବ ଅସୁର କିବା ନର
କର୍ମକୁ ନୁହନ୍ତି ଈଶ୍ୱର

ସେ କର୍ମ ଅତି ବଳୀୟର
ସେ ନ ଜାଣଇ ଆତ୍ମାପର
ସେ ନିଶ୍ଚେ ହାନି ଲାଭ କରେ
କେବା ନିବାରି ତାକୁ ପାରେ ।୬୪
ତକ୍ଷଣେ ପ୍ରଭୁ ନରହରି
ରୁଦ୍ର ଶରୀରେ ତେଜ ଭରି
ସେ ହରି-ଶକ୍ତିବଳେ ବଳ
ତେଜ ବିରାଜେ ଅନର୍ଗଳ
ବିରକ୍ତି ଜ୍ଞାନ ଧର୍ମ୍ମ ଋଦ୍ଧି
ଯେ ତପ ବିଦ୍ୟା କ୍ରିୟା ଆଦି

ଏ ସପ୍ତ-ଗୁଣ ସପ୍ତ-ତେଜ
ରଥ ସାରଥି ମହାଧ୍ୱଜ
କୋଦଣ୍ଡ ଧନୁ ତୂଣ ଶର
ରୁଦ୍ରଙ୍କୁ ଦେଲେ ଦାମୋଦର
ଏ ଆଦି ନାନା ଶାସ୍ତ୍ର ଯେତେ
ଗୋବିନ୍ଦ ଦେଲେ ବିଶ୍ୱନାଥେ
ବର୍ମ୍ମ ଆଚ୍ଛାଦି ଦେବ ହର
କରେ ଘେନିଲେ ଧନୁ-ଶର
ସନ୍ଧାନେ ମଧ୍ୟାହ୍ନେ ଶଙ୍କର
ବିମାନେ ବିଜେ ସେଷକର

ରଥଂ ସୂତଂ ଧ୍ୱଜଂ ବାହାନ୍ ଧନୁର୍ବର୍ମ ଶରାଦ ଯତ୍ ।
ସନ୍ନଦ୍ଧୋ ରଥମାସ୍ଥାୟ ଶରଂ ଧନୁରୁପାଦଦେ । ୬୬ ।
ଶରଂ ଧନୁଷି ସନ୍ଧାୟ ମୁହୂର୍ତ୍ତେଽଭିଜିତ୍ୟୀଶ୍ୱରଃ ।
ଦଦାହ ତେନ ଦୁର୍ଭେଦ୍ୟା ହରୋଽଥ ତ୍ରିପୁରୋ ନୃପ । ୬୭ ।
ଦିବି ଦୁନ୍ଦୁଭୟୋ ନେଦୁର୍ବିମାନଶତସଂକୁଲାଃ-
ଦେବର୍ଷିପିତୃସିଦ୍ଧେଶା ଜୟେତି କୁସୁମୋତ୍କରୈଃ ।
ଅବାକିରନ୍ ଜଗୁର୍ହୃଷ୍ଟା ନନୃତୁଶ୍ଚାପ୍‌ସରୋଗଣାଃ । ୬୮ ।
ଏବଂ ଦଗ୍‌ଧ୍ୱା ପୁରସ୍ତିସ୍ରୋ ଭଗବାନ୍ ପୁରହା ନୃପ ।
ବ୍ରହ୍ମାଦିଭିସ୍ତୂୟମାନଃ ସ୍ୱଂ ଧାମ ପ୍ରତ୍ୟପଦ୍ୟତ । ୬୯ ।

---

ଶିବ ରଥ ସାରଥି ଧ୍ୱଜ ଅଶ୍ୱାଦି ବାହନ ଧନୁ ବର୍ମ ପ୍ରଭୃତି ଯୁଦ୍ଧୋପକରଣ ମାନ ଲାଭ କରିଥିଲେ ଏବଂ ରଥାରୋହଣ କରି ଯୁଦ୍ଧାର୍ଥ ପ୍ରସ୍ତୁତ ହେଲେ । ମଧ୍ୟାହ୍ନ କାଳରେ ଧନୁର୍ବାଣ ଗ୍ରହଣ କରି ଶିବ ସତେଜରେ ବାଣ ନିକ୍ଷେପ କରନ୍ତେ ମୟନିର୍ମିତ ଦୁର୍ଭେଦ୍ୟ ତ୍ରିପୁର ଭସ୍ମସାତ୍ ହୋଇଥିଲା ।୬୬,୬୭।

ଦେବତାମାନେ ସ୍ୱର୍ଗରେ ରଥାରୋହଣ କରି ଯୁଦ୍ଧ ଦର୍ଶନ କରୁଥିଲେ, ତ୍ରିପୁର ଦଗ୍‌ଧ ହେଲା ତତ୍‌କ୍ଷଣାତ୍ ଦୁନ୍ଦୁଭି ବାଜି ଉଠିଲା । ଦେବତାମାନେ, ଋଷିମାନେ, ପିତୃମାନେ, ସିଦ୍ଧମାନେ ଏବଂ ଈଶମାନେ ଜୟଧ୍ୱନି କରି ତ୍ରିପୁରାରି ମହାଦେବଙ୍କ ମସ୍ତକରେ ପୁଷ୍ପବର୍ଷଣ କରିଥିଲେ । ଅପ୍‌ସରାମାନେ ପୁଲକିତ ଚିତ୍ତରେ ନୃତ୍ୟ ଗୀତ ଆରମ୍ଭ କରିଥିଲେ । ୬୮ ।

ହେ ମହାରାଜ ! ଏହି ସମୟରେ ଭଗବାନ୍ ତ୍ରିପୁରାରି ତ୍ରିପୁର ଦଗ୍‌ଧ କରିଥିଲେ ଏବଂ ଶିବ ନିଜ ବାସ ଭବନକୁ ପ୍ରତ୍ୟାଗମନ କରିଥିଲେ । ୬୯ ।

---

ଅନଳ-ଗର୍ଭ-ବାଣ ବଳେ
ସର୍ବ ଅସୁର ବଳ ଛେଦି
ତ୍ରିପୁର କଲେ ସେ ଦହନ
ହରଷ ଦେବଙ୍କର ମନ ।୬୫-୬୭
ବିମାନ ଶତ ଶତ ଶୂନ୍ୟେ
ଦୁନ୍ଦୁଭି ବାଦ୍ୟ ନାଦ ସ୍ୱନେ
ସିଦ୍ଧ ଦେବତା ସଙ୍ଘଗଣେ
ପୁଷ୍ପ ବରଷି ତତକ୍ଷଣେ

କୁସୁମ ବୃଷ୍ଟି ହର-ଶିରେ
ଜୟ ଶବଦ ନିରନ୍ତରେ
ଆନନ୍ଦମନେ ଶୁଭଗାନେ
ନାଚନ୍ତି ଅପସରାଗଣେ
କୁସୁମ ବୃଷ୍ଟି ହର-ଶିରେ
ଜୟ ଶବଦ ନିରନ୍ତରେ
ଏହି ପ୍ରକାରେ ତିନିପୁର
ଦହନ କଲେ ଦେବ ହର

ବ୍ରହ୍ମାଦି ଦେବେ କଲେ ସ୍ତୁତି
ସ୍ୱଗୃହେ ଗଲେ ଉମାପତି ।୬୮,୬୯



**ଏବଂ ବଧାନ୍ୟସ୍ୟ ହରେଃ ସ୍ୱମାୟୟା ବିଡ଼ମ୍ବମାନସ୍ୟ ନୃଲୋକମାତ୍ମନଃ ।**
**ବୀର୍ଯ୍ୟାଣି ଗୀତାନ୍ୟୃଷିଭିର୍ଜଗଦ୍‌ଗୁରୋର୍ଲୋକଂ ପୁନାନାନ୍ୟପରଂ ବଦାମି କମ୍ । ୭୦ ।**

**ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ**
**ପ୍ରହ୍ଲାଦଚରିତଂ ପୁରବିଜୟଶ୍ଚ ନାମ ଦଶମୋଽଧ୍ୟାୟଃ । ୧୦ ।**

---

ଜଗଦ୍‌ଗୁରୁ ଶ୍ରୀହରି ନିଜମାୟାରେ ମନୁଷ୍ୟ ମୂର୍ତ୍ତି ଧାରଣକରି ଏହିପରି ବିବିଧ କର୍ମାନୁଷ୍ଠାନ କରୁଅଛନ୍ତି ଋଷିମାନେ ତାହା କୀର୍ତ୍ତନ କରି ଲୋକମାନଙ୍କୁ ପବିତ୍ର କରୁଅଛନ୍ତି । ହେ ମହାରାଜ ! ମୁଁ ଆପଣଙ୍କୁ ତାହାଙ୍କ ଚରିତ୍ର କହିଁ ଦୁ କହିଲି । ଆଉ କଣ କହିବି କହ ନ୍ତୁ । ୭୦ ।

---

ଏହି ପ୍ରକାରେ ନରହରି
ମାୟା ମନୁଷ୍ୟ ରୂପଧରି
ଯେ କର୍ମ କଲେ ଏ ଜଗତେ
ମୁନି ବର୍ଣ୍ଣିଲେ ତାହା ଗୀତେ
ଲୋକେ ପବିତ୍ର ତା ମହିମା
ଏଣୁ କେ କହୁ ଗୁଣ ସୀମା । ୭୦
ବୋଲଇ ବିପ୍ର ଜଗନ୍ନାଥ
ସପ୍ତମସ୍କନ୍ଧେ ଭାଗବତ
ସପ୍ତମସ୍କନ୍ଧେ ହରିବାଣୀ
ଶୁଣି ସଂସାରୁ ତରି ପ୍ରାଣୀ



---

**ବିଶଦାର୍ଥ—**

ପ୍ରହ୍ଲାଦଙ୍କ ପ୍ରତି ପ୍ରସନ୍ନ ହୋଇ ଭଗବାନ୍ ନୃସିଂହ ବର ଯାଚିଥିଲେ । ଯେଉଁମାନେ ଶାରୀରିକ କ୍ଳେଶ ସହ୍ୟକରି ତପଶ୍ଚରଣରେ ଦେବତାଙ୍କୁ ପ୍ରସନ୍ନ କରାଇ ବର ପ୍ରାର୍ଥନା କରନ୍ତି, ସେମାନେ ସକାମ ବ୍ରତୋପାସକ । କାମନାର ପରିଣାମ କେଉଁଠାରେ ? ମନୁଷ୍ୟର କାମନା ପୂରଣ ହେବା ସଙ୍ଗେ ସଙ୍ଗେ ସେ ଅନ୍ୟ କାମନା କରେ । ଯାହାର ଏକ ଥାଏ, ସେ ଶତ ପାଇବାକୁ ଇଚ୍ଛା କରେ । ଯେ ଶତର ଅଧିକାରୀ ହୁଏ ସେ ସହସ୍ର ବାଞ୍ଛା କରେ । ଯେ ସହସ୍ର ପାଏ, ସେ ଲକ୍ଷାଧିପତି ହେବାକୁ ଇଚ୍ଛା କରେ । ପ୍ରାର୍ଥିତ ବସ୍ତୁ ପ୍ରାପ୍ତି ସଙ୍ଗେସଙ୍ଗେ କାମନା ବୃଦ୍ଧି ପ୍ରାପ୍ତ ହେଉଥାଏ ଏବଂ ସେହି କାମନାର ବୃଦ୍ଧି ସଙ୍ଗେ ସଙ୍ଗେ ମନୁଷ୍ୟର ଦୁଃଖ ମଧ୍ୟ ବୃଦ୍ଧି ହୁଏ । କାମ୍ୟବସ୍ତୁର ଅପ୍ରାପ୍ତିରେ ଦୁଃଖ, ପ୍ରାପ୍ତିରେ ମଧ୍ୟ ଦୁଃଖାଧିକ୍ୟ, ସୁତରାଂ କାମନାର ବିନାଶରେହିଁ ଦୁଃଖର ବିନାଶ ହୁଏ । ପ୍ରହ୍ଲାଦଙ୍କର ଚରିତ୍ରର ଏହାହିଁ ମହତ୍ତ୍ୱ । ପ୍ରହ୍ଲାଦ ନିଷ୍କାମ ଭକ୍ତର ଆଦର୍ଶ । ନୃସିଂହ ଦେବ ତାହାଙ୍କୁ ବର ଯାଚନ୍ତେ, ସେ ଭଗବାନଙ୍କର ଶ୍ରୀଚରଣର ଦାସ ହେବେ ଏହାହିଁ ପ୍ରାର୍ଥନା କରିଥିଲେ । ତାଙ୍କର ଅନ୍ୟ କୌଣସି ବାସନା ନ ଥିଲା ।

ପିତା ପ୍ରତି ପୁତ୍ରର କର୍ତ୍ତବ୍ୟ ପାଳନ କରିବାକୁ ମଧ୍ୟ ସେ ତତ୍ପର । ପିତା ଭଗବାନଙ୍କ ପ୍ରତି ଶତ୍ରୁଆଚରଣ କରି ନିହତ ହୋଇଥିଲେ । ଭଗବାନଙ୍କ ପ୍ରତି ଶତ୍ରୁତା ଯେପରି ତାହାଙ୍କର ମୁକ୍ତିରେ ପ୍ରତିବନ୍ଧକ ନ ହୁଏ ସେଥିପାଇଁ ପିତାଙ୍କ ପ୍ରତି ନୃସିଂହଦେବଙ୍କର କରୁଣାଭିକ୍ଷା କରିଥିଲେ, ଯାହାର ବଂଶରେ ଜଣେ ଭଗବଦ୍‌ଭକ୍ତ ଜାତ ହୁଏ ତାହାର ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ପୁରୁଷମାନେ ବିଷ୍ଣୁଲୋକ ପ୍ରାପ୍ତ ହୁଅନ୍ତି । [ନୃସିଂହଦେବ ପ୍ରହ୍ଲାଦଙ୍କୁ ତାହାହିଁ ସ୍ମରଣ କରାଇ ଦେଇଥିଲେ । ହିରଣ୍ୟକଶିପୁ ଓ ହିରଣ୍ୟାକ୍ଷ ଭୃଗୁ ବ୍ରହ୍ମଶାପ ହେତୁ ଅସୁର ଦେହ ପ୍ରାପ୍ତ ହୋଇଥିଲେ ମଧ୍ୟ ସେମାନେ ଯଥାର୍ଥରେ ପୂର୍ବ ଜନ୍ମରେ ବିଷ୍ଣୁଭକ୍ତ ଥିଲେ, ସୁତରାଂ ବିଷ୍ଣୁ ବରାହ ଓ ନୃସିଂହାବତାରରେ ସେମାନଙ୍କର ମୁକ୍ତି ବିଧାନ କରିଥିଲେ । ପୁଣି ତ୍ରେତାଯୁଗରେ ସେମାନେ ରାବଣ ଓ କୁମ୍ଭକର୍ଣ୍ଣ ରୂପେ ଜନ୍ମଗ୍ରହଣ କରି ଶ୍ରୀରାମଙ୍କ କର୍ତ୍ତୃକ ନିହତ ହୋଇଥିଲେ । ଦ୍ୱାପର ଯୁଗରେ ଶିଶୁପାଳ ଓ ଦନ୍ତବକ୍ର ଭଗବାନ୍ ଶ୍ରୀକୃଷ୍ଣଙ୍କର ଶତ୍ରୁ ରୂପେ ଜନ୍ମି ନିହତ ହୋଇଥିଲେ । ଦେବର୍ଷି ନାରଦ ମହାରାଜ ଯୁଧିଷ୍ଠିରଙ୍କର ପ୍ରଶ୍ନାନୁସାରେ ଏହି ଉପାଖ୍ୟାନ ବର୍ଣ୍ଣନା କହିଥିଲେ । କାଳେ ଯୁଧିଷ୍ଠିର ମନେ କରିବେ ଯେ ପ୍ରହ୍ଲାଦ ପରମଭାଗ୍ୟବାନ୍; ତେଣୁ ସାକ୍ଷାତ୍ ଭଗବାନଙ୍କୁ ସେ ଦର୍ଶନ କରିଥିଲେ, ତାଙ୍କର ଏହି ଭ୍ରାନ୍ତି ଦୂର କରିବା ଲାଗି ନାରଦ କହିଲେ ଭଗବଦ୍‌ଭକ୍ତ ମୁନିମାନେ ତୁମ୍ଭର ଅତିଥି ହୁଅନ୍ତି । ତୁମ୍ଭେ ମନୁଷ୍ୟରୂପଧାରୀ ଭଗବାନ୍ ଶ୍ରୀକୃଷ୍ଣଙ୍କର ପରମଭକ୍ତ । ଭଗବାନ୍ ଶ୍ରୀକୃଷ୍ଣ ସ୍ୱୟଂ ପରବ୍ରହ୍ମ । ସେ ତୁମ୍ଭ ଗୃହରେ ବାସ କରନ୍ତି । କାଳେ ଯୁଧିଷ୍ଠିର ଭାବିବେ ଯେ ଶ୍ରୀକୃଷ୍ଣ ଆମ୍ଭମାନଙ୍କର ମାତୁଳେୟ ପୁତ୍ର ସେ ପରଂବ୍ରହ୍ମ ହେବେ କିପରି ? ଏହି ସନ୍ଦେହ ଦୂର କରିବା ଲାଗି ଦେବର୍ଷି ନାରଦ କହିଲେ "ଶ୍ରୀକୃଷ୍ଣଉପାଧିହୀନ ପରମାନନ୍ଦ ସ୍ୱରୂପ ହେଲେହେଁ ଭକ୍ତାଧୀନ, ଭକ୍ତର ବଶୀଭୂତ ହୋଇ ସେ ନରରୂପ ଧାରଣ କରିଅଛନ୍ତି । ଏହି ପ୍ରସଙ୍ଗରେ ନାରଦ କହିଥିଲେ ବ୍ରହ୍ମା ଶିବ ପ୍ରଭୃତିଙ୍କୁ ତାହାଙ୍କର ମହିମା ଅଗୋଚର । ଯେତେବେଳେ ଶିବଙ୍କର ତେଜ ମୟଦାନବର ମାୟାହେତୁ ଲୁପ୍ତ ହୋଇଥିଲା ସେତେବେଳେ ବିଷ୍ଣୁ ବୈଷ୍ଣବୀ ମାୟାଦ୍ୱାରା ଶିବଙ୍କର ପ୍ରାଧାନ୍ୟ ରକ୍ଷା କରିଥିଲେ ।"

---

## ଏକାଦଶ ଅଧ୍ୟାୟ ।

**ଏକାଦଶେ ନୃଣାଂ ଧର୍ମ୍ମାଃ ସାଧାରଣ୍ୟେନ ବର୍ଣ୍ଣିତାଃ ।**
**ବିଶେଷଣେ ଚ ବର୍ଣ୍ଣାନାଂ ମୁଖ୍ୟାମୁଖ୍ୟାଶ୍ଚ ଯୋଷିତାମ୍ । ୦ ।** (ଶ୍ରୀଧରସ୍ୱାମୀ)

---

### ମାନବ ଧର୍ମ ସ୍ତ୍ରୀ ଧର୍ମ ଓ ବର୍ଣ୍ଣାଶ୍ରମ ଧର୍ମ ବର୍ଣ୍ଣନା ।

ଆରମ୍ଭରୁ ଦଶମ ଅଧ୍ୟାୟ ପର୍ଯ୍ୟନ୍ତ ଜ୍ଞାନ ଓ ଭକ୍ତିଯୋଗ ବର୍ଣ୍ଣନା କରି ଏହିଠାରୁ ପାଞ୍ଚ ଅଧ୍ୟାୟରେ କର୍ମଯୋଗ ବର୍ଣ୍ଣନା କରୁଅଛନ୍ତି । ଏକାଦଶ ଅଧ୍ୟାୟରେ ମନୁଷ୍ୟମାନଙ୍କର ସାଧାରଣ ଧର୍ମ ଏବଂ ବ୍ରାହ୍ମଣାଦି ବର୍ଣ୍ଣମାନଙ୍କର ଏବଂ ସ୍ତ୍ରୀମାନଙ୍କର ମୁଖ୍ୟ ଓ ଅମୁଖ୍ୟ କର୍ମ ବର୍ଣ୍ଣିତ ହୋଇଅଛି ।

---

ନାରଦ ଯୁଧିଷ୍ଠିର ପାଶେ, କହିଲେ ଅଧ୍ୟା ଏକାଦଶେ । ମନୁଷ୍ୟ ବର୍ଣ୍ଣ-ଧର୍ମ ଯେତେ, ଯେ ସ୍ତ୍ରୀବର୍ଣ୍ଣଏକଗତେ ॥
ମୁଖ୍ୟ ଅମୁଖ୍ୟ ଆଦିକରି, ଯେ ଧର୍ମ ସାଧେ ନର ହରି । ଦଶ ଅଧ୍ୟାରେମହାମୁନି,କହିଲେ ଭକ୍ତି-ଜ୍ଞାନବେନି॥
ପାଞ୍ଚ ଅଧ୍ୟାରେ ପୁଣି ଏବେ । କର୍ମ-ଯୋଗକୁ ସେ କହିବେ ।

ଶ୍ରୀଶୁକ ଉବାଚ ।

ଶ୍ରୁତ୍ୱେହିତଂ ସାଧୁ ସଭାସଭାଜିତଂ ମହତ୍ତମାଗ୍ରଣ୍ୟ ଉରୁକ୍ରମାତ୍ମନଃ ।
ଯୁଧିଷ୍ଠିରୋ ଦୈତ୍ୟପତେର୍ମୁଦାନ୍ୱିତଃ ପପ୍ରଚ୍ଛ ଭୂୟସ୍ତନୟଂ ସ୍ୱୟଂଭୁବଃ । ୧ ।

ଶ୍ରୀଯୁଧିଷ୍ଠିର ଉବାଚ ।

ଭଗବାନ୍ ଶ୍ରୋତୁମିଚ୍ଛାମି ନୃଣାଂ ଧର୍ମ୍ମଂ ସନାତନମ୍ ।
ବର୍ଣ୍ଣାଶ୍ରମାଚାରଯୁତଂ ଯତ୍ପୁମାନ୍ ବିନ୍ଦତେ ପରମ୍ । ୨ ।
ଭବାନ୍ ପ୍ରଜାପତେଃ ସାକ୍ଷାଦାତ୍ମଜଃ ପରମେଷ୍ଠିନଃ ।
ସୁତାନାଂ ସମ୍ମତୋ ବ୍ରହ୍ମଂସ୍ତପୋଯୋଗସମାଧିଭିଃ । ୩ ।
ନାରାୟଣପରା ବିପ୍ରା ଧର୍ମ୍ମଂ ଗୁହ୍ୟଂ ପରଂ ବିଦୁଃ ।
କରୁଣାଃ ସାଧବଃ ଶାନ୍ତାସ୍ତ୍ୱଦ୍ୱିଧା ନ ତଥାପରେ । ୪ ।

---

ଶ୍ରୀଶୁକଦେବ କହିଲେ—

ମହତ୍ତମମାନଙ୍କର ଅଗ୍ରଗଣ୍ୟ ଦୈତ୍ୟପତି ପ୍ରହ୍ଲାଦ ଶ୍ରୀହରିଙ୍କଠାରେ ଚିତ୍ତ ସମର୍ପଣ କରିଥିଲେ, ସୁତରାଂ ସାଧୁ ସଭାରେ ସେ ପୂଜିତ । ତାହାଙ୍କର ପବିତ୍ର ଚରିତ୍ର ଶ୍ରବଣ କରି ରାଜା ଯୁଧିଷ୍ଠିର ଆହ୍ଲାଦରେ ସ୍ୱୟମ୍ଭୁ ତନୟ ନାରଦଙ୍କୁ ପୁନଶ୍ଚ ପ୍ରଶ୍ନ କଲେ । ୧ ।

ଶ୍ରୀଯୁଧିଷ୍ଠିର କହିଲେ—

ହେ ଭଗବନ୍ । ମନୁଷ୍ୟମାନଙ୍କର ବର୍ଣ୍ଣାଶ୍ରମ ଯୁକ୍ତ ସନାତନ ଧର୍ମ କଣ ? ତାହା ମୁଁ ଶୁଣିବାକୁ ଇଚ୍ଛାକରେ । ୨ ।

ହେ ବ୍ରହ୍ମନ୍ । ସାକ୍ଷାତ୍ ପରମେଷ୍ଠି ପ୍ରଜାପତିଙ୍କର ଆପଣ ପୁତ୍ର । ତାହାଙ୍କର ଅନ୍ୟାନ୍ୟ ଅନେକ ପୁତ୍ର ଥିଲେ ମଧ୍ୟ ଆପଣ ତପୋବଳ, ଯୋଗବଳ ଓ ସମାଧି ବଳରେ ବଳୀୟାନ୍ ହେତୁ ପିତାଙ୍କର ପ୍ରିୟ ପାତ୍ର । ୩ ।

ଦୟାବାନ୍, ଶାନ୍ତ, ସାଧୁ ଓ ନାରାୟଣ ପରାୟଣ ଆପଣଙ୍କ ତୁଲ୍ୟ ବ୍ରାହ୍ମଣ ଯେପରି ଶ୍ରେଷ୍ଠ ଏବଂ ଗୁହ୍ୟ ଧର୍ମ ଅବଗତ ଅଛନ୍ତି ସେପରି ଆଉ କେହି ଦେଖାଯାନ୍ତି ନାହିଁ । ୪ ।

---

ଶ୍ରୀ ଶୁକଉବାଚ—

ଶୁଣି ନାରଦ-ମୁଖୁ କଥା
ଯେ ଧର୍ମ୍ମ-ସୁତ ଶୁଦ୍ଧଚେତା
ସେ ପ୍ରହଲାଦର ଚରିତ
ସୁସାଧୁ ସଭାମଧ୍ୟେ ଗୀତ
ଉତ୍ତମ ମଧ୍ୟେ ଅଗ୍ରେ ଗଣି
ଯାହାର ଆତ୍ମା ଚକ୍ରପାଣି
ତାର ଚରିତ ଧର୍ମ-ସୁତ
ଶୁଣି ଆନନ୍ଦେ ହରଷିତ
ବ୍ରହ୍ମା-ନନ୍ଦନ ସନ୍ମୁଖେ
ପୁଣି ପୁଚ୍ଛିଲା ଆତ୍ମ ସୁଖେ । ୧ ।

ଶ୍ରୀଯୁଧିଷ୍ଠିର ଉବାଚ—

ମନୁଷ୍ୟ ଜନ୍ମର ସ୍ୱଧର୍ମ୍ମ
ଯେ ବର୍ଣ୍ଣ ସାଧି ଯେବା କର୍ମ୍ମ
ଈଶ୍ୱର ବାକ୍ୟେ ଧର୍ମ୍ମ ସାଧି
ଯେବା ଆଶ୍ରମେ ଯେବା ବିଧି
କର୍ମ୍ମ ସମ୍ପାଦ ଜନ ମଧ୍ୟେ
ଅନ୍ତେ ପଶନ୍ତି କୃଷ୍ଣ ପାଦେ । ୨ ।
ତୁମ୍ଭେ ଯେ ପଦ୍ମ-ଯୋନି ସୁତ
ଜାଣ ସକଳ ପରମାର୍ଥ
ଯେ ବିପ୍ର ନାରାୟଣପର
କି ଅବା ତାର ଅଗୋଚର
କରୁଣାବନ୍ତ ଶାନ୍ତ ଦେହେ
ଯେ ବା ଅଛନ୍ତି ତୁମ୍ଭ ପ୍ରାୟେ
କେବଳ ଦୟା-ସିନ୍ଧୁ ଧୀର
ଅଶେଷ ଜ୍ଞାନର ଈଶ୍ୱର
ଏମନ୍ତେ ରାଜା ଭାବ ଘେନି
ହସି କହନ୍ତି ବ୍ରହ୍ମସୂନୁ । ୩,୪ ।

ଶ୍ରୀନାରଦ ଉବାଚ ।

ନତ୍ୱା ଭଗବତେଽଜାୟ ଲୋକାନାଂ ଧର୍ମସେତବେ ।
ବକ୍ଷ୍ୟେ ସନାତନଂ ଧର୍ମଂ ନାରାୟଣମୁଖାଚ୍ଛ୍ରୁତମ୍ । ୫ ।
ଯୋଽବତୀର୍ଯ୍ୟାତ୍ମନୋଽଂଶେନ ଦାକ୍ଷାୟଣ୍ୟାନ୍ତୁ ଧର୍ମତଃ ।
ଲୋକାନାଂ ସ୍ୱସ୍ତୟେଽଧ୍ୟାସ୍ତେ ତପୋ ବଦରିକାଶ୍ରମେ । ୬ ।
ଧର୍ମମୂଳଂ ହି ଭଗବାନ୍ ସର୍ବବେଦମୟୋ ହରିଃ ।
ସ୍ମୃତଞ୍ଚ ତଦ୍‌ବିଦାଂ ରାଜନ୍ ଯେନ ଚାତ୍ମା ପ୍ରସୀଦତି । ୭ ।
ସତ୍ୟଂ ଦୟା ତପଃ ଶୌଚଂ ତିତିକ୍ଷେକ୍ଷା ଶମୋଦମଃ ।
ଅହିଂସା ବ୍ରହ୍ମଚର୍ଯ୍ୟଞ୍ଚ ତ୍ୟାଗଃ ସ୍ୱାଧ୍ୟାୟ ଆର୍ଜବମ୍ । ୮ ।
ସନ୍ତୋଷଃ ସମଦୃକ୍ ସେବା ଗ୍ରାମ୍ୟେହୋପରମଃ ଶନୈଃ ।
ନୃଣାଂ ବିପର୍ଯ୍ୟୟେହେକ୍ଷା ମୌନମାତ୍ମବିମର୍ଶନମ୍ । ୯ ।

---

ଶ୍ରୀନାରଦ କହିଲେ—

ମୁଁ ଜନ ସାଧାରଣଙ୍କର ଧର୍ମର ସେତୁ ସ୍ୱରୂପ ଭଗବାନ୍ ନାରାୟଣଙ୍କୁ ନମସ୍କାର କରି ତାଙ୍କ ମୁଖରୁ ଯେଉଁ ସନାତନ ଧର୍ମ ଶୁଣିଥିଲି ତାହା କହୁଅଛି ଶ୍ରବଣ କର । ୫ ।

ଯେଉଁ ନାରାୟଣ ଦାକ୍ଷାୟଣୀଙ୍କ ଗର୍ଭରେ ନିଜ ଅଂଶରେ ଅବତୀର୍ଣ୍ଣ ହୋଇ ଲୋକମାନଙ୍କର ମଙ୍ଗଳ ସାଧନ ନିମିତ୍ତ ବଦରିକାଶ୍ରମରେ ତପସ୍ୟା କରିଥିଲେ ସେହି ସର୍ବ ଦେବମୟ ହରି ବେଦବିତ୍‌ମାନଙ୍କର ଓ ସ୍ମୃତିଧର୍ମର ଏକମାତ୍ର ପ୍ରମାଣ ଓ ତଦ୍ୱାରା ହରି ପ୍ରସନ୍ନ କରିଥାନ୍ତି । ୬,୭ ।

ନିମ୍ନୋକ୍ତ ତିରିଶଟି ବିଷୟ ମନୁଷ୍ୟର ଶ୍ରେଷ୍ଠ ଧର୍ମ ବୋଲି ନିର୍ଦ୍ଦିଷ୍ଟ ହୋଇଅଛି । ଏହା ଅନୁଷ୍ଠାନ କଲେ ଭଗବାନ୍ ସର୍ବାତ୍ମା ନାରାଣ ପରିତୁଷ୍ଟ ହୁଅନ୍ତି । ୧-ସତ୍ୟ, ୨-ଦୟା, ୩-ତପସ୍ୟା, ୪-ଶୌଚ, ୫—ତ୍ୟାଗଇଚ୍ଛା, ୬-ଯୁକ୍ତାଯୁକ୍ତବିଚାର, ୭-ମନ ସଂଯମ, ୮-ବାହ୍ୟେନ୍ଦ୍ରିୟ ସଂଯମ, ୯-ଅହିଂସା, ୧୦-ବ୍ରହ୍ମଚର୍ଯ୍ୟ,

---

ଶ୍ରୀନାରଦଉବାଚ—
ନମଇଁ ପ୍ରଭୁ ନରହରି
ଅଜନ୍ମ ଜନ୍ମ ରୂପ ଧରି
ଅଶେଷ ପ୍ରାଣୀ ଧର୍ମ-ସେତୁ
ପ୍ରକାଶ କଲେ ପାର ହେତୁ
ସେ ସନାତନ ଧର୍ମ-ବାଣୀ
ମୁଁ ନାରାୟଣ ମୁଖୁ ଶୁଣି । ୫ ।
ସେ ଅବତାର ଆତ୍ମା ଅଂଶେ
ଜନ୍ମ ହୋଇଲେ ଧର୍ମ-ବଂଶେ
ଦକ୍ଷ କନ୍ୟାର ଗର୍ଭେ ହରି
ନର ସ୍ୱରୂପେ ଅବତରି

ସଂସାର ଲୋକ ସିଦ୍ଧି କାମେ
ସେ ବଦରିକାର ଆଶ୍ରମେ
ତପ ସାଧନ୍ତି ଦୃଢ଼ କରି
ନର-ନାରାୟଣ ରୂପ ଧରି । ୬ ।
ସେ ହରି ସର୍ବ ଦେବମୟେ
ଧର୍ମର ମୂଳ ମହାଶୟେ
ତାଙ୍କ ବଚନ ସ୍ମୃତି ପଥେ
ଯେ ପ୍ରାଣୀ ରଖନ୍ତି ନିରତେ
ତେଣେ ସମ୍ପାଦ ତା ଚରଣ
ଆନନ୍ଦେ ପଶନ୍ତି ଶରଣ । ୭ ।

ସତ୍ୟ ଶଉଚ ଦୟା ତପ
ତିତିକ୍ଷା ଶମ ଦମ କଳ୍ପ
ଅହିଂସା ବ୍ରହ୍ମଚର୍ଯ୍ୟ ତ୍ୟାଗ
ସ୍ୱାଧ୍ୟାୟ ଆର୍ଜବ ବିବେକ
ସନ୍ତୋଷ ସମ-ଦୃଷ୍ଟି ସେବା
ଯେତେଣେ ସନ୍ତୋଷ ବିପ୍ର ଦେବା
କ୍ରମେ ନିବୃତ୍ତି ଗ୍ରାମ୍ୟ ଧର୍ମ
ମଉନ ଆତ୍ମ-ବିଚାରଣ
ହୃଦେ ନିରୋଧ ତୁଷ୍ଟ ମନ
ଏ ପ୍ରାଣୀ ସାଧାରଣ ଧର୍ମ । ୮,୯ ।

ଅନ୍ନାଦ୍ୟାଦେଃ ସଂବିଭାଗୋ ଭୂତେଭ୍ୟଶ୍ଚ ଯଥାର୍ହତଃ ।
ତେଷ୍ୱାତ୍ମଦେବତାବୁଦ୍ଧିଃ ସୁତରାଂ ନୃଷୁ ପାଣ୍ଡବ ।୧୦।
ଶ୍ରବଣଂ କୀର୍ତ୍ତନଞ୍ଚାସ୍ୟ ସ୍ମରଣଂ ମହତାଂ ଗତେଃ ।
ସେବେଜ୍ୟାବନତିର୍ଦାସ୍ୟଂ ସଖ୍ୟମାତ୍ମସମର୍ପଣମ୍ ।୧୧।
ନୃଣାମୟଂ ପରୋ ଧର୍ମଃ ସର୍ବେଷାଂ ସମୁଦାହୃତଃ ।
ତ୍ରିଂଶଲ୍ଲକ୍ଷଣବାନ୍ ରାଜନ୍ ସର୍ବାତ୍ମା ଯେନ ତୁଷ୍ୟତି ।୧୨।
ସଂସ୍କାରା ଯତ୍ରାବିଚ୍ଛିନ୍ନାଃ ସ ଦ୍ୱିଜୋଽଜୋ ଜଗାଦ ଯମ୍ ।
ଇଜ୍ୟାଧ୍ୟୟନଦାନାନି ବିହିତାନି ଦ୍ୱିଜନ୍ମନାମ୍-
ଜନ୍ମକର୍ମାବଦାତାନାଂ କ୍ରିୟାଶ୍ଚାଶ୍ରମଚୋଦିତାଃ ।୧୩।

---

୧୧-ତ୍ୟାଗ, ୧୨-ଯଥୋଚିତ ଜପାଦି, ୧୩-ସରଳତା, ୧୪-ଭଗବାନଙ୍କର ଦାନରେ ତୃପ୍ତ, ୧୫—ମହତ୍ ସେବା, ୧୬-କାମ୍ୟ କର୍ମ ପରିତ୍ୟାଗ, ୧୭-କର୍ମଫଳାନୁ ସନ୍ଧାନାଗ୍ରହତ୍ୟ, ୧ -ବୃଥାଗଳ୍ପରୁ ନିବୃତ୍ତି, ୧୯-ଦେହାତିରିକ୍ତ ଆତ୍ମାନୁସନ୍ଧାନ, ୨୦-ସକଳପ୍ରାଣୀଙ୍କୁ ଅନ୍ନାଦି ଦାନ, ୨୧-ସକଳ ପ୍ରାଣୀଙ୍କଠାରେ ଆତ୍ମବତ୍ ଓ ଦେହବତ୍ ବୁଦ୍ଧି, ୨୨-ବିଷ୍ଣୁ ନାମ ଶ୍ରବଣ, ୨୩-ବିଷ୍ଣୁ ନାମ କୀର୍ତ୍ତନ, ୨୪-ବିଷ୍ଣୁ ନାମ ସ୍ମରଣ, ୨୫-ବିଷ୍ଣୁ ସେବା, ୨୬-ବିଷ୍ଣୁ ପୂଜା, ୨୭-ବିଷ୍ଣୁ ପ୍ରଣତି, ୨୮-ବିଷ୍ଣୁ ଦାସ୍ୟ, ୨୯-ବିଷ୍ଣୁ ସଖ୍ୟ, ୩୦-ବିଷ୍ଣୁଙ୍କଠାରେ ଆତ୍ମ ସମର୍ପଣ । ୮-୧୨ ।

ବର୍ଣ୍ଣାଶ୍ରମ ଧର୍ମ ଅନୁସାରେ ଯେଉଁମାନେ ମନ୍ତ୍ରଯୁକ୍ତ ଗର୍ଭାଧାନାଦି ସଂସ୍କାରବାନ୍ ସେହିମାନେ ଦ୍ୱିଜ । ବ୍ରହ୍ମା ସେହି ସଂସ୍କାର ସମ୍ପନ୍ନ ବ୍ୟକ୍ତିମାନଙ୍କୁ ଦ୍ୱିଜ ବୋଲି ଆଖ୍ୟା ଦେଇଅଛନ୍ତି । ଶୁଦ୍ଧ କୁଳ ଓ କର୍ମଦ୍ୱାରା ଯେଉଁମାନେ ପବିତ୍ର ସେପରି ଦ୍ୱିଜମାନେ ଯାଗ, ଅଧ୍ୟୟନ, ଦାନ ଏବଂ ବ୍ରହ୍ମଚର୍ଯ୍ୟାଦି କ୍ରିୟାମାନ ସମ୍ପାଦନ କରିବେ । ୧୩ ।

---

ଉତ୍ତମ ଅନ୍ନ କରି ଭାଗ
ଭୂତ ଅତିଥି ପୂଜ ଆଗ
ଆତ୍ମା-ଦେବତା ବୁଦ୍ଧି କରି
ଏ ଭାବେ ତୃପ୍ତହେ ଥିଲେ ତରି ।୧୦
କୃଷ୍ଣର ନାମ ଅନୁକ୍ଷଣ
ସ୍ମରଣ କୀର୍ତ୍ତନ ଶ୍ରବଣ

ସେବା ପୂଜନ ଦାସପଣ
ସୁସଖ୍ୟ ଆତ୍ମ-ନିବେଦନ
ପରମ ଧର୍ମ ଏ ପ୍ରସିଦ୍ଧି
ମନୁଷ୍ୟ ଜନ୍ମର ଏ ବିଧି
ତ୍ରିଂଶ ଲକ୍ଷଣ ଧର୍ମ ଏହି
ଯେଣେ ସନ୍ତୋଷନ୍ତି ବିରାଡ଼ୀ ।୧୧,୧୨

ଅଖିଳ ସଂସ୍କାର କାରଣେ
ବେଦକୁ ଅଭ୍ୟାସେ ବ୍ରାହ୍ମଣେ
ବ୍ରାହ୍ମଣ ଆଦି ତିନି ବର୍ଣ୍ଣେ
ଯଜନ ଦାନ ଅଧ୍ୟୟନେ
ଜନ୍ମାଦି କ୍ରିୟା କର୍ମ ଯେତେ
ଚତୁର ଆଶ୍ରମ ସହିତେ

ବିପ୍ରସ୍ୟାଧ୍ୟୟନାଦୀନି ଷଡନ୍ୟସ୍ୟାପ୍ରତିଗ୍ରହଃ ।
ରାଜ୍ଞୋ ବୃତ୍ତିଃ ପ୍ରଜାଗୋପ୍ତୁରବିପ୍ରାଦ୍‌ବା କରାଦିଭିଃ॥ ୧୪ ।
ବୈଶ୍ୟସ୍ତୁ ବାର୍ତ୍ତା ବୃତ୍ତିଃସ୍ୟାନ୍ନିତ୍ୟଂ ବ୍ରହ୍ମକୁଳାନୁଗଃ ।
ଶୂଦ୍ରସ୍ୟ ଦ୍ୱିଜଶୁଶ୍ରୁଷା ବୃତ୍ତିଶ୍ଚ ସ୍ୱାମିନୋ ଭବେତ୍‌ । ୧୫ ।

---

ବ୍ରାହ୍ମଣମାନଙ୍କର ଅଧ୍ୟୟନାଦି ଷଟ୍‌କର୍ମ ( ଅଧ୍ୟୟନ, ଅଧ୍ୟାପନ, ଯଜନ, ଯାଜନ, ଦାନ ଏବଂ ପ୍ରତିଗ୍ରହ) ଏବଂ କ୍ଷତ୍ରିୟମାନଙ୍କର ପ୍ରତିଗ୍ରହ ବ୍ୟତୀତ ଅନ୍ୟ ପଞ୍ଚକର୍ମ ନିରୂପିତ ହୋଇଅଛି । ପ୍ରଜାପାଳନ ତତ୍ପର ରାଜାଙ୍କ ପକ୍ଷରେ ବିପ୍ର ବ୍ୟତୀତ ଅନ୍ୟ ବର୍ଣ୍ଣମାନଙ୍କଠାରୁ କର ଗ୍ରହଣ କରିବା ବିହିତ କର୍ମ ବୋଲି ନିର୍ଦ୍ଦିଷ୍ଟ ହୋଇଅଛି । ୧୪ । *

ବୈଶ୍ୟର କର୍ମ କୃଷି, ବାଣିଜ୍ୟାଦି ଏବଂ ସେମାନେ ସର୍ବଦା ବ୍ରାହ୍ମଣର ଅନୁଗତ ହେବେ ଏବଂ ଶୂଦ୍ରମାନେ ବ୍ରାହ୍ମଣମାନଙ୍କର ଶୁଶ୍ରୂଷା କରିବେ । ୧୫ ।

---

| | |
|---|---|
| ପଠନ ଆଦି ଷଟ କର୍ମ | ବାଣିଜ୍ୟ କୃଷି ଗୋ ରକ୍ଷଣ |
| ବ୍ରାହ୍ମଣ ଜନର ଏ ଧର୍ମ | ବୈଶ୍ୟ ଜନର ଏ ଲକ୍ଷଣ |
| ରାଜାର ଧର୍ମ ପ୍ରଜା ରକ୍ଷା | ଶୂଦ୍ର ଜନର ଦ୍ୱିଜ ସେବା |
| ଆଦାନ ବିନେ ପଞ୍ଚଦୀକ୍ଷା ।୧୩,୧୪ | ଯେଣେ ସନ୍ତୋଷ ପ୍ରଭୁ ଦେବା ।୧୫। |

---

* ଶ୍ରୀମଦ୍ ଭଗବଦ୍‌ଗୀତାରେ ଚତୁର୍ଥ ଓ ଅଷ୍ଟାଦଶ ଅଧ୍ୟାୟରେ ଏହି ବର୍ଣ୍ଣାଶ୍ରମ ବିଭାଗ ପ୍ରସଙ୍ଗ ନିମ୍ନ ଲିଖିତ ଭାବରେ ଉଲ୍ଲେଖ କରାଯାଇଅଛି ।

"ଚାତୁର୍ବର୍ଣ୍ଣ୍ୟଂ ମୟା ସୃଷ୍ଟଂ ଗୁଣକର୍ମବିଭାଗଶଃ
ତସ୍ୟ କର୍ତ୍ତାରମପିମାଂ ବିଦ୍ଧ୍ୟକର୍ତ୍ତାରମବ୍ୟୟଂ ।" ଚତୁର୍ଥ ଅଧ୍ୟାୟ ୧୩ ଶ୍ଳୋକ ।

ଅର୍ଥାତ୍ ମୁଁ ସତ୍ତ୍ୱାଦି ଗୁଣ ଏବଂ କର୍ମ ବିଭାଗମାନ ଅନୁସାରେ ଚତୁର୍ବର୍ଣ୍ଣ ଅର୍ଥାତ୍ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ସୃଷ୍ଟି କରିଅଛି । ତଥାପି ମୁଁ ସେମାନଙ୍କର କର୍ତ୍ତା ହେଲେ ମଧ୍ୟ ମୋତେ ଅବ୍ୟୟ ଅର୍ଥାତ୍ ଆସକ୍ତି ବିହୀନତା ବଶତଃ ଶ୍ରମହୀନ ଓ ନାଶାଦିହୀନ ଅକର୍ତ୍ତା ମନେ କରିବ ।

ବ୍ରାହ୍ମଣ କ୍ଷତ୍ରିୟବିଶାଂ ଶୂଦ୍ରାଣାଂଚ ପରନ୍ତପଃ । ଅଷ୍ଟାଦଶଅଧ୍ୟାୟ ୪୩ ଶ୍ଳୋକଃ
କର୍ମାଣି ପ୍ରବିଭକ୍ତାନି ସ୍ୱଭାବ ପ୍ରଭବୈ ର୍ଗୁଣୈଃ ।
ଶମୋ ଦମସ୍ତପ ଶୌଚଂ କ୍ଷାନ୍ତିରାର୍ଜବ ମେବଚ
ଜ୍ଞାନଂ ବିଜ୍ଞାନମାସ୍ତିକ୍ୟଂ ବ୍ରହ୍ମକର୍ମ ସ୍ୱଭାବଜଂ ।
ଶୌର୍ଯ୍ୟଂ ତେଜୋ ଧୃତିର୍ଦାକ୍ଷ୍ୟଂ ଯୁଦ୍ଧେ ଚାପ୍ୟ ପଲାୟନଂ ।
ଦାନମୀଶ୍ୱର ଭାବଶ୍ଚ କ୍ଷାତ୍ରଂ କର୍ମ ସ୍ୱଭାବଜଂ ।
କୃଷି ଗୋରକ୍ଷ ବାଣିଜ୍ୟଂ ବୈଶ୍ୟ କର୍ମ ସ୍ୱଭାବଜଂ
ପରିଚର୍ଯ୍ୟାତ୍ମକଂ କର୍ମ ଶୂଦ୍ରାସ୍ୟାପି ସ୍ୱଭାବଜଂ ।

ବାର୍ତ୍ତା ବିଚିତ୍ରା ଶାଳୀନଯାଯାବରଶିଲୋଞ୍ଛନମ୍ ।
ବିପ୍ରବୃତ୍ତିଶ୍ଚତୁର୍ଦ୍ଧେୟଂ ଶ୍ରେୟସୀ ଚୋତ୍ତରୋତ୍ତରା । ୧୬ ।
ଜଘନ୍ୟୋ ନୋତ୍ତମାଂ ବୃତ୍ତିମନାପଦି ଭଜେନ୍ନରଃ ।
ଋତେ ରାଜନ୍ୟମାପତ୍ସୁ ସର୍ବେଷାମପି ସର୍ବଶଃ । ୧୭ ।
ଋତାମୃତାଭ୍ୟାଂ ଜୀବେତ ମୃତେନ ପ୍ରମୃତେନ ବା ।
ସତ୍ୟାନୃତାଭ୍ୟାମପି ବା ନ ଶ୍ୱବୃତ୍ତ୍ୟା କଦାଚନ । ୧୮ ।
ଋତମୁଞ୍ଛଶିଲଂ ପ୍ରୋକ୍ତମମୃତଂ ଯଦଯାଚିତମ୍ ।
ମୃତଂ ତୁ ନିତ୍ୟଯାଚ୍ଞା ସ୍ୟାତ୍ ପ୍ରମୃତଂ କର୍ଷଣଂ ସ୍ମୃତମ୍ । ୧୯ ।

---

(ବ୍ରାହ୍ମଣର ଅକଳ୍ପବୃତ୍ତି)—ବିବିଧ କୃଷି ଅବଲମ୍ବନ, ଅଯାଚିତଭାବରେ ଗ୍ରହଣ, ପ୍ରତ୍ୟହ ଧାନ୍ୟ ଯାଚଜ୍ଞା, ଧାନ୍ୟକ୍ଷେତ୍ରରେ ସ୍ୱାମୀ ପରିତ୍ୟକ୍ତ ଧାନ୍ୟାଂଶ ଗ୍ରହଣ, ବା ବିପଣ୍ୟାଦିରେ ପତିତ ଧାନ୍ୟ ସଂଗ୍ରହ ଏହି ଚାରି ବୃତ୍ତି କ୍ରମାନୁସାରେ ଶ୍ରେଷ୍ଠ । ୧୬ ।

ପୂର୍ବୋକ୍ତ ବୃତ୍ତିମାନଙ୍କ ସମ୍ବନ୍ଧେ ବ୍ୟବସ୍ଥା ଏହି ଯେ ଅପେକ୍ଷାକୃତ ନୀଚଜାତି ଉଚ୍ଚ ଜାତିର ବୃତ୍ତି ଅବଲମ୍ବନ କରିବେ ନାହିଁ, ଏ ବିଷୟରେ ଏକମାତ୍ର ବ୍ୟତିକ୍ରମ ଏହି ଯେ କ୍ଷତ୍ରିୟ କେବଳ ପ୍ରତିଗ୍ରହ କରି-ପାରିବ ନାହିଁ । ବ୍ରାହ୍ମଣ ଅନ୍ୟାନ୍ୟ ବୃତ୍ତି ଅବଲମ୍ବନ କରି ପାରିବ କିନ୍ତୁ ଏ ବ୍ୟବସ୍ଥା ଆପତ୍ କାଳ ଭିନ୍ନ ଅନ୍ୟ ସମୟ ପାଇଁ ନୁହେଁ । ୧୭ ।

ଋତ ବା ଅମୃତ, ମୃତ ବା ପ୍ରମୃତ, ସତ୍ୟ ବା ଅନୃତ ଏହି ସମସ୍ତ ଦ୍ୱାରା ଜୀବନ ଧାରଣ କରିବ କିନ୍ତୁ କଦାପି ଶ୍ୱବୃତ୍ତି ଅବଲମ୍ବନୀୟ ନୁହେଁ । ୧୮ ।

ଋତ ଶବ୍ଦ ଉଞ୍ଛ ଓ ଶୀଳ ବୃତ୍ତି, ଅଯାଚିତ ପ୍ରାପ୍ତିକୁ ଅମୃତ ବୋଲଯାଏ । ମୃତ ଅର୍ଥାତ୍ ପ୍ରାର୍ଥନା, ପ୍ରମୃତ ଅର୍ଥାତ କର୍ଷଣ, ସତ୍ୟାନୃତ ଅର୍ଥ ବାଣିଜ୍ୟ ଏବଂ ଶ୍ୱବୃତ୍ତି ଅର୍ଥାତ୍ ନୀଚ ସେବା । ୧୯ ।

---

ଯେ ଧର୍ମ୍ମ ଶ୍ରୁତି ସ୍ମୃତି ବାଦେ
ତାହା ସାଧିବ କରିପଦେ

ଆପଦେ ଅନ୍ୟ ବର୍ଣ୍ଣ କର୍ମ୍ମେ
ସାଧି ବଞ୍ଚିବ ତଳ ବର୍ଣ୍ଣେ

ବିପ୍ର ଜୀବନ ବୃତ୍ତି ଅର୍ଥେ
କୃଷି ଅଥବା ଅଯାଚିତେ

---

ହେ ପରନ୍ତପ ! ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରମାନଙ୍କର କର୍ମ ସାତ୍ତ୍ୱିକ, ରାଜସ ଓ ତାମସିକ, ସ୍ୱଭାବ ସମ୍ଭୂତ ଜ୍ଞାନଦ୍ୱାରା ବିଶେଷରୂପେ ବିଭକ୍ତ ହୋଇଅଛି, ଶମ, ( ଚିତ୍ତ ନିବୃତ୍ତି ) ଦମ, (ବାହ୍ୟେନ୍ଦ୍ରିୟ ନିବୃତ୍ତି ) ତପଃ, ଶୌଚ କ୍ଷାନ୍ତି, (କ୍ଷମା), ଆର୍ଜ୍ଜବ (ସରଳତା) ଜ୍ଞାନ, (ଶାସ୍ତ୍ରଜ୍ଞାନ) ବିଜ୍ଞାନ, (ଅନୁଭବ) ଆସ୍ତିକ୍ୟ (ଈଶ୍ୱର ବିଶ୍ୱାସ) ଏମାନ ବ୍ରାହ୍ମଣର ସ୍ୱଭାବକ କର୍ମ । ଶୌର୍ଯ୍ୟ (ପରାକ୍ରମ), ତେଜଃ, ଧୃତି, ଯୁଦ୍ଧ କ୍ଷେତ୍ରରେ ଅପରାଙ୍ମୁଖତା, ଦାନ, ଈଶ୍ୱର ଭାବ, ଶାସନ କ୍ଷମତା ଏମାନ କ୍ଷତ୍ରିୟର ସ୍ୱଭାବକ କର୍ମ । କୃଷି, ଗୋ-ପାଳନ, ବାଣିଜ୍ୟ, ଏମାନ ବୈଶ୍ୟର ସ୍ୱଭାବକ କର୍ମ ଏବଂ ବ୍ରାହ୍ମଣାଦି ବର୍ଣ୍ଣ ତ୍ରୟଙ୍କର ପରିଚର୍ଯ୍ୟା (ସେବା) ଶୂଦ୍ରର ସ୍ୱଭାବକ କର୍ମ ।

ସତ୍ୟାନୃତଞ୍ଚ ବାଣିଜ୍ୟଂ ଶ୍ୱବୃତ୍ତି ର୍ନୀଚସେବନମ୍ ।
ବର୍ଜୟେତ୍ ତାଂ ସଦା ବିପ୍ରୋ ରାଜନ୍ୟଶ୍ଚ ଜୁଗୁପ୍ସିତାମ୍-
ସର୍ବବେଦମୟୋ ବିପ୍ରଃ ସର୍ବଦେବମୟୋ ନୃପଃ । ୨୦ ।
ଶମୋ ଦମସ୍ତପଃ ଶୌଚଂ ସନ୍ତୋଷଃ କ୍ଷାନ୍ତିରାର୍ଜବମ୍ ।
ଜ୍ଞାନଂ ଦୟାଚ୍ୟୁତାତ୍ମତ୍ୱଂ ସତ୍ୟଞ୍ଚ ବ୍ରହ୍ମଲକ୍ଷଣମ୍ । ୨୧ ।
ଶୌର୍ଯ୍ୟଂ ବୀର୍ଯ୍ୟଂ ଧୃତିସ୍ତେଜସ୍ତ୍ୟାଗଶ୍ଚାତ୍ମଜୟଃ କ୍ଷମା ।
ବ୍ରହ୍ମଣ୍ୟତା ପ୍ରସାଦଶ୍ଚ ସତ୍ୟଞ୍ଚ କ୍ଷତ୍ରଲକ୍ଷଣମ୍ । ୨୨ ।
ଦେବଗୁର୍ବଚ୍ୟୁତେ ଭକ୍ତିସ୍ତ୍ରିବର୍ଗପରିପୋଷଣମ୍ ।
ଆସ୍ତିକ୍ୟମୁଦ୍ୟମୋ ନିତ୍ୟଂ ନୈପୁଣ୍ୟଂ ବୈଶ୍ୟଲକ୍ଷଣମ୍ । ୨୩ ।

---

ବ୍ରାହ୍ମଣ ଓ କ୍ଷତ୍ରିୟ ସର୍ବଦା ଏହି ନିନ୍ଦିତ ନୀଚ ସେବା ପରିତ୍ୟାଗ କରିବେ । କାରଣ ବ୍ରାହ୍ମଣ ସର୍ବ ବେଦମୟ ଏବଂ ରାଜା ସର୍ବ ଦେବ ସ୍ୱରୂପ । ୨୦ ।

ବ୍ରାହ୍ମଣର ଲକ୍ଷଣ—

ସମ, ଦମ, ତପସ୍ୟା, ଶୌଚ, ସନ୍ତୋଷ, କ୍ଷମା, ସରଳତା, ଜ୍ଞାନ, ଦୟା, ବିଷ୍ଣୁଙ୍କଠାରେ ଆତ୍ମସମର୍ପଣ, ସତ୍ୟ । ୨୧ ।

କ୍ଷତ୍ରିୟର ଧର୍ମ—

ଶୌର୍ଯ୍ୟ, ପ୍ରଭାବ, ଧୈର୍ଯ୍ୟ, ତେଜ ତ୍ୟାଗ, ଇନ୍ଦ୍ରିୟ ନିଗ୍ରହ, କ୍ଷମା, ବ୍ରାହ୍ମଣ ପରାୟଣତା, ପ୍ରସନ୍ନତା ଓ ସତ୍ୟ ଏହି ଦଶଗୋଟି କ୍ଷତ୍ରିୟର ଧର୍ମ । ୨୨ ।

ବୈଶ୍ୟ ଧର୍ମ—

ଦେବ, ଗୁରୁ ଓ ଈଶ୍ୱର ଭକ୍ତି;—ଧର୍ମ, ଅର୍ଥ, କାମ ପରିପୋଷଣ ଆସ୍ତିକ୍ୟ ଅର୍ଥୋପାର୍ଜ୍ଜନରେ ଯତ୍ନ ଓ ନିପୁଣତା ଏମାନେ ବୈଶ୍ୟଧର୍ମ । ୨୩ ।

---

ଧାନ୍ୟ ଯାଚନ୍ତା ପ୍ରତାରଣ
ଯେ ଅବା ବୃତ୍ତି ଶିଳୋଞ୍ଛନ
ବାଣିଜ୍ୟ କରି ବା ବଞ୍ଚିବ
ନୀଚଙ୍କୁ ସେବା ନ କରିବ
ବିପ୍ର କ୍ଷତ୍ରିୟ ବେନି ବର୍ଣ୍ଣ
ବର୍ଜ୍ଜିବ ନିନ୍ଦା ବୁଦ୍ଧିମାନ ।୧୭-୨୦
ଦ୍ୱିଜ ଲକ୍ଷଣ ତୋତେ କହି
ରାଜନ ଶୁଣ ମନ ଦେଇ

ତପ ଶଉଚ ଶମ ଦମ
ସନ୍ତୋଷ ଋଜୁ କ୍ଷମା ଜ୍ଞାନ
ସଦା ଅଚ୍ୟୁତ-ଆତ୍ମା ସତ୍ୟ
ବିପ୍ର ଲକ୍ଷଣ ଏ ବିହିତ । ୨୧ ।
ତେଜ ଶଉର୍ଯ୍ୟ ବୀର୍ଯ୍ୟ ଧୃତ
ତ୍ୟାଗ ସଂଯମ ସତ୍ୟ ଶାନ୍ତ
ନିତ୍ୟେ ପ୍ରସନ୍ନ ବିପ୍ର ରକ୍ଷା
କ୍ଷତ୍ରିୟ ଲକ୍ଷଣ ଏ ପରୀକ୍ଷା । ୨୨ ।

ଗୁରୁ ଅଚ୍ୟୁତ ଦେବେ ଭକ୍ତି
ତ୍ରିବର୍ଗ ସାଧଇ ସେ ନିତି
ଆସ୍ତିକ୍ୟ ଉଦ୍ୟମ ନୈପୁଣ୍ୟ
ବୈଶ୍ୟ ଜନର ଏ ଲକ୍ଷଣ ।୨୩।

ଶୂଦ୍ରସ୍ୟ ସନ୍ନତିଃ ଶୌଚଂ ସେବା ସ୍ୱାମିନ୍ୟମାୟୟା ।
ଅମନ୍ତ୍ରଯଜ୍ଞୋ ହ୍ୟସ୍ତେୟଂ ସତ୍ୟଂ ଗୋବିପ୍ରରକ୍ଷଣମ୍ । ୨୪ ।
ସ୍ତ୍ରୀଣାଞ୍ଚ ପତିଦେବାନାଂ ତଚ୍ଛୁଶ୍ରୂଷାନୁକୂଳତା ।
ତଦ୍ବନ୍ଧୁଷ୍ୱନୁବୃତ୍ତିଶ୍ଚ ନିତ୍ୟଂ ତଦ୍ବ୍ରତଧାରଣମ୍ । ୨୫ ।
ସଂମାର୍ଜନୋପଲେପାଭ୍ୟାଂ ଗୃହମଣ୍ଡନବର୍ତ୍ତନୈଃ ।
ସ୍ୱୟଞ୍ଚମଣ୍ଡିତା ନିତ୍ୟଂ ପରିମୃଷ୍ଟ ପରିଚ୍ଛଦା । ୨୬ ।
କାମୈରୁଚ୍ଚାବଚୈଃ ସାଧ୍ୱୀ ପ୍ରଶ୍ରୟେଣ ଦମେନ ଚ ।
ବାକ୍ୟୈଃ ସତ୍ୟୈଃ ପ୍ରିୟୈଃ ପ୍ରେମ୍ଣା କାଲେ କାଲେ ଭଜେତ୍ ପତିମ୍ । ୨୭ ।

---

**ଶୂଦ୍ର ଧର୍ମ—**

ନମସ୍କାର, ଶୌଚ, ନିରଭିମାନ, ଅକପଟରେ ପ୍ରଭୁ ସେବା ମନ୍ତ୍ରବର୍ଜିତ ଯଜ୍ଞାନୁଷ୍ଠାନ, ଅସ୍ତେୟତା, ସତ୍ୟ, ଗୋ ଓ ବିପ୍ରରକ୍ଷା ଏମାନ ଶୂଦ୍ରଧର୍ମ । ୨୪ ।

**ସ୍ତ୍ରୀ ଧର୍ମ—**

ସ୍ୱାମୀର ଶୁଶ୍ରୂଷା ଓ ହିତଆଚରଣ, ସର୍ବଦା ପତି ନିୟମ ପାଳନ, ପତିଙ୍କର ପିତାମାତାଙ୍କ ପ୍ରତି ସୁଖ ସମ୍ପାଦନରେ ତତ୍ପରତା ଏହି ଗୁଣ୍ତିକି ପତିବ୍ରତା ସ୍ତ୍ରୀର ଲକ୍ଷଣ ଓ ଧର୍ମ । ୨୫ ।

ପତିବ୍ରତା ସ୍ତ୍ରୀ ପ୍ରତ୍ୟହ ସମ୍ମାର୍ଜନ ଓ ଉପଲେପନ ଦ୍ୱାରା ଗୃହର ଶୋଭା ବର୍ଦ୍ଧନ କରିବ ଓ ଗୃହୋପକରଣ ଏବଂ ବସ୍ତ୍ରାଦିକୁ ପରିଷ୍କାର କରି ରଖିବ ଏବଂ ନାନାପ୍ରକାର ଭୂଷଣରେ ନିଜେ ଭୂଷିତ ହୋଇ ପତିଙ୍କର ସନ୍ତୋଷ ବିଧାନ କରିବ । ୨୬ ।

ସାଧ୍ୱୀ ସ୍ତ୍ରୀ ଉଚ୍ଚ ଏବଂ ନୀଚ ଅର୍ଥାତ୍ ଯଥା ଯୋଗ୍ୟ ଅଭିଳଷିତ ବିଷୟ ଦ୍ୱାରା ବିନୟ ଓ ଇନ୍ଦ୍ରିୟ ଦମନରେ ପ୍ରିୟ ଅଥଚ ସତ୍ୟବାକ୍ୟ ପ୍ରୟୋଗ କରି ଯଥା ସମୟରେ ପତି ସେବା କରିବ । ୨୭ ।

---

ଅକପଟରେ ସ୍ୱାମୀସେବା
କେବେହେଁ ଚୋର ନ କରିବା
ସତ୍ୟ ଯେ ଗୋ-ବିପ୍ର-ରକ୍ଷଣ
ମନ୍ତ୍ର ବିହୀନେ ଯଜ୍ଞକର୍ମ
ସାଧୁ ବିନତି ଶୌଚ କର୍ମ
ଶୂଦ୍ରଜନର ଏ ସ୍ୱଧର୍ମ । ୨୪ ।
ଏବେ ହେ ଯୁଧିଷ୍ଠିର ଶୁଣ
ସ୍ତ୍ରୀଙ୍କ ଜନର ଯେ ଲକ୍ଷଣ

ସ୍ୱାମିର ଚରଣ କମଳେ
ସେବିବ ଚୈତନ୍ୟ ନିଷ୍ଠଳେ
ସ୍ୱାମିର ବନ୍ଧୁ ଥିବେ ଯେତେ
ତାଙ୍କ ତୋଷଣେ ଥିବ ନିତ୍ୟେ
ପତିବ୍ରତାର ଏ ଲକ୍ଷଣ
ନିଗମ ବଚନେ ପ୍ରମାଣ । ୨୫ ।
ଗୃହ ମାର୍ଜନ ଉପଲେପ
ମଣ୍ଡନ ସାୟଂକାଳେ ଦୀପ

ଆତ୍ମମଣ୍ଡନ କରିବଟେ
ଭୂଷଣ କଜ୍ଜ୍ୱଳ ସିନ୍ଦୂରେ । ୨୬ ।
ଯେ ଉଚ୍ଚ ନୀଚ କର୍ମ କରୁ
ବିନୟେ ଦମେ ସାଧ୍ୱୀ ନାରୀ
ସର୍ବଦା ସ୍ନେହ ସତ୍ୟଶୀଳେ
ଭଜିବ ପତି କାଳେ କାଳେ । ୨୭ ।

ସନ୍ତୁଷ୍ଟାଲୋଲୁପା ଦକ୍ଷା ଧର୍ମଜ୍ଞା ପ୍ରିୟସତ୍ୟବାକ୍ ।
ଅପ୍ରମତ୍ତା ଶୁଚିଃ ସ୍ନିଗ୍ଧା ପତିଂ ତ୍ୱପତିତଂ ଭଜେତ୍ । ୨୮ ।
ଯା ପତିଂ ହରିଭାବେନ ଭଜେତ୍ ଶ୍ରୀରିବ ତତ୍ପରା ।
ହର୍ଯ୍ୟାତ୍ମନା ହରେର୍ଲୋକେ ପତ୍ୟା ଶ୍ରୀରିବ ମୋଦତେ । ୨୯ ।
ବୃତ୍ତିଃ ସଙ୍କରଜାତୀନାଂ ତତ୍ତତ୍‌କୁଳକୃତା ଭବେତ୍ ।
ଅଚୌରାଣାମପାପାନାମନ୍ତ୍ୟଜାନ୍ତେବସାୟିନାମ୍ । ୩୦ ।
ପ୍ରାୟଃ ସ୍ୱଭାବବିହିତୋ ନୃଣାଂ ଧର୍ମୋ ଯୁଗେ ଯୁଗେ ।
ବେଦଦୃଗ୍‌ଭିଃ ସ୍ମୃତୋ ରାଜନ୍ ପ୍ରେତ୍ୟ ଚେହ ଚ ଶର୍ମକୃତ୍ । ୩୧ ।
ବୃତ୍ତ୍ୟା ସ୍ୱଭାବକୃତୟା ବର୍ତ୍ତମାନଃ ସ୍ୱକର୍ମକୃତ୍ ।
ହିତ୍ୱା ସ୍ୱଭାବଜଂ କର୍ମଶନୈର୍ନିର୍ଗୁଣତାମିୟାତ୍ । ୩୨ ।

ସନ୍ତୁଷ୍ଟା, ଅଲୁବ୍ଧା, ଅନଳସା, ଧର୍ମଜ୍ଞ, ପ୍ରିୟବାଦିନୀ, ସତ୍ୟବାଦିନୀ, ଅପ୍ରମତ୍ତା, ପବିତ୍ରା ଏବଂ ସ୍ନିଗ୍ଧା ସ୍ତ୍ରୀ ଅପତିତ ପତିଙ୍କୁ ଭଜନା କରିବ । ୨୮ ।

ଯେଉଁ ସ୍ତ୍ରୀ ଲକ୍ଷ୍ମୀଙ୍କ ତୁଲ୍ୟ ପତି ପରାୟଣା ହୋଇ ହରିରୂପେ ପତିଙ୍କୁ ଭଜନା କରେ ସେ ସ୍ତ୍ରୀ ବିଷ୍ଣୁସ୍ୱରୂପ ପତି ସହିତ ବିଷ୍ଣୁଲୋକରେ ବାସ କରେ । ୨୯ ।

ସଙ୍କର ଜାତିମାନଙ୍କର ବୃତ୍ତି—

ପ୍ରତିଲୋମଜ ଓ ଅନୁଲୋମଜ ସଙ୍କର ଜାତିମାନଙ୍କର କୁଳ ପରମ୍ପରା ପ୍ରାପ୍ତ ଜୀବିକା ଅବଲମ୍ବନୀୟ ବିଧେୟ । ତନ୍ମଧ୍ୟରେ ରଜକାଦି ଅନ୍ତ୍ୟଜ ଓ ଚଣ୍ଡାଳାଦି ଅନ୍ତେବସାୟୀମାନଙ୍କର ଚୌର୍ଯ୍ୟ ଓ ହିଂସାଦି ପାପ ଯଦି କୁଳପରମ୍ପରା ପ୍ରାପ୍ତ ହୁଏ ତଥାପି ତାହା ଅବଲମ୍ବନୀୟ ନୁହେ । ୩୦ ।

ହେ ରାଜନ୍ ! ପ୍ରତିଯୁଗରେ ମନୁଷ୍ୟର ସ୍ୱଭାବିକ ଧର୍ମ ଇହ ପର କାଳର ସୁଖପ୍ରଦ ବୋଲି ବେଦବିଦ୍‌ମାନେ କହି ଅଛନ୍ତି । ୩୧ ।

ସ୍ୱଭାବ କୃତ ବୃତ୍ତି ଅବଲମ୍ବନ କରି ସ୍ୱକର୍ମାନୁଶୀଳନ ତତ୍ପର ବ୍ୟକ୍ତି ସ୍ୱଭାବଜ କର୍ମ ତ୍ୟାଗ କରି ଧୀରେ ଧୀରେ ନିର୍ଗୁଣ ହୁଏ । ୩୨ ।

ସନ୍ତୋଷ ଅଲୋଭ ସୁଦକ୍ଷ
ଧର୍ମଜ୍ଞ ପ୍ରିୟ ସତ୍ୟବାକ୍ୟ
ଅପ୍ରମତ୍ତ ଯେ ଶୁଚି ସ୍ନିଗ୍ଧେ
ଏମନ୍ତ ସେବା ସ୍ୱାମିପାଦେ
ସେବା କରିବ ଗୁରୁଜନେ
ପର ପୁରୁଷ ପିତୃଜ୍ଞାନେ । ୨୮ ।
ଯେ ନାରୀ ହରିଭାବେ ନିତି
ସେବା କରନ୍ତି ନିଜ ପତି
ସେ ନାରୀ ଲକ୍ଷ୍ମୀ ପ୍ରାୟେ ହୋଇ
ପତିର ହସ୍ତେ ହସ୍ତ ଦେଇ
ପତି ସଙ୍ଗତେ ବିଷ୍ଣୁଲୋକେ
ବସଇ ଆନନ୍ଦେ ଅଶୋକେ । ୨୯ ।
ଅନ୍ତ୍ୟଜ ଜାତିର ଏ ଧର୍ମ
ନିୟତ କୁଳର ଯେ କର୍ମ । ୩୦ ।
ଏମନ୍ତ ଧର୍ମ ଯୁଗେ ଯୁଗେ
ଜାଣି ସେବନ୍ତି ଅନୁରାଗେ
ବେଦ ଦୃଷ୍ଟିରେ ବିପ୍ରଜନେ
କହନ୍ତି ଧର୍ମ ଅବଧାନେ
ଯେ ଧର୍ମେ ଇହ ପରଲୋକେ
ପ୍ରାଣୀ ତରନ୍ତି ଆତ୍ମସୁଖେ । ୩୧ ।
ସ୍ୱବୃତ୍ତି ଭାବେ କ୍ରିୟା ଘେନି
ଯେ ଧର୍ମ ଇହ ପରେ ମାନି
ବର୍ତ୍ତନ୍ତି ସ୍ୱକର୍ମ କରଣେ
ସେ ନରେ ପଶନ୍ତି ନିର୍ଗୁଣେ

ଉପ୍ୟମାନଂ ମୁହୁଃ କ୍ଷେତ୍ରଂ ସ୍ୱୟଂ ନିର୍ବୀର୍ଯ୍ୟତାମିୟାତ୍ ।
ନ କଳ୍ପତେ ପୁନଃ ସୂତ୍ୟୈ ଉପ୍ତଂ ବୀଜଞ୍ଚ ନଶ୍ୟତି । ୩୩ ।
ଏବଂ କାମାଶୟଂ ଚିତ୍ତଂ କାମାନାମତିସେବୟା ।
ବିରଜ୍ୟେତ ଯଥା ରାଜନ୍ନଗ୍ନିବତ୍ କାମବିନ୍ଦୁଭିଃ । ୩୪ ।
ଯସ୍ୟ ଯଲ୍ଲକ୍ଷଣଂ ପ୍ରୋକ୍ତଂ ପୁଂସୋ ବର୍ଣ୍ଣାଭିବ୍ୟଞ୍ଜକମ୍ ।
ଯଦନ୍ୟତ୍ରାପି ଦୃଶ୍ୟେତ ତତ୍ତେନୈବ ବିନିର୍ଦ୍ଦିଶେତ୍ । ୩୫ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ

ସଦାଚାରନିର୍ଣ୍ଣୟୋ ନାମ ଏକାଦଶୋଽଧ୍ୟାୟଃ । ୧୧ ।

---

କୌଣସି କ୍ଷେତ୍ରରେ ପୁନଃ ପୁନଃ ବୀଜ ବପନ କଲେ ସେହି କ୍ଷେତ୍ର ସବୀର୍ଯ୍ୟ ହେଲେ ମଧ୍ୟ ପୁନଶ୍ଚ ନିର୍ବୀର୍ଯ୍ୟ ହୋଇଯାଏ ଏବଂ ଆଉ ଶସ୍ୟ ପ୍ରସବ କରିବାକୁ ସମର୍ଥ ହୁଏ ନାହିଁ ଏବଂ ସେହି ବୀଜ ମଧ୍ୟ ବିନାଶ ପ୍ରାପ୍ତ ହୁଏ । ୩୩ ।

ଏହିପରି ଅତ୍ୟନ୍ତ କାମ ସେବାରେ ଚିତ୍ତର ବିରାଗ ଉପସ୍ଥିତ ହୁଏ । କାମନାର ଅଳ୍ପ ଉପଭୋଗରେ ବିରାଗ ଆସେ ନାହିଁ । ଯେପରି ଜ୍ୱଳନ୍ତ ଅଗ୍ନିରେ ବିନ୍ଦୁ ବିନ୍ଦୁ ଘୃତ ଦେଲେ ତାହା ଅଧିକ ପ୍ରଜ୍ୱଳିତ ହୁଏ କିନ୍ତୁ ଘୃତର ମାତ୍ରା ଅଧିକ ହେଲେ ଅଗ୍ନି ନିର୍ବାପିତ ହୁଏ । ସେହିପରି ଯଥୋଚିତ କାମ୍ୟ କର୍ମାନୁଷ୍ଠାନରେ ପ୍ରଚୁର ଫଳ ଭୋଗ ହେଲେ ମଧ୍ୟ ଭୋଗ ବାସନାରେ ଆଉ ପ୍ରବୃତ୍ତି ହୁଏ ନାହିଁ । ସୁତରାଂ ନିର୍ଗୁଣ ହେବା ସ୍ୱଭାବିକ । ୩୪ ।

ପୁରୁଷର ବ୍ରାହ୍ମଣାଦି ବର୍ଣ୍ଣ ବିଶେଷର ଅଭିବ୍ୟଞ୍ଜକ ଯେଉଁ ଲକ୍ଷଣମାନ କଥିତ ଅଛି ତାହା ଯଦି ଅନ୍ୟ ବର୍ଣ୍ଣଠାରେ ଲକ୍ଷିତ ହୁଏ ତେବେ ତାହାକୁ ସେହି ବର୍ଣ୍ଣ ବୋଲି ମନେ କରିବ । ୩୫ ।

---

ନିରତେ ତପ ବ୍ରତ କର
ବିଷ୍ଣୁ ମାୟାରୁ ଯାନ୍ତି ତର । ୩୨ ।
ନିଷ୍କାମ ମାର୍ଗେ ଯେବେ ଭଜେ
ଅଙ୍କୁର ଯେହ୍ନେ ଦଗ୍‌ଧ ବୀଜେ
କେବେହେଁ ବୃକ୍ଷ ସେ ନୁହଇ
ଯତ୍ନ କଲେହେଁ ନାଶ ଯାଇ । ୩୩ ।

କି ଅବା କାମ ଜଡ଼ତରେ
ଯେବେ ସେବଇ ଅବିରତେ
ତେବେ ବିରକ୍ତ ଚିତ୍ତ ହୋଏ
ବହୁତ ଘୃତେ ଅଗ୍ନି ପ୍ରାୟେ । ୩୪ ।
ଯେ ବର୍ଣ୍ଣେ ଯେମନ୍ତ ଲକ୍ଷଣ
ବେଦେ ବର୍ଣ୍ଣିନ୍ତି ମୁନିଗଣ

ତା ଅଧୋ ଊର୍ଦ୍ଧ୍ୱ ଯେବେ ଦେଖି
ସେ ବର୍ଣ୍ଣ ଧର୍ମ୍ମ ତାକୁ ଲେଖି । ୩୫ ।
ଏମନ୍ତ ଧର୍ମ ଅନୁବାଦେ
ମୁନି କହନ୍ତି ସଭାମଧ୍ୟେ
ଶୁଣି ସାନନ୍ଦ ଧର୍ମ୍ମସୁତ
କହଇ ବିପ୍ର ଜଗନ୍ନାଥ ।



**ଭାବାର୍ଥ—**

ଏହି ଅଧ୍ୟାୟରେ ଧର୍ମରାଜ ଯୁଧିଷ୍ଠିରଙ୍କ ପ୍ରଶ୍ନାନୁସାରେ ଦେବର୍ଷି ନାରଦ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର, ଏହି ଚାରିବର୍ଣ୍ଣ ଭିନ୍ନ ସଙ୍କର ଜାତି ଓ ପ୍ରସଙ୍ଗ କହିଅଛନ୍ତି । ସେମାନଙ୍କର କର୍ତ୍ତବ୍ୟାଦି ମଧ୍ୟ ଏହି ଅଧ୍ୟାୟରେ ଉକ୍ତ ହୋଇଅଛି । ଏତଦ୍ ବ୍ୟତୀତ ସାଧ୍ୱୀ ସ୍ତ୍ରୀର ଲକ୍ଷଣ ଓ ଧର୍ମ ମଧ୍ୟ ନିର୍ଦ୍ଦେଶ କରାଯାଇଅଛି । ସ୍ତ୍ରୀର ଦେବତା ସ୍ୱାମୀ, ସ୍ତ୍ରୀ ସ୍ୱାମୀକୁ ସ୍ୱୟଂ ବିଷ୍ଣୁ ସ୍ୱରୂପ କଳ୍ପନା କରି ତାହାଙ୍କର ସେବା କରିବ । କିନ୍ତୁ ଯେଉଁ ସ୍ୱାମୀ ବିଷ୍ଣୁ ସ୍ୱରୂପ ସେ ମଧ୍ୟ ଅପତିତ ହେବା ଆବଶ୍ୟକ । ସ୍ୱାମୀ ସେବା ଦ୍ୱାରା ସ୍ତ୍ରୀ ସ୍ୱାମୀ ସହ ବୈକୁଣ୍ଠ ଲାଭ କରେ । ବିଭିନ୍ନ ବର୍ଣ୍ଣର ଯେଉଁ କର୍ତ୍ତବ୍ୟ ବା ଧର୍ମ ନିର୍ଦ୍ଦେଶ କରାଯାଇଅଛି ତାହା ସାଧାରଣ ସମୟ ଲାଗି ପ୍ରଯୁଜ୍ୟ । ମାତ୍ର ଆପତ୍ତି କାଳରେ ତହିଁରେ ଯେତେଦୂର ବ୍ୟତିକ୍ରମ ଘଟିପାରେ ତାହା ମଧ୍ୟ ନିର୍ଦ୍ଦେଶ କରାଯାଇଅଛି । କେବଳ ଯେ ଜନ୍ମ ବା କୁଳ ହେତୁ ମନୁଷ୍ୟ ବ୍ରାହ୍ମଣ ବା କ୍ଷତ୍ରିୟ ବା ବୈଶ୍ୟ ବା ଶୂଦ୍ରରୂପେ ପରିଚିତ ହୁଏ ତାହା ନୁହେଁ । ଗୁଣ ବା କର୍ମ ଦ୍ୱାରା ସେ ଉନ୍ନତ ବା ଅବନତ ହୋଇଥାଏ ।

---

## ଦ୍ୱାଦଶ ଅଧ୍ୟାୟ ।

**ଦ୍ୱାଦଶେ ବର୍ଣ୍ଣ୍ୟତେ ଧର୍ମ୍ମୋ ବ୍ରହ୍ମଚାରିବନସ୍ଥୟୋଃ ।**
**ଚତୁର୍ଣ୍ଣାମାଶ୍ରମାଣାଞ୍ଚ ସାଧାରଣ୍ୟେନ କୃତ୍ସ୍ନନ୍ । ୦ । ( ଶ୍ରୀଧରସ୍ୱାମୀ'**

**ଶ୍ରୀନାରଦ ଉବାଚ ।**

**ବ୍ରହ୍ମଚାରୀ ଗୁରୁକୁଲେ ବସନ୍ ଦାନ୍ତୋ ଗୁରୋର୍ହିତମ୍ ।**
**ଆଚରନ୍ ଦାସବନ୍ନୀଚୋ ଗୁରୌ ସୁଦୃଢ଼ସୌହୃଦଃ । ୧ ।**

---

### ବ୍ରହ୍ମଚାରୀ, ବାନପ୍ରସ୍ଥ ଓ ଆଶ୍ରମ ଚତୁଷ୍ଟୟ ।

ଦ୍ୱାଦଶ ଅଧ୍ୟାୟରେ ବ୍ରହ୍ମଚାରୀ ଓ ବାନପ୍ରସ୍ଥ ଧର୍ମ ଏବଂ ଚାରି ଆଶ୍ରମର ସାଧାରଣ ଧର୍ମ ବର୍ଣ୍ଣିତ ହୋଇଅଛି ।

**ଶ୍ରୀନାରଦ କହିଲେ—**

ବ୍ରହ୍ମଚାରୀ ଗୁରୁ ଗୃହରେ ବାସକରି ଜିତେନ୍ଦ୍ରିୟ ହୋଇ ଭୃତ୍ୟାତୁଲ୍ୟ ବିନୀତ ଭାବରେ ଗୁରୁଙ୍କ ପ୍ରତି ସୌହାର୍ଦ୍ଦ୍ୟ ଦେଖାଇ ଗୁରୁଙ୍କର ହିତ ଆଚରଣ କରିବେ । ୧ ।

---

ଚତୁର୍ଥ ଆଶ୍ରମ ଲକ୍ଷଣ । ଦ୍ୱାଦଶ ଅଧ୍ୟାୟରେ ବର୍ଣ୍ଣନ ॥

ଶ୍ରୀନାରଦଉବାଚ—

ଶୁଣ ହେ ଧର୍ମ୍ମର ନନ୍ଦନ
ବାନସ୍ଥ ବ୍ରହ୍ମଚାରୀ ଧର୍ମ୍ମ
ଗୃହସ୍ଥ ଭିକ୍ଷୁ ଧର୍ମ୍ମ ଯେତେ
ଏବେ କହିବା ତୋ ଅଗ୍ରତେ
ଗୁରୁ ଭବନେ ବ୍ରହ୍ମଚାରୀ
ବସିବ ଦୃଢବ୍ରତ କରି
ସ୍ୱଭାବେ ତପ କ୍ଲେଶ ଯୁଗେ
ନିରତେ ଥିବ ଗୁରୁ ହିତେ
ସୁହୃଦ ସୁଦୃଢ଼ ଲକ୍ଷଣ
ଆଜ୍ଞା ବହିବ ଅନୁକ୍ଷଣ । ୧ ।

ସାୟଂ ପ୍ରାତରୁପାସୀତ ଗୁର୍ବଗ୍ନ୍ୟର୍କସୁରୋତ୍ତମାନ୍ ।
ସନ୍ଧେ ଉଭେ ଚ ଯତବାଗ୍ ଜପନ୍ ବ୍ରହ୍ମସନାତନମ୍ । ୨ ।
ଛନ୍ଦାଂସ୍ୟଧୀୟୀତ ଗୁରୋରାହୂତଶ୍ଚେତ୍ ସୁଯନ୍ତ୍ରିତଃ ।
ଉପକ୍ରମେଽବସାନେଚ ଚରଣୌ ଶିରସା ନମେତ୍ । ୩ ।
ମେଖଳାଜିନବାସାଂସି ଜଟାଦଣ୍ଡକମଣ୍ଡଳୂନ୍ ।
ବିଭୃୟାଦୁପବୀତଞ୍ଚ ଦର୍ଭପାଣିର୍ଯଥୋଦିତମ୍ । ୪ ।
ସାୟଂ ପ୍ରାତଶ୍ଚରେଦ୍‌ଭୈକ୍ଷଂ ଗୁରବେ ତନ୍ନିବେଦୟେତ୍ ।
ଭୁଞ୍ଜୀତ ଯଦ୍ୟନୁଜ୍ଞାତୋ ନୋଚେଦୁପବସେତ୍ କ୍ୱଚିତ୍ । ୫ ।
ସୁଶୀଳୋ ମିତଭୁଗ୍‌ଦକ୍ଷଃ ଶ୍ରଦ୍ଦଧାନୋ ଜିତେନ୍ଦ୍ରିୟଃ ।
ଯାବଦର୍ଥଂ ବ୍ୟବହରେତ୍ ସ୍ତ୍ରୀଷୁ ସ୍ତ୍ରୀନିର୍ଜିତେଷୁ ଚ । ୬ ।

---

ସାୟଂକାଳ ଓ ପ୍ରାତଃକାଳରେ ଏହି ଉଭୟ ସନ୍ଧ୍ୟାରେ ମୌନୀ ହେବେ ଏବଂ ତ୍ରିସନ୍ଧ୍ୟାରେ ଗୁରୁ ଅଗ୍ନି, ସୂର୍ଯ୍ୟ ବିଷ୍ଣୁ ଓ ସନାତନ ବ୍ରହ୍ମ (ଗାୟତ୍ରୀ) ଜପ କରିବେ । ୨ ।

ଗୁରୁଙ୍କ କର୍ତ୍ତୃକ ଆହୂତ ହେଲେ ସୁସଂଯତ ହୋଇ ତାହାଙ୍କ ନିକଟରେ ବେଦସମୂହ ଅଧ୍ୟୟନ କରିବେ ପାଠାରମ୍ଭ କାଳରେ ଏବଂ ପାଠାବସାନରେ ଗୁରୁଙ୍କର ପାଦଦ୍ୱୟକୁ ମସ୍ତକରେ ରଖି ନମସ୍କାର କରିବେ ।୩।

କୁଶହସ୍ତ ହୋଇ ସର୍ବଦା ଯଥା ବିହିତ ବର୍ଣ୍ଣାନୁସାରେ ମେଖଳା (କଟିସୂତ୍ର), କୃଷ୍ଣାଜିନ (କୃଷ୍ଣମୃଗର ଚର୍ମ ଉତ୍ତରୀୟ), ଶଣାଦି ନିର୍ମିତ ବସ୍ତ୍ର (ଛଣପଟ କରିଆ), ଦଣ୍ଡ, କମଣ୍ଡଳୁ ଓ ଯଜ୍ଞୋପବୀତ ଧାରଣ କରିବେ ଏବଂ କେଶ ପ୍ରସାଧନ କରିବେ ନାହିଁ । ୪ ।

ସାୟଂକାଳରେ ଏବଂ ପ୍ରାତଃକାଳରେ ବ୍ରହ୍ମଗୃହ ଭିକ୍ଷାକରି ଭିକ୍ଷାଲବ୍ଧ ବସ୍ତୁ ଗୁରୁଙ୍କୁ ସମର୍ପଣ କରିବେ । ଗୁରୁ ଅନୁମତି ଦେଲେ ତାହା ଭୋଜନ କରିବେ ନଚେତ୍ ଉପବାସ ରହିବେ । ୫ ।

ସୁଶୀଳ, ଅଳ୍ପାହାରୀ, କାର୍ଯ୍ୟଦକ୍ଷ, ଶ୍ରଦ୍ଧାବାନ୍ ଓ ଜିତେନ୍ଦ୍ରିୟ ହେବ, ସ୍ତ୍ରୀ ଓ ସ୍ତ୍ରୈଣ ବ୍ୟକ୍ତିମାନଙ୍କ ସହିତ ପ୍ରୟୋଜନ ସିଦ୍ଧି ଭିନ୍ନ ଅନ୍ୟଥା ବ୍ୟବହାର କରିବ ନାହିଁ । ୬ ।

---

ଉଭୟ ସନ୍ଧ୍ୟାରେ ମଉନ
ଜପିବ ବ୍ରହ୍ମ ସନାତନ । ୨ ।
ବେଦାଧ୍ୟୟନ କରନ୍ତରେ
ଗୁରୁ ବଚନ ଧରି ଶିରେ
ନିକଟେ ବସି ସୁଯନ୍ତ୍ରିତେ
ଚରଣେ ନମି ଦେବ ହସ୍ତେ ।୩।
ମେଖଳା ଚର୍ମ୍ମ କଉପୀନ
ଦଣ୍ଡ କମଣ୍ଡଳୁ ଧାରଣ
ଯଜ୍ଞୋପବୀତ ଦର୍ଭ ପାଣି
ଯେବା କଳ୍ପିତ ଅଛି ଆଣି

ବିପ୍ରଙ୍କ ଘରୁ ମାଗି ଭିକ୍ଷା
ଦୃଢେ ରଖିବ ଗୁରୁ ଦୀକ୍ଷା
ପଞ୍ଚ ଗୃହରୁ ଭିକ୍ଷା ଦ୍ରବ୍ୟ
ଗୁରୁ ସମୀପେ ସମର୍ପିବ
ଯେ ଧର୍ମ୍ମ ବ୍ରହ୍ମଚାରୀ ଦୀକ୍ଷା
ଗୁରୁ ବଚନେ କରି ଭିକ୍ଷା
ଅନ୍ନଭୁଞ୍ଜିବ ନିତ୍ୟ ନିତ୍ୟ
ଅଥବା ଉପବାସ ବ୍ରତେ ।୪,୫

ସୁଶାନ୍ତ ମତେ ବାନ୍ଧି ମନ
କରିବ ଉଣ୍ଵାସ ଭୋଜନ
ଗୁରୁଙ୍କ ବାକ୍ୟେ ଦକ୍ଷ ପଣେ
ଶ୍ରଦ୍ଧା କରିବ ଅନୁକ୍ଷଣେ
ଇନ୍ଦ୍ରିୟଗଣ କରି ବନ୍ଦ
ଚଞ୍ଚଳ ମନ ହୃଦେ ରୁନ୍ଧ
ସ୍ତ୍ରୀସ୍ତ୍ରୀ, ସ୍ତ୍ରୀବଶ ଲୋକ ମେଳେ
ସଙ୍ଗେ ନ ଥିବ ସର୍ବକାଳେ । ୬

ବର୍ଜୟେତ୍ ପ୍ରମଦାଗାଥାମଗୃହସ୍ଥୋ ବୃହଦ୍‌ବ୍ରତଃ ।
ଇନ୍ଦ୍ରିୟାଣି ପ୍ରମାଥୀନି ହରନ୍ତ୍ୟପି ଯତେର୍ମନଃ । ୭ ।
କେଶପ୍ରସାଧନୋନ୍ମର୍ଦ୍ଦସ୍ନପନାଭ୍ୟଞ୍ଜନାଦିକମ୍ ।
ଗୁରୁସ୍ତ୍ରୀଭିର୍ଯୁବତିଭିଃ କାରୟେନ୍ନାତ୍ମନୋ ଯୁବା । ୮ ।
ନନ୍ୱଗ୍ନିଃ ପ୍ରମଦା ନାମ ଘୃତକୁମ୍ଭସମଃ ପୁମାନ୍ ।
ସୁତାମପି ରହୋ ଜହ୍ୟାଦନ୍ୟଦା ଯାବଦର୍ଥକୃତ୍ । ୯ ।
କଳ୍ପୟିତ୍ୱାତ୍ମନା ଯାବତ୍ ଆଭାସମିଦମୀଶ୍ୱରଃ ।
ଦ୍ୱୈତଂ ତାବନ୍ନ ବିରମେତ୍ ତତୋ ହ୍ୟସ୍ୟ ବିପର୍ଯ୍ୟୟଃ । ୧୦ ।
ଏତତ୍ ସର୍ବଂ ଗୃହସ୍ଥସ୍ୟ ସମାମ୍ନାତଂ ଯତେରପି ।
ଗୁରୁବୃତ୍ତିର୍ବିକଳ୍ପେନ ଗୃହସ୍ଥସ୍ୟର୍ତ୍ତୁଗାମିନଃ । ୧୧ ।

---

ଗୃହସ୍ଥଭିନ୍ନ ବ୍ରହ୍ମଚାରୀ ପ୍ରଭୃତି ସମସ୍ତ ଆଶ୍ରମୀ ବ୍ୟକ୍ତି ସ୍ତ୍ରୀ ବିଷୟକ ଆଳାପ ପରିତ୍ୟାଗ କରିବେ, କାରଣ ବଳବାନ ଇନ୍ଦ୍ରିୟମାନ ମୁନିମାନଙ୍କର ମନ ସୁଦ୍ଧା ହରଣ କରିଥାଏ । ୭ ।

ଶିଷ୍ୟ ସ୍ଥାନୀୟ ଯୁବକମାନେ ନିଜର କେଶ ପ୍ରସାଧନ, ଗାତ୍ର ମର୍ଦ୍ଦନ, ତୈଳ ଗ୍ରହଣ ଓ ସ୍ନାନ ପ୍ରଭୃତି କଦାପି ଗୁରୁ ବା ଗୁରୁପତ୍ନୀଙ୍କ ଦ୍ୱାରା କରାଇବେ ନାହିଁ । ୮ ।

ସ୍ତ୍ରୀ ଅଗ୍ନି ସ୍ୱରୂପ ଏବଂ ପୁରୁଷ ଘୃତକୁମ୍ଭ ସ୍ୱରୂପ । ଏମନେ ଉଭୟେ ଏକତ୍ର ଅବସ୍ଥାନ କରିବା ଅନିଷ୍ଟକର । ସୁତରାଂ ନିର୍ଜନ ସ୍ଥାନରେ ନିଜ କନ୍ୟା ହେଲେ ମଧ୍ୟ ତାହାସଙ୍ଗେ ରହିବ ନାହିଁ । କାର୍ଯ୍ୟ ବଶତଃ ଯେତେକ୍ଷଣ ରହିବା ଉଚିତ ସେତିକି କ୍ଷଣ ମାତ୍ର ରହିବ । ୯ ।

ଯେଉଁପର୍ଯ୍ୟନ୍ତ ସ୍ୱରୂପ ସାକ୍ଷାତ୍ କାର ଦ୍ୱାରା ଏ ଦେହ ଓ ଇନ୍ଦ୍ରିୟାଦି ମିଥ୍ୟା ଏପରି ବୁଦ୍ଧି ଜନ୍ମି ନ ଥାଏ ସେ ପର୍ଯ୍ୟନ୍ତ ସ୍ତ୍ରୀ ପୁରୁଷ ଭେଦଭାବ ବିଦ୍ୟମାନ ଥାଏ । ସୁତରାଂ ଭୋଗବୁଦ୍ଧି ବର୍ତ୍ତମାନ । ୧୦ ।

ଏହିପରି ସୁଶୀଳାଦି ଲକ୍ଷଣ ଗୃହସ୍ଥ ଏବଂ ସନ୍ନ୍ୟାସୀ ଉଭୟଙ୍କ ପକ୍ଷରେ ବିହିତ କିନ୍ତୁ ଋତୁକାଳରେ ସ୍ୱଭାର୍ଯ୍ୟାଭିଗାମୀ ଗୃହସ୍ଥର ବିଶେଷତ୍ୱ ଏହି ଯେ ଗୁରୁକୁଳ ବାସୋଚିତ କାର୍ଯ୍ୟ ସମୂହ ସେମାନେ ନ ଜାଣିଲେ ମଧ୍ୟ କୌଣସି ଦୋଷ ନାହିଁ । ୧୧ ।

---

ନ ଶୁଣି ସ୍ତ୍ରୀଗଣଙ୍କ ବଚନ
ନ କରି ମୁଖାବଲୋକନ । ୭
କେଶ ପ୍ରସାଧନ ମର୍ଦ୍ଦନ
ସ୍ନାହାନ ବେଶ ଆଦି କର୍ମ
ଗୁରୁ କାମିନୀଙ୍କ ଗୋଚରେ
ଦୂରେ ବର୍ଜିବ ଅତି ଦୂରେ । ୮
ଯୁବତିଜନ ଅଗ୍ନି ସ୍ୱରୂପ
ପୁରୁଷ ଦେହ ଘିଅ କୁମ୍ଭ

ଏଣୁ ଯୁବତୀ ଦୂର କରି
ଧର୍ମ ସାଧନ ବ୍ରହ୍ମଚାରୀ । ୯
ଜୀବ ଈଶ୍ୱର ଭେଦଜ୍ଞାନ
ଯାବତ ନ ଛାଡ଼ଇ ମନ
ତାବତ ଥା : ଦ୍ୱୈତଭ୍ରମ
ଏ ସ୍ତ୍ରିରୀ ଏ ପୁରୁଷ ଜ୍ଞାନ
ଏଣୁ ତା ଭୋଗ ହୋଏ ମତି
ତେଣୁ ଛାଡ଼ିବ ସ୍ତ୍ରୀ ସଙ୍ଗତି । ୧୦

ଏ ସର୍ବ ବ୍ରହ୍ମଚାରି-ମତ
ପାଳିବ ଯତି ଯେ ଗୃହସ୍ଥ
ସ୍ତ୍ରିରୀ ଗମନ ଋତୁ କାଳେ
ଉଚିତ ଗୃହସ୍ଥାଶ୍ରମରେ । ୧୧

ଅଞ୍ଜନାଭ୍ୟଞ୍ଜନୋନ୍ମର୍ଦ୍ଦସ୍ତ୍ର୍ୟବଲେଖାମିଷଂ ମଧୁ ।
ସ୍ରଗ୍‌ବନ୍ଧଲେପାଲଙ୍କାରାଂସ୍ତ୍ୟଜେୟୁର୍ଯେ ଧୃତବ୍ରତାଃ । ୧୨ ।
ଉଷିତ୍ୱୈବଂ ଗୁରୁକୁଲେ ଦ୍ୱିଜୋଽଧୀତ୍ୟାବବୁଧ୍ୟ ଚ ।
ତ୍ରୟୀଂ ସାଙ୍ଗୋପନିଷଦଂ ଯାବଦର୍ଥଂ ଯଥାବଳମ୍ । ୧୩ ।
ଦତ୍ତ୍ୱା ବରମନୁଜ୍ଞାତୋ ଗୁରୋଃ କାମଂ ଯଦୀଶ୍ୱରଃ ।
ଗୃହଂ ବନଂ ବା ପ୍ରବିଶେତ୍ ପ୍ରବ୍ରଜେତ୍ ତତ୍ର ବା ବସେତ୍ । ୧୪ ।
ଅଗ୍ନୌ ଗୁରାବାତ୍ମନି ଚ ସର୍ବଭୂତେଷ୍ୱଧୋକ୍ଷଜମ୍ ।
ଭୂତୈଃ ସ୍ୱଧାମଭିଃ ପଶ୍ୟେଦପ୍ରବିଷ୍ଟଂ ପ୍ରବିଷ୍ଟବତ୍ । ୧୫ ।
ଏବଂବିଧୋ ବ୍ରହ୍ମଚାରୀ ବାନପ୍ରସ୍ଥୋ ଯତିର୍ଗୃହୀ ।
ଚରନ୍ ବିଦିତବିଜ୍ଞାନଃ ପରଂ ବ୍ରହ୍ମାଧିଗଚ୍ଛତି । ୧୬ ।

---

ବ୍ରହ୍ମଚାରୀ ଅଞ୍ଜନ, ତୈଳ ଗ୍ରହଣ, ଗାତ୍ର ମର୍ଦ୍ଦନ, ସ୍ତ୍ରୀ ଚିତ୍ର କର୍ମ, ଆମିଷ ଗ୍ରହଣ, ମଧୁ, ମାଲ୍ୟ, ଅନୁଲେପନ, ବେଶଭୂଷା ପରିତ୍ୟାଗ କରିବେ । ୧୨ ।

ବ୍ରାହ୍ମଣ, କ୍ଷତ୍ରିୟ ବୈଶ୍ୟବର୍ଣ୍ଣର ବ୍ରହ୍ମଚାରୀ ପୂର୍ବୋକ୍ତ ବିଧି ଅନୁସାରେ ଗୁରୁକୁଳରେ ବାସ କରି ଅଧିକାର ଓ ଶକ୍ତି ଅନୁସାରେ ଶିକ୍ଷାଦି ଅଙ୍ଗ ଓ ଉପନିଷଦ ସହିତ ବେଦତ୍ରୟ ଅଧ୍ୟୟନ ଓ ତାହା ବିଚାର କରିବାକୁ ସମର୍ଥ ହେଲେ ଗୁରୁଙ୍କୁ ଅଭିଳଷିତ ଦକ୍ଷିଣା ପ୍ରଦାନ କରି ଗୁରୁଙ୍କ ଅନୁମତି ନେଇ ଅଧିକାର ଅନୁସାରେ ଗୃହରେ ବାସ କରିବେ ବା ବାନପ୍ରସ୍ଥ ଅବଲମ୍ବନ କରିବେ କିମ୍ବା ସନ୍ନ୍ୟାସୀ ହେବେ ଅଥବା ଗୁରୁ ଗୃହରେ ନୈଷ୍ଠିକ ବ୍ରହ୍ମଚାରୀ ହୋଇ ଅବସ୍ଥାନ କରିବେ । ୧୩,୧୪ ।

ସର୍ବବିଧ ଆଶ୍ରମୀ ବ୍ୟକ୍ତି ଅଗ୍ନି, ଗୁରୁ, ଆତ୍ମା ଏବଂ ସର୍ବ ଭୂତରେ ଅପ୍ରବିଷ୍ଟ ବିଷ୍ଣୁଙ୍କୁ ଆଶ୍ରୟ କରି ଜୀବାତ୍ମା ସହିତ ପ୍ରବିଷ୍ଟ ହେଲପରି ଆଶ୍ରମୀ ହେବ । ୧୫ ।

ବ୍ରହ୍ମଚାରୀ, ବାନପ୍ରସ୍ଥାଶ୍ରମୀ, ସନ୍ନ୍ୟାସୀ ଓ ଗୃହୀ ହୋଇ ପୂର୍ବୋକ୍ତ ଧର୍ମ ଆଚରଣ କରି ପରଂବ୍ରହ୍ମଙ୍କୁ ପ୍ରାପ୍ତ ହେବାକୁ ହୁଏ । ୧୬ ।

---

ଅଞ୍ଜନ ତଇଳ ମର୍ଦ୍ଦନ
ସ୍ତ୍ରୀ ସଙ୍ଗ ବା ସ୍ତ୍ରୀମୂର୍ତ୍ତି ଦର୍ଶନ
ଭୂଷା ଲେପନ ମାଲ୍ୟ ଗନ୍ଧ
ଛେଡ଼ିବ ବ୍ରହ୍ମଚାରୀ ମଧ୍ୟ । ୧୨
ଏମନ୍ତେ ବସି ଗୁରୁ ଘରେ
ବେଦ ଅଭ୍ୟାସି କାରନ୍ତରେ
ଅଙ୍ଗ ଉପାଙ୍ଗେ ବେଦ ପଢ଼ି
ଗୁରୁ ସମ୍ମତେ କର ଯୋଡ଼ି

ଆଜ୍ଞା ମାଗିବ ଅନୁରାଗେ
ଗୁରୁ ଯା ମୁଖେ ଆଜ୍ଞା ଦେବେ
ଗୁରୁ-ବଚନ ଶିରେ ଧରି
ତେବେ ବର୍ତ୍ତିବ ଗୃହ କରି
ଅଥବା ବନରେ ପଶିବ
ସନ୍ନ୍ୟାସମତେ ବା ବର୍ତ୍ତିବ । ୧୩,୧୪
ଗୁରୁ ଅନଳ ସର୍ବଦେହେ
ତୁଲ୍ୟ ଦେଖିବ ବିଷ୍ଣୁ ମୟେ । ୧୫

ଏହି ପ୍ରକାରେ ସାଧି ଧର୍ମ
ଯେ ବା ଆଶ୍ରମେ ଯେବା କର୍ମ
ଯେବେ ସାଧନ୍ତି ଅପ୍ରମାଦେ
ଅନ୍ତେ ପଶନ୍ତି କୃଷ୍ଣ-ପାଦେ । ୧୬

ବାନପ୍ରସ୍ଥସ୍ୟ ବକ୍ଷ୍ୟାମି ନିୟମାନ୍ ମୁନିସମ୍ମତାନ୍ ।
ଯାନାସ୍ଥାୟ ମୁନିର୍ଗଚ୍ଛେଦୃଷିଲୋକମୁହାଞ୍ଜସା । ୧୭ ।
ନ କୃଷ୍ଟପଚ୍ୟମଶ୍ନୀୟାଦକୃଷ୍ଟଞ୍ଚାପ୍ୟକାଲତଃ ।
ଅଗ୍ନିପକ୍ୱମଥାମଂ ବା ଅର୍କପକ୍ୱମୁତାହରେତ୍ । ୧୮ ।
ବନ୍ୟୈଶ୍ଚରୁପୁରୋଡାଶାନ୍ ନିର୍ବପେତ୍ କାଲଚୋଦିତାନ୍ ।
ଲବ୍ଧେ ନବେ ନବେଽନ୍ନାଦ୍ୟେ ପୁରାଣଞ୍ଚ ପରିତ୍ୟଜେତ୍ । ୧୯ ।
ଅଗ୍ନ୍ୟର୍ଥମେବ ଶରଣମୁଟଜଂ ବାଦ୍ରିକନ୍ଦରମ୍ ।
ଶ୍ରୟେତ ହିମବାୟ୍ୱଗ୍ନିବର୍ଷାର୍କାତପଷାଟ୍ ସ୍ୱୟମ୍ । ୨୦ ।
କେଶରୋମନଖଶ୍ମଶ୍ରୁମଲାନି ଜଟିଲୋ ଦଧତ୍ ।
କମଣ୍ଡଲ୍ୱଜିନେ ଦଣ୍ଡବଲ୍କଲାଗ୍ନି ପରିଚ୍ଛଦାନ୍ । ୨୧ ।
ଚରେଦ୍‌ବନେ ଦ୍ୱାଦଶାବ୍ଦାନଷ୍ଟୌ ବା ଚତୁରୋ ମୁନିଃ ।
ଦ୍ୱାବେକଂ ବା ଯଥା ବୁଦ୍ଧିର୍ନବିପଦ୍ୟେତ କୃଚ୍ଛ୍ରତଃ । ୨୨ ।

ବାନପ୍ରସ୍ଥାଶ୍ରମ—ବାନପ୍ରସ୍ଥାଶ୍ରମର ମୁନିଜନ ଅନୁମୋଦିତ ନିୟମମାନ କହୁଅଛି, ଯେଉଁ ନିୟମ ପାଳନ କଲେ ବାନପ୍ରସ୍ଥ ମାନେ ନିଶ୍ଚୟ ଶୀଘ୍ର ମହୋର୍ଲୋକକୁ ଗମନ କରନ୍ତି ।୧୭।

କର୍ଷଣୋତ୍ପନ୍ନ ଅନ୍ନାଦି ଅକାଳ ପକ୍ୱ କର୍ଷଣ ଭିନ୍ନ ସ୍ୱୟଂ ଉତ୍ପନ୍ନ ଅନ୍ନାଦି ବା ଫଳାଦି, ଅଗ୍ନିପକ୍ୱ ବା ଅପକ୍ୱ ବସ୍ତୁ ଭକ୍ଷଣ କରିବ ନାହିଁ । ସୂର୍ଯ୍ୟପକ୍ୱ ଅର୍ଥାତ୍ ଯଥା ସମୟରେ ପକ୍ୱ ଫଳାଦି ଭକ୍ଷଣ କରିବେ । ବାନପ୍ରସ୍ଥ ନିତ୍ୟାନୁଷ୍ଠେୟ ହୋମାଦି ନିମିତ୍ତ ନିବାର ଧାନ୍ୟ ଦ୍ୱାରା ଚରୁ, ପୋରୋଡାଶ ଇତ୍ୟାଦି ସମ୍ପାଦନ କରିବ । ନୂତନ ଅନ୍ନାଦି ପ୍ରାପ୍ତ ହେଲେ ପୂର୍ବ ସଞ୍ଚିତ ଅନ୍ନାଦି ପରିତ୍ୟାଗ କରିବ । ୧୯ ।

ହୋମାଗ୍ନି ରକ୍ଷା ନିମିତ୍ତ ପର୍ଣ୍ଣଶାଳା ଅଥବା ଗିରିଗୁହା ଆଶ୍ରୟକରିବ କିନ୍ତୁ ସ୍ୱୟଂ ଶୀତ, ବାୟୁ, ଅଗ୍ନି ବର୍ଷା, ଏବଂ ସୂର୍ଯ୍ୟତାପାଦି ସହ୍ୟ କରିବ । ୨୦ ।

ବାନପ୍ରସ୍ଥାଶ୍ରମୀ ନଖ, ଲୋମ, ଶ୍ମଶ୍ରୁ ଗାତ୍ର ମଳାଦି ଧାରଣରେ ଏବଂ ଦଣ୍ଡ କମଣ୍ଡଳୁ ଅଧୀନ ଅଗ୍ନି ଏବଂ ବିହିତ ପରିଚ୍ଛଦ ଧାରଣକରି ଦ୍ୱାଦଶ, ଅଷ୍ଟ, ଚାରି ବା ଦୁଇ ବା ଗୋଟିଏ ବର୍ଷରେ ବିଚରଣ କରିବେ ଯେପରି ତପୋକ୍ଳେଶ ହେତୁରୁ ତାଙ୍କ ବୁଦ୍ଧି ବିପର୍ଯ୍ୟୟ ନ ଘଟେ । ୨୧, ୨୨ ।

ଏବେ ହୋ ଶୁଣ ନରପତି
ଆଶ୍ରମ ବାନପ୍ରସ୍ଥ ଗତି
ବନସ୍ତେ ସାଧି ଧର୍ମ୍ମ ସୁଖେ
ଅନ୍ତେ ମିଳଇ ମୁନିଲୋକେ । ୧୭
ଭକ୍ଷଣ ଫଳ-ମୂଳ ଶାକ
ଅଗ୍ନିରେ ନ କରିବ ପାକ
ନବୀନ ଫଳ ମୂଳ ଲଭେ
ପୁରୁଣା ତେଜିବ ସ୍ୱଭାବେ
ବନ ସମ୍ଭବ ବସ୍ତୁ ଘେନି
କାଳେ ପୂଜିବ ଇଷ୍ଟଅଗ୍ନି ।୧୮,୧୯
ଅଗ୍ନି ରକ୍ଷଣ ଅର୍ଥେ ଘରେ
ଅଥବା ପର୍ବତ କନ୍ଦରେ
କେଶ ଲୋମ ଯେ ନଖ ଶ୍ମଶ୍ରୁ
ଜଟିଳ କଷାବସ୍ତ୍ର ପାଂଶୁ
ଦଣ୍ଡ କମଣ୍ଡଳ ଅଜିନ
ବୃକ୍ଷ ବକଳ ପରିଧାନ
ତ୍ରିସନ୍ଧ୍ୟା କରିବ ସ୍ନାହାନ
ବାଲୁକା ମଣ୍ଡଳେ ଶୟନ
ଏମନ୍ତେ ଦ୍ୱାଦଶ ବତ୍ସର
ବନେ ବଞ୍ଚିବ ବ୍ରତଧର
ଅଷ୍ଟ ବରଷ କିବା ଅର୍ଦ୍ଧେ
ଧର୍ମ୍ମ ସାଧିବ ଅପ୍ରମାଦେ
ବେନି ବରଷ କିବା ଏକ
ବଞ୍ଚିବ ଯେ ବୁଦ୍ଧି ବିବେକ ।୨୦,୨୨

ଯଦାକଳ୍ପଃ ସ୍ୱକ୍ରିୟାୟାଂ ବ୍ୟାଧିଭିର୍ଜରୟାଥବା ।
ଆନ୍ୱୀକ୍ଷିକ୍ୟାଂ ବା ବିଦ୍ୟାୟାଂ କୁର୍ଯ୍ୟାଦନଶନାଦିକମ୍ । ୨୩ ।
ଆତ୍ମନ୍ୟଗ୍ନୀନ୍ ସମାରୋପ୍ୟ ସଂନ୍ୟସ୍ୟାହଂମମାତ୍ମତାମ୍ ।
କାରଣେଷୁ ନ୍ୟସେତ୍ ସମ୍ୟକ୍ ସଂଘାତଂ ତୁ ଯଥାର୍ହତଃ । ୨୪ ।
ଖେ ଖାନି ବାୟୌ ନିଶ୍ୱାସାଂସ୍ତେଜସ୍ୟୂଷ୍ମାଣମାତ୍ମବାନ୍ ।
ଅପ୍ସ୍ୱସୃକ୍ ଶ୍ଳେଷ୍ମପୂୟାନି କ୍ଷିତୌ ଶେଷଂ ଯଥୋଦ୍ଭବମ୍ । ୨୫ ।
ବାଚମଗ୍ନୌ ସବକ୍ତବ୍ୟାମିନ୍ଦ୍ରେ ଶିଳ୍ପଂ କରାବପି ।
ପଦାନି ଗତ୍ୟା ବୟସି ରତ୍ୟୋପସ୍ଥଂ ପ୍ରଜାପତୌ । ୨୬ ।
ମୃତ୍ୟୌ ପାୟୁଂ ବିସର୍ଗଞ୍ଚ ଯଥାସ୍ଥାନଂ ବିନିର୍ଦ୍ଦିଶେତ୍ ।
ଦିକ୍ଷୁ ଶ୍ରୋତ୍ରଂ ସନାଦେନ ସ୍ପର୍ଶେନାଧ୍ୟାତ୍ମନି ତ୍ୱଚମ୍ । ୨୭ ।

ପୂର୍ବୋକ୍ତ ପ୍ରକାର ଆଚରଣ ଦ୍ୱାରା ଯେତେବେଳେ ରୋଗ ବାର୍ଦ୍ଧକ୍ୟ ଉପସ୍ଥିତ ଏବଂ ବାନପ୍ରସ୍ଥାଶ୍ରମୀ ଜ୍ଞାନାଭ୍ୟାସ କରିବାକୁ ଅସମର୍ଥ ହେବ ସେତେବେଳେ ଉପବାସାଦି ଅବଲମ୍ବନ କରିବେ । ୨୩ ।

ଆତ୍ମାରେ କର୍ମ ସମୂହ ଆରୋପ କରି ଅର୍ଥାତ୍ ଦେହ, ଇନ୍ଦ୍ରିୟାଦି କ୍ରିୟାନିରୋଧ କରି ମୁଁ ଓ ମୋର ଏହି ଭାବ ପରିତ୍ୟାଗ କରି ପଞ୍ଚଭୌତିକ ଦେହକୁ କ୍ଷିତ୍ୟାଦି ପଞ୍ଚଭୂତରେ ଯଥାଯଥ ଭାବରେ ବିଲୀନ କରିବ । ୨୪ ।

ଧୀମାନ୍ ବ୍ୟକ୍ତି ଦେହଛିଦ୍ର ସମୂହ ଆକାଶରେ, ନିଃଶ୍ୱାସମାନ ବାୟୁରେ ଶରୀରର ତେଜାଂଶ ଉଷ୍ଣାଦି ତେଜରେ, ରକ୍ତ ଶ୍ଳେଷ୍ମ ଓ ପୂଜାଦି ଜଳରେ ଅସ୍ଥିମାଂସାଦି କଠିନାଂଶ ପୃଥିବୀରେ ଏହିପରି ଭାବରେ ଶରୀରର ଯେଉଁ ଯେଉଁ ଅଂଶ ଯେଉଁ ଯେଉଁ ମହାଭୂତରୁ ଉତ୍ପନ୍ନ ସେହି ଅଂଶ ସେହି ସେହି ମହାଭୂତରେ ବିଲୀନ କରିବେ । ୨୫ ।

ବକ୍ତବ୍ୟ ବିଷୟ ସହିତ ବାକ୍ୟକୁ ଅଗ୍ନିରେ, ଶିଳ୍ପ କାର୍ଯ୍ୟ ସହିତ କର ଦ୍ୱୟକୁ ଇନ୍ଦ୍ରଙ୍କଠାରେ ଗତି ସହିତ ପଦଦ୍ୱୟକୁ ବିଷ୍ଣୁଙ୍କଠାରେ ରତି ସହିତ ଉପସ୍ଥକୁ ପ୍ରଜାପତିଙ୍କଠାରେ, ଅଧୋବାୟୁ ଓ ମଳମୂତ୍ର ତ୍ୟାଗକୁ ଯମଙ୍କଠାରେ, ଶବ୍ଦ ସହିତ ଶ୍ରବଣେନ୍ଦ୍ରିୟକୁ ଦିକ୍ ସମୂହରେ ସ୍ପର୍ଶ ସହିତ ତ୍ୱକ୍ ଇନ୍ଦ୍ରିୟକୁ ବାୟୁରେ ଏହିପରି ଯଥା ସ୍ଥାନରେ ଲୟ କରିବ । ୨୬,୨୭ ।

ଧର୍ମ ସାଧନେ ଅସମର୍ଥ
ଯେବେ ହୋଇବ ରୋଗଗ୍ରସ୍ତ
ଆଗମ ନିଗମ ପ୍ରମାଣେ
ସନ୍ନ୍ୟାସ କରିବ ତକ୍ଷଣେ
ସଂକଳ୍ପି ଅନଶନ ବ୍ରତ
ହରି ଚରଣେ ଦେଇ ଚିତ୍ତ
ଯେ ସୃଷ୍ଟି ଶରୀର ଧାରଣେ
ନ୍ୟାସିବ ପରମ କାରଣେ । ୨୩,୨୪

ଗଗନେ ନ୍ୟାସି ଇନ୍ଦ୍ରି ଗଣେ
ନିଶ୍ୱାସ ନ୍ୟାସି ସମୀରଣେ
ତେଜେ ତେଜକୁ ନ୍ୟାସ କରି
ଧାତୁ ସମୂହ ଜଳେ ଭରି
କ୍ଷିତି କାରଣେ ଶେଷ ନ୍ୟାସି
ଅନଳେ ପବନ ବିନାଶି
କର ଯୁଗଳ ଇନ୍ଦ୍ରେ ନ୍ୟାସି
ସୁଦୃଢ଼େ ସ୍ଥାପିବ ସନ୍ନ୍ୟାସୀ

ପଦର ଗତି ନାରାୟଣେ
ଉପସ୍ଥ ପ୍ରଜାପତି ଗଣେ
ଗୁହ୍ୟ ବିସର୍ଗ ମୃତ୍ୟୁ ଅଙ୍ଗେ
ଦିଗେ ସମର୍ପି ଶ୍ରୁତି ଯୁଗେ
ସ୍ପରଶ ଗୁଣ ତ୍ୱଚେ ନ୍ୟାସି
ରୂପକୁ ଚକ୍ଷୁ ବିକେ ଗ୍ରାସି
ରୂପେ ନିବେଶି ଦୃଷ୍ଟି ଗୁଣ
ଜିହ୍ୱାକୁ ରସେ ଗନ୍ଧେ ଘ୍ରାଣ

ରୂପାଣି ଚକ୍ଷୁଷା ରାଜନ୍ ଜ୍ୟୋତିଷ୍ୟଭିନିବେଶୟେତ୍ ।
ଅପ୍ସୁ ପ୍ରଚେତସା ଜିହ୍ୱାଂ ଘ୍ରେୟୈର୍ଘ୍ରାଣଂ କ୍ଷିତୌ ନ୍ୟସେତ୍ ।୨୮।
ମନୋ ମନୋରଥୈଶ୍ଚନ୍ଦ୍ରେ ବୁଦ୍ଧିଂ ବୋଧ୍ୟୈଃ କବୌ ପରେ ।
କର୍ମାଣ୍ୟଧ୍ୟାତ୍ମନା ରୁଦ୍ରେ ଯଦହଂମମତାକ୍ରିୟା ।
ସତ୍ତ୍ୱେନ ଚିତ୍ତଂ କ୍ଷେତ୍ରଜ୍ଞେ ଗୁଣୈର୍ବୈକାରିକଂ ପରେ ।୨୯।
ଅପ୍ସୁ କ୍ଷିତିମପୋ ଜ୍ୟୋତିଷ୍ୟଦୋ ବାୟୌ ନଭସ୍ୟମୁମ୍ ।
କୂଟସ୍ଥେ ତଚ୍ଚ ମହତି ତଦବ୍ୟକ୍ତେଽକ୍ଷରେ ଚ ତତ୍ ।୩୦।
ଇତ୍ୟକ୍ଷରତୟାତ୍ମାନଂ ଚିନ୍ମାତ୍ରମବଶେଷିତମ୍ ।
ଜ୍ଞାତ୍ୱାଦ୍ୱୟୋଽଥ ବିରମେଦ୍ଦଗ୍ଧଯୋନିରିବାନଳଃ ।୩୧।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ
ଯୁଧିଷ୍ଠିରନାରଦସମ୍ବାଦେ ଆଶ୍ରମଧର୍ମୋ ନାମ ଦ୍ୱାଦଶୋଽଧ୍ୟାୟଃ ।୧୨।

---

ହେ ରାଜନ୍ ! ଚକ୍ଷୁ ସହିତ ରୂପ ସମୂହକୁ ସୂର୍ଯ୍ୟରେ, ପ୍ରଚେତା ସହିତ ଜିହ୍ୱାକୁ ଜଳରେ ଏବଂ ଅଶ୍ୱିନୀକୁମାର ସହିତ ଘ୍ରାଣେନ୍ଦ୍ରିୟକୁ ଗନ୍ଧୋପଲକ୍ଷିତ ପୃଥିବୀରେ ଲୟ କରିବ । ୨୮ ।

ମନୋରଥ ସହିତ ମନକୁ ଚନ୍ଦ୍ରରେ ଏବଂ ଜ୍ଞେୟ ବିଷୟ ସହିତ ବୁଦ୍ଧିକୁ ବ୍ରହ୍ମାରେ ଲୟ କରିବ । ଯହିଁରୁ ଅହଙ୍କାର ଓ ମମତା ନିବନ୍ଧନ କ୍ରିୟା ଉତ୍ପନ୍ନ ହୁଏ ସେହି ରୁଦ୍ରକୁ ଅହଙ୍କାର ସହିତ କର୍ମ ସମୂହରେ ଲୟ କରିବ । ଏହିପରି ଚେତନା ସହିତ ଚିତ୍ତକୁ କ୍ଷେତ୍ରଜ୍ଞ ଏବଂ ସତ୍ତ୍ୱାଦି ଗୁଣତ୍ରୟ ସହିତ ଅନ୍ୟାନ୍ୟ ବୈକାରିକ ପଦାର୍ଥକୁ ବିକାର ଶୂନ୍ୟ ବ୍ରହ୍ମରେ ଲୟ କରିବ । ୨୯ ।

ଅନନ୍ତର କ୍ଷିତିକୁ ଜଳରେ, ଜଳକୁ ତେଜରେ, ତେଜକୁ ବାୟୁରେ, ବାୟୁକୁ ଆକାଶରେ, ଆକାଶକୁ ଅହଂ ତତ୍ତ୍ୱରେ, ଅହଂ ତତ୍ତ୍ୱକୁ ମହତ୍ତତ୍ତ୍ୱରେ, ମହତ୍ତତ୍ତ୍ୱକୁ ପ୍ରଧାନରେ ଏବଂ ପ୍ରଧାନକୁ ପରମାତ୍ମାରେ ଯଥାକ୍ରମେ ଲୟ କରିବ । ୩୦ ।

ଏହିପରି ସମସ୍ତ ଉପାଧି ଲୟହେଲେ ସାଧକ ଅବଶିଷ୍ଟ ଜୀବାତ୍ମାକୁ ଅବିକୃତ ଏବଂ ପରମାତ୍ମାରୁ ଅଭିନ୍ନ ଜାଣି ଅଗ୍ନି ଯେପରି ତଦାଶ୍ରୟ କାଷ୍ଠକୁ ଦଗ୍ଧ କରେ ଏବଂ ଅବଶେଷରେ ନିର୍ବାଣ ପ୍ରାପ୍ତ ହୁଏ ବାନପ୍ରସ୍ଥ ସେହିପରି ଅବସ୍ଥାନ କରିବେ । ୩୧ ।

---

ମନକୁ ଚନ୍ଦ୍ରରେ ସଂହର
ବୋଧକୁ ବୁଦ୍ଧି ମଧ୍ୟେ ଭର
ଅଶେଷ କର୍ମ୍ମ ରୁଦ୍ର ଦେହେ
କ୍ରିୟାକୁ କର୍ତ୍ତବ୍ୟ ସମୂହେ
ଚିତ୍ତକୁ ସତ୍ତ୍ୱଗୁଣେ ଭର
ଗୁଣେ ବିକାରକୁ ସଂହର ।୨୮-୨୯
କ୍ଷିତିକି ନ୍ୟାସ କର ଜଳେ
ଜଳକୁ ବିନାଶି ଅନଳେ

ଅନଳ ବିନାଶି ଅନିଳେ
ପବନ ଗଗନ ମଣ୍ଡଳେ
ଗଗନ ଅହଂକାରେ ଭର
ଅବ୍ୟକ୍ତେ ସମୂହ ସଂହାର
ମହତ ତତ୍ତ୍ୱ ଅହଂକାର
ମହତ ପ୍ରକୃତି ଗୋଚର
ସେ ଗୁଣମୟ ସର୍ବବ୍ୟାପୀ
କ୍ଷର ଅକ୍ଷର ବେନି ରୂପୀ

ଚିନ୍ମାତ୍ର ଅକ୍ଷର ବିଶେଷ
ଜୀବ ପରମ ପରଂହଂସ
ତହିଁ ପ୍ରବେଶ ଧ୍ୟାନମୟେ
କାଷ୍ଠ ଦହନେ ଅଗ୍ନି ପ୍ରାୟେ
ଏମନ୍ତେ ସୃଷ୍ଟିକି ସଂହର
ବିଷ୍ଣୁମାୟାରୁ ଯାଅ ତର ।୩୦,୩୧
ଏମନ୍ତେ ତରେ ବାନପ୍ରସ୍ଥ
କହଇ ବିପ୍ର ଜଗନ୍ନାଥ ।

**ଭାବାର୍ଥ—**

ପୂର୍ବାଧ୍ୟାୟରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରବର୍ଣ୍ଣ ଚତୁଷ୍ଟୟର ଧର୍ମ କଥିତ ହୋଇଅଛି । ଏହି ଅଧ୍ୟାୟରେ ବ୍ରହ୍ମଚର୍ଯ୍ୟ ଏବଂ ବାନପ୍ରସ୍ଥ, ପ୍ରସଙ୍ଗ କଥିତ ହେଲା । ବ୍ରହ୍ମଚାରୀ ଓ ବାନପଥାଶ୍ରମୀ ଯେଉଁ ବିଶେଷ ନିୟମମାନ ପାଳନ କରିବେ ତାହା ମଧ୍ୟ କଥିତ ହେଲା । ପରଂ ବ୍ରହ୍ମ ବା ପରମାତ୍ମା ପ୍ରାପ୍ତି ବା ଐଶ୍ବରିକ ଶକ୍ତି ଉପଲବ୍ଧି ମନୁଷ୍ୟ ଜୀବନର ଚରମଲକ୍ଷ । ସେହି ଲକ୍ଷ ସ୍ଥାନରେ ଉପସ୍ଥିତ ହେବା ନିମନ୍ତେ ବା ସେହି ଲୋକ ସାଧନ ନିମିତ୍ତ ସଂଯମ ଓ ବ୍ରହ୍ମଚର୍ଯ୍ୟାବଲମ୍ବନ ଏକାନ୍ତ ପ୍ରୟୋଜନ । ବାହ୍ୟ ଓ ଆଭ୍ୟନ୍ତରୀଣ ଇନ୍ଦ୍ରିୟଦମନ ଦ୍ୱାରା ଶାରୀରିକ ମାନସିକ ବଳ ସଞ୍ଚିତ ହୁଏ । ବଳହୀନ ପକ୍ଷରେ ଧର୍ମ ସାଧନ ଏବଂ ବ୍ରହ୍ମଲାଭ ଅସମ୍ଭବ । "ନାୟମାତ୍ମା ବଳହୀନେନ ଲଭ୍ୟ ।" ପ୍ରାଚୀନ ଭାରତର ସଂସ୍କୃତ ଓ ଶିକ୍ଷାର ଆଦର୍ଶ ମଧ୍ୟରେ ଏହି ବ୍ରହ୍ମଚର୍ଯ୍ୟ ଓ ସଂଯମ ପ୍ରଧାନ ପନ୍ଥା । ଏହି ଆଦର୍ଶ ମାର୍ଗରୁ ସ୍ଖଳିତ ହୋଇ ବର୍ତ୍ତମାନ ଭାରତର ନୈତିକ ଅବନତି ଘଟିଅଛି ।

---

## ତ୍ର ୟୋ ଦ ଶ ଅ ଧ୍ୟା ୟ ।

**ତ୍ରୟୋଦଶେ ଯତେର୍ଧର୍ମାଃ ସାଧକସ୍ୟୋଚ୍ୟତେ ମହାନ୍ ।**
**ଅବଧୂତେତିହାସେନ ସିଦ୍ଧାବସ୍ଥା ଚ ବର୍ଣ୍ଣ୍ୟତେ । ୦ ।** ( ଶ୍ରୀଧର ସ୍ୱାମୀ )

**ଶ୍ରୀନାରଦ ଉବାଚ ।**

**କଲ୍ପସ୍ତ୍ୱେବଂ ପରିବ୍ରଜ୍ୟ ଦେହମାତ୍ରାବଶେଷିତଃ ।**
**ଗ୍ରାମୈକରାତ୍ରବିଧିନା ନିରପେକ୍ଷଶ୍ଚରେନ୍ମହୀମ୍ । ୧ ।**

---

### ଯତିଧର୍ମ କଥନ ଓ ସିଦ୍ଧାବସ୍ଥାବର୍ଣ୍ଣନା

ତ୍ରୟୋଦଶ ଅଧ୍ୟାରେ ଯତି ଧର୍ମ ଓ ଅବଧୂତ ପ୍ରସଙ୍ଗ ଦ୍ୱାରା ସିଦ୍ଧାବସ୍ଥା ବର୍ଣ୍ଣନା କରାଯାଇଅଛି ।

**ଶ୍ରୀନାରଦ କହିଲେ—**

ଅସମର୍ଥ ହେଲେ ପୂର୍ବୋକ୍ତ ପ୍ରକାରେ ଧ୍ୟାନ କରି ସନ୍ନ୍ୟାସ ଗ୍ରହଣ କରିବେ ଏବଂ ସମସ୍ତ ପରିତ୍ୟାଗ କରି ଦେହମାତ୍ର ଅବଲମ୍ବନରେ ଆକାଙ୍କ୍ଷା ଶୂନ୍ୟ ହୋଇ ଗୋଟିଏ ଗୋଟିଏ ଗ୍ରାମରେ ଏକରାତ୍ରିରୁ ଅଧିକ କାଳ ବାସ ନ କରି ନିରପେକ୍ଷ ଭାବରେ ପୃଥିବୀ ପର୍ଯ୍ୟଟନ କରିବେ । ୧ ।

---

ଅବଧୂତର ଇତିହାସେ । ଯତିର ଧର୍ମ ତ୍ରୟୋଦଶେ ॥

**ଶ୍ରୀନାରଦ ଉବାଚ—**

ଏବେ କହିବା ଯତି ଧର୍ମ
ଯେବେ ଅବଧୂତ କର୍ମ

ମାୟା ସଂସାର ଦୂର କରି
ଭୁଲିବ ଦେହ ମାତ୍ର ଧରି

ଗ୍ରାମେ ବଞ୍ଚିବ ଏକ ଦିନ
ଦ୍ୱିଦିନ ନ ରହିବ ପୁଣ । ୧ ।

ବିଭୃୟାଦ୍‌ଯଦ୍ୟସୌ ବାସଃ କୌପୀନାଚ୍ଛାଦନଂ ପରମ୍ ।
ତ୍ୟକ୍ତଂ ନ ଲିଙ୍ଗାଦ୍ଦଣ୍ଡାଦେରନ୍ୟତ୍କିଞ୍ଚିଦନାପଦି । ୨ ।
ଏକ ଏବ ଚରେଦ୍ଭିକ୍ଷୁରାତ୍ମାରାମୋଽନପାଶ୍ରୟଃ ।
ସର୍ବଭୂତସୁହୃଚ୍ଛାନ୍ତୋ ନାରାୟଣପରାୟଣଃ । ୩ ।
ପଶ୍ୟେଦାତ୍ମନ୍ୟଦୋ ବିଶ୍ୱଂ ପରେ ସଦସତୋଽବ୍ୟୟେ ।
ଆତ୍ମାନଞ୍ଚ ପରଂବ୍ରହ୍ମ ସର୍ବତ୍ର ସଦସନ୍ମୟେ । ୪ ।
ସୁପ୍ତିପ୍ରବୋଧୟୋଃ ସନ୍ଧ୍ୟାବାତ୍ମନୋ ଗତିମାତ୍ମଦୃକ୍ ।
ପଶ୍ୟନ୍ ବନ୍ଧଞ୍ଚ ମୋକ୍ଷଞ୍ଚ ମାୟାମାତ୍ରଂ ନ ବସ୍ତୁତଃ । ୫ ।
ନାଭିନନ୍ଦେଦ୍ ଧ୍ରୁବଂ ମୃତ୍ୟୁମଧ୍ରୁବଂ ବାସ୍ୟ ଜୀବିତମ୍ ।
କାଲଂ ପରଂ ପ୍ରତୀକ୍ଷେତ ଭୂତାନାଂ ପ୍ରଭବାପ୍ୟୟମ୍ । ୬ ।

---

ସନ୍ନ୍ୟାସୀ ବସ୍ତ୍ର ପରିଧାନ କରିବାକୁ ଇଚ୍ଛା କଲେ କୌପୀନ ମାତ୍ର ଧାରଣ କରିବେ । ଆପତ୍‌କାଳ ଭିନ୍ନ ଅନ୍ୟ ସମୟରେ ଆଶ୍ରମ ଚିହ୍ନ ସ୍ୱରୂପ ଦଣ୍ଡାଦି ବ୍ୟତୀତ ଅନ୍ୟ କୌଣସି ପରିତ୍ୟକ୍ତ ବସ୍ତ୍ରାଦି ଧାରଣ କରିବେ ନାହିଁ । ୨ ।

ସନ୍ନ୍ୟାସୀ ପରମାତ୍ମା ଚିନ୍ତା ନିରତ, ଆଶ୍ରୟତ୍ୟାଗୀ, ଶାନ୍ତ, ସର୍ବଭୂତର ମଙ୍ଗଳ କାମୀ ଏବଂ ବିଷ୍ଣୁଭକ୍ତ ହୋଇ ଏକାକୀ ବିଚରଣ କରିବେ । ସେ କାର୍ଯ୍ୟ କାରଣ ଅତୀତ, ଅବ୍ୟୟ ଆତ୍ମାରେ ଏହି ବିଶ୍ୱକୁ ଏବଂ ଶରୀରରେ ସର୍ବତ୍ର ଆତ୍ମାକୁ ପରଂବ୍ରହ୍ମରୂପେ ଦର୍ଶନ କରିବେ । ୩-୪ ।

ସୁଷୁପ୍ତି ଏବଂ ଜାଗ୍ରତ ଏହି ଉଭୟ ଅବସ୍ଥା ମଧ୍ୟରେ ଆତ୍ମାର ଅବସ୍ଥା ଲକ୍ଷ୍ୟକରି ଆତ୍ମଦର୍ଶୀ ସନ୍ନ୍ୟାସୀ ବନ୍ଧନ ଓ ମୁକ୍ତି ମାୟାମାତ୍ର ଏହିପରି ଭାବରେ ଅବଲୋକନ କରିବେ । ୫ ।

ନିଶ୍ଚିତ ମୃତ୍ୟୁ ବା ଦେହର ଅନିଶ୍ଚିତ ଜୀବିତାବସ୍ଥା ଏହି ଉଭୟ ମଧ୍ୟରୁ କୌଣସିଟି ପ୍ରତି ଆଗ୍ରହ ପ୍ରକାଶ କରିବେ ନାହିଁ, ପରନ୍ତୁ ପ୍ରାଣିମାନଙ୍କର ଜନ୍ମ ମୃତ୍ୟୁର କାରଣ ସ୍ୱରୂପ କାଳକୁ ପ୍ରତୀକ୍ଷା କରି ରହିବେ । ୬ ।

---

ନିର୍ଜନେ ଦିଗମ୍ବର ବେଶେ
ଯେବେ ପଶିବ ବନଦେଶେ
କୌପୀନ କରିବ ବସନ
ଏକା ଭ୍ରମିବ ରାତ୍ର ଦିନ
କେବେହେଁ ନ କରିବ ସଙ୍ଗ
ଥିଲା ସଂସାରେ ଯାର ସଙ୍ଗ
ସର୍ବ ଭୂତରେ ଶାନ୍ତ ପଣ
ଶ୍ରୀ ନାରାୟଣ ପରାୟଣ । ୨, ୩ ।

ସତ ଅସତ ବିଶ୍ୱବେନି
ଭୂଲେ ଭାବିବ ଆତ୍ମା ଘେନି
ପରମବ୍ରହ୍ମ ଆତ୍ମା ସାର
ସର୍ବ ବ୍ୟାପିତ ନିରନ୍ତର । ୪ ।
ଜାଗ୍ରତ ସ୍ୱପ୍ନମଧ୍ୟେ ରହି
ଆତ୍ମାର ଗତି ଆତ୍ମେ ଧ୍ୟାୟି
ଆତ୍ମାର ବନ୍ଧ ମୋକ୍ଷ ବେନି
ଲକ୍ଷିବ ମାୟାମାତ୍ର ଘେନି

ବସ୍ତୁ ସ୍ୱଭାବ ନାହିଁ ତାର
ଏଣୁ ସର୍ବଦା ନିର୍ବିକାର । ୫ ।
ବସ୍ତୁର ନିତ୍ୟାନିତ୍ୟ ଭାବ
ଏଣୁ ଏ ଶରୀର ଅଧ୍ରୁବ
ବସ୍ତୁର ଉତ୍ପତ୍ତି ମରଣ
କାଳଟି ଏ ଭାବେ କାରଣ
ଏଣୁ ଶରୀର ଧର୍ମ୍ମ ଜାଣି
ଆତ୍ମାର ଗତି ସରମାଣି । ୬ ।

**ନାସଚ୍ଛାସ୍ତ୍ରେଷୁ ସଜ୍ଜେତ ନୋପଜୀବେତ ଜୀବିକାମ୍ ।**
**ବାଦବାଦାଂସ୍ତ୍ୟଜେତ୍ ତର୍କାନ୍ ପକ୍ଷଂ କଞ୍ଚ ନ ସଂଶ୍ରୟେତ୍ ।୭।**
**ନ ଶିଷ୍ୟାନନୁବଧ୍ନୀତ ଗ୍ରନ୍ଥାନ୍ ନୈବାଭ୍ୟସେଦ୍ ବହୂନ୍ ।**
**ନ ବ୍ୟାଖ୍ୟାମୁପଯୁଞ୍ଜୀତ ନାରମ୍ଭାନାରଭେତ୍ କ୍ୱଚିତ୍ ।୮।**
**ନ ଯତେରାଶ୍ରମଃ ପ୍ରାୟୋ ଧର୍ମହେତୁର୍ମହାତ୍ମନଃ ।**
**ଶାନ୍ତସ୍ୟ ସମଚିତ୍ତସ୍ୟ ବିଭୃୟାଦୁତ ବା ତ୍ୟଜେତ୍ ।୯।**
**ଅବ୍ୟକ୍ତଲିଙ୍ଗୋ ବ୍ୟକ୍ତାର୍ଥୋ ମନୀଷ୍ୟୁନ୍ମତ୍ତବାଲବତ୍ ।**
**କବିର୍ମୂକବଦାତ୍ମାନଂ ସ ଦୃଷ୍ଟ୍ୟା ଦର୍ଶୟେନ୍ନୃଣାମ୍ ।୧୦।**
**ଅତ୍ରାପ୍ୟୁଦାହରନ୍ତୀମମିତିହାସଂ ପୁରାତନମ୍ ।**
**ପ୍ରହ୍ଲାଦସ୍ୟ ଚ ସମ୍ବାଦଂ ମୁନେରାଜଗରସ୍ୟ ଚ ।୧୧।**

---

ସନ୍ନ୍ୟାସୀ ଅସତ୍ ଶାସ୍ତ୍ରରେ ଅର୍ଥାତ୍ ଆନାତ୍ମ ବିଷୟକ ଶାସ୍ତ୍ର ବା ନାସ୍ତିକ ଗ୍ରନ୍ଥରେ ଅନୁରକ୍ତ ହେବେ ନାହିଁ । ଜୀବିକା ନିର୍ବାହାର୍ଥ ଜ୍ୟୋତିର୍ବିଦ୍ୟାଦି ଅବଲମ୍ବନ କରିବେ ନାହିଁ । ଜଳ୍ପନା ବା ବିତଣ୍ଡାମୂକ ତର୍କଶାସ୍ତ୍ର ସମୂହ ପରିତ୍ୟାଗ କରିବେ ଏବଂ ନିର୍ବନ୍ଧ ସହକାରେ କୌଣସି ପକ୍ଷ ଅବଲମ୍ବନ କରିବେ ନାହିଁ ।୭

ପ୍ରଲୋଭନାଦି ଦ୍ୱାରା ଶିଷ୍ୟମାନଙ୍କୁ ପ୍ରଲୋଭିତ କରିବେ ନାହିଁ । ବହୁ ଗ୍ରନ୍ଥାଭ୍ୟାସ କରିବେ ନାହିଁ ବା ସ୍ୱଭାବରେ ଶାସ୍ତ୍ର ବ୍ୟାଖ୍ୟା କରିବେ ନାହିଁ ବା ମଠାଦି ନିର୍ମାଣ କରିବେ ନାହିଁ ।୮।

ଶାନ୍ତ, ଅବକୃତ ଚିତ୍ତ, ମହାତ୍ମା, ପରମହଂସଙ୍କର ଆଶ୍ରମ ପ୍ରାୟ ଧର୍ମାର୍ଥ ହୁଏ ନାହିଁ, ସୁତରାଂ ସେମାନେ ଜ୍ଞାନୋଦୟ ପରେ ନିଜ ନିଜର ଚିହ୍ନ ଓ ଯମ ନିୟମାଦି ରଖି ପାରନ୍ତି ବା ପ୍ରୟୋଜନ ଅନୁସାରେ ପରିତ୍ୟାଗ କରି ପାରନ୍ତି ।୯।

ଜ୍ଞାନଲାଭ ନ ହେବା ପର୍ଯ୍ୟନ୍ତ ଯୋଗଭ୍ରଂଶ ଭୟରେ ନିଜ ନିଜର ଚିହ୍ନ ଗୋପନ କରି ଆତ୍ମାନୁସନ୍ଧାନରେ ରତ ରହିବେ । ସ୍ୱୟଂ ଜ୍ଞାନବାନ୍ ହୋଇ ମଧ୍ୟ ଲୋକ ଦୃଷ୍ଟିରେ ନିଜକୁ ଉନ୍ମତ୍ତ ଓ ବାଳକ ତୁଲ୍ୟ ହେବେ ଏବଂ ବିଦ୍ୱାନ ହେଲେ ମଧ୍ୟ ମୂକ ତୁଲ୍ୟ ହେବେ ।୧୦।

ବୃଦ୍ଧମାନେ ଏହି ବିଷୟରେ ପ୍ରହ୍ଲାଦ ଏବଂ ଅଜଗର ବ୍ରତାବଲମ୍ବୀ ମୁନିଙ୍କର ପ୍ରାଚୀନ ଉପାଖ୍ୟାନ ଉଦାହରଣ ସ୍ୱରୂପ କହିଥାନ୍ତି ।୧୧।

---

ଅଶାସ୍ତ୍ରେ ନ କରିବ ରତି
ଜୀବିକା ଜ୍ୟୋତିଷ ପ୍ରଭୃତି
ଦୂରେ ତେଜିବ ତର୍କ ବାଦ
ଯେ ଶାସ୍ତ୍ରେ ପକ୍ଷପାତ ଭେଦ
ଅଭ୍ୟାସ ନ କରିବ ଗ୍ରନ୍ଥ
ଶିଷ୍ୟ ନ କରିବ ବହୁତ
ବ୍ୟାଖ୍ୟାନ ନିଜ ପ୍ରୟୋଜନେ
କେବେହେଁ ନ କରିବ ମନେ ।୭,୮

ମହାନ୍ତ ଯତିର ଆଶ୍ରମ
ହୋଏ ବା ନୋହେ ନିଜ ଧର୍ମ
ସୁଶାନ୍ତ ବୁଦ୍ଧି ସମ ଚିତ୍ତ
ହୋଇବ ଅର୍ଥରେ ବିରକ୍ତ
ଦୃଶ୍ୟ ଅଦୃଶ୍ୟ ଭବେ ଥିବ
ବାଇ ବାଳକ ଚେଷ୍ଟା ଭବ
ମୂକ ବଧିର ପ୍ରାୟେ ବେଶେ
ଭବେ ବର୍ତ୍ତିବ ଆତ୍ମବଶେ ।୯,୧୦।

ଶୁଣ ରାଜନ ସାବଧାନ
ଯେ ଇତିହାସ ପୁରାତନ
ପ୍ରହ୍ଲାଦ ସଙ୍ଗେ ମୁନିବର
ନାମ ଯାହାର ଆଜଗର
ଏ ବେନି ଜନଙ୍କ ସମ୍ବାଦ
ଶୁଣନ୍ତେ ନ ଲାଗେ ପ୍ରମାଦ ।୧୧।

ତଂ ଶୟାନଂ ଧରୋପସ୍ଥେ କାବେର୍ଯ୍ୟାଂ ସହ୍ୟସାନୁନି ।
ରଜସ୍ୱଲୈସ୍ତନୂଦେଶୈର୍ନିଗୂଢ଼ାମଲତେଜସମ୍ ।୧୨।
ଦଦର୍ଶ ଲୋକାନ୍ ବିଚରନ୍ ଲୋକତତ୍ତ୍ୱବିବିତ୍ସୟା ।
ବୃତୋଽମାତ୍ୟୈଃ କତିପୟୈଃ ପ୍ରହ୍ଲାଦୋ ଭଗବତ୍‌ପ୍ରିୟଃ ।୧୩।
କର୍ମଣାକୃତିଭିର୍ବାଚା ଲିଙ୍ଗୈର୍ବର୍ଣ୍ଣାଶ୍ରମାଦିଭିଃ ।
ନ ବିଦନ୍ତି ଜନା ଯଂ ବୈ ସୋଽସାବିତି ନ ବେତି ଚ ।୧୪।
ତଂ ନତ୍ୱାଭ୍ୟର୍ଚ୍ଚ୍ୟ ବିଧିବତ୍ ପାଦୟୋଃ ଶିରସା ସ୍ପୃଶନ୍ ।
ବିବିତ୍ସୁରିଦମପ୍ରାକ୍ଷୀନ୍ମହାଭାଗବତୋଽସୁରଃ ।୧୫।
ବିଭର୍ଷି କାୟଂ ପୀବାନଂ ସୋଦ୍ୟମୋ ଭୋଗବାନ୍ ଯଥା ।୧୬।
ବିତ୍ତଞ୍ଚୈବୋଦ୍ୟମବତାଂ ଭୋଗୋ ବିତ୍ତବତାମିହ ।
ଭୋଗିନାଂ ଖଲୁ ଦେହୋଽୟଂ ପୀବା ଭବତି ନାନ୍ୟଥା ।୧୭।

---

ଏକଦା ବିଷ୍ଣୁଭକ୍ତ ପ୍ରହ୍ଲାଦ ମନ୍ତ୍ରୀ ପରିବୃତ ହୋଇ ଲୋକତତ୍ତ୍ୱ ଜାଣିବା ନିମିତ୍ତ ଲୋକ ସମୂହରେ ଭ୍ରମଣ କରୁ କରୁ ଦିନେ କାବେରୀ ନଦୀ ତୀରବର୍ତ୍ତୀ ସହ୍ୟ ପର୍ବତର ସାନୁଦେଶରେ ଗୁପ୍ତତେଜା ଅଜଗର ବୃତ୍ତାବଲମ୍ବୀ ସନ୍ନ୍ୟାସୀଙ୍କୁ ଧୂଳି ଧୂସରିତ ହୋଇ ଭୂପୃଷ୍ଠରେ ଶୟାନ ଅବସ୍ଥାରେ ଥିବା ଦେଖିଲେ ।୧୨,୧୩

ଲୋକେ ଯାହାଙ୍କର କାର୍ଯ୍ୟ, ଆକୃତି, ବାକ୍ୟ ଏବଂ ବର୍ଣ୍ଣାଶ୍ରମୋଚିତ ଚିହ୍ନଦ୍ୱାରା ତାହାଙ୍କୁ ମୁନି କି ଅନ୍ୟ କେହି ବୋଲି ଜାଣି ପାରୁ ନ ଥିଲେ ।୧୪।

ମହାଭାଗବତ ପ୍ରହ୍ଲାଦ ସେହି ମୁନିଙ୍କୁ ପ୍ରଣାମ କରି ଜିଜ୍ଞାସୁ ହୋଇ ମସ୍ତକଦ୍ୱାରା ତାହାଙ୍କର ପଦଦ୍ୱୟ ସ୍ପର୍ଶକରି ତାହାଙ୍କୁ ପ୍ରଶ୍ନ କରିଥିଲେ ।୧୫।

ଆପଣ ଉଦ୍ୟମଶୀଳ ଭୋଗୀବ୍ୟକ୍ତି ତୁଲ୍ୟ ଦେହଧାରଣ କରିଅଛନ୍ତି, ଜଗତରେ ଉତ୍ସାହୀ ବ୍ୟକ୍ତିର ବିତ୍ତ, ବିତ୍ତବାନ୍ ବ୍ୟକ୍ତିର ଭୋଗ ଏବଂ ଭୋଗୀ ବ୍ୟକ୍ତିର ସ୍ଥୂଳଦେହ ଥାଏ । ଏଥିରେ ସନ୍ଦେହ ନାହିଁ ।୧୬,୧୭।

---

ସେ ପ୍ରହ୍ଲାଦ ଏକ ମନେ
ମୃଗୟା ଅର୍ଥେ ଗଲେ ବନେ.
ଭୃତ୍ୟ କେତେକ ଘେନି ସଙ୍ଗେ
ବନେ ବିହରେ କ୍ରୀଡ଼ାରଙ୍ଗେ
ଏମନ୍ତେ ସହ୍ୟଗିରି ତଟେ
କାବେରୀ ତଟେ ଭୂମି ପୃଷ୍ଠେ
ଶୟନ ଦେଖି ମୁନିବର
ଶରୀର ଧୂଳିରେ ଧୂସର
ସ୍ୱେଦ କର୍ଦମେ ସେ ଭୂଷିତ
ସମ୍ମୁଖେ ଦେଖି ବିପରୀତ
କର୍ମ ବଚନ ଲିଙ୍ଗ ବର୍ଣ୍ଣେ
ଲକ୍ଷି ନ ପାରେ ଅନୁମାନେ
କିବା ଆଶ୍ରମ ଲକ୍ଷି ନୋହେ
ସୁମନେ ବିଷ୍ଣୁର ସନ୍ଦେହେ
ତାହାଙ୍କୁ ଦେଖି ପ୍ରହ୍ଲାଦ
ଘେନେ ନମିଲା ବେନିପାଦ
ଲକ୍ଷଣ ଦେଖି ତାର ଗତି
ବୋଲେ ଅସୁର ନରପତି ।୧୨-୧୬

ପ୍ରହ୍ଲାଦ ଉବାଚ—

ଏ ସ୍ଥୂଳ ଶରୀର ତୁମ୍ଭର
ସ୍ୱଭାବେ ଦିଶଇ ସୁନ୍ଦର
ଭୋଗୀ ପୁରୁଷ ପ୍ରାୟେ ହୋଇ
ତୋ ଦେହ ଦେଖି ବିସ୍ମରଇ

ନ ତେ ଶୟାନସ୍ୟ ନିରୁଦ୍ୟମସ୍ୟ ବ୍ରହ୍ମନ୍ ନୁ ହ୍ୟର୍ଥୋ ଯତ ଏବ ଭୋଗଃ ।
ଅଭୋଗିନୋଽୟଂ ତବ ବିପ୍ର ଦେହଃ ପୀବା ଯତସ୍ତଦ୍ୱଦ ନଃ କ୍ଷମଂ ଚେତ୍ ।୧୮।

କବିଃ କଲ୍ପୋ ନିପୁଣଦୃକ୍ ଚିତ୍ରପ୍ରିୟକଥଃ ସମଃ ।
ଲୋକସ୍ୟ କୁର୍ବତଃ କର୍ମ ଶେଷେ ତଦ୍ୱୀକ୍ଷିତାପି ବା ।୧୯।

ଶ୍ରୀ ନାରଦ ଉବାଚ ।

ସ ଇତ୍ଥଂ ଦୈତ୍ୟପତିନା ପରିପୃଷ୍ଟୋ ମହାମୁନିଃ ।
ସ୍ମୟମାନସ୍ତମଭ୍ୟାହ ତଦ୍ୱାଗମୃତଯନ୍ତ୍ରିତଃ ।୨୦।

ଶ୍ରୀ ବ୍ରାହ୍ମଣ ଉବାଚ ।

ବେଦେଦମସୁରଶ୍ରେଷ୍ଠ ଭବାନ୍ ନନ୍ୱାର୍ଯ୍ୟସମ୍ମତଃ ।
ଈହୋପରମୟୋର୍ନୃଣାଂ ପଦାନ୍ୟଧ୍ୟାତ୍ମଚକ୍ଷୁଷା ।୨୧।

---

ହେ ବ୍ରହ୍ମନ୍ ! ଆପଣ ନିରୁଦ୍ୟମ ହୋଇ ଶୟନ କରିଥାନ୍ତି, ଆପଣଙ୍କର ଅର୍ଥ ନାହିଁ, ଏହା ସୁପ୍ରସିଦ୍ଧ ଅତଏବ ହେ ବିପ୍ର ! ଭୋଗରହିତ ଆପଣଙ୍କର ଏ ଦେହ କିପରି ସ୍ଥୂଳ ହେଲା ତହିଁର କାରଣ ବକ୍ତବ୍ୟ ହେଲେ ପ୍ରକାଶ କରନ୍ତୁ । ୧୮ ।

ଆପଣ ବିଦ୍ୱାନ୍, ଦକ୍ଷ, ଚତୁର, ଚିତ୍ରପ୍ରିୟଭାଷୀ ଓ ସମଦର୍ଶୀ । ଅନ୍ୟମାନେ କର୍ମ କରୁଅଛନ୍ତି ମାତ୍ର ଆପଣ ସମର୍ଥ ହୋଇ ମଧ୍ୟ ଶୟନ କରିଅଛନ୍ତି, ଦେଖି ମଧ୍ୟ ଦେଖୁ ନାହାନ୍ତି ଅଥବା କୌତୁକକରି ଦେଖୁ ଅଛନ୍ତି ମାତ୍ର । ଏହାର କାରଣ କଣ । ୧୯ ।

ଶ୍ରୀନାରଦ କହିଲେ—

ଦୈତ୍ୟପତି ପ୍ରହ୍ଲାଦ ଏହିପରି ପ୍ରଶ୍ନ କରନ୍ତେ ମହାମୁନି ବ୍ରାହ୍ମଣ ତାହାଙ୍କର ବାକ୍ୟାମୃତରେ ବଶୀଭୂତ ହୋଇ ମୃଦୁହାସ୍ୟ କରି କହିଲେ । ୨୦ ।

ଶ୍ରୀ ବ୍ରାହ୍ମଣ କହିଲେ—

ହେ ଅସୁର ଶ୍ରେଷ୍ଠ ! ଆପଣ ଜ୍ଞାନୀମାନଙ୍କର ସମ୍ମାନିତ । ମନୁଷ୍ୟମାନଙ୍କର ପ୍ରବୃତ୍ତି ଓ ନିବୃତ୍ତି ଫଳ ଆପଣ ଅନ୍ତର୍ଦୃଷ୍ଟି ଦ୍ୱାରା ଅବଗତ ଅଛନ୍ତି । ୨୧ ।

---

ବିତ୍ତ ଅର୍ଜ୍ଜନେ ଭୋଗୀଜନେ
ଭ୍ରମନ୍ତି ନଗର ବିପିନେ
ତେଣୁକରି ବଳେ ପୁଷ୍ଟ ଦେହ
ଏ ଅନୁମାନେ ମୁଁ ମଣଇ
ଉଦ୍ୟମ ନ କରୁ ତ ଧନେ
କିପାଁ ଶୋଇଛୁ ଶୋଇବନେ
କେମନ୍ତେ ପୁଷ୍ଟ ତୋ ଶରୀର
କହ ସଂଶୟ ଯାଉ ଦୂର
କହ ତୁ ନ କର ମଉନ
ମୁଁ ଯେବେ ଶୁଣିବି ଭଜନ
ଯେ ଦକ୍ଷ ପଣ୍ଡିତ ଚତୁର
ପବିତ୍ର ବାକ୍ୟ ପ୍ରିୟ କର
ତାଙ୍କ ପୂର୍ଚ୍ଛିଲେ ସର୍ବ କହେ
ମନେ ଅହଂକାର ନ ବହେ ।୧୭-୧୯
ଏମନ୍ତ ପ୍ରହ୍ଲାଦ ବାଣୀ
ସେ ଅବଧୂତ କର୍ଣ୍ଣେ ଶୁଣି
ତାହାର ଅମୃତ ବଚନ
ସୁଧା କି ଉଚ୍ଛୁଳେ ବଦନ ।୨୦।

ଶ୍ରୀଅବଧୂତ ଉବାଚ—

ତୁ ପ୍ରହ୍ଲାଦ ଦୈତ୍ୟଙ୍କ ସାର
ମୁଁ ଜାଣେ ମହିମା ତୋହର
ସଂଶୟ ନାହିଁ ତୋର ମନେ
ତୁ ଦେଖୁ ନିର୍ମଳ ଲୋଚନେ

ଯସ୍ୟ ନାରାୟଣୋ ଦେବୋ ଭଗବାନ୍ ହୃଦ୍‌ଗତଃ ସଦା ।
ଭକ୍ତ୍ୟା କେବଲୟାଽଜ୍ଞାନଂ ଧୁନୋତି ଧ୍ୱାନ୍ତମର୍କବତ୍ । ୨୨ ।
ତଥାପି ବ୍ରୂମହେ ପ୍ରଶ୍ନାଂସ୍ତବ ରାଜନ୍ ଯଥାଶ୍ରୁତମ୍ ।
ସମ୍ଭାଷଣୀୟୋ ହି ଭବାନାତ୍ମନଃ ଶୁଦ୍ଧିମିଚ୍ଛତା । ୨୩ ।
ତୃଷ୍ଣୟା ଭବବାହିନ୍ୟା ଯୋଗ୍ୟୈଃ କାମୈରପୂର୍ଯ୍ୟୟା ।
କର୍ମ୍ମାଣି କାର୍ଯ୍ୟମାଣୋଽହଂ ନାନାଯୋନିଷୁ ଯୋଜିତଃ । ୨୪ ।
ଯଦୃଚ୍ଛୟା ଲୋକମିମଂ ପ୍ରାପିତଃ କର୍ମ୍ମଭିର୍ଭ୍ରମନ୍ ।
ସ୍ୱର୍ଗାପବର୍ଗୟୋର୍ଦ୍ୱାରଂ ତିରଶ୍ଚାଂ ପୁନରସ୍ୟ ଚ । ୨୫ ।
ତତ୍ରାପି ଦାମ୍ପତୀନାଞ୍ଚ ସୁଖାୟାନ୍ୟାପନୁତ୍ତୟେ ।
କର୍ମ୍ମାଣି କୁର୍ବତାଂ ଦୃଷ୍ଟ୍ୱା ନିବୃତ୍ତୋଽସ୍ମି ବିପର୍ଯ୍ୟୟମ୍ । ୨୬ ।

---

ଆପଣଙ୍କର ଅଚଳା ଭକ୍ତି ହେତୁ ଭଗବାନ୍ ନାରାୟଣ ଆପଣଙ୍କର ହୃଦୟମଧ୍ୟରୁ ସୂର୍ଯ୍ୟ ଅନ୍ଧକାର ନାଶ କଲା ପରି ବିଶୁଦ୍ଧ ଭକ୍ତି ଦ୍ୱାରା ଆପଣଙ୍କର ଅଜ୍ଞାନ ଦୂର କରିଅଛନ୍ତି । ୨୨।

ତଥାପି ହେ ରାଜନ୍ ! ମୁଁ ମୋର ଜ୍ଞାନାନୁସାରେ ତୁମ୍ଭର ପ୍ରଶ୍ନମାନଙ୍କର ଉତ୍ତର ଦେଉଅଛି, କାରଣ ଯେଉଁ ବ୍ୟକ୍ତି ଆତ୍ମଶୁଦ୍ଧି କାମନା କରେ ତାହାର ତୁମ୍ଭ ସହିତ ଆଳାପ କରିବା ଉଚିତ । ୨୩ ।

ପୂର୍ବଜନ୍ମ ବିଧାୟିନୀ ଯଥୋଚିତ ବିଷୟ ଦ୍ୱାରା ଅତୃପ୍ତ ବିଷୟରେ ତୃଷ୍ଣାର ପୂର୍ବେ ମୁଁ ନାନାବିଧ କାର୍ଯ୍ୟ କରି ନାନାବିଧ ଯୋନିରେ ପ୍ରବେଶ କରିଥିଲି । ୨୪ ।

କର୍ମାନୁସାରେ ଯଦୃଚ୍ଛା କ୍ରମେ ଭ୍ରମଣ କରି ପୁନର୍ବାର ସ୍ୱର୍ଗ, ମୁକ୍ତି, ତିର୍ଯ୍ୟକ୍‌ଯୋନି ଓ ମନୁଷ୍ୟତ୍ୱ ଲାଭର ଦ୍ୱାର ସ୍ୱରୂପ ନରଲୋକ ପ୍ରାପ୍ତ ହୋଇଅଛି । ୨୫ ।

ଏହି ମନୁଷ୍ୟ ଦେହରେ ମଧ୍ୟ ଦୁଃଖ ନିବୃତ୍ତି ଓ ସୁଖଲାଭ ନିମିତ୍ତ କର୍ମରେ ପ୍ରବୃତ୍ତ ସ୍ତ୍ରୀ ପୁରୁଷ ଫଳର ବୈପରୀତ୍ୟ ଦେଖି କର୍ମରୁ ନିବୃତ୍ତ ହୋଇଅଛି । ୨୬ ।

---

ଯାର ହୃଦୟେ ନାରାୟଣ
ବସଇ ପୁରୁଷ ପୁରାଣ
ସେ ଭକ୍ତିବଳେ ତମ ଘୋର
ନାଶଇ ଯେସନେ ଦିବାକର ।୨୧,୨୨
ତୁମୋତେ ପଚାରିଲୁ ଯେବେ
ଶୁଣ କହିବା ତୋତେ ଏବେ
ଆତ୍ମାର ଶୁଦ୍ଧି ଯେ ଇଚ୍ଛନ୍ତି
ମହାନ୍ତ ପୁଚ୍ଛିଲେ କହନ୍ତି । ୨୩ ।
ଭବ ବାହନା ତୃଷ୍ଣା ନାମ
ତାର ପୂରଣେ କେହି କ୍ଷମ ?
ସେ ତୃଷ୍ଣାବଳେ ମୁଁ ଜଗତେ
ଭ୍ରମିଲି ଜନ୍ମ କୋଟି ଶତେ
ଅଶେଷ ଯୋନି ଭ୍ରମି ପ୍ରାୟ
ତେବେହେଁ ନ ପୂରିଲା ଆଶ
ଅର୍ଜ୍ଜିଲି କର୍ମ୍ମ-ଦୋଷେ ଭ୍ରମି
ଫୁଟି ହୁଅନ୍ତି ପଥଶ୍ରମୀ । ୨୪।
ଯେ ଶୁଭକର୍ମ୍ମ ମୋର ଥିଲା
ସେ ଫଳ ଏ ଜନ୍ମେ ଫଳିଲା
ସ୍ୱଭାବେ ସ୍ୱର୍ଗ ମୋକ୍ଷ ଦ୍ୱାର
ଦୁର୍ଲ୍ଲଭ ମନୁଷ୍ୟ ଶରୀର
ସ୍ୱଧର୍ମ୍ମ କଲେ ସ୍ୱର୍ଗ ବାସ,
ଅଧର୍ମ୍ମେ ନରକେ ପ୍ରବେଶ.
ଏ ଦେହ ଦ୍ୱାର ଯେ ଦେଖନ୍ତି
ନିଷ୍ଠାଇ ଯୋଗେ ଆତ୍ମା ଚିନ୍ତି
ଭଜନ୍ତି ଗୋବିନ୍ଦ ଚରଣେ
ତରନ୍ତି ଏ ଜନ୍ମ ମରଣେ ।୨୫।
ମୁଁ ଏ ସଂସାର ସୁଖ ଦେଖି
ବିଗୁରି ମନେ ହେଲି ଦୁଃଖୀ
ଦ୍ୱନ୍ଦ ମୈଥୁନ ସ୍ପୃହାବଶେ
ଇନ୍ଦ୍ରିୟ ସୁଖ ଭୋଗ ଅଂଶେ
ଅନେକ ନରକେ ବିଶ୍ରାମନ୍ତି
ଏ ଘେନି ମନେ କଲି ଭ୍ରାନ୍ତି
ଏଣୁ ମୁଁ ସ୍ପୃହ ଦ୍ୱନ୍ଦ ଏଡ଼ି
ତପ ସାଧଇ ଦୁଃଖେ ପଡ଼ି । ୨୬।

ସୁଖମସ୍ୟାତ୍ମନୋ ରୂପଂ ସର୍ବେହୋପରତସ୍ତନୁଃ ।
ମନଃସଂସ୍ପର୍ଶଜାନ୍ ଦୃଷ୍ଟ୍ୱା ଭୋଗାନ୍ ସ୍ୱପ୍ସ୍ୟାମି ସଂବିଶନ୍ । ୨୭ ।
ଇତ୍ୟେତଦାତ୍ମନ ଦସ୍ୱାର୍ଥଂ ସନ୍ତଂ ବିସ୍ମୃତ୍ୟ ବୈ ପୁମାନ୍ ।
ବିଚିତ୍ରାମସତି ଦ୍ୱୈତେ ଘୋରାମାପ୍ନୋତି ସଂସୃତିମ୍ । ୨୮ ।
ଜଳଂ ତଦୁଦ୍‌ଭବୈଶ୍ଛନ୍ନଂ ହିତ୍ୱାଜ୍ଞୋ ଜଳକାମ୍ୟୟା ।
ମୃଗତୃଷ୍ଣାମୁପାଧାବେତ୍ ତଥାନ୍ୟତ୍ରାର୍ଥଦୃକ୍ ସ୍ୱତଃ । ୨୯ ।
ଦେହାଦିଭିର୍ଦୈବତନ୍ତ୍ରୈରାତ୍ମନଃ ସୁଖମୀହତଃ ।
ଦୁଃଖାତ୍ୟୟଂ ଚାନୀଶସ୍ୟ କ୍ରିୟାମୋଘାଃ କୃତାଃ କୃତାଃ । ୩୦ ।

ସୁଖ ଏହି ଜୀବର ସ୍ୱରୂପ । ସର୍ବେନ୍ଦ୍ରିୟର ନିବୃତ୍ତି ହେଲେ ସେହି ସୁଖର ସ୍ୱରୂପ ସ୍ୱତଃ ପ୍ରକାଶିତ ହୁଏ । ଭୋଗ ସମୂହ ମନୋରଥରୁ ଉତ୍ପନ୍ନ ଅର୍ଥାତ୍ ନଶ୍ୱର ବୋଲି ଜାଣି ମୁଁ ଆତ୍ମସୁଖାନୁଭବ ପୂର୍ବକ ଶୟନ କରି ରହିଅଛି । ୨୭ ।

ମନୁଷ୍ୟ ନିଜ ମଧ୍ୟରେ ଏହି ପୁରୁଷାର୍ଥ ସୁଖାତ୍ମକ ଆତ୍ମା ସ୍ୱରୂପ ବିଦ୍ୟମାନ ଥିଲେ ମଧ୍ୟ ତାହା ବିସ୍ମୃତ ହୋଇ ଦ୍ୱୈତ ମିଥ୍ୟା ହେଲେ ମଧ୍ୟ ତହିଁରେ ଘୋର ବିଚିତ୍ର ସଂସାର ଗତି ପ୍ରାପ୍ତ ହୋଇଥାନ୍ତି । ୨୮ ।

ଯେପରି ଅଜ୍ଞ ବ୍ୟକ୍ତି ଶୈବାଳାଦି ଦ୍ୱାରା ଆଚ୍ଛନ୍ନ ଜଳକୁ ପରିତ୍ୟାଗ କରି ମୃଗତୃଷ୍ଣା ପଛରେ ଧାବମାନ ହୁଏ, ସେହିପରି ସୁଖାନ୍ୱେଷୀ ବ୍ୟକ୍ତି ଆତ୍ମା ସ୍ୱରୂପ ସୁଖକୁ ପରିତ୍ୟାଗ କରି ଅନ୍ୟତ୍ର ଧାବମାନ ହୁଏ । ୨୯

ଦୈବାଧୀନ ଦେହାଦି ଦ୍ୱାରା ଆତ୍ମସୁଖ ଏବଂ ଦୁଃଖନାଶ ନିମନ୍ତେ ପ୍ରବର୍ତ୍ତମାନ ଦୈବହୀନ ବ୍ୟକ୍ତିର ପୁନଃ ପୁନଃ ଅନୁଷ୍ଠିତ ସମସ୍ତ କର୍ମହିଁ ନିଷ୍ଫଳ ହୋଇଥାଏ । ୩୦ ।

ପ୍ରବୃତ୍ତି ମାର୍ଗେ ନର ଦୁଃଖୀ
ନିବୃତ୍ତି ମାର୍ଗେ ହୋନ୍ତି ସୁଖୀ
ଏବେ ମୁଁ କୃଷ୍ଣର ପ୍ରସାଦେ
ନିବୃତ୍ତି କର୍ମ ଯୋଗ ସାଧେ
ନିତ୍ୟେ ଭାବଇ ଆତ୍ମା ଭାବ
ମନ ଆନନ୍ଦେ ସୁଖ ଦୂର
ମନ ସଂକଳ୍ପ ଭୋଗ ତେଜ
ପ୍ରାରବ୍ଧ ଭୋଗ ବନେ ଭୁଞ୍ଜି
ଏଣୁ ଆତ୍ମାର ଅର୍ଥେ ମୁହିଁ
ସଂକଳ୍ପି ଏକାନ୍ତେ ଭ୍ରମଇ । ୨୭ ।
ଏବେ ହେ ପ୍ରହ୍ଲାଦ ଶୁଣ
ବିଷୟ ବଶେ ଯେତେ ଗୁଣ

ତାମସ ରଜଗୁଣ ତେଜେ
ବିବିଧ କାମ୍ୟ କର୍ମ ଭଜେ
ଆତ୍ମାର ହିତ ନ ସୁମରେ
ଅସାଧୁ ମାର୍ଗେ କର୍ମ କରେ
ପ୍ରାଣୀ ଭ୍ରମନ୍ତି କର୍ମ ପଥେ
ନାନା ଯାତନା ଯମ ଯତେ
ଘୋର ସଂସାରେ ପଶିରନ୍ତି
ଏ ଘେନ ମୋର ମନେ ଭ୍ରାନ୍ତି । ୨୮
ଦେଖ ଅଜ୍ଞାନ ମୋହଛନ୍ନେ
ସଂସାରେ ପଶିରନ୍ତି ଜନେ
ଯେ ଜଳ ତୃଣେ ଆଚ୍ଛାଦିତ
ତାହା ନ ଇଚ୍ଛଇ ତୃଷିତ

ମୃଗ-ତୃଷ୍ଣାକୁ ଜଳ ମଣେ
ଭବେ ଭ୍ରମଇ ଅକାରଣେ
ତାହାର ଶ୍ରମ ମାତ୍ର ସାର
ଯେ ଆତ୍ମା ନ କରେ ବିଚାର । ୨୯ ।
କର୍ମ ଆୟତ୍ତେ ଦେହେ ଥାଇ
ଆତ୍ମାର ସୁଖ ସେ ଇଚ୍ଛଇ
ସଂକଳ୍ପି କ୍ରିୟା କରେ ଯେତେ
ନିଷ୍ଫଳ ହୋଇ ଯାଏ ଅନ୍ତେ । ୩୦ ।

ଆଧ୍ୟାତ୍ମିକାଦିଭିର୍ଦୁଃଖୈରବିମୁକ୍ତସ୍ୟ କର୍ହିଚିତ୍ ।
ମର୍ତ୍ତ୍ୟସ୍ୟ କୃଚ୍ଛ୍ରୋପନତୈରର୍ଥୈଃ କାମୈଃ କ୍ରିୟେତ କିମ୍ ।୩୧।
ପଶ୍ୟାମି ଧନିନାଂ କ୍ଲେଶଂ ଲୁବ୍ଧାନାମଜିତାତ୍ମନାମ୍ ।
ଭୟାଦଲବ୍ଧନିଦ୍ରାଣାଂ ସର୍ବତୋଽଭିବିଶଙ୍କିନାମ୍ । ୩୨ ।
ରାଜତଶ୍ଚୌରତଃ ଶତ୍ରୋଃ ସ୍ୱଜନାତ୍ ପଶୁପକ୍ଷିତଃ ।
ଅର୍ଥିଭ୍ୟଃ କାଲତଃ ସ୍ୱସ୍ମାନ୍ନିତ୍ୟଂ ପ୍ରାଣାର୍ଥବଦ୍‌ଭୟମ୍ । ୩୩ ।
ଶୋକମୋହଭୟକ୍ରୋଧରାଗକ୍ଲୈବ୍ୟଶ୍ରମାଦୟଃ ।
ଯନ୍ମୂଳାଃ ସ୍ୟୁର୍ନୃଣାଂ ଜହ୍ୟାତ୍ ସ୍ପୃହାଂ ପ୍ରାଣାର୍ଥୟୋର୍ବୁଧଃ । ୩୪ ।
ମଧୁକାରମହାସର୍ପୌ ଲୋକେଽସ୍ମିନ୍ନୋ ଗୁରୂତ୍ତମୌ ।
ବୈରାଗ୍ୟଂ ପରିତୋଷଞ୍ଚ ପ୍ରାପ୍ତା ଯଚ୍ଛିକ୍ଷୟା ବୟମ୍ । ୩୫ ।

---

ଆଧ୍ୟାତ୍ମିକ, ଆଧିଦୈବିକ ଏବଂ ଆଧିଭୌତିକ ଏହି ତ୍ରିବିଧ ଦୁଃଖରୁ ଏକାନ୍ତ ଅବିମୁକ୍ତ ମରଣଧର୍ମୀ ମନୁଷ୍ୟ ମାନଙ୍କର କଷ୍ଟଲବ୍ଧ ଅର୍ଥ ବା କାମଦ୍ୱାରା କି ପ୍ରୟୋଜନ ସାଧିତ ହୁଏ । ୩୧ ।

ଅଜିତେନ୍ଦ୍ରିୟ, ଭୟବଶତଃ ଅନିଦ୍ର, ସର୍ବବିଷୟରେ ଶଙ୍କାଯୁକ୍ତ, ଲୋଭୀ ଧନୀ ମାନଙ୍କର କ୍ଲେଶ ମୁଁ ଦେଖି ପାରୁଅଛି । ୩୨ ।

ରାଜପୁରୁଷ, ଚୌର, ଆତ୍ମୀୟ, ପଶୁ ପକ୍ଷୀ, ଧନୀ ବ୍ୟକ୍ତି, କାଳଠାରୁ ଏବଂ ନିଜଠାରୁ ପ୍ରାଣିଗଣଙ୍କର ଓ ଅର୍ଥବାନ୍ ବ୍ୟକ୍ତିଗଣଙ୍କର ଭୟ ଚିରସ୍ଥାୟୀ ହୋଇଥାଏ । ୩୩ ।

ଯହିଁରୁ ମନୁଷ୍ୟମାନଙ୍କର ଶୋକ, ମୋହ, ଭୟ, କ୍ରୋଧ, ଆସକ୍ତି, କ୍ଲୀବତ୍ୱ, ଏବଂ ଶ୍ରମ ପ୍ରଭୃତି ଉତ୍ପନ୍ନ ହୋଇଥାଏ, ପଣ୍ଡିତ ବ୍ୟକ୍ତି ସେହି ପ୍ରାଣ ବିଷୟକ ଓ ଅର୍ଥ ବିଷୟକ ସ୍ପୃହା ପରିତ୍ୟାଗ କରିବେ ।୩୪।

ଏହି ଜଗତରେ ମଧୁ ମକ୍ଷିକା ଏବଂ ଅଜଗର ସର୍ପ ମୋର ଶ୍ରେଷ୍ଠ ଗୁରୁ । ସେମାନଙ୍କ ନିକଟରୁ ମୁଁ ବୈରାଗ୍ୟ ଓ ସନ୍ତୋଷ ଶିକ୍ଷା କରିଅଛି । ୩୫ ।

---

ଅଧ୍ୟାତ୍ମ ଆଦି ଦୁଃଖ ଯେତେ
ଆତ୍ମା ନିପାତ ଯାର ଅନ୍ତେ
ବିମୁକ୍ତ ନୋହେ ପ୍ରାଣୀ ଏଣେ
କି ପ୍ରୟୋଜନ ଅର୍ଥ କାମେ ? ।୩୧
ଲୋଭ ପ୍ରାଣିଙ୍କ ଦୁଷ୍ଟ ମନ
ବଳେ ବନ୍ଧନ କରେ ଧନ
ଧନି ଜନଙ୍କ ଦୁଃଖ ଦେଖି
ମୁଁ ଧନତୃଷ୍ଣାକୁ ଉପେକ୍ଷି
ଦେଖଇ ଧନୀଙ୍କର ଦୁଃଖ
ନିଦ୍ରା ଭୋଗଣେ ନାହିଁ ସୁଖ
ରାଜାର ଭୟ ନିତ୍ୟେ ଧନେ
ଚୌର ସୁଜନ ଶତ୍ରୁଜନେ
ଯେ ଆସେ ତାକୁ ଧନ ମାଗି
ତା ଦେଖି ନିତ୍ୟେ ଦୁଃଖଭୋଗୀ
ଅଶେଷ ଆପଦର ସ୍ଥାନ
ଏ ଧନମୂଳୁଁ ହୋଏ ଜନ୍ମ
ଯେ ଶୋକ ମୋହ ଲୋଭ କ୍ରୋଧ
ନିତ୍ୟେ ଉଦ୍‌ବେଗ ଯେ ପ୍ରମାଦ
ଯାହାର ମୂଳ ଏ ପ୍ରବନ୍ଧ
ଧନର ମୂଳେ ପ୍ରାଣ ଘାତ
ଏ ଘେନି ଯେ ପଣ୍ଡିତ ଜନେ
ଲୋଭ ତେଜନ୍ତି ଜାଣି ଧନେ
। ୩୨-୩୪ ।
ମଧୁ ମକ୍ଷିକା ଅଜଗର
ଏ ଜନ୍ମେ ଗୁରୁ ଏ ମୋହର
ଯେ ବଇରାଗ ପରିତୋଷ
ଏହାଙ୍କ ଠାରୁଁ ଉପଦେଶ
ବୈରାଗ୍ୟ ମୁଁ ସର୍ବ କାମରୁ
ଶିଖିଲି ମଧୁ ବ୍ରତ ଠାରୁ

ବିରାଗଃ ସର୍ବକାମେଭ୍ୟଃ ଶିକ୍ଷିତୋ ମେ ମଧୁବ୍ରତାତ୍ ।
କୃଚ୍ଛ୍ରାପ୍ତଂ ମଧୁବଦ୍ ବିତ୍ତଂ ହତ୍ୱାପ୍ୟନ୍ୟୋ ହରେତ୍ ପତିମ୍ । ୩୬ ।
ଅନୀହଃ ପରିତୁଷ୍ଟାତ୍ମା ଯଦୃଚ୍ଛୋପନତାଦହମ୍ ।
ନୋ ଚେଚ୍ଛୟେ ବହ୍ୱହାନି ମହାହିରିବ ସତ୍ତ୍ୱବାନ୍ । ୩୭ ।
କ୍ୱଚିଦଲ୍ପଂ କ୍ୱଚିଦ୍ଭୂରି ଭୁଞ୍ଜେଽନ୍ନଂ ସ୍ୱାଦ୍ୱସାଦୁ ବା-
କ୍ୱଚିଦ୍ଭୂରିଗୁଣୋପେତଂ ଗୁଣହୀନମୁତ କ୍ୱଚିତ୍ ।
ଶ୍ରଦ୍ଧୟୋପହୃତଂ କ୍ୱାପି କଦାଚିନ୍ମାନବର୍ଜିତମ୍—
ଭୁଞ୍ଜେ ଭୁକ୍ତ୍ୱାଥ କସ୍ମିଂଶ୍ଚିଦ୍ ଦିବାନକ୍ତଂ ଯଦୃଚ୍ଛୟା । ୩୮ ।
କ୍ଷୌମଂ ଦୁକୂଲମଜିନଂ ଚୀରଂ ବଲ୍କଲମେବ ବା ।
ବସେଽନ୍ୟଦପି ସମ୍ପ୍ରାପ୍ତଂ ଦିଷ୍ଟଭୁକ୍ ତୁଷ୍ଟଧୀରହମ୍ । ୩୯ ।

---

ମଧୁକରର କଷ୍ଟଲବ୍ଧ ମଧୁ ଯେପରି ଅନ୍ୟ ବ୍ୟକ୍ତି ଅପହରଣ କରି ନିଏ ସେହିପରି ଅନ୍ୟ ଲୋକ ଧନୀକୁ ହତ୍ୟାକରି ତାହାର କଷ୍ଟଲବ୍ଧ ଅର୍ଥ ଅପହରଣ କରିଥାଏ । ୩୬ ।

ମୁଁ ଅଜଗର ସର୍ପ ତୁଲ୍ୟ ନିଶ୍ଚେଷ୍ଟ ହୋଇ ଯଦୃଚ୍ଛାଲବ୍ଧ ବସ୍ତୁରେ ସନ୍ତୁଷ୍ଟ ଥାଏଁ । ଯଦି କିଛି ନ ମିଳେ ତଥାପି ଧୈର୍ଯ୍ୟଧରି ବହୁକାଳ ପର୍ଯ୍ୟନ୍ତ ଶୟନ କରିଥାଏ । କୌଣସି ପ୍ରକାର ଚେଷ୍ଟା କରେ ନାହିଁ ।୩୭

ମୁଁ କେତେବେଳେ ଅଳ୍ପ, କେତେବେଳେ ପ୍ରଚୁର, କେତେବେଳେ ବହୁ ଗୁଣଯୁକ୍ତ ସ୍ୱାଦୁ, କେତେବେଳେ ଗୁଣହୀନ ଅସ୍ୱାଦୁ, କେତେବେଳେ ଶ୍ରଦ୍ଧା ପ୍ରଦତ୍ତ, କେତେବେଳେ ଅବମାନନା ଦ୍ୱାରା ଲବ୍ଧ ଅନ୍ନ, କେତେବେଳେ ଦିବା ଭାଗରେ, କେତେବେଳେ ରାତ୍ରିରେ, କେତେବେଳେ ଭୋଜନ ଉତ୍ତାରେ ଯଦୃଚ୍ଛାକ୍ରମେ ଭୋଜନ କରିଥାଏ । ୩୮ ।

ମୁଁ ପ୍ରାରବ୍ଧ ଭୋଗୀ ଓ ସନ୍ତୁଷ୍ଟ ଚିତ୍ତ ହୋଇ କ୍ଷୋମ ବସ୍ତ୍ର, (ପାଟଲୁଗା) ମୃଗଚର୍ମ, ଛିନ୍ନବସ୍ତ୍ର, ବୃକ୍ଷ ବଲ୍କଳ କିମ୍ବା ଅନ୍ୟ ଯାହା କିଛି ପ୍ରାପ୍ତ ହୁଏ ତାହା ପରିଧାନ କରିଥାଏ । ୩୯ ।

---

ଅନେକ ଦୁଃଖେ ଯେ ଅର୍ଜନ
ତାକୁ ବିନାଶି ହରେ ଆନ
ଧନ ନ ଇଚ୍ଛ ତୋଷମନେ
ଭ୍ରମରି ଯଥା ଲଭି ଧନେ
ମହାସର୍ପର ପ୍ରାୟ ହୋଇ
ଭ୍ରମରି ଉପଦେଶ ଧ୍ୟାୟି
ତଥାପି ଗୋବିନ୍ଦ ପ୍ରସନ୍ନେ
ନିତ୍ୟ ଆନନ୍ଦ ମୋର ମନେ
ମୋ ଦେହେ ବଳ କାନ୍ତି ତୁଷ୍ଟି
ସୁଖ ବର୍ଦ୍ଧନେ ଦେହ ପୁଷ୍ଟି

ଏ ଭାବେ ବସେଁ ମୋର ଦେହୀ
ମୁଁ ଦୁଃଖ ସୁଖ ନ ଜାଣଇଁ ।୩୬-୩୭
ଅଳ୍ପ ଆହାର କାହିଁ ପାଇ
କାହିଁ ବା ସମ୍ପୂର୍ଣ୍ଣେ ଭୁଞ୍ଜଇ
ସ୍ୱାଦୁ ଅସ୍ୱାଦୁ ନ ମଣଇଁ
ଯେ ଦିନେ ଯେ ଅବା ମିଳଇ
ଗ୍ରାସକୁ ଅମୃତ ମଣଇ
ସୁମିଷ୍ଟ ମିଳେ ଅବା କାହିଁ
କାହିଁ ବା କଟୁ ତିକ୍ତ ଖାଇ
ମନ ସନ୍ତୋଷେ ତା ଭୁଞ୍ଜଇ

କାହିଁ ବା ଶ୍ରଦ୍ଧା ଉପହୃତ
କାହିଁ ବା ମାନ ବିବର୍ଜିତ
ଏମନ୍ତେ ରଖଇ ଜୀବନ
ନିଶ୍ଚିନ୍ତ ବନେ ମୋ ଶୟନ
ରାତ୍ରି-ଦିବସ ନ ଜାଣଇ
ଉଭୟ ଏକ ପ୍ରମାଣଇ । ୩୮ ।
ପାଟ ଅମ୍ବର କାହିଁ ପିନ୍ଧି
କାହିଁ ବୁଲଇ ଚର୍ମ୍ମ ବାନ୍ଧି
ଚୀରିଣି ବସ୍ତ୍ର କାହିଁ ମିଳେ
କାହିଁ ବା ବସିଇ ବକଳେ

କ୍ୱଚିଚ୍ଛୟେ ଧରୋପସ୍ଥେ ତୃଣପର୍ଣ୍ଣାଶ୍ମଭସ୍ମସୁ ।
କ୍ୱଚିତ୍ ପ୍ରାସାଦପର୍ଯ୍ୟଙ୍କେ କଶିପୌ ବା ପରେଚ୍ଛୟା । ୪୦ ।
କ୍ୱଚିତ୍ ସ୍ନାତୋଽନୁଲିପ୍ତାଙ୍ଗଃ ସୁବାସାଃ ସ୍ରଗ୍ୱ୍ୟଳଙ୍କୃତଃ ।
ରଥେଭାଶ୍ୱୈଶ୍ଚରେ କ୍ୱାପି ଦିଗ୍ୱାସା ଗ୍ରହବଦ୍ବିଭୋ । ୪୧ ।
ନାହଂ ନିନ୍ଦେ ନ ଚ ସ୍ତୌମି ସ୍ୱଭାବବିଷମଂ ଜନମ୍ ।
ଏତେଷାଂ ଶ୍ରେୟ ଆଶାସେ ଉତୈକାତ୍ମ୍ୟଂ ମହାତ୍ମନି ।୪୨।
ବିକଳ୍ପଂ ଜୁହୁୟାଚ୍ଚିତ୍ତୌ ତାଂ ମନସ୍ୟର୍ଥବିଭ୍ରମେ ।
ମନୋ ବୈକାରିକେ ହୁତ୍ୱା ତଂ ମାୟାୟାଂ ଜୁହୋତ୍ୟନୁ । ୪୩ ।

---

ମୁଁ କେତେବେଳେ ଭୂପୃଷ୍ଠରେ, କେତେବେଳେ ଅବା ତୃଣ, ପତ୍ର, ପ୍ରସ୍ତର ବା ଭସ୍ମ ଉପରେ କେତେବେଳେ ଅବା ଅନ୍ୟର ଅଭିପ୍ରାୟ ଅନୁସାରେ ଅଟ୍ଟାଳିକା ସ୍ଥିତ ପର୍ଯ୍ୟଙ୍କ ଉପରେ ଶୟନ କରିଥାଏ ।୪୦।

ମୁଁ କେତେବେଳେ ସ୍ନାତ, ଚନ୍ଦନ ଚର୍ଚ୍ଚିତ, ସୁନ୍ଦର ବସ୍ତ୍ର ପରିଧାନ କରେ ଏବଂ ମାଲ୍ୟ ଭୂଷିତ ହୋଇ ରଥ, ଗଜ ବା ଘୋଟକରେ ବିଚରଣ କରିଥାଏ, କେତେବେଳେ ଅବା ଉଲଗ୍ନ ଅବସ୍ଥାରେ ଗ୍ରହତୁଲ୍ୟ ପରିଭ୍ରମଣ କରିଥାଏ । ୪୧ ।

ମୁ ସ୍ୱଭାବତଃ ବିପରୀତ ବୁଦ୍ଧିଯୁକ୍ତ ବ୍ୟକ୍ତିକୁ ନିନ୍ଦା ବା ପ୍ରଶଂସା କରେ ନାହିଁ । ପରନ୍ତୁ ଏମାନଙ୍କର ମଙ୍ଗଳ ନାରାୟଣଙ୍କଠାରେ ଏକାନ୍ତ ଭାବରେ କାମନା କରେ । ୪୨ ।

ସତ୍ୟଦର୍ଶୀ, ସାଧକ, ବିକଳ୍ପାଙ୍କ ବୃତ୍ତିକୁ ଚିତ୍ତରେ ଏବଂ ଚିତ୍ତକୁ ମନରେ ଓ ମନକୁ ଅହଙ୍କାର ତତ୍ତ୍ୱରେ, ଅହଙ୍କାରକୁ ମହତ୍ ତତ୍ତ୍ୱରେ, ମାୟା ବା ପ୍ରକୃତିରେ, ମାୟାକୁ ଆତ୍ମାନୁଭୂତିରେ ବିଲୀନ କରିବେ ।

---

କର୍ମ୍ମ ଆଦରି ତୋଷମନେ
ବସଇ ଇଚ୍ଛାସୁଖ ସ୍ଥାନେ । ୩୯ ।
କାହିଁ ବା ଧରଣୀ ଶୟନ
କାହିଁ ପାଷାଣ ତୃଣପର୍ଣ୍ଣ
କାହିଁ ପ୍ରାସାଦ ମଧ୍ୟେ ଥାଇ
କାହିଁ ପଲ୍ୟଙ୍କେ ନିଦ୍ରା ଯାଇ
କାହିଁ ବା ତୁଳୀର ଉପରେ
କାହିଁ ଶ୍ମଶାନେ ବନ ଘୋରେ ।୪୦
କାହିଁ ବା ସ୍ନାନ ମୋ ଆନନ୍ଦେ
ସୁବାସ ତଇଳ ସୁଗନ୍ଧେ

କାହିଁ ଚନ୍ଦନ ଗନ୍ଧସାର
କାହିଁ ବା ନାନା ଅଳଙ୍କାର
ସୁବାସ ପୁଷ୍ପମାଳ କନ୍ଧେ
କାହିଁ ବା ଗଜ ଅଶ୍ୱ କନ୍ଧେ
କାହିଁ ବେଷ୍ଟିତ ପଟ୍ଟାମ୍ବର
କାହିଁ ବା ଭସ୍ମ ଦିଗମ୍ବର
ଥାଇ ନ ଥାଇ ଜ୍ଞାନ ଦେହ
ମୁହିଁ ଭ୍ରମଇଁ ଗ୍ରହ ପ୍ରାୟେ । ୪୧ ।
ହେ ପ୍ରହ୍ଲାଦ ଶୁଣ ଧୀରେ
ଆଉ କହିବା ତୋ ଛାମୁରେ

ବିଷୟ ଉଡ଼େ ପ୍ରାଣୀ ଥାନ୍ତି
ନିଜ ସ୍ୱଭାବ ପ୍ରକାଶନ୍ତି
କାହାକୁ ନିନ୍ଦା ସ୍ତୁତି ମୋର
କେବେହେଁ ନ କରି ବିସ୍ତର
ସର୍ବ ପ୍ରାଣିଙ୍କ ଶ୍ରେୟ ଚିନ୍ତି
ଏଣୁ ମୋ ମନେ ନାହିଁ ଭ୍ରାନ୍ତି
ଆନନ୍ଦେ ଗୋବିନ୍ଦ ଚରଣେ
ଚିତ୍ତ ଲିବେଶି ଅନୁକ୍ଷଣେ । ୪୨ ।
ଚିତ୍ତେ ବିକଳ୍ପ ହୋମ କରି
ବିକଳ୍ପ ମନ ମଧ୍ୟେ ଭରି

ଅସ୍ମାନ୍ ଭୁଙ୍କ୍ତେ ତାଂ ମାୟାଂ ଜୁହୁୟାତ୍ ସତ୍ୟଦୃଙ୍ ମୁନିଃ ।
ତତୋ ନିରୀହୋ ବିରମେତ୍ ସ୍ୱାନୁଭୂତ୍ୟାତ୍ମନି ସ୍ଥିତଃ । ୪୪ ।
ସ୍ୱାତ୍ମବୃତ୍ତଂ ମୟେତ୍ଥଂ ତେ ସୁଗୁପ୍ତମପି ବର୍ଣ୍ଣିତମ୍ ।
ବ୍ୟପେତଂ ଲୋକଶାସ୍ତ୍ରାଭ୍ୟାଂ ଭବାନ୍ ହି ଭଗବତ୍ପରଃ । ୪୫ ।

ଶ୍ରୀନାରଦ ଉବାଚ ।

ଧର୍ମ୍ମଂ ପାରମହଂସ୍ୟଂ ବୈ ମୁନେଃ ଶ୍ରୁତ୍ୱାସୁରେଶ୍ୱରଃ ।
ପୂଜୟିତ୍ୱା ତତଃ ପ୍ରୀତ ଆମନ୍ତ୍ର୍ୟ ପ୍ରୟଯୌ ଗୃହମ୍ । ୪୬ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ଯୁଧିଷ୍ଠିର ନାରଦ ସମ୍ବାଦେ ଯତିଧର୍ମୋ ନାମ ତ୍ରୟୋଦଶୋଽଧ୍ୟାୟଃ । ୧୩ ।

---

ଅନନ୍ତର ନିଃଶ୍ଚେଷ୍ଟ ହୋଇ ଆତ୍ମାନୁଭବ ଦ୍ୱାରା ପରମାତ୍ମାଙ୍କ ଠାରେ ଅବସ୍ଥାନ କରି ସର୍ବବିଧ ବ୍ୟାପାରରୁ ବିରତ ହେବେ । ୪୩,୪୪ ।

ଲୋକମତ ଏବଂ ଶାସ୍ତ୍ରମତ ଉଭୟ ଦ୍ୱାରା ହେୟ, ସ୍ୱକୀୟ ଚରିତ୍ର ସୁଗୁପ୍ତ ହେଲେ ମଧ୍ୟ ମୁଁ ତୁମ୍ଭ ନିକଟରେ ବର୍ଣ୍ଣନା କଲି, ଯେ ହେତୁ ତୁମ୍ଭେ ଭଗବତ୍ ଭକ୍ତ । ୪୫ ।

ଶ୍ରୀ ନାରଦ କହିଲେ—

ପ୍ରହ୍ଲାଦ ମୁନିଙ୍କ ନିକଟରୁ ପରମହଂସଗଣ କର୍ତ୍ତୃକ ଅନୁଷ୍ଠେୟ ଧର୍ମ ଶ୍ରବଣ କରି ପ୍ରୀତ ହୋଇଥିଲେ ଏବଂ ସେ ଅଭିବାଦନ ପୂର୍ବକ ମୁନିଙ୍କର ପୂଜାକରି ସ୍ୱଗୃହକୁ ପ୍ରସ୍ଥାନ କରିଥିଲେ । ୪୬ ।

---

ମନ ବିକାର ତତ୍ତ୍ୱେ ଥୋଇ
ଯେତେଣେ ମାୟାକୁ ଭୟ ନାହିଁ
ସେ ମାୟା ଆତ୍ମା ଅନୁଭୂତେ
ସତ୍ୟ ସଙ୍କଳ୍ପ ମୁନି ମତେ
ତେତେଣେ ଯେ ନିର୍ବିକାର ମନ
ନିର୍ଗୁଣ ବ୍ରହ୍ମେ କରି ଲୀନ । ୪୩,୪୪
ଏମନ୍ତେ ଆତ୍ମା ଅନୁଭୂତେ
କହିଲି ତୋହର ଅଗ୍ରତେ
ଯେ ଲୋକ ଶାସ୍ତ୍ର ମତ ଦୁଇ
ଏଣେ ବର୍ଜିତ ମୋର ଦେହି
ତୁ ଯେଣୁ ବିଷ୍ଣୁର ଭକତ
ତେଣୁ କହିଲି, ତୋ ଅଗ୍ରତ
ତୁ ପ୍ରହ୍ଲାଦ କୃଷ୍ଣଦାସ
ଏଣୁ ମୁଁ ତୋହରେ ବିଶ୍ୱାସ । ୪୫

ଶ୍ରୀନାରଦଉବାଚ—

ଏମନ୍ତ ମୁନି ମୁଖୁ ଶୁଣି
ପରମହଂସ ଧର୍ମ୍ମ ବାଣୀ
ସେ ପ୍ରହ୍ଲାଦ ଜ୍ଞାନୀ ଧୀର
ସ୍ୱଭାବେ ବିଷ୍ଣୁର କିଙ୍କର
ସେ ଦତ୍ତାତ୍ରେୟ ତତ୍ତ୍ୱବାଣୀ
ପ୍ରବାହ ସୁଧା ତରଙ୍ଗିଣୀ
ସେ ପ୍ରହ୍ଲାଦ ଶୁଣି କର୍ଣ୍ଣେ
ବନ୍ଦିଲା ବିବିଧ ସ୍ତବନେ
ଆନନ୍ଦେ ନମିଲା ଚରଣେ
ସ୍ୱପୁରେ ଗଲା ତତକ୍ଷଣେ । ୪୬ ।
ଶୁଣ ସୁଜନେ ଦୃଢ଼ ଚିତ୍ତେ
ହରି ଚରିତ ଭାଗବତେ
ପ୍ରହ୍ଲାଦ ଦତ୍ତାତ୍ରେୟ କଥା
ଶୁଣନ୍ତେ ଖଣ୍ଡେ ଭବ ବ୍ୟଥା
ଏଣେ ନିର୍ମ୍ମଳ କରି ଚିତ୍ତ
କହଇ ବିପ୍ର ଜଗନ୍ନାଥ ।



**ଉଣଦାଥ —**

ଏହି ଅଧ୍ୟାୟରେ ଯତିଧର୍ମ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ଦିନେ ପ୍ରହ୍ଲାଦ ଭ୍ରମଣ କରୁ କରୁ ଗୋଟିଏ ସନ୍ନ୍ୟାସୀଙ୍କୁ ଭେଟିଥିଲେ । ସେହି ସନ୍ନ୍ୟାସୀ ସ୍ଥୂଳ ଦେହରେ ଅବସ୍ଥାନ କରୁଥିବାର ଦେଖି ପ୍ରହ୍ଲାଦ ତାହାଙ୍କୁ ପ୍ରଶ୍ନ କରନ୍ତେ ସେ ନିଜର ବୃତ୍ତାନ୍ତ ଛଳରେ ଯତିଧର୍ମ ବ୍ୟାଖ୍ୟାନ କରିଥିଲେ । ସେହି ଯତି କିପରି ମଧୁମକ୍ଷିକା ଓ ଅଜଗର ଠାରୁ ଉତ୍କୃଷ୍ଟ ଶିକ୍ଷା ଲାଭ କରିଥିଲେ ତାହା ମଧ୍ୟ ପ୍ରହ୍ଲାଦଙ୍କ ନିକଟରେ ବର୍ଣ୍ଣନା କଲେ । ଯତି କହିଥିଲେ, "ମୁଁ ବିବିଧ କର୍ମରେ ପ୍ରବର୍ତ୍ତିତ ହୋଇ ଏହି ମନୁଷ୍ୟ ଦେହ ଲାଭ କରିଅଛି । ମନୁଷ୍ୟ ଜନ୍ମ ସ୍ୱର୍ଗ ନରକ ବା ମୁକ୍ତି ଲାଭର ଦ୍ୱାର ସ୍ୱରୂପ । ଏହି ଜନ୍ମରେ ଧର୍ମାଚରଣ କଲେ ମୁକ୍ତିଲାଭ ହୁଏ ଏବଂ ଅଧର୍ମାଚରଣ କଲେ କୁକୁର, ଶୂକରାଦି ଯୋନି ପ୍ରାପ୍ତ ହୁଏ । ମନୁଷ୍ୟ ଜନ୍ମ ଲାଭକରି ଧର୍ମ ଓ ଅଧର୍ମ ଉଭୟ ଆଚରଣ କଲେ ପୁନର୍ବାର ମନୁଷ୍ୟ ଜନ୍ମଲାଭ ହୋଇଥାଏ । ଏହି ମନୁଷ୍ୟଦେହ ଲାଭକରି ସ୍ତ୍ରୀ ଓ ପୁରୁଷ ସୁଖ ଦୁଃଖ ନିବୃତ୍ତି ନିମିତ୍ତ ବିବିଧ କର୍ମାନୁଷ୍ଠାନ କରିଥାନ୍ତି । କିନ୍ତୁ ଦୁଃଖହିଁ ଏହି କର୍ମର ଫଳ ସ୍ୱରୂପ ହୋଇଥାଏ । ବାସନାରୁ ଦୁଃଖ ଜାତ ହୁଏ, ବାସନାର ବିନାଶରେ ଦୁଃଖର ବିନାଶ ଘଟିଥାଏ, ଏହା ସର୍ବଶାସ୍ତ୍ରାନୁମୋଦିତ । ପ୍ରହ୍ଲାଦ ମୁନିଙ୍କଠାରୁ ଏହି ଉପଦେଶ ଲାଭ କରି ମୁନିଙ୍କୁ ଅଭିବାଦନ କରି ସ୍ୱଗୃହକୁ ଗମନ କରିଥିଲେ ।

---

## ଚତୁର୍ଦ୍ଦଶ ଅଧ୍ୟାୟ ।

**ଚତୁର୍ଦ୍ଦଶେ ଗୃହସ୍ଥସ୍ୟ ପରମୋ ଧର୍ମ୍ମ ଈର୍ଯ୍ୟତେ ।**
**ଦେଶକାଳାଦିଭେଦେନ ପୁନଃ ଶ୍ରେୟୋ ବିଶେଷକୃତ୍ । ୦ ।** (ଶ୍ରୀଧରସ୍ୱାମୀ)

**ଶ୍ରୀଯୁଧିଷ୍ଠିର ଉବାଚ ।**

**ଗୃହସ୍ଥ ଏତାଂ ପଦବୀଂ ବିଧିନା ଯେନ ଚାଞ୍ଜସା ।**
**ଯାୟାଦ୍ଦେବଋଷେ ବ୍ରୂହି ମାଦୃଶୋ ଗୃହମୂଢ଼ଧୀଃ । ୧ ।**

---

( ଗୃହସ୍ଥ ଧର୍ମ୍ମ )

ଚତୁର୍ଦ୍ଦଶ ଅଧ୍ୟାୟରେ ଦେଶ କାଳାଦି ଭେଦରେ ମଙ୍ଗଳମୟ ଗୃହସ୍ଥର ଧର୍ମ୍ମ ବର୍ଣ୍ଣିତ ହୋଇଅଛି ।

ଶ୍ରୀଯୁଧିଷ୍ଠିର କହିଲେ —

ହେ ଦେବର୍ଷେ ! ମୋ ପରି ଗୃହାସକ୍ତ ବ୍ୟକ୍ତି ଯେଉଁ ନିୟମ ପାଳନ କରି ଅନାୟାସରେ ମୁକ୍ତ ହୋଇପାରେ ତାହା କହନ୍ତୁ । ୧ ।

---

ଗୃହସ୍ଥ ଧର୍ମ୍ମର ବିଧାନ । ଚଉଦ ଅଧ୍ୟାୟରେ ବଖାଣ ॥

ଶ୍ରୀଯୁଧିଷ୍ଠିର ଉବାଚ—
ଶୁଣ ହେ ବ୍ରହ୍ମାର ନନ୍ଦନ
ବନସ୍ଥ ଅବଧୂତ ଧର୍ମ୍ମ
ଶୁଣିଲି ଶାସ୍ତ୍ରର ପ୍ରସ୍ତାବେ
ଗୃହସ୍ଥ ଧର୍ମ୍ମ କହ ଏବେ
ଯେ ବିଧି ଗୃହୀ ଆଚରଣେ
ଆଗମ ନିଗମ ପ୍ରମାଣେ । ୧ ।

ଶ୍ରୀନାରଦ ଉବାଚ ।
ଗୃହେଷ୍ୱବସ୍ଥିତୋ ରାଜନ୍ କ୍ରିୟାଃ କୁର୍ବନ୍ ଯଥୋଚିତାଃ ।
ବାସୁଦେବାର୍ପଣଂ ସାକ୍ଷାଦୁପାସୀତ ମହାମୁନୀନ୍ । ୨ ।
ଶୃଣ୍ୱନ୍ ଭଗବତୋଽଭୀକ୍ଷ୍ଣମବତାରକଥାମୃତମ୍ ।
ଶ୍ରଦ୍ଦଧାନୋ ଯଥାକାଲମୁପଶାନ୍ତଜନାବୃତଃ । ୩ ।
ସତ୍ସଙ୍ଗାଚ୍ଛନକୈଃ ସଙ୍ଗମାତ୍ମଜାୟାତ୍ମଜାଦିଷୁ ।
ବିମୁଞ୍ଚେନ୍ମୁଚ୍ୟମାନେଷୁ ସ୍ୱୟଂ ସ୍ୱପ୍ନବଦୁତ୍ଥିତଃ । ୪ ।
ଯାବଦର୍ଥମୁପାସୀନୋ ଦେହେ ଗେହେ ଚ ପଣ୍ଡିତଃ ।
ବିରକ୍ତୋ ରକ୍ତବତ୍ତତ୍ର ନୃଲୋକେ ନରତାଂ ନ୍ୟସେତ୍ । ୫ ।

ଶ୍ରୀନାରଦ କହିଲେ—

ହେ ରାଜନ୍ ! ଗୃହସ୍ଥ ବ୍ୟକ୍ତି ଗୃହରେ ଥାଇ ଯଥା ବିହିତ କ୍ରିୟାନୁଷ୍ଠାନ କରି ତାହା ନାରାୟଣଙ୍କ ଠାରେ ସମର୍ପଣ କରି ଉପାସନା କରିବେ । ୨ ।

ଗୃହସ୍ଥ ବ୍ୟକ୍ତି ଜିତେନ୍ଦ୍ରିୟ ବ୍ୟକ୍ତିମାନଙ୍କ ସଙ୍ଗରେ ଯଥାକାଳରେ ଭଗବାନଙ୍କର ଅବତାର ସମ୍ବନ୍ଧୀୟ କଥାମୃତ ପୁନଃପୁନଃ ଶ୍ରବଣ କରି ତହିଁରେ ଶ୍ରଦ୍ଧାବାନ୍ ହୋଇ ଯେପରି ସୁପ୍ତ ବ୍ୟକ୍ତି ପ୍ରବୃଦ୍ଧ ହୋଇ ସ୍ୱପ୍ନଦୃଷ୍ଟ ପୁତ୍ରାଦିଙ୍କ ସଙ୍ଗ ତ୍ୟାଗ କରିଥାଏ ସେହିପରି ସତ୍ ସଂସର୍ଗ ହେତୁ କ୍ରମେ କ୍ରମେ ସ୍ୱୀୟ ଦେହ, ପତ୍ନୀ ଓ ପୁତ୍ରାଦିଙ୍କ ଠାରୁ ଆସକ୍ତି ପରିତ୍ୟାଗ କରିବେ । ୩,୪ ।

ବୁଦ୍ଧିମାନ୍ ଗୃହସ୍ଥ ବ୍ୟକ୍ତି ପ୍ରୟୋଜନ ସିଦ୍ଧି ପର୍ଯ୍ୟନ୍ତ ଦେହ ଗେହାଦିରେ ଅନୁରକ୍ତ ହେବେ । ଅନ୍ତରରେ ଆସକ୍ତି ଶୂନ୍ୟ ଏବଂ ବାହାରେ ଆସକ୍ତିଭାବ ପ୍ରକଟନ କରି ଲୋକ ମଧ୍ୟରେ ନିଜ ମନୁଷ୍ୟତ୍ୱ ପ୍ରକାଶ କରିବେ । ୫ ।

ଏମନ୍ତେ ଧର୍ମ-ସୁତ ବାଣୀ
ଶୁଣି କହନ୍ତି ବ୍ରହ୍ମମୁନି

ଶ୍ରୀନାରଦ ଉବାଚ—

ଗୃହସ୍ଥ ରାଜନ ପ୍ରଭୃତେ
ଶୁଚି ନିର୍ମଳ ଶୁଦ୍ଧ ଚିତ୍ତେ
ହରି ଗୋବିନ୍ଦ କୃଷ୍ଣ ଶ୍ୟାମ
ସ୍ମରିବ ନାରାୟଣ ନାମ
ପୁରୁଷୋତ୍ତମ ଦାମୋଦର
ବିଶ୍ୱ ସମ୍ଭବ ବିଶ୍ୱମ୍ଭର
ଏ ଆଦି ପୁଣ୍ୟଶ୍ଳୋକ ଯେତେ
ନାମ ସଙ୍କୀର୍ତ୍ତନ ପ୍ରଭୃତେ
ଏମନ୍ତେ ନିତ୍ୟ ନିତ୍ୟ କରି
ଗୃହେ ଗୃହସ୍ଥ ଧର୍ମ କରି
ମହତ ଜନେ ଉପାସନ
କରିବ ନିତ୍ୟ କୃଷ୍ଣ ଧ୍ୟାନ । ୨ ।
କୃଷ୍ଣର ଅବତାର କଥା
ପୁରାଣ ଆଦି ଶାସ୍ତ୍ର ଗୀତା
ସଙ୍ଗ କରିଣ ସାଧୁ ସଙ୍ଗେ
ହୃଦ ବସିବ ଶୁଣି ନିତ୍ୟେ । ୩ ।
ସାଧୁଙ୍କ ସଙ୍ଗେ ଥୋଇ ମନ
ପୁତ୍ର କଳତ୍ର ଗୃହଜନ
ସ୍ୱପ୍ନ ପ୍ରସଙ୍ଗ ପ୍ରାୟେ ମଣି
ଛାଡ଼ିବ ଚିନ୍ତିବ ଚକ୍ରପାଣି । ୪ ।
ଯାବତ ପ୍ରୟୋଜନ ଅର୍ଥ
ଗୃହେ ସାଧିବ ନିତ୍ୟ ନିତ୍ୟ
ବିରକ୍ତ ଚିତ୍ତ ଅନ୍ତର୍ଗତେ
ଲୋକ ବେଭାର ଜନ ସାଥେ ।୫

**ଜ୍ଞାତୟଃ ପିତରୌ ପୁତ୍ରା ଭ୍ରାତରଃ ସୁହୃଦୋଽପରେ ।**
**ଯଦ୍‌ବଦନ୍ତି ଯଦିଚ୍ଛନ୍ତି ଚାନୁମୋଦେତ ନିର୍ମ୍ମମଃ । ୬ ।**
**ଦିବ୍ୟଂ ଭୌମଞ୍ଚାନ୍ତରୀକ୍ଷଂ ବିତ୍ତମଚ୍ୟୁତନିର୍ମିତମ୍ ।**
**ତତ୍‌ସର୍ବମୁପଯୁଞ୍ଜାନ ଏତତ୍‌କୁର୍ଯ୍ୟାତ୍‌ ସ୍ୱତୋ ବୁଧଃ । ୭ ।**
**ଯାବଦ୍‌ଭ୍ରିୟେତ ଜଠରଂ ତାବତ୍‌ ସ୍ୱତ୍ୱଂ ହି ଦେହିନାମ୍ ।**
**ଅଧିକଂ ଯୋଽଭିମନ୍ୟେତ ସ ସ୍ତେନୋ ଦଣ୍ଡମର୍ହତି । ୮ ।**
**ମୃଗୋଷ୍ଟ୍ରଖରମର୍କାଖୁ ସରୀସୃପ୍‌ଖଗମକ୍ଷିକାଃ ।**
**ଆତ୍ମନଃ ପୁତ୍ରବତ୍‌ ପଶ୍ୟେତ୍‌ ତୈରେଷାମନ୍ତରଂ କିୟତ୍‌ । ୯ ।**
**ତ୍ରିବର୍ଗଂ ନାତିକୃଚ୍ଛ୍ରେଣ ଭଜେତ ଗୃହମେଧ୍ୟପି ।**
**ଯଥାଦେଶଂ ଯଥାକାଳଂ ଯାବଦ୍ଦୈବୋପପାଦିତମ୍ ।୧୦।**

ଜ୍ଞାତିଗଣ, ମାତା, ପିତା, ପୁତ୍ରଗଣ ଓ ଅପର, ପର ସୁହୃତ୍‌ଗଣ ଯାହା କହିବେ କିମ୍ବା ଯେଉଁ କାର୍ଯ୍ୟ କରିବାକୁ ଇଚ୍ଛା କରିବେ ନିରହଙ୍କାର ହୋଇ ତାହା ପାଳନ କରିବେ । ୬ ।

ଜ୍ଞାନୀ ବ୍ୟକ୍ତି ବୃଷ୍ଟ୍ୟାଦିଯୁକ୍ତ ଧାନ୍ୟାଦି ବିବର ମଧ୍ୟରୁ ପ୍ରାପ୍ତ ହୋଇ ସ୍ୱଭାବତଃ ଭଗବଦ୍‌ଲଭ୍ୟ ସମସ୍ତ ଧନାଦି ଏ ସମସ୍ତ ଭୋଗକରି ପୂର୍ବୋକ୍ତ କର୍ମ କରିବେ । ୭ ।

ଯେଉଁ ପରିମିତ ଧନ ଦ୍ୱାରା ଉଦର ପୋଷଣ କରାଯାଇ ପାରେ ସେହି ପରିମିତ ଧନରେ ପ୍ରାଣୀମାନଙ୍କର ଅଧିକାର । ଯେଉଁ ବ୍ୟକ୍ତି ତହିଁରେ ଅଧିକ ଧନ ସଂଗ୍ରହ କରେ ସେ ତସ୍କର, ସୁତରାଂ ଦଣ୍ଡନୀୟ ।୮।

ମୃଗ, ଓଟ, ଗର୍ଦ୍ଦଭ, ବାନର, ମୂଷିକ, ସର୍ପାଦି ସରୀସୃପ, ପକ୍ଷୀ, ମକ୍ଷିକା ପତଙ୍ଗମାନଙ୍କୁ ନିଜର ପୁତ୍ରତୁଲ୍ୟ ମଣିବ । ପୁତ୍ରାଦିଙ୍କ ସହିତ ଏମାନଙ୍କର କି ପ୍ରଭେଦ । ୯ ।

ଗୃହସ୍ଥ ଅତ୍ୟନ୍ତ କ୍ଲେଶ ସ୍ୱୀକାର କରି ଧର୍ମ, ଅର୍ଥ କାମ ଏହି ତ୍ରିବର୍ଗ ଅର୍ଜ୍ଜନ କରି ଭୋଗ କରିବେ ନାହିଁ, କିନ୍ତୁ ଯଥା ଦେଶ କାଳାନୁସାରେ ଯାହା ଦୈବ ଲବ୍ଧ ତାହାହିଁ ଭୋଗ କରିବେ । ୧୦ ।

ଭ୍ରାତ ସୁହୃଦ ତାତ ମାତ
ଜ୍ଞାତ ବାନ୍ଧବ ଦାରା ସୁତ
ସେ ବା ଇଚ୍ଛନ୍ତି ଯେ ବୋଲନ୍ତି
ଯେ ଭାବେ ସନ୍ତୋଷେ ରହନ୍ତି
ମନ ସନ୍ତୋଷେ ସୁଖ ଦେବ
ନିର୍ମ୍ମଳେ ସର୍ବଦା ବର୍ତ୍ତିବ । ୬ ।
ଭୂମି ଗଗନ ଅନ୍ତରୀକ୍ଷେ
ଯେ ଧନ ମିଳିବ ପ୍ରତ୍ୟକ୍ଷେ
କୃଷ୍ଣର ଦେଲ ପ୍ରାୟେ ବୁଝି
ସେ ଧନ ଦୁଃଖ-ସୁଖେ ଭୁଞ୍ଜି
ଦିନ ବର୍ତ୍ତିବ ହରିଭାବେ
ଯତ୍ନ କରିବ ଧର୍ମଲାଭେ । ୭ ।

ଯାବତ ଦେହେ ପ୍ରାଣ ଥିବ
ତାବତ ସନ୍ତୋଷେ ବର୍ତ୍ତିବ
ଲୋଭେ ଅଧିକ ଯେ ଚିନ୍ତନ୍ତି
ଚୋର ସମାନେ ଦଣ୍ଡ ପାନ୍ତି । ୮ ।
ଏବେ ହେ ଶୁଣ ନୃପବର
କହିବା ସର୍ବ ଧର୍ମ୍ମସାର
କପି ମକ୍ଷିକା ଉଷ୍ଟ୍ର ଖଗ
ମୃଗ ମୂଷିକ ଯେ ଗର୍ଦ୍ଦଭ
ଉରଗ ପତଙ୍ଗାଦି ଯେତେ
ତାହାଙ୍କୁ ପୁତ୍ରପ୍ରାୟେ ଚେତେ
ଆତ୍ମାର ପ୍ରାୟେ ନିତ୍ୟ ଦେଖି
ଅନ୍ୟଥା ମନେ ନ ସଂକଳି । ୯ ।

ତ୍ରିବର୍ଗ କଷ୍ଟେ ନ ସାଧିବ
ଯେ ଭାବ ନିନ୍ଦନ୍ତି ସାଧବ
ଯେ ଦ୍ରବ୍ୟ ଅତି କ୍ଲେଶେ ପାଇ
ଯେ ସୁଖ ଅତି ଲୋଭେ ହୋଇ
ଯେଣେ ବା ପରପୀଡ଼ା ହେବ
ଏ ତିନି ଚିତ୍ତେ ନ ଧରିବ
ଯେ ଦେଶ କାଳ ପାତ୍ରମତେ
ଯେ ମିଳେ କର୍ମ୍ମର ଆୟତ୍ତେ
ସେ ଭାବେ ପୋଷିବ ଜୀବନ
ପ୍ରାଣିଙ୍କି ନ କରିବ ଭିନ୍ନ । ୧୦ ।

ଆଶ୍ୱାଘାନ୍ତେଽବସାୟିଭ୍ୟଃ କାମାନ୍ ସଂବିଭଜେଦ୍ ଯଥା ।
ଅପ୍ୟେକାମାତ୍ମନୋ ଦାରାଂ ନୃଣାଂ ସ୍ୱତ୍ୱଗ୍ରହୋ ଯତଃ । ୧୧ ।
ଜହ୍ୟାଦ୍ୟଦର୍ଥେ ସ୍ୱାନ୍ ପ୍ରାଣାନ୍ ହନ୍ୟାଦ୍ୱା ପିତରଂ ଗୁରୁମ୍ ।
ତସ୍ୟାଂ ସ୍ୱତ୍ୱଂ ସ୍ତ୍ରିୟାଂ ଜହ୍ୟାତ୍ ଯସ୍ତେନ ହ୍ୟଜିତୋ ଜିତଃ । ୧୨ ।
କୃମିବିଡ୍ଭସ୍ମନିଷ୍ଠାନ୍ତଂ କ୍ୱେଦଂ ତୁଚ୍ଛଂ କଳେବରମ୍ ।
କ୍ୱ ତଦୀୟରତିର୍ଭାର୍ଯ୍ୟା କ୍ୱାୟମାତ୍ମା ନଭଶ୍ଛଦଃ । ୧୩ ।
ସିଦ୍ଧୈର୍ଯଜ୍ଞାବଶିଷ୍ଟାର୍ଥୈଃ କଳ୍ପୟେଦ୍ ବୃତ୍ତିମାତ୍ମନଃ ।
ଶେଷେ ସ୍ୱତ୍ୱଂ ତ୍ୟଜନ୍ ପ୍ରାଜ୍ଞଃ ପଦବୀଂ ମହତାମିୟାତ୍ । ୧୪ ।

---

ଗୃହସ୍ଥ କୁକୁର, ପତିତ ବ୍ୟକ୍ତି ଓ ଚଣ୍ଡାଳାଦି ମାନଙ୍କ ସହିତ ସ୍ୱୀୟ ଭୋଗ୍ୟବସ୍ତୁ ବଣ୍ଟନ କରିବେ । ଯେ ଭାର୍ଯ୍ୟାଠାରେ ମନୁଷ୍ୟର ଆସକ୍ତି ଥାଏ ସେହି ଭାର୍ଯ୍ୟାକୁ ଅତିଥି ସେବାରେ ନିଯୁକ୍ତ କରିବେ । ୧୧ ।

ଯେଉଁ ସ୍ତ୍ରୀ ନିମନ୍ତେ ଲୋକେ ନିଜର ପ୍ରାଣ ପର୍ଯ୍ୟନ୍ତ ଉତ୍ସର୍ଗ କରିପାରନ୍ତି ଓ ଗୁରୁ ବା ପିତାଙ୍କୁ ହତ୍ୟା କରିବାକୁ ମଧ୍ୟ କୁଣ୍ଠିତ ହୁଅନ୍ତି ନାହିଁ ସେହି ସ୍ତ୍ରୀ ପ୍ରତି ଆଗ୍ରହ ଯେଉଁ ବ୍ୟକ୍ତି ପରିତ୍ୟାଗ କରିପାରେ ଭଗବାନ ଅନ୍ୟ ଦ୍ୱାରା ଅଜିତ ହେଲେ ମଧ୍ୟ ତାହାର ବଶ ହୋଇଥାନ୍ତି । ୧୨ ।

କୃମି, ବିଷ୍ଠା ଓ ଭସ୍ମ ଦ୍ୱାରା ପର୍ଯ୍ୟବସିତ ଏହି ତୁଚ୍ଛ ଶରୀର ନିମନ୍ତେ ଯେଉଁ ଭାର୍ଯ୍ୟା ପ୍ରତି ମନୁଷ୍ୟର ଆସକ୍ତି ସେହି ଭାର୍ଯ୍ୟା କାହିଁ ବା ସେହି କଳେବର କାହିଁ ଏବଂ ଯେଉଁ ଆତ୍ମା ନିଜର ମହିମାରେ ଆକାଶକୁ ମଧ୍ୟ ଆଚ୍ଛନ୍ନ କରିଥାଏ ସେହି ଆତ୍ମା ବା କାହିଁ ? ( ଯଦି ତୁଚ୍ଛ ଦେହ ବା ଭାର୍ଯ୍ୟା ପ୍ରତି ଅନୁରାଗ ତ୍ୟାଗ କଲେ ଆତ୍ମଲାଭ କରାଯାଏ ତେବେ ତାହା ପରିତ୍ୟାଗ କରିବା ଏକାନ୍ତ ଉଚିତ, ଏଥିରେ ସନ୍ଦେହ ନାହିଁ । ୧୩ ।

ପ୍ରାଜ୍ଞ ବ୍ୟକ୍ତି ଦେବକଳ୍ପିତ ଯଜ୍ଞାବଶିଷ୍ଟ ଅନ୍ନାଦି ଦ୍ୱାରା ନିଜର ଜୀବିକା ନିର୍ବାହ କରିବେ । ତଦନନ୍ତର ସମସ୍ତ ସ୍ୱତ୍ୱ ପରିତ୍ୟାଗ କରି ମୁକ୍ତ ପୁରୁଷ ମାନଙ୍କର ପଦବୀ ଲାଭ କରିବେ । ୧୪ ।

---

ଶ୍ୱାନ ଚଣ୍ଡାଳ ଅନ୍ୟ ଜାତି
ଆତ୍ମାର ପ୍ରାୟେ ତାଙ୍କୁ ଚିନ୍ତି
ବିଭାଗେ ଭୋଗ ତାଙ୍କୁ ଦେବ
ଆତ୍ମାର ପରାୟେ ଭାବିବ
ଏକ ଗୃହିଣୀ ସଂଗ୍ରହଣେ
ସ୍ୱଧର୍ମ ଏ ଗୃହ କାରଣେ
ଯାର ମମତା ଯେଉଁ ନାରୀ
ଯାହା ସନ୍ତୋଷେ ଭୋଗ କରି
ନିଯୋଗ ଅତିଥି ସେବନେ
ଯତ୍ନ କରିବ ନିଜ ଧର୍ମେ । ୧୧ ।

ଯା ପାଇଁ ପିତା ଗୁରୁ ପ୍ରାଣ
ପ୍ରାଣୀ ହିଂସଇ ମୋହେ ଜାଣ
ଅତିଥି ସେବାରେ ସେ ନାରୀ
ଦେଇଣ ଆପଦୁ ଉଦ୍ଧରି
ଆନେ ଅସାଧ୍ୟ ଯେଉଁ ହରି
ଏ ଭାବେ ସାଧ୍ୟ ତାଙ୍କୁ କରି । ୧୨ ।
ଦେଖ ଏ ତୁଚ୍ଛ ନର ଦେହୀ
ଅନ୍ତେ ତ୍ରିପ୍ରକାରେ ଭଜଇ
ଭସ୍ମ ପୁରୀଷ କୃମି ମାନ
ଅବଶ୍ୟ ଭଜେ ଅବସାନ

ସେ ଦେହେ ରତି ପତ୍ନୀମନେ
ଏ କାହିଁ ଆତ୍ମାର କୁଶଳେ । ୧୩ ।
ଯଜ୍ଞାବଶେଷ ସିଦ୍ଧ ଅନ୍ନେ
ଆହାର କଳ୍ପିବ ଜୀବନେ
ଅଧିକେ ମମତା ନ ଥାଇ
ତେବେଟି ମହତ ବୋଲାଇ । ୧୪ ।

ଦେବାନୃଷୀନ୍ ନୃଭୂତାନି ପିତୃନାତ୍ମାନମନ୍ୱହମ୍ ।
ସ୍ୱବୃତ୍ତ୍ୟା ଗତବତ୍ତେନ ଯଜେତ ପୁରୁଷଂ ପୃଥକ୍ । ୧୫ ।
ଯର୍ହ୍ୟାତ୍ମନୋଽଧିକାରାଦ୍ୟାଃ ସର୍ବାଃ ସ୍ୟୁର୍ଯଜ୍ଞସମ୍ପଦଃ ।
ବୈତାନିକେନ ବିଧିନା ଅଗ୍ନିହୋତ୍ରାଦିନା ଯଜେତ୍ । ୧୬ ।
ନ ହ୍ୟଗ୍ନିମୁଖତୋଽୟଂ ବୈ ଭଗବାନ୍ ସର୍ବଯଜ୍ଞଭୁକ୍ ।
ଇଜ୍ୟେତ ହବିଷା ରାଜନ୍ ଯଥା ବିପ୍ରମୁଖେ ହୁତୈଃ । ୧୭ ।
ତସ୍ମାଦ୍ ବ୍ରାହ୍ମଣଦେବେଷୁ ମର୍ତ୍ତ୍ୟାଦିଷୁ ଯଥାର୍ହତଃ ।
ତୈସ୍ତୈଃ କାମୈର୍ଯଜସ୍ୱୈନଂ କ୍ଷେତ୍ରଜ୍ଞଂ ବ୍ରାହ୍ମଣାନନୁ । ୧୮ ।
କୁର୍ଯ୍ୟାଦପରପକ୍ଷୀୟଂ ମାସି ପ୍ରୋଷ୍ଠପଦେ ଦ୍ୱିଜଃ ।
ଶ୍ରାଦ୍ଧଂ ପିତ୍ରୋର୍ଯଥାବିତ୍ତଂ ତଦ୍‌ବନ୍ଧୂନାଞ୍ଚ ବିତ୍ତବାନ୍ । ୧୯ ।

---

ପ୍ରତ୍ୟହ ନିଜର ବୃତ୍ତିଦ୍ୱାରା ଦେବଯଜ୍ଞ, ଋଷିଯଜ୍ଞ, ନୃଯଜ୍ଞ, ଭୂତଯଜ୍ଞ, ପିତୃଯଜ୍ଞ ସମ୍ପାଦନ କରି ନିଜର ବୃତ୍ତି ଦ୍ୱାରା ଆତ୍ମପୋଷଣ କରି ଏବଂ ସର୍ବସ୍ୱରୂପ ସର୍ବଭୋଗ କରି ଅନ୍ତର୍ଯ୍ୟାମୀ ଭଗବାନଙ୍କ ଆରାଧନା କରିବେ । ୧୫ ।

ଯେଉଁ ଯଜ୍ଞ ଦ୍ୱାରା ସ୍ୱର୍ଗାଦି ଅଧିକାର ପ୍ରଭୃତି ଯଜ୍ଞସମ୍ପଦ ମିଳେ ବୈତାନିକ ବିଧିରେ ସେହି ଅଗ୍ନିହୋତ୍ରାଦି ଯଜ୍ଞ ଅନୁଷ୍ଠାନ କରିବ । ୧୬ ।

ହେ ରାଜନ୍ ! ବ୍ରାହ୍ମଣମାନଙ୍କ ମୁଖରେ ପ୍ରଦତ୍ତ ଅନ୍ନାଦି ଦ୍ୱାରା ଭଗବାନ୍ ବିଷ୍ଣୁ ଯେପରି ପୂଜିତ ହୁଅନ୍ତି, ଅଗ୍ନିରେ ପ୍ରଦତ୍ତ ଘୃତାଦି ଦ୍ୱାରା ସେପରି ପୂଜିତ ହୁଅନ୍ତି ନାହିଁ । ୧୭ ।

ବ୍ରାହ୍ମଣ ଭୋଜନାଦି ଦ୍ୱାରା ଭଗବାନ୍ ସନ୍ତୁଷ୍ଟ ଲାଭ କରୁଥିବା ହେତୁ ପୂର୍ବୋକ୍ତ ଦୈବଲବ୍ଧ ପଦାର୍ଥ ଦ୍ୱାରା ଯଥୋଚିତ ଭାବରେ ବ୍ରାହ୍ମଣ, ପଞ୍ଚଯଜ୍ଞରେ ଅରାଧିତ ଦେବତା ଓ ଅନ୍ୟାନ୍ୟ ମନୁଷ୍ୟମାନଙ୍କୁ ସେବା କରିବ । ବ୍ରାହ୍ମଣ ଯଜନାନ୍ତର ଏହି ଅନ୍ତର୍ଯ୍ୟାମୀ ପୁରୁଷଙ୍କୁ ଅର୍ଚ୍ଚନା କରିବେ । ୧୮ ।

ବିତ୍ତଶାଳୀ ଦ୍ୱିଜ ଭାଦ୍ରମାସରେ ଶକ୍ତି ଅନୁସାରେ ମାତା, ପିତା ଏବଂ ସେମାନଙ୍କର ବନ୍ଧୁଗଣଙ୍କ ନିମିତ୍ତ ଅପର ପକ୍ଷବର୍ତ୍ତିତ ଶ୍ରାଦ୍ଧାନୁଷ୍ଠାନ କରିବେ । ୧୯ ।

---

ଦେବତା ଋଷି ଭୂତଗଣେ
ଆତ୍ମା ଅତିଥି ପିତୃ ଜନେ
ଏହାଙ୍କୁ ବିଷ୍ଣୁ ପ୍ରାୟେ ମଣି
ସନ୍ତୋଷେ ଦେବ ଅନ୍ନ ପାଣି
ଆତ୍ମାଧିକାରେ ନାନାବିଧି
ଯଜ୍ଞର ସମ୍ଭାର ସମ୍ପାଦି
ବିଧି ବିଧାନି ବେଦମତେ
ଯଜ୍ଞକରିବ ଅଗ୍ନିହୋତ୍ରେ ।୧୫,୧୬

ଏ ଅଗ୍ନିହୋତ୍ର ଅବସାନେ
ବିପ୍ରଙ୍କୁ ତୋଷିବ ଭୋଜନେ
ବ୍ରାହ୍ମଣ ଦେହେ ଥାଇ ହରି
ଏଣୁ ଭୋଜନେ ପୂଜା କରି
ବିପ୍ର ଭୋଜନେ ତୋଷ ଯେତେ
ସେ ନୋହେ ଯଜ୍ଞ କୋଟିଶତେ ।୧୭
ଏ ରୂପେ ଦେବତା ବ୍ରାହ୍ମଣେ
ପୂଜା କରିବ ଅନୁକ୍ଷଣେ

ଏଣୁ ବ୍ରାହ୍ମଣ ମୁଖେ ଦେଇ
ପୂଜା କରିବ ହରିପାଇଁ । ୧୮ ।
ଆଶ୍ୱିନ ମାସେ କୃଷ୍ଣପକ୍ଷେ
ପିତୃଙ୍କୁ ପୂଜିବ ପ୍ରତ୍ୟକ୍ଷେ
ସମ୍ଭାର ଯଥା ଶକ୍ତି ମତେ
ପିତୃ ପୂଜିବ ଶୁଦ୍ଧ ଚିତ୍ତେ
ଜ୍ଞାତି ସୁହୃଦ ବନ୍ଧୁଜନ
ଭୋଜନ ଦେବ ମିଷ୍ଟ ଅନ୍ନ । ୧୯ ।

ଅୟନେ ବିଷୁବେ କୁର୍ଯ୍ୟାଦ୍‌ବ୍ୟତୀପାତେ ଦିନକ୍ଷୟେ ।
ଚନ୍ଦ୍ରାଦିତ୍ୟୋପରାଗେ ଚ ଦ୍ୱାଦଶ୍ୟାଂ ଶ୍ରବଣେଷୁ ଚ । ୨୦ ।
ତୃତୀୟାୟାଂ ଶୁକ୍ଲପକ୍ଷେ ନବମ୍ୟାମଥ କାର୍ତ୍ତିକେ ।
ଚତସୃଷ୍ୱପ୍ୟଷ୍ଟକାସୁ ହେମନ୍ତେ ଶିଶିରେ ତଥା । ୨୧ ।
ମାଘେ ଚ ସିତସପ୍ତମ୍ୟାଂ ମଘାରାକାସମାଗମେ ।
ରାକୟା ଚାନୁମତ୍ୟା ଚ ମାସର୍କ୍ଷାଣି ଯୁତାନ୍ୟପି । ୨୨ ।
ଦ୍ୱାଦଶ୍ୟାମନୁରାଧା ସ୍ୟାଚ୍ଛ୍ରବଣସ୍ତିସ୍ର ଉତ୍ତରାଃ ।
ତିସୃଷ୍ୱେକାଦଶୀ ବାସୁ ଜନ୍ମର୍କ୍ଷଶ୍ରୋଣଯୋଗଯୁକ୍ । ୨୩ ।
ତ ଏତେ ଶ୍ରେୟସଃ କାଲା ନୃଣାଂ ଶ୍ରେୟୋବିବର୍ଦ୍ଧନାଃ ।
କୁର୍ଯ୍ୟାତ୍ ସର୍ବାତ୍ମନୈତେଷୁ ଶ୍ରେୟୋଽମୋଘଂ ତଦାୟୁଷଃ । ୨୪ ।

---

ଅୟନ ଅର୍ଥାତ୍ କର୍କଟ ସଂକ୍ରାନ୍ତି ଠାରୁ ମକର ସଂକ୍ରାନ୍ତି ପର୍ଯ୍ୟନ୍ତ ଉତ୍ତରାୟଣ କାଳ ଓ ମକର ସଂକ୍ରାନ୍ତି ଠାରୁ ମିଥୁନ ସଂକ୍ରାନ୍ତି ପର୍ଯ୍ୟନ୍ତ ଦକ୍ଷିଣାୟନ କାଳ ଏବଂ ବିଷୁବ ସଂକ୍ରାନ୍ତିରେ (ମେଷସଂକ୍ରାନ୍ତିରେ) ଓ ତୁଳା ସଂକ୍ରାନ୍ତିରେ ବ୍ୟତୀପାତ ଯୋଗରେ ଦିନକ୍ଷୟ ତିଥିରେ, ଚନ୍ଦ୍ରଗ୍ରହଣରେ, ସୂର୍ଯ୍ୟ ଉପରାଗରେ, ଦ୍ୱାଦଶୀରେ ଶ୍ରବଣାରେ, ଅକ୍ଷୟ ତୃତୀୟାରେ, କାର୍ତ୍ତିକ ଶୁକ୍ଳ ନବମୀରେ (ଅଁଳାନବମୀରେ ଅଗ୍ରହାୟଣ (ମାର୍ଗଶିର) ମାର୍ଗଶୀର୍ଷାଦି ଚାରି ମାସରେ ଯେଉଁ ଅଷ୍ଟକା ପଡ଼େ ଅର୍ଥାତ୍ ସପ୍ତମୀ, ଅଷ୍ଟମୀ ନବମୀ ଓ ତ୍ରୟୋଦଶୀ ଓ ମାଘ ମାସର ଶୁକ୍ଳ ସପ୍ତମୀ ଓ ମାଘ ପୂର୍ଣ୍ଣିମାରେ ଯେତେବେଳେ ମଘା ନକ୍ଷତ୍ର ସଂଯୁକ୍ତ ହୁଏ ଏବଂ ଯେତେବେଳେ ବୈଶାଖାଦି ମାସରେ ବିଶାଖାଦି ନକ୍ଷତ୍ର ଯୁକ୍ତ ଦ୍ୱାଦଶୀରେ ଅନୁରାଧା; ଶ୍ରବଣା, ଉତ୍ତର ଫାଲ୍‌ଗୁନୀ, ଉତ୍ତରଷାଢା ଓ ଉତ୍ତର ଭାଦ୍ରପଦ ନକ୍ଷତ୍ର ଯୁକ୍ତ ଏକାଦଶୀରେ ଓ ଜନ୍ମ ନକ୍ଷତ୍ର ଯୁକ୍ତ ଦିବସରେ ଓ ଶ୍ରବଣା ନକ୍ଷତ୍ର ଯୁକ୍ତ ଦିବସରେ ଶ୍ରାଦ୍ଧ କର୍ମ ବିହିତ । ୨୦,୨୩

ଏହି ଦିବସମାନଙ୍କୁ ଯେ କେବଳ ଶ୍ରାଦ୍ଧକାଳ ବୋଲି ବୋଲାଯାଏ ତାହା ନୁହେଁ । ପକ୍ଷାନ୍ତରେ ସର୍ବ ପ୍ରକାର ଧର୍ମ କାର୍ଯ୍ୟ ଅନୁଷ୍ଠାନର ଏହା ସମୟ କାରଣ ତଦ୍ଦ୍ୱାରା ଆୟୁ ବୃଦ୍ଧି ହୁଏ । ୨୪ ।

---

ଏବେ ହେ ଶୁଣ ମହୀପତି
ଗୃହସ୍ଥ କଲ୍ୟାଣ ଗତି
ବେଳ ଅୟନ ବିଷୁବାନ୍ତେ
ଦିବସ କ୍ଷୟ ବ୍ୟତୀପାତେ
ଅକ୍ଷୟ ତୃତୀୟା ଦିବସେ
ଆଦିତ୍ୟ ଶଶାଙ୍କର ଗ୍ରାସେ
ଦ୍ୱାଦଶୀ ଶ୍ରବଣା ସଂଯୋଗେ
ତୃତୀୟା ତିଥି କ୍ଷୟ ଯୋଗେ

ଶୁକ୍ଳ ନବମୀ ଊର୍ଜ୍ଜମାସେ *
ଚତୁର ଅଷ୍ଟକା ଦିବସେ
ସପ୍ତମୀ ମାଘ ଶୁକ୍ଳପକ୍ଷେ
ପୂର୍ଣ୍ଣିମା ମିଶି ମଘା ଋକ୍ଷେ
ଦ୍ୱାଦଶୀ ଅନୁରାଧା ଯୋଗେ
ଶ୍ରବଣା ତିନି ଉତ୍ତରା ଯୋଗେ
ଏ ତିନି ଯୋଗେ ଏକାଦଶୀ
ଶ୍ରବଣା ଜନ୍ମ ଋକ୍ଷେ ମିଶି ।୨୦-୨୩

ଶ୍ରେୟ ସାଧନେ ଯୋଗ ଏତେ
ଗୃହସ୍ଥ ଧର୍ମ୍ମ ସାଧି ଅର୍ଥେ
ଏ ଦିନେ ଧର୍ମ୍ମ କର୍ମ୍ମ କଲେ
ଶ୍ରେୟ ଆୟୁଷ ଲଭେ ଭଲେ
ଏ ଦିନେ ତପ ହୋମ ସ୍ନାନ
ଜପ ଦେବ-ଦ୍ୱିଜ ଅର୍ଚ୍ଚନ

---

* ଊର୍ଜ୍ଜମାସ—କାର୍ତ୍ତିକମାସ

ଏଷୁ ସ୍ନାନଂ ଜପୋ ହୋମୋ ବ୍ରତଂ ଦେବଦ୍ୱିଜାର୍ଚ୍ଚନମ୍ ।
ପିତୃଦେବନୃଭୂତେଭ୍ୟୋ ଯଦ୍ଦତ୍ତଂ ତଦ୍ଧ୍ୟନଶ୍ୱରମ୍ । ୨୫ ।
ସଂସ୍କାରକାଲୋ ଜାୟାୟା ଅପତ୍ୟସ୍ୟାତ୍ମନସ୍ତଥା ।
ପ୍ରେତସଂସ୍ଥା ମୃତାହଶ୍ଚ କର୍ମଣ୍ୟଭ୍ୟୁଦୟେ ନୃପ । ୨୬ ।
ଅଥ ଦେଶାନ୍ ପ୍ରବକ୍ଷ୍ୟାମି ଧର୍ମ୍ମାଦିଶ୍ରେୟ ଆବହାନ୍ ।
ସ ବୈ ପୁଣ୍ୟତମୋ ଦେଶଃ ସତ୍ପାତ୍ରଂ ଯତ୍ର ଲଭ୍ୟତେ ।୨୭।
ବିମ୍ବଂ ଭଗବତୋ ଯତ୍ର ସର୍ବମେତଚ୍ଚରାଚରମ୍ ।
ଯତ୍ର ହ ବ୍ରାହ୍ମଣକୁଳଂ ତପୋବିଦ୍ୟାଦୟାନ୍ୱିତମ୍ । ୨୮ ।
ଯତ୍ର ଯତ୍ର ହରେରର୍ଚ୍ଚା ସ ଦେଶଃ ଶ୍ରେୟସାଂ ପଦମ୍ ।
ଯତ୍ର ଗଙ୍ଗାଦୟୋ ନଦ୍ୟଃ ପୁରାଣେଷୁ ଚ ବିଶ୍ରୁତାଃ । ୨୯ ।

ଏହି ପୁଣ୍ୟ କାଳରେ ସ୍ନାନ, ଜପ, ହୋମ, ବ୍ରତ, ଦେବ ବ୍ରାହ୍ମଣ ଅର୍ଚ୍ଚନା ଓ ପଞ୍ଚମହାଯଜ୍ଞ ଓ ଦେବତାମାନଙ୍କ ଉଦ୍ଦେଶ୍ୟରେ ଯାହା ଅର୍ପିତ ହୁଏ ତାହା ଅବିନଶ୍ୱର ବା ଅକ୍ଷୟ ହୁଏ ଏଥିରେ ସନ୍ଦେହ ନାହିଁ । ୨୫ ।

ହେ ନୃପ ! ପତ୍ନୀର ପୁଂସବନାଦି ସଂସ୍କାର ଏବଂ ପୁତ୍ରର ଜାତକର୍ମାଦି ସଂସ୍କାର, ନିଜର ଦୀକ୍ଷା ଗ୍ରହଣାଦି କାଳ, ଶବଦାହ କାଳ, ସାମ୍ବତ୍ସରିକ ମୃତତିଥି ଓ ଅନ୍ୟାନ୍ୟ ଅଭ୍ୟୁଦୟ କାଳରେ ଶ୍ରାଦ୍ଧାଦି ପୁଣ୍ୟ କାର୍ଯ୍ୟ ଅନୁଷ୍ଠାନ କରିବ । ୨୬ ।

ହେ ମହାରାଜ ! ତଦନନ୍ତର ପୁଣ୍ୟମୟ ଦେଶ ସମୂହ ପ୍ରସଙ୍ଗ ଶୁଣ । ଯେଉଁ ସ୍ଥାନରେ ସମସ୍ତ ଚରାଚରାତ୍ମକ ଭଗବାନଙ୍କର ବିମ୍ବ ସ୍ୱରୂପ ସତ୍ପାତ୍ର ବାସ କରନ୍ତି, ଯେଉଁଠାରେ ତପସ୍ୱୀ, ବିଦ୍ୱାନ୍ ଓ ଦୟାଳୁ ବ୍ରାହ୍ମଣମାନେ ବାସ କରନ୍ତି ତାହାହିଁ ପୁଣ୍ୟବାନ୍ ଦେଶ । ୨୭,୨୮ ।

ଯେଉଁ ସ୍ଥାନରେ ଶାଳଗ୍ରାମ ଶିଳାଦି ଅବସ୍ଥିତ ଓ ଯେଉଁ ସ୍ଥାନରେ ହରିଙ୍କ ଅର୍ଚ୍ଚନା ହୁଏ ଏବଂ ଯେଉଁ ଦେଶରେ ପୁରାଣ ପ୍ରସିଦ୍ଧ ଗଙ୍ଗା ପ୍ରଭୃତି ନଦୀମାନ ପ୍ରବାହିତ ସେହି ଦେଶ ପୁଣ୍ୟଭୂମି । ୨୯ ।

| | | |
|---|---|---|
| ପିତୃ ଦେବତା ଭୂତଗଣ | ସଚରାଚର ବସେ ଯହିଁ | ଗଙ୍ଗାଦି ନଦୀ ଯହିଁ ବହି |
| ଅନ୍ନ ଜଳ ଦେଲେ ତର୍ପଣ । ୨୪,୨୫ | ସେ ବିଷ୍ଣୁ ପ୍ରତିମା ଯେ ହୋଇ | ସେ ପୁଣ୍ୟଦେଶ ବେଦେ କହି |
| ପତ୍ନୀର ସଂସ୍କାର କାଳରେ | ସତ୍ପାତ୍ର ଜନ ଲଭେ ଯହିଁ | ପୁଷ୍କର ଆଦି ସରୋବର |
| ଅପତ୍ୟ ସମ୍ଭବ ଦିନରେ | ସେ ପୁଣ୍ୟତମ ଦେଶ କହି ।୨୭। | ଯହିଁ ବସନ୍ତି ବିଷ୍ଣୁ ନର |
| ଜାତ ମରଣେ ପ୍ରେତକାର୍ଯ୍ୟେ | ବିପ୍ର ବସନ୍ତି ଯେଉଁ ଭୂଇଁ | ପ୍ରୟାଗ ପୁଲହ ଆଶ୍ରମ |
| ପୂଜିବ ବାନ୍ଧବ ସମାଜେ | ଦୟା ତପସ୍ୟା ବିଦ୍ୟା ବହି | ନୈମିଷାରଣ୍ୟ ପୁଣ୍ୟଧାମ |
| ଏବେ ହୋ ଶୁଣ ଧର୍ମ-ଶିଷ୍ୟ | ବିଷ୍ଣୁର ପୂଜା ଯହିଁ ନିତ୍ୟେ | ପ୍ରଭାସ କୁରୁକ୍ଷେତ୍ର ସ୍ଥଳୀ |
| କହିବା ପୁଣ୍ୟସ୍ଥାନ ଦେଶ । ୨୬ । | ସେ ପୁଣ୍ୟଦେଶ ବେଦମତେ ।୨୮। | ଗୟା ମଥୁରା କୁଶସ୍ଥଳୀ |

ଯତ୍ରଂହି ପୁଷ୍କରାଦୀନି କ୍ଷେତ୍ରାଣ୍ୟର୍ହାଶ୍ରିତାନ୍ୟତ ।
କୁରୁକ୍ଷେତ୍ରଂ ଗୟଶିରଃ ପ୍ରୟାଗଃ ପୁଲହାଶ୍ରମଃ । ୩୦ ।
ନୈମିଷଂ ଫାଲ୍‌ଗୁନଂ ସେତୁଃ ପ୍ରଭାସୋଽଥ କୁଶସ୍ଥଳୀ ।
ବାରାଣସୀ ମଧୁପୁରୀ ପମ୍ପା ବିନ୍ଦୁସରସ୍ତଥା । ୩୧ ।
ନାରାୟଣାଶ୍ରମୋ ନନ୍ଦା ସୀତାରାମାଶ୍ରମାଦୟଃ ।
ସର୍ବେ କୁଲାଚଲା ରାଜନ୍ ମହେନ୍ଦ୍ରମଲୟାଦୟଃ । ୩୨ ।
ଏତେ ପୁଣ୍ୟତମା ଦେଶା ହରେରର୍ଚ୍ଚାଶ୍ରିତାଶ୍ଚ ଯେ ।
ଏତାନ୍ ଦେଶାନ୍ ନିଷେବେତ ଶ୍ରେୟସ୍କାମୋ ହ୍ୟଭୀକ୍ଷ୍ଣଶଃ ।
ଧର୍ମ୍ମୋ ହ୍ୟତ୍ରେହିତଃ ପୁଂସାଂ ସହସ୍ରାଧିଫଳୋଦୟଃ । ୩୩ ।
ପାତ୍ରଂ ତ୍ୱତ୍ର ନିରୁକ୍ତଂ ବୈ କବିଭିଃ ପାତ୍ରବିତ୍ତମୈଃ ।
ହରିରେବୈକ ଉର୍ବୀଶ ଯନ୍ମୟଂ ବୈ ଚରାଚରମ୍ । ୩୪ ।
ଦେବର୍ଷ୍ୟର୍ହତ୍ସୁ ବୈ ସତ୍ସୁ ତତ୍ର ବ୍ରହ୍ମାତ୍ମଜାଦିଷୁ ।
ରାଜନ୍ ଯଦଗ୍ରପୂଜାୟାଂ ମତଃ ପାତ୍ରତୟାଚ୍ୟୁତଃ । ୩୫ ।

---

ଯେଉଁସ୍ଥାନରେ ପୁଷ୍କରାଦି ସରୋବର ଓ ସାଧୁମାନଙ୍କର ଆଶ୍ରିତ କ୍ଷେତ୍ର ଅବସ୍ଥିତ ସେହି ସମସ୍ତ ସ୍ଥାନ ଏବଂ କୁରୁକ୍ଷେତ୍ର, ଗୟା, ପ୍ରୟାଗ, ପୁଲହାଶ୍ରମ, ନୈମିଷାରଣ୍ୟ, ଫଲ୍‌ଗୁତୀର୍ଥ, ସେତୁବନ୍ଧ ରାମେଶ୍ୱର ପ୍ରଭାସ, ଦ୍ୱାରକା, କାଶୀ, ମଥୁରା, ପମ୍ପାସରୋବର, ବିନ୍ଦୁସରୋବର, ବଦରିକାଶ୍ରମ, ଅଳକନନ୍ଦା, ସୀତା ଓ ରାମଙ୍କର ଆଶ୍ରମ ଅଯୋଧ୍ୟା ଚିତ୍ରକୂଟ ପ୍ରଭୃତି, ମହେନ୍ଦ୍ରଗିରି ଓ ମଳୟାଦି ଅଷ୍ଟକୁଳ ପର୍ବତ ଏବଂ ଯେଉଁ ଦେଶରେ ହରିଙ୍କର ପ୍ରତିମା ସ୍ଥିର ଭାବରେ ରହିଅଛି ଅର୍ଥାତ୍ ପୁରୀ ପ୍ରଭୃତି ଏହିମାନ ପୁଣ୍ୟତମ ଦେଶ । ମଙ୍ଗଳ କାମୀ ବ୍ୟକ୍ତିମାନେ ପୁନଃ ପୁନଃ ଏହି ଦେଶମାନଙ୍କୁ ଗମନ କରିବେ । ଏହି ଦେଶମାନଙ୍କରେ ମନୁଷ୍ୟର ଅନୁଷ୍ଠିତ କର୍ମମାନ ସହସ୍ର ଗୁଣରେ ଫଳ ପ୍ରଦାନ କରେ । ୩୦,୩୩ ।

ହେ ରାଜନ୍ ! ଏହି ଚରାଚର ଯାହାଙ୍କର ସ୍ୱରୂପ ଏକମାତ୍ର ସେହିହରି ଦାନାଦିର ପାତ୍ର । କାରଣ ଆପଣଙ୍କର ରାଜସୂୟ ଯଜ୍ଞରେ ଦେବତାମାନେ, ଋଷିମାନେ, ତପସ୍ୱୀମାନେ ଓ ସନକାଦି ମହାତ୍ମାମାନେ ଉପସ୍ଥିତ ଥିଲେ ମଧ୍ୟ ଶ୍ରୀହରିଙ୍କୁ ପୂଜାର ସର୍ବଶ୍ରେଷ୍ଠ ପାତ୍ର ବୋଲି ଗ୍ରହଣ କରାଯାଇଥିଲା । ୩୪,୩୫ ।

---

ଯେ କାଶୀ ପମ୍ପା ବିନ୍ଦୁସର
ସେତୁବନ୍ଧ ଯେ ରାମେଶ୍ୱର
ଆଶ୍ରମ ନର ନାରାୟଣ
ନନ୍ଦା ସୀତାୟ ରାମାଶ୍ରମ
ମହେନ୍ଦ୍ର ମଳୟ ପର୍ବତେ
ଏ ମଧ୍ୟେ କ୍ଷେତ୍ର ଛନ୍ତି ଯେତେ

ସେ ପୁଣ୍ୟତମ ଦେଶ ଭାବ
ବିଷ୍ଣୁ ପ୍ରତିମା ଯହିଁ ସେବ
କୈବଲ୍ୟ ଇଚ୍ଛା ଯାର ଚିତ୍ତେ
ଏ ଦେଶ ସେବୁଥିବ ନିତ୍ୟେ । ୨୯-୩୩
ଏବେ କହିବା ପାତ୍ର ଶୁଣ
ରାଜନ ହୋଇ ସାବଧାନ

ପୁରାଣ ପୁରୁଷ ମୁରାରି
ଯାର ଉଆଣ ବସୁନ୍ଧରୀ
ସଚରାଚର ଯା ଶରୀର
ଋଷି ଦେବତା ବ୍ରହ୍ମା ହର
ଅଗ୍ରେ ଚରଣ ପୂଜ ଯାର
ତାହାଙ୍କୁ ପାତ୍ରକେବା ଆର । ୩୪,୩୫

ଜୀବରାଶିଭିରାକୀର୍ଣ୍ଣଶ୍ଚାଣ୍ଡକୋଷାଙ୍ଘ୍ରିପୋମହାନ୍ ।
ତନ୍ମୂଲତ୍ୱାଦଚ୍ୟୁତେଜ୍ୟା ସର୍ବଜୀବାତ୍ମତର୍ପଣମ୍ । ୩୬ ।
ପୁରାଣ୍ୟନେନ ସୃଷ୍ଟାନି ନୃତିର୍ଯ୍ୟଗୃଷିଦେବତାଃ ।
ଶେତେ ଜୀବେନ ରୂପେଣ ପୁରେଷୁ ପୁରୁଷୋ ହ୍ୟସୌ । ୩୭ ।
ତେଷ୍ୱେବ ଭଗବାନ୍ ରାଜଂସ୍ତାରତମ୍ୟେନ ବର୍ତ୍ତତେ ।
ତସ୍ମାତ୍ ପାତ୍ରଂ ହି ପୁରୁଷୋ ଯାବାନାତ୍ମା ଯଥେୟତେ । ୩୮ ।
ଦୃଷ୍ଟ୍ୱା ତେଷାଂ ମିଥୋ ନୃଣାମବଜ୍ଞାନାତ୍ମତାଂ ନୃପ ।
ତ୍ରେତାଦିଷୁ ହରେରର୍ଚ୍ଚା କ୍ରିୟାୟୈଃ କବିଭିଃ କୃତା । ୩୯ ।
ତତୋଽର୍ଚ୍ଚାୟାଂ ହରିଂ କେଚିତ୍ ସଂଶ୍ରଦ୍ଧାୟ ସପର୍ଯ୍ୟୟା ।
ଉପାସତ ଉପାସ୍ତାପି ନାର୍ଥଦା ପୁରୁଷଦ୍ୱିଷାମ୍ । ୪୦ ।

---

ଏହି ବ୍ରହ୍ମାଣ୍ଡ କୋଷ ମହାବୃକ୍ଷ ସ୍ୱରୂପ ଏବଂ ଏହା ଜୀବରାଶି ଦ୍ୱାରା ପରିବ୍ୟାପ୍ତ । ଅଚ୍ୟୁତ ଏହି ମହା ବୃକ୍ଷର ମୂଳ ତେଣୁ ତାଙ୍କର ଅର୍ଚ୍ଚନା କଲେ ସମସ୍ତ ଜୀବର ଏବଂ ନିଜର ତୃପ୍ତି ସାଧିତ ହୁଏ । ୩୬ ।

ଏହି ହରି ପୁର ଅର୍ଥାତ୍ ନର ଓ ତିର୍ଯ୍ୟକ, ଋଷି ଓ ଦେବତା ସୃଷ୍ଟି କରି ସେହି ପୁରୁଷ ନାମରେ ଅଭିହିତ । ୩୭ ।

ହେ ରାଜନ୍ ! ଭଗବାନ୍ ପୁରୁଷମାନଙ୍କ ମଧ୍ୟରେ ତିର୍ଯ୍ୟଗାଦି ଅପେକ୍ଷା ଅଧିକ ଭାବରେ ବାସ କରନ୍ତି । ସୁତରାଂ ପୁରୁଷହିଁ ସତ୍ପାତ୍ର । ତନ୍ମଧ୍ୟରେ ଯେଉଁ ଜ୍ଞାନାଂଶ ତପସ୍ୟାଦି ଦ୍ୱାରା ଯେଉଁ ସ୍ଥାନରେ ପ୍ରାପ୍ତ ହୁଏ ତାହା ସତ୍ପାତ୍ରରେ ପରିଣତ ହୁଏ । ୩୮ ।

ହେ ରାଜନ୍ ! ସେହି ମନୁଷ୍ୟମାନେ ପରସ୍ପର ମଧ୍ୟରେ କିଏ କାହା ପ୍ରତି ସମ୍ମାନ, କିଏ କାହାପ୍ରତି ଅବଜ୍ଞା କରିବାର ଦେଖି ମନୀଷିମାନେ ତ୍ରେତା ଦ୍ୱାପର ଓ କଳି ଯୁଗରେ ନାରାୟଣଙ୍କର ପୂଜା ନିମିତ୍ତ ପ୍ରତିମାର ବ୍ୟବସ୍ଥା କରି ଅଛନ୍ତି । ୩୯ ।

ସେହିଠାରୁ କିଏ କିଏ ପ୍ରତିମାରେ ଶ୍ରଦ୍ଧାଯୁକ୍ତ ହୋଇ ଶ୍ରୀହରିଙ୍କର ପୂଜା ଓ ଉପାସନା କରିଥାନ୍ତି । ପ୍ରତିମା ଉପାସନା କଲେ ମଧ୍ୟ ମନୁଷ୍ୟ ପ୍ରତି ବିଦ୍ୱେଷୀ ହେଲେ ପୂଜା ଫଳପ୍ରଦ ହୁଏ ନାହିଁ । ୪୦ ।

---

ଯାର ଶରୀର ଜୀବରାଶି
ଯେ ଅଣ୍ଡକୋଷ ମୂଳେ ବସି
ଯେ ହରି ସର୍ବ ଦେବମୂଳ
ଅତଏବ ତା ଚିନ୍ତ ଫଳ
ନାନା ପ୍ରପଞ୍ଚେ ପୁର କରି
ତା ମଧ୍ୟେ ଜୀବରୂପ ଧରି

ହୃଦୟ-ପଦ୍ମମଧ୍ୟେ ଶୋଏ
ପୁରୁଷୋତ୍ତମ ନାମ ବହେ
ତେଣୁ ପୁରୁଷ ପାତ୍ରୋତ୍ତମ
ଯେଜନତୋଉତ୍ତମଆତ୍ମାରାମ ।୩୬,୩୭
ଯେଣୁ ଏ ପୁରୁଷଙ୍କ ଦେହେ
ସେ ହରି ତାରତମ୍ୟେ ରହେ

ଏ ଭାବେ ଅବଜ୍ଞା ବିଚାରି
ତ୍ରେତାଦି ଯୁଗେ ମୂର୍ତ୍ତି କରି
ସଂସ୍କାର ନିଗମ ଆଗମେ
ପୂଜାକରନ୍ତି ଗ୍ରାମେଗ୍ରାମେ ।୩୮,୩୯
ସେ ପୂଜା ମାତ୍ରେ ତୋଷହୋନ୍ତି
ବାଞ୍ଛିତ ଫଳ ଭକ୍ତେ ଦ୍ୟନ୍ତି

ପୁରୁଷେଷ୍ୱପି ରାଜେନ୍ଦ୍ର ସୁପାତ୍ରଂ ବ୍ରାହ୍ମଣଂ ବିଦୁଃ ।
ତପସା ବିଦ୍ୟୟା ତୁଷ୍ଟ୍ୟା ଧତ୍ତେ ବେଦଂ ହରେସ୍ତନୁମ୍ । ୪୧ ।
ନନ୍ୱସ୍ୟ ବ୍ରାହ୍ମଣା ରାଜନ୍ କୃଷ୍ଣସ୍ୟ ଜଗଦାତ୍ମନଃ ।
ପୁନନ୍ତଃ ପାଦରଜସା ତ୍ରିଲୋକୀଂ ଦୈବତଂ ମହତ୍ । ୪୨ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ସଦାଚାରନିର୍ଣ୍ଣୟେ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ । ୧୪ ।

---

ହେ ରାଜେନ୍ଦ୍ର ! ମନୁଷ୍ୟମାନଙ୍କ ମଧ୍ୟରେ ବ୍ରାହ୍ମଣମାନଙ୍କୁ ସୁପାତ୍ର ବୋଲି ଜ୍ଞାନୀମାନେ କହନ୍ତି କାରଣ ବ୍ରାହ୍ମଣ, ତପସ୍ୟା, ବିଦ୍ୟା ଓ ସନ୍ତୋଷ ଦ୍ୱାରା ଶ୍ରୀହରିଙ୍କର ଅଙ୍ଗସ୍ୱରୂପ ବେଦକୁ ଧାରଣ କରିଥାଏ ।୪୧

ହେ ରାଜନ୍ ! ବ୍ରାହ୍ମଣର ପଦଧୂଳି ଦ୍ୱାରା ତ୍ରିଭୁବନ ପବିତ୍ର ହୁଏ । ସୁତରାଂ ଅନ୍ୟ କଥା ଦୂରେ ଥାଉ ଜଗଦାତ୍ମା ଶ୍ରୀକୃଷ୍ଣ ବ୍ରାହ୍ମଣଙ୍କୁ ମହତ୍ତ ଦେବତା ବୋଲି ସମାଦର କରନ୍ତି । ୪୨ ।

---

ଯେ ପ୍ରାଣୀ ପରର ହିଂସା କରେ
ଦେବତା ତୃପ୍ତ ନୋହେ ତାହାରେ ।୪୦।
ଏଣୁ ପୁରୁଷଙ୍କର ମଧ୍ୟେ
ଯେ ବିପ୍ର ଜ୍ଞାନୀ ବେଦ ସାଧେ
ତା ଠାରୁଁ ପାତ୍ର ଆଉ ନାହିଁ
ସେ ବିପ୍ର ଜଗତେ ବିଷ୍ଣୁଦେହି

ଏଣୁ ଏ ବ୍ରାହ୍ମଣ ଚରଣ
ତ୍ରୈଲୋକ୍ୟନିସ୍ତାର କାରଣ ।୪୧,୪୨
ଏ ଭୂପେ ଦେଶ କାଳ ପାତ୍ର
ଶ୍ରାଦ୍ଧ ଧର୍ମ୍ମ ଦଇବତ
ନାରଦମୁନି ପ୍ରସ୍ତୁ ଭୂପେ
କହିଲେ ଯୁଧିଷ୍ଠିର ଆଗେ

ଏ ଭାଗବତ ଧର୍ମ୍ମ-ବାଣୀ
ଶୁଣି ସଂସାରୁ ତର ପ୍ରାଣୀ
ସପ୍ତମସ୍କନ୍ଧେ ଭାଗବତ
କହିଲେ ଦାସ ଜଗନ୍ନାଥ ।

---

ଭାବାର୍ଥ—

ଏହି ଅଧ୍ୟାୟରେ ମହର୍ଷି ନାରଦ ଯୁଧିଷ୍ଠିରଙ୍କ ନିକଟରେ ଗୃହସ୍ଥମାନଙ୍କର କର୍ତ୍ତବ୍ୟ ବ୍ୟାଖ୍ୟା କରିଅଛନ୍ତି । ଏ ସଂସାରରେ ମନୁଷ୍ୟର କର୍ତ୍ତବ୍ୟ କେବଳ ନିଜର ଉଦର ପୂରଣ ବା ଆତ୍ମସୁଖଧାନ ନୁହେଁ । ଗୃହସ୍ଥର ଉଚ୍ଚ ଆଦର୍ଶ ଏବଂ କର୍ତ୍ତବ୍ୟ ବ୍ୟାଖ୍ୟା କରିବାକୁ ଯାଇ ମହର୍ଷି ନାରଦ ଯାହା କହିଲେ ତହିଁରୁ ଜଣାଯାଏ ପଶୁ ପକ୍ଷୀ, କୀଟ, ପତଙ୍ଗ ମାନଙ୍କ ପ୍ରତି ପୂଜା ତାହାର କର୍ତ୍ତବ୍ୟ ଅତି ଗୁରୁତର । ଆଧୁନିକ ଯୁଗରେ କମ୍ୟୁନିଜମ୍ ଭଳି ମତ ଏ ଦେଶରେ ଶିକ୍ଷା ଦେଉଅଛି ବୋଲି ଦାବୀ କରୁଅଛି । ଆବଶ୍ୟକ ମତେ ପ୍ରତ୍ୟେକ ବ୍ୟକ୍ତି ଧନ ଗ୍ରହଣ ନ କରି ଅନ୍ୟାୟ ଭାବରେ ବହୁଧନ ସଞ୍ଚୟ କରିବା ଏହି ସାମ୍ୟବାଦର ନୀତି ବିରୁଦ୍ଧ । ଏହି ନୀତି ପାଞ୍ଚହଜାର ବର୍ଷ ପୂର୍ବେ ଭାରତୀୟ ଶ୍ରେଷ୍ଠ ଧର୍ମ ଗ୍ରନ୍ଥ ଶ୍ରୀମଦ୍ ଭାଗବତରେ ପ୍ରଚାରିତ ହୋଇଅଛି । ଏହି ଅଧ୍ୟାୟର ଅଷ୍ଟମ ଶ୍ଳୋକରେ ବୁଝା ଯାଇଅଛି ଯେ ଯେଉଁ ବ୍ୟକ୍ତି ପ୍ରୟୋଜନ ଅପେକ୍ଷା

ଅଧିକ ଧନ ସଂଗ୍ରହ କରି ରଖେ ସେ ଚୋର । ଜଣେ ବ୍ୟକ୍ତିର ପ୍ରୟୋଜନ ଅପେକ୍ଷା ସେ ଅଧିକ ଧନ ସଂଗ୍ରହ କରି ଲୁକ୍କାୟିତ ଭାବରେ ରଖିଲେ ତାହାର ଫଳରେ ଦେଶରେ ଦାରିଦ୍ର୍ୟ ଉପସ୍ଥିତ ହୁଏ । ଲୋକ ସମାଜର ସମୂହ ଅଭାବ ଉପସ୍ଥିତ ହୁଏ । ଯେତେବେଳେ ଜଣେ ବ୍ୟକ୍ତି ପୁଞ୍ଜିପତି ହୋଇ ବସେ ସେତେବେଳେ ଅନ୍ୟାନ୍ୟମାନେ ଅଭାବ ହେତୁ ଅନାହାରରେ ପ୍ରାଣ ହରନ୍ତି । ଦେଶ ଓ ଜାତିର ସମୂହ କଲ୍ୟାଣ ସର୍ବଥା ବାଞ୍ଛନୀୟ । କେବଳ ଧନୀ ସମାଜର ଉନ୍ନତି ବିଧାନ କରି ନ ପାରେ । ଜଣେ ଲୋକ ଧନ କୁବେର ହେଲେ ମନୁଷ୍ୟର ଗୋଟିଏ ଅଙ୍ଗରେ ମାଂସବୃଦ୍ଧି ହେଲାପରି ଅବସ୍ଥା ଘଟେ ମାତ୍ର । ପ୍ରତ୍ୟେକ ଦେଶରେ, କାଳରେ ଓ ସମାଜରେ ଉପାର୍ଜ୍ଜନ କ୍ଷମ ଓ ଅକ୍ଷମ ବ୍ୟକ୍ତି ରହିବା ସ୍ୱାଭାବିକ । ଉପାର୍ଜ୍ଜନ କ୍ଷମ ବ୍ୟକ୍ତିମାନେ ମାଟିତଳେ ବା ବ୍ୟାଙ୍କରେ ବା ଅନ୍ୟଭାବରେ କୋଟି କୋଟି ମୁଦ୍ରା ସଞ୍ଚୟକରି ରଖିବେ ଅଥଚ ଅନ୍ୟମାନେ ଅନାହାରରେ ମରିବେ ଏହା କଦାପି ଶାସ୍ତ୍ରାନୁମୋଦିତ, ଧର୍ମାନୁମୋଦିତ ନୁହେଁ । ତେଣୁ ଏପରି ପୁଞ୍ଜିପତି ମାନଙ୍କୁ ନାରଦ ତସ୍କର ନାମରେ ଅଭିହିତ କରି ଅଛନ୍ତି ।

ଧନ ଅର୍ଜ୍ଜିଲେ ଧର୍ମ କରି
ଧର୍ମେ ପ୍ରାପତି ନରହରି ।

ଧନ ଅର୍ଜ୍ଜନ ଦ୍ୱାରା ଧର୍ମ ସାଧନ ସର୍ବଥା କରଣୀୟ । ଏହି ଧର୍ମ ସାଧନର ଆଦର୍ଶ ସ୍ୱରୂପ ଏହି ଅଧ୍ୟାୟରେ ପଶୁ ପକ୍ଷୀ, କୀଟ ପତଙ୍ଗମାନଙ୍କ ପ୍ରତି ସୁଦ୍ଧା ମନୁଷ୍ୟର କର୍ତ୍ତବ୍ୟ ନିର୍ଦ୍ଦେଶିତ ହୋଇଅଛି । ତାହି ସଙ୍ଗେ ସଙ୍ଗେ ଆତ୍ମୋନ୍ନତିର ପନ୍ଥା ମଧ୍ୟ ପ୍ରଦର୍ଶିତ ହୋଇଅଛି । ତେଣୁ ଯଜନ, ଯାଜନ ପ୍ରଭୃତି ଉଲ୍ଲେଖ କରା ଯାଇଅଛି । ଭାରତରେ ପୁଣ୍ୟ କ୍ଷେତ୍ରମାନଙ୍କର ନାମ ଉଲ୍ଲେଖ କରି ସେହି ସେହି ତୀର୍ଥମାନଙ୍କୁ ଗମନ କରିବା ମଧ୍ୟ କର୍ତ୍ତବ୍ୟ ମଧ୍ୟରେ ନିର୍ଦ୍ଦେଶ କରା ଯାଇଅଛି । ସର୍ବ ଶେଷରେ ବ୍ରାହ୍ମଣର ପ୍ରାଧାନ୍ୟ ଓ ସେହି ପ୍ରାଧାନ୍ୟର ପ୍ରୟୋଜନୀୟତା ମଧ୍ୟ ଉଲ୍ଲେଖ କରାଯାଇଅଛି । ବ୍ରାହ୍ମଣ କେବଳ ପଇତା ପକାଇ ସର୍ବାଙ୍ଗରେ ଛିତାକାଟି ବ୍ରାହ୍ମଣତ୍ୱ ପ୍ରତିପାଦନ କରି ନ ପାରେ । ନିଜର ବ୍ରହ୍ମତ୍ୱ ଅର୍ଥାତ୍ ସେ ଯେ ପରଂବ୍ରହ୍ମଙ୍କ ସଙ୍ଗେ ଏକୀଭୂତ ଏହି ଭାବ ଲାଗି ତାହାକୁ ମଧ୍ୟ କର୍ତ୍ତବ୍ୟ ପଥରେ ବ୍ରତୀ ହେବା ଆବଶ୍ୟକ । ସେ ସମସ୍ତଙ୍କଠାରେ ସମଦର୍ଶୀ ହେଲେ ଏପରି କି ପଶୁ ପକ୍ଷୀ, କୀଟ ପତଙ୍ଗମାନଙ୍କୁ ଆପଣାର ପୁତ୍ର କନ୍ୟା ତୁଲ୍ୟ ମଣିବେ ଏବଂ ସର୍ବତ୍ର ଈଶ୍ୱରଙ୍କ ସତ୍ତା ଅନୁଭବ କରିବେ ତାହା ହେଲେ ସେମାନେ ଯଥାର୍ଥ ବ୍ରାହ୍ମଣ ବୋଲି ପରିଗଣିତ ହେବେ । ଏହି ବ୍ରାହ୍ମଣଙ୍କୁ ଶ୍ରୀହରି ଭଗବାନ୍ ଶ୍ରୀକୃଷ୍ଣ ମଧ୍ୟ ପୂଜାଯୋଗ୍ୟ ବୋଲି ଜ୍ଞାନ କରିଥାନ୍ତି । ହିନ୍ଦୁ ଓ ବିଶେଷତଃ ସମାଜର ଅଗ୍ରଣୀ ବ୍ରାହ୍ମଣମାନେ ଏହି ଆଦର୍ଶରେ ପରିଚାଳିତ ହେବା ନିମିତ୍ତ ଏହି ଅଧ୍ୟାୟରେ ଉଲ୍ଲେଖ କରା ଯାଇଅଛି ।



## ପ ଞ୍ଚ ଦ ଶ ଅ ଧ୍ୟା ୟ ।

ତତଃ ପଞ୍ଚଦଶେ ସର୍ବବର୍ଣ୍ଣାଶ୍ରମନିବନ୍ଧନମ୍ ।
ସାରତଃ ସଂଗ୍ରହେଣାନୁବର୍ଣ୍ଣ୍ୟତେ ମୋକ୍ଷଲକ୍ଷଣମ୍ । ୦ । ( ଶ୍ରୀଧର ସ୍ୱାମୀ )

ଶ୍ରୀନାରଦ ଉବାଚ ।

କର୍ମ୍ମନିଷ୍ଠା ଦ୍ୱିଜାଃ କେଚିତ୍ ତପୋନିଷ୍ଠା ନୃପାପରେ ।
ସ୍ୱାଧ୍ୟାୟେଽନ୍ୟେ ପ୍ରବଚନେ କେଚନ ଜ୍ଞାନଯୋଗୟୋଃ । ୧ ।
ଜ୍ଞାନନିଷ୍ଠାୟ ଦେୟାନି କବ୍ୟାନ୍ୟାନନ୍ତ୍ୟମିଚ୍ଛତା ।
ଦୈବେ ଚ ତଦଭାବେ ସ୍ୟାଦିତରେଭ୍ୟୋ ଯଥାର୍ହତଃ । ୨ ।
ଦ୍ୱୌ ଦୈବେ ପିତୃକାର୍ଯ୍ୟେ ତ୍ରୀନେକୈକମୁଭୟତ୍ର ବା ।
ଭୋଜୟେତ୍ ସୁସମୃଦ୍ଧୋଽପି ଶ୍ରାଦ୍ଧେ କୁର୍ଯ୍ୟାନ୍ନବିସ୍ତରମ୍ । ୩ ।

---

### ସର୍ବ ଧର୍ମ ସାର ସଂଗ୍ରହ ।

ପଞ୍ଚଦଶ ଅଧ୍ୟାୟରେ ସମସ୍ତ ବର୍ଣ୍ଣାଶ୍ରମର ସାର ସଂଗ୍ରହ କରି ମୋକ୍ଷଲକ୍ଷଣ ବର୍ଣ୍ଣନା କରାଯାଇ ଅଛି ।୦।

ଶ୍ରୀନାରଦ କହିଲେ—

ହେ ଯୁଧିଷ୍ଠିର ! କୌଣସି ବ୍ରାହ୍ମଣ କର୍ମନିଷ୍ଠ, କେହି ଅବା ତପୋନିଷ୍ଠ, କେହି ଅବା ଅଧ୍ୟୟନ ଓ ଅଧ୍ୟାପନରେ ରତ, କେହି ଅବା ସାଂଖ୍ୟ ଓ ଯୋଗାଦି ଶାସ୍ତ୍ର ପର୍ଯ୍ୟାଲୋଚନାରେ ନିରତ ଥାନ୍ତି । ୧ ।

ଯେ ଅନନ୍ତ ଫଳ କାମନା କରନ୍ତି ସେ କବ୍ୟ ଅର୍ଥାତ୍ ପିତୃଙ୍କ ଉଦ୍ଦେଶ୍ୟରେ ପ୍ରଦତ୍ତ ଶ୍ରାଦ୍ଧ ଦ୍ରବ୍ୟାଦି ଜ୍ଞାନନିଷ୍ଠ ବ୍ରାହ୍ମଣମାନଙ୍କୁ ଦାନ କରିବେ । ୨ ।

ଦେବ କାର୍ଯ୍ୟରେ ଦୁଇଜଣ ଓ ପିତୃକାର୍ଯ୍ୟରେ ତିନିଜଣ ବ୍ରାହ୍ମଣଙ୍କୁ ଅଥବା ଉଭୟ କାର୍ଯ୍ୟରେ ଜଣେ ବ୍ରାହ୍ମଣଙ୍କୁ ଭୋଜନ କରାଇବ । ଏଥିରୁ ଅଧିକ ବ୍ରାହ୍ମଣ ଭୋଜନ କରାଇବ ନାହିଁ । ୩ ।

---

ଏ ପଞ୍ଚଦଶେ ବର୍ଣ୍ଣାଶ୍ରମ, ସାର ସଂଗ୍ରହ ଯେବା ଧର୍ମ୍ମ । ପ୍ରାଣିଙ୍କ ନିସ୍ତାରକାରଣେ, ମୋକ୍ଷଲକ୍ଷଣ ଯେ ପ୍ରମାଣେ
ବର୍ଣ୍ଣିବ ନିଗମ ବଚନେ । ଶୁଣ ରାଜନ ସାବଧାନେ । ୦ ।

ଶ୍ରୀନାରଦ ଉବାଚ—

ଶୁକୁସୀ ଯଜ୍ଞ-ଶତ୍ରୁ ବୃନ୍ଦ
କୁନ୍ତୀ-ନନ୍ଦନ ଶୁଣ ବନ୍ଦ
କହନ୍ତି ବ୍ରହ୍ମାଙ୍କ କୁମର
ଅଶେଷ ଜ୍ଞାନ ଧର୍ମ୍ମ ସାର
ବ୍ରାହ୍ମଣ କେହୁ କର୍ମ୍ମ ନିଷ୍ଠ
ତପ ସାଧକେ କେ ପ୍ରତିଷ୍ଠ
ବେଦ ପଠନେ କରି ସିଦ୍ଧି
କେ ଜ୍ଞାନ ଅବା ଯୋଗ ସାଧି ।୧।
ଗୃହସ୍ଥ ପିତୃ-ଶ୍ରାଦ୍ଧ କାଳେ
ଜ୍ଞାନୀ ପୁରୁଷ ଯେବେ ମିଳେ
ତାହାଙ୍କୁ ହବ୍ୟ କବ୍ୟ ଦାନ
ଶ୍ରାଦ୍ଧେ ଅନନ୍ତ ହୋଏ ପୁଣ୍ୟ
ଜ୍ଞାନୀ ଅଭାବେ ଯଥାକ୍ରମେ
ଯେ ବସେ ଥାନ୍ତି ନିଜଧର୍ମ୍ମେ
ତାହାଙ୍କୁ ଯଥା ଯୋଗ୍ୟ ଦେଇ
ତେବେ ଉଚିତ ଫଳ ପାଇ । ୨ ।
ଶ୍ରାଦ୍ଧ ଦେବତା କାର୍ଯ୍ୟେ ଦୁଇ
ବରିବ ବିପ୍ରଙ୍କୁ ଦେବା ପାଇଁ
ପିତୃକାର୍ଯ୍ୟେ ତିନି ବିପ୍ରଙ୍କୁ ସ୍ଥାନେ ବରି
ଅଭାବେ ଏକ ଏକ କରି
ଉତ୍ତମ ଦ୍ରବ୍ୟ ଭୁଞ୍ଜାଇବ
ଶ୍ରାଦ୍ଧେ ବିସ୍ତର ନ କରିବ । ୩ ।

ଦେଶକାଲୋଚିତଶ୍ରଦ୍ଧାଦ୍ରବ୍ୟପାତ୍ରାର୍ହଣାନି ଚ ।
ସମ୍ୟଗ୍‌ଭବନ୍ତି ନୈତାନି ବିସ୍ତରାତ୍‌ ସ୍ୱଜନାର୍ପଣାତ୍‌ । ୪ ।
ଦେଶେ କାଲେ ଚ ସମ୍ପ୍ରାପ୍ତେ ମୁନ୍ୟନ୍ନଂ ହରିଦୈବତମ୍‌ ।
ଶ୍ରଦ୍ଧୟା ବିଧିବତ୍‌ ପାତ୍ରେ ନ୍ୟସ୍ତଂ କାମଧୁଗକ୍ଷୟମ୍‌ । ୫ ।
ଦେବର୍ଷି ପିତୃଭୂତେଭ୍ୟ ଆତ୍ମନେ ସ୍ୱଜନାୟ ଚ ।
ଅନ୍ନଂ ସଂବିଭଜନ୍‌ ପଶ୍ୟେତ୍‌ ସର୍ବଂ ତତ୍ପୁରୁଷାତ୍ମକମ୍‌ । ୬ ।
ନ ଦଦ୍ୟାଦାମିଷଂ ଶ୍ରାଦ୍ଧେ ନ ଚାଦ୍ୟାଦ୍ଧର୍ମ୍ମତତ୍ତ୍ୱବିତ୍‌ ।
ମୁନ୍ୟନ୍ନୈଃ ସ୍ୟାତ୍‌ ପରା ପ୍ରୀତିର୍ଯଥା ନ ପଶୁହିଂସୟା । ୭ ।
ନୈତାଦୃଶଃ ପରୋ ଧର୍ମ୍ମୋ ନୃଣାଂ ସଦ୍ଧର୍ମ୍ମମିଚ୍ଛତାମ୍‌ ।
ନ୍ୟାସୋ ଦଣ୍ଡସ୍ୟ ଭୂତେଷୁ ମନୋବାକ୍‌କାୟଜସ୍ୟ ଯଃ । ୮ ।

---

ସ୍ୱଜନାଙ୍କର ଅନୁରୋଧରେ ଭୋଜ୍ୟା ବାହୁଲ୍ୟ କଲେ ଦେଶ କାଳୋଚିତ ଶ୍ରଦ୍ଧା, ଦ୍ରବ୍ୟ ଏବଂ ବ୍ରାହ୍ମଣାଦି ସୁଜନ ଉତ୍ତମରୂପେ ସମ୍ପାଦିତ ହୁଏ ନାହିଁ । ୪ ।

ଶ୍ରାଦ୍ଧୋଚିତ ଦେଶକାଳ ପ୍ରାପ୍ତ ହେଲେ ଅରଣ୍ୟଜାତ ନୀବାରାଦି ନିର୍ମିତ ବିଷ୍ଣୁ ଦୈବତ ଅନ୍ନ ଶ୍ରଦ୍ଧା ସହକାରେ ଯଥାବିଧି ସୁପାତ୍ରରେ ଅର୍ପଣକଲେ ତାହା ଅଭିଳଷିତ ବସ୍ତୁ ପ୍ରଦାନକରେ ଏବଂ ଅକ୍ଷୟହୁଏ । ୫

ଦେବ, ଋଷି, ପିତୃଗଣ, ତିର୍ଯ୍ୟଗାଦି ଜୀବ, ସ୍ୱୟଂ ଓ ସ୍ୱଜନାଦିଙ୍କ ଉଦ୍ଦେଶ୍ୟରେ ଯଥା ସମ୍ଭବ ଅନ୍ନ ବିଭାଗ କରି ଦେବ ଏବଂ ସମସ୍ତଙ୍କୁ ନାରାୟଣ ସ୍ୱରୂପ ଦେଖିବ । ୬ ।

ଧର୍ମଜ୍ଞବ୍ୟକ୍ତି ଶ୍ରାଦ୍ଧ ଦିବସରେ ଆମିଷ ଦ୍ରବ୍ୟ କାହାରିକୁ ଦେବେ ନାହିଁ କିମ୍ବା ନିଜେ ଭୋଜନ କରିବେ ନାହିଁ । ନିରାମିଷ ନୀବାରଧାନ୍ୟର ପ୍ରସ୍ତୁତ ଅନ୍ନରେ ଶ୍ରାଦ୍ଧରେ ଅର୍ଚ୍ଚିତ ଦେବତାମାନଙ୍କର ଯେପରି ପ୍ରୀତି ଜନ୍ମେ ପଶୁ ହିଂସାରେ ସେପରି ପ୍ରୀତି ଜନ୍ମେ ନାହିଁ । ୭ ।

ଯେଉଁମାନେ ସାଧୁ, ଧର୍ମକାମୀ ସେମାନେ ମନୁଷ୍ୟର ଶ୍ରେଷ୍ଠ ଧର୍ମ ସ୍ୱରୂପ ମାନସିକ, ବାଚନିକ ଓ କାୟିକ ଏହି ତ୍ରିବିଧ ପ୍ରକାର ପ୍ରାଣୀ ହିଂସା ତ୍ୟାଗ କରିବେ । ୮ ।

---

ଯେ ଦ୍ରବ୍ୟ ଦେଶକାଳୋଚିତ
କି ଅବା ଶ୍ରାଦ୍ଧ ଅନୁମତ
ଯେ ପାତ୍ର ଯେବା ଅର୍ହଣ
ବିସ୍ତରେ ନୁହଇ ଘଟଣ
ଏମନ୍ତ ଦେବ ପିତୃପତେ
ଯେବା ପୂଜନ୍ତି ହବ୍ୟ କବ୍ୟ
ଉତ୍ତମ ଫଳ ସେ ଲଭନ୍ତି
ଯେ ହବେ ସଂଯାଦ୍ଧ ତରନ୍ତି । ୪
ଏଣୁ ଯେ ଦେଶ କାଳ ପାତ୍ରେ
ଆମିଷ ବର୍ଜି ବନଜାତେ

ଯଥା ସଂସ୍କାରେ ଦେଇ ଅନ୍ନ
ବିଷ୍ଣୁଙ୍କୁ କରି ନିବେଦନ
ଶ୍ରଦ୍ଧାରେ ସତ ପାତ୍ରେ ଦେଇ
ସେ ଶ୍ରାଦ୍ଧ କାମଧେନୁ ହୋଇ
ଅକ୍ଷୟ ଲଭନ୍ତି କଲ୍ୟାଣ
ଏ ବାକ୍ୟ ନିଗମ ପ୍ରମାଣ । ୫
ଦେବ ବ୍ରାହ୍ମଣ ପିତୃ ଭୂତେ
ଆତ୍ମା ସ୍ୱଜନ ଜନ ଯେତେ
ଏହାଙ୍କୁ ବିଷ୍ଣୁ ଭାବେ ମଣି
ସନ୍ତୋଷେ ଦେବ ଅନ୍ନ ପାଣି । ୬

ଯା ଠାରୁ ଧର୍ମ୍ମ ଉପଦେଶେ
ଶ୍ରାଦ୍ଧ କରିବ ନିରାମିଷେ
ଯେ ଧର୍ମ ଲଭି ନିରାମିଷେ
ସେ କାହିଁ ଲଭି ପଶୁହିଂସେ । ୭
ସୁଧର୍ମ୍ମ ଇଚ୍ଛା ଯାର ଥିବ
କେବେହେଁ ପଶୁ ନ ହିଂସିବ
ମାନସ କାୟିକ ବଚନେ
ନ କରି ପଶୁଙ୍କୁ ହିଂସନେ । ୮

ଏକେ କର୍ମ୍ମମୟାନ୍ ଯଜ୍ଞାନ୍ ଜ୍ଞାନିନୋ ଯଜ୍ଞବିତ୍ତମାଃ ।
ଆତ୍ମସଂଯମନେଽନୀହା ଜୁହ୍ୱତି ଜ୍ଞାନଦୀପିତେ ୯ ।
ଦ୍ରବ୍ୟଯଜ୍ଞୈର୍ୟକ୍ଷ୍ୟମାଣଂ ଦୃଷ୍ଟ୍ୱା ଭୂତାନି ବିଭ୍ୟତି
ଏଷ ମାଽକରୁଣୋ ହନ୍ୟାଦତଜ୍ଜ୍ଞୋ ହ୍ୟସୁତୃପ୍ ଧ୍ରୁବମ୍ । ୧୦ ।
ତସ୍ମାଦ୍ଦୈବୋପପନ୍ନେନ ମୁନ୍ୟନ୍ନେନାପି ଧର୍ମବିତ୍ ।
ସନ୍ତୁଷ୍ଟୋଽହରହଃ କୁର୍ଯ୍ୟାନ୍ନିତ୍ୟନୈମିତ୍ତିକୀଃ କ୍ରିୟାଃ । ୧୧ ।
ବିଧର୍ମ୍ମଃ ପରଧର୍ମ୍ମଶ୍ଚ ଆଭାସ ଉପମାଚ୍ଛଳଃ ।
ଅଧର୍ମ୍ମଶାଖାଃ ପଞ୍ଚେମା ଧର୍ମ୍ମଜ୍ଞୋଽଧର୍ମବତ୍ ତ୍ୟଜେତ୍ । ୧୨ ।
ଧର୍ମବାଧୋ ବିଧର୍ମଃ ସ୍ୟାତ୍ ପରଧର୍ମୋଽନ୍ୟଚୋଦିତଃ ।
ଉପଧର୍ମ୍ମସ୍ତୁ ପାଷଣ୍ଡୋ ଦମ୍ଭୋ ବା ଶବ୍ଦଭିଚ୍ଛଳଃ । ୧୩ ।

---

ଯେଉଁମାନେ ଯଜ୍ଞତତ୍ତ୍ୱ ଅବଗତଥାନ୍ତି ସେହି ନିଷ୍କାମୀ ଜ୍ଞାନୀମାନେ ଜ୍ଞାନ ପ୍ରଦୀପ୍ତ ଅର୍ଥାତ୍ ଆତ୍ମ ସଂଯମ ସ୍ୱରୂପ ଅଗ୍ନିରେ କର୍ମ ସମୂହକୁ ଆହୁତି ପ୍ରଦାନ କରିଥାନ୍ତି । ୯ ।

ହିଂସାତ୍ମକ ଯଜ୍ଞ ସମୂହ ଦ୍ୱାରା ମନୁଷ୍ୟଙ୍କୁ ନାନାବିଧ ଯଜ୍ଞାନୁଷ୍ଠାନ କରିବାର ଦେଖିଲେ ପଶୁମାନେ ଓ ଭୂତମାନେ ଭୀତ ହୋଇଥାନ୍ତି ଏବଂ ସେମାନେ ମନେ କରନ୍ତି ଏ ବ୍ୟକ୍ତି ଯଥାର୍ଥରେ ଯଜ୍ଞତତ୍ତ୍ୱ ଅବଗତ ନୁହେଁ । ଏ ବ୍ୟକ୍ତି ନିଜର ପ୍ରାଣର ତୃପ୍ତି ସାଧନରେ ତତ୍ପର । ଅତଏବ ଏ ନିଷ୍ଠୁର ବ୍ୟକ୍ତି ନିଶ୍ଚୟ ଆମ୍ଭମାନଙ୍କୁ ବଧ କରିବ । ୧୦ ।

ସୁତରାଂ ଧର୍ମଜ୍ଞ ବ୍ୟକ୍ତି ଦୈବବଶରେ ହିଂସା ବର୍ଜିତ ଭାବରେ ସନ୍ତୁଷ୍ଟ ଚିତ୍ତରେ ନୀବାରାଦି ସାମାନ୍ୟ ଅନ୍ନ ଦ୍ୱାରା ନିତ୍ୟ ନୈମିତ୍ତିକ କ୍ରିୟା ଅନୁଷ୍ଠାନ କରିବେ । ୧୧ ।

ଧର୍ମଜ୍ଞ ବ୍ୟକ୍ତି ବିଧର୍ମ, ପରଧର୍ମ, ଆଭାଷ, ଉପମ ଓ ଛଳ ଏହି ପଞ୍ଚବିଧ ଅଧର୍ମ ଶାଖାକୁ ସାକ୍ଷାତ୍ ଅଧର୍ମ ବୋଲି ପରିତ୍ୟାଗ କରିବେ । ୧୨ ।

ଧର୍ମ ପ୍ରତି ବାଧା, ବିଧର୍ମ, ଅର୍ଥାତ୍ ଯେଉଁ କାର୍ଯ୍ୟ ଅନୁଷ୍ଠାନ କଲେ ସ୍ୱଧର୍ମରେ ହାନି ଘଟେ ତାହା ବିଧର୍ମ । ଯାହା ଜଣକ ପକ୍ଷରେ ବିହିତ କର୍ମ, ତାହା ଅନ୍ୟ ପକ୍ଷରେ ପରଧର୍ମ, ଯାହା କ୍ଷତ୍ରିୟ ପକ୍ଷରେ 'ସ୍ୱଧର୍ମ', ତାହା ବ୍ରାହ୍ମଣ ପକ୍ଷରେ 'ପରଧର୍ମ', ପାଷାଣ୍ଡ ବା ଦମ୍ଭ ପ୍ରକାଶ 'ଉପଧର୍ମ' ('ଉପମା'), ଶବ୍ଦର

---

ଯଜ୍ଞର ଫଳ ସେ ଜାଣନ୍ତି
ଅନିତ୍ୟ କର୍ମମୟ ଚିନ୍ତି
ଆତ୍ମ ସଂଯମ ଅଗ୍ନି ଜାଳି
ଇନ୍ଦ୍ରିୟ-ଅର୍ଥ ଘୃତ ଢାଳି
ଏ ଜ୍ଞାନ ଯଜ୍ଞେ ଦୃଢ କରି
ବସ୍ତୁ-ମାୟାରୁ ଯାନ୍ତି ତରି ।୯
ଯେ ଦ୍ରବ୍ୟମୟ ଯଜ୍ଞ କରେ
ତାହାଙ୍କୁ ଦେଖି ପ୍ରାଣୀ ଡରେ

ଏହାର ଦେହ ଜ୍ଞାନ ନାହିଁ
ଆତ୍ମ ଜୀବନ ରଖେ କାହିଁ ।୧୦
ଏ ଘେନି ଦୟା ଯାର ଚିତ୍ତେ
ଯଜ୍ଞ କରିବ ମୁନିମତେ । ୧୧
ବିଧର୍ମ୍ମ ପରଧର୍ମ ବେନି
ଆଭାସ ଉପମାକୁ ଘେନି
ଛଳ ସମେତ ପାଞ୍ଚ ଜାଣ
ଅଧର୍ମ୍ମ ଶାଖା ଏ ପ୍ରମାଣ ।୧୨

ଯେ ଧର୍ମ୍ମ ସ୍ୱଧର୍ମ୍ମକୁ ବାଧା
ବିଧର୍ମ୍ମ ଜାଣି ଛାଡ଼ ଶ୍ରଦ୍ଧା,
ଯେ ଧର୍ମ୍ମ ପରପାଇଁ ବିଧି
ସେ ଧର୍ମ୍ମ କେବେହେଁ ନ ସାଧି
ପାଷଣ୍ଡ ଧର୍ମ୍ମ ଉପଧର୍ମ୍ମ
ଦମ୍ଭ ମସ୍ତରେ ଯେ ବା କର୍ମ୍ମ;
ଶାସ୍ତ୍ରର ତତ୍ତ୍ୱ ନ ବିଚାରି
ବାହ୍ୟେ ଧର୍ମ୍ମର ଧ୍ୱଜ ଧରି

ଯସ୍ତ୍ୱିଚ୍ଛୟା କୃତଃ ପୁଂଭିରାଭାସୋ ହ୍ୟାଶ୍ରମାତ୍ ପୃଥକ୍ ।
ସ୍ୱଭାବବିହିତୋ ଧର୍ମ୍ମ କସ୍ୟ ନେଷ୍ଟଃ ପ୍ରଶାନ୍ତୟେ । ୧୪ ।
ଧର୍ମ୍ମାର୍ଥମପି ନେହେତ ଯାତ୍ରାର୍ଥଂ ବାଽଧନୋ ଧନମ୍ ।
ଅନୀହାନୀହମାନସ୍ୟ ମହାହେରିବ ବୃତ୍ତିଦା । ୧୫ ।
ସନ୍ତୁଷ୍ଟସ୍ୟ ନିରୀହସ୍ୟ ସ୍ୱାତ୍ମାରାମସ୍ୟ ଯତ୍ସୁଖମ୍ ।
କୁତସ୍ତତ୍କାମଲୋଭେନ ଧାବତୋଽର୍ଥେହୟା ଦିଶଃ । ୧୬ ।
ସଦା ସନ୍ତୁଷ୍ଟମନସଃ ସର୍ବାଃ ଶିବମୟା ଦିଶଃ ।
ଶର୍କରାକଣ୍ଟକାଦିଭ୍ୟୋ ଯଥୋପାନତ୍ପଦଃ ଶିବମ୍ । ୧୭ ।
ସନ୍ତୁଷ୍ଟଃ କେନ ବା ରାଜନ୍ ନ ବର୍ତ୍ତେତାପି ବାରିଣା ।
ଔପସ୍ଥ୍ୟଜୈହ୍ୱ୍ୟକାର୍ପଣ୍ୟାଦ୍ଗୃହପାଳାୟତେ ଜନଃ । ୧୮ ।

---

ଯଥାର୍ଥ ଅର୍ଥ ଗୋପନ କରି ପ୍ରକାରାନ୍ତରେ ବ୍ୟାଖ୍ୟା କରିବା 'ଛଳ', ଇଚ୍ଛା ପୂର୍ବକ ଆଶ୍ରମ ଧର୍ମ ବ୍ୟତିକ୍ରମ କରିବା 'ଆଭାସ' ନାମରେ କଥିତ । ପ୍ରକୃଷ୍ଟ ଶାନ୍ତିଲାଭ ନିମନ୍ତେ ସ୍ୱ ସ୍ୱ ଧର୍ମାନୁଷ୍ଠାନ କରିବାହିଁ ଉଚିତ ।୧୩,୧୪

ଧନ ହୀନ ବ୍ୟକ୍ତି ଜୀବିକା ବା ଧର୍ମାନୁଷ୍ଠାନ ନିମନ୍ତେ ଧନଲାଭର ଚେଷ୍ଟା କରିବେ ନାହିଁ । ନିଷ୍କାମ ବ୍ୟକ୍ତିର ନିଷ୍କାମବୃତ୍ତି ମହା ଅଜଗରର ଜୀବିକା ତୁଲ୍ୟ । ୧୫ ।

ସନ୍ତୁଷ୍ଟ, ଚେଷ୍ଟାଶୂନ୍ୟ, ଏବଂ ଆତ୍ମାରାମବ୍ୟକ୍ତିମାନେ ଯେଉଁ ସୁଖ ଲାଭ କରିଥାନ୍ତି, କାମ ଓ ଲୋଭର ବଶବର୍ତ୍ତୀ ଅର୍ଥଲିପ୍ସୁ ବ୍ୟକ୍ତିମାନଙ୍କର ସେ ସୁଖ କାହିଁ ? ଯେପରି ଯେଉଁ ବ୍ୟକ୍ତି ପାଦରେ ଚର୍ମପାଦୁକା ପିନ୍ଧିଥାଏ । ତାର ଯେପରି କଣ୍ଟକ ବା କଙ୍କରର ଭୟ ନ ଥାଏ, ସେହିପରି ସର୍ବଦା ସନ୍ତୁଷ୍ଟ ଚିତ୍ତ ବ୍ୟକ୍ତିର ଚତୁର୍ଦ୍ଦିଗ ମଙ୍ଗଳମୟ । ୧୬,୧୭ ।

ହେ ରାଜନ ! ସନ୍ତୁଷ୍ଟଚିତ୍ତ ବ୍ୟକ୍ତିର କି ଉପାୟ ନ ଥାଇ ପାରେ ? ସେ କେବଳ ଜଳପାନକରି ଜୀବନ ଧାରଣ କରିପାରେ । ରସନା ଓ ଜନନେନ୍ଦ୍ରିୟ ବଶବର୍ତ୍ତୀ ହୋଇ ଲୋକେ କୁକ୍କୁର ତୁଲ୍ୟ ଆଚରଣ

---

ଯେ ଶାସ୍ତ୍ର ବାକ୍ୟ ଭେଦ କରି
ଛଳ ଧର୍ମ ଯେ ତାକୁ ବୋଲି;
ଧର୍ମ୍ମ ଆଭାସ ମାତ୍ରା ଧରି
ଆଶ୍ରମ-ଧର୍ମ୍ମ ପରିହରି
ସ୍ୱଇଚ୍ଛେ ଏକ ଧର୍ମ୍ମ କରି
ଆଭାସ-ଧର୍ମ୍ମ ତାକୁ ବୋଲି;
ଯେ ଧର୍ମେ ଆତ୍ମା ଶାନ୍ତି କରେ
କେତାହାନାହୋନସୁମରେ ।୧୮-୧୪
ଧନହୀନ ପ୍ରାଣୀ ଯେବେ ହୋଇ
ଧର୍ମ୍ମ ବା ଜୀବିକାର ପାଇଁ

ଚେଷ୍ଟା ନ କରେ କଭୁ ଧନେ;
ସନ୍ତୋଷ ଅଳସ ଭୋଜନେ
ମହାହି ଅଜଗର ଯେସନ୍ତେ
ଆହାର ମିଳେ ଅଳର୍ଥନେ ।୧୫।
ସନ୍ତୋଷ ଆତ୍ମା ଯେବା ନରେ
ଅତ୍ୟନ୍ତ ପଶନ୍ତି ସୁଖ-ଘରେ
ଯେ ଧନ ଲୋଭେ ଅସନ୍ତୋଷ
ଭ୍ରମେ ଭ୍ରମଇ ଅଷ୍ଟଦିଶ ।୧୬।
ସେ ଦିଶ ତାରେ ବିଷ ହୋଏ
ସର୍ବ ସନ୍ତୋଷ ସୁଖମୟେ

ଚର୍ମ୍ମ ପାଦୁକା ଯା ଚରଣେ
ସେ ଯେସନ୍ତେ କଣ୍ଟକ ପାଷାଣେ
ଭ୍ରମେ ନ ଲଭେ କିଛି ଦୁଃଖ
ରାତ୍ର-ଦିବସେ ଲଭେ ସୁଖ ।୧୭।
ଯେ ଜିହ୍ୱା ଉପସ୍ଥକୁ ଜିଣି
ସନ୍ତୋଷ ଲଭଇ ଯେ ପ୍ରାଣୀ
ସେ ପ୍ରାଣୀ ଇହ-ପରଲୋକେ
ଅଶେଷ ଫଳ ଭୁଞ୍ଜେ ଏକେ

ଅସନ୍ତୁଷ୍ଟସ୍ୟ ବିପ୍ରସ୍ୟ ତେଜୋ ବିଦ୍ୟା ତପୋ ଯଶଃ ।
ସ୍ରବନ୍ତୀନ୍ଦ୍ରିୟଲୌଲ୍ୟେନ ଜ୍ଞାନଞ୍ଚୈବାବକୀର୍ଯ୍ୟତେ । ୧୯ ।
କାମସ୍ୟାନ୍ତଂ ହି କ୍ଷୁତ୍‌ତୃଡ୍‌ଭ୍ୟାଂ କ୍ରୋଧସ୍ୟୈତତ୍‌ଫଳୋଦୟାତ୍ ।
ଜନୋ ଯାତି ନ ଲୋଭସ୍ୟ ଜିତ୍ୱା ଭୁକ୍ତ୍ୱା ଦିଶୋ ଭୁବଃ । ୨୦ ।
ପଣ୍ଡିତା ବହବୋ ରାଜନ୍ ବହୁଜ୍ଞାଃ ସଂଶୟଚ୍ଛିଦଃ ।
ସଦସସ୍ପତୟୋଽପ୍ୟେକେ ଅସନ୍ତୋଷାତ୍ ପତନ୍ତ୍ୟଧଃ । ୨୧ ।
ଅସଙ୍କଳ୍ପାଜ୍ଜୟେତ୍ କାମଂ କ୍ରୋଧଂ କାମବିବର୍ଜନାତ୍ ।
ଅର୍ଥାନର୍ଥେକ୍ଷୟା ଲୋଭଂ ଭୟଂ ତତ୍ତ୍ୱାବମର୍ଷଣାତ୍ । ୨୨ ।
ଆନ୍ୱୀକ୍ଷିକ୍ୟା ଶୋକମୋହୌ ଦମ୍ଭଂ ମହଦୁପାସୟା ।
ଯୋଗାନ୍ତରାୟାନ୍ ମୌନେନ ହିଂସାଂ କାମାଦ୍ୟନୀହୟା । ୨୩ ।

କରିଥାନ୍ତି । ଇନ୍ଦ୍ରିୟ ବଶବର୍ତ୍ତୀ ହୋଇ ବ୍ରାହ୍ମଣର ତେଜ, ବିଦ୍ୟା, ତପସ୍ୟା, ଯଶ ସ୍ଖଳିତ ହୁଏ, ଏବଂ ଜ୍ଞାନ ମଧ୍ୟ ଅଧଃକ୍ଷିପ୍ତ ହୁଏ । ୧୮,୧୯ ।

ମନୁଷ୍ୟ କ୍ଷୁଧା ଓ ତୃଷ୍ଣା ଦ୍ୱାରା କାମର ଅନ୍ତ ପ୍ରାପ୍ତ ହୁଏ, ଅର୍ଥାତ୍ କ୍ଷୁଧା ଓ ତୃଷ୍ଣା ପ୍ରବଳ ହେଲେ ଅନ୍ନ ଜଳ ବ୍ୟତିତ ଅନ୍ୟ କୌଣସି ଦ୍ରବ୍ୟରେ ତାହାର ଆକାଙ୍କ୍ଷା ନ ଥାଏ । ହିଂସା ଦ୍ୱାରା କ୍ରୋଧ ନିବୃତ୍ତ ହୁଏ । ଅର୍ଥାତ୍ କ୍ରୋଧର ଫଳ ପରପୀଡ଼ନାଦି ନିଷ୍ପନ୍ନ ହେଲେ ମନୁଷ୍ୟର କ୍ରୋଧ ଅନ୍ତ ହୁଏ, ମାତ୍ର ପୃଥିବୀର ଦଶଦିଗ ଜୟ ଓ ଭୋଗ କଲେ ମଧ୍ୟ ରସନାର ତୃପ୍ତି ହୁଏ ନାହିଁ । ୨୦ ।

ହେ ମହାରାଜ । ଯେଉଁ ପଣ୍ଡିତମାନେ ଅନ୍ୟମାନଙ୍କର ସଂଶୟ ଦୂର କରିପାରନ୍ତି ଏବଂ ବିଶେଷ ବିଜ୍ଞ ଏବଂ ସଭାସ୍ଥଳରେ ନେତା, ଅସନ୍ତୋଷ ହେତୁ ସେମାନଙ୍କର ସୁଦ୍ଧା ଅଧଃ ପତନ ଘଟିଥାଏ । ୨୧ ।

ମନୁଷ୍ୟ ସଂକଳ୍ପ ଶୂନ୍ୟତା ଦ୍ୱାରା କାମକୁ ଜୟ କରିବ, କାମ ତ୍ୟାଗ କରି କ୍ରୋଧକୁ ଅର୍ଥକୁ ଅନର୍ଥ ବୋଲି ଜ୍ଞାନକରି ଲୋଭକୁ ଜୟ କରିବ, ତତ୍ତ୍ୱଜ୍ଞାନ ଦ୍ୱାରା ଭୟକୁ ଆତ୍ମା ଓ ଅନାତ୍ମା ବିଚାର ଦ୍ୱାରା ଶୋକ ଓ ମୋହକୁ, ସାତ୍ତ୍ୱିକ ଜନ ସେବା ଦ୍ୱାରା ଦମ୍ଭକୁ ଜୟକରିବ । ମୌନାବଲମ୍ବନ କରି ଲୋକ ବାର୍ତ୍ତାଦି ଯୋଗ ବିଘ୍ନକାରୀ ଭାବ ସମୁହକୁ, କାମାଦି ନିଶ୍ଚେଷ୍ଟତା ଦ୍ୱାରା ହିଂସାକୁ ଜୟ ଦ୍ୱାରା ଆଧି ଭୌତିକ ଦୁଃଖକୁ

| | | |
|---|---|---|
| ଯେ ବିପ୍ର ହୋଏ ଅସନ୍ତୋଷ | ଅଧୋଗମନ ତାହାଙ୍କର | ମହାନ୍ତ ସେବା ଦମ୍ଭ ନାଶେ |
| ତା ତେଜ ତପବିଦ୍ୟାନାଶ ୧୮,୧୯। | ଶୁଣ ସୁମନେ ନୃପବର ।୨୦,୨୧। | ଯେ ଭାବେ କୈବଲ୍ୟ ପ୍ରକାଶେ |
| ପ୍ରାଣୀ ଯେ କ୍ଷୁଧା ତୃଷା ହେଲେ | କାମକୁ ଜିଣେ ଅସଙ୍କଳ୍ପେ | ଯୋଗ ସାଧନେ ଯେତେ ବିଘ୍ନ |
| କାମକୁ ଜିଣେ ଅନ୍ନ-ଜଳେ | ପ୍ରାଣୀ ନାଶଇ ଯାର ଦର୍ପେ | ତାହାକୁ ଖଣ୍ଡଇ ମଉନ |
| କ୍ରୋଧକୁ ଜିଣେ କ୍ରୋଧ ଫଳେ | କାମର କ୍ଷୟେ କ୍ରୋଧ ଯାଏ | ହିଂସାକୁ ଜିଣେ କାମ ତ୍ୟାଗେ |
| ଲୋଭକୁ ଜିଣି ନୋହେ ବଳେ | ଅର୍ଥ ବର୍ଜ୍ଜନେ ଲୋଭ କ୍ଷୟେ | କାମଜିଣଇଯୋଗମାର୍ଗେ ।୨୨,୨୩। |
| ପଣ୍ଡିତ ଜନ ହୋଇ ଯେବେ | ଭୟକୁ ଜିଣେ ତତ୍ତ୍ୱଜ୍ଞାନେ | |
| ମରନ୍ତେ ଅସନ୍ତୋଷ ଭାବେ | ଶୋକ ମୋହକୁ ଜିଣି ଜ୍ଞାନେ | |

କୃପୟା ଭୂତଜଂ ଦୁଃଖଂ ଦୈବଂ ଜହ୍ୟାତ୍ ସମାଧିନା ।
ଆତ୍ମଜଂ ଯୋଗବୀର୍ଯ୍ୟେଣ ନିଦ୍ରାଂ ସତ୍ତ୍ୱନିଷେବୟା । ୨୪ ।
ରଜସ୍ତମଶ୍ଚ ସତ୍ତ୍ୱେନ ସତ୍ତ୍ୱଂଚୋପଶମେନ ଚ ।
ଏତତ୍ ସର୍ବଂ ଗୁରୌ ଭକ୍ତ୍ୟା ପୁରୁଷୋ ହ୍ୟଞ୍ଜସା ଜୟେତ୍ । ୨୫ ।
ଯସ୍ୟ ସାକ୍ଷାଦ୍ଭଗବତି ଜ୍ଞାନଦୀପପ୍ରଦେ ଗୁରୌ ।
ମର୍ତ୍ତ୍ୟାସଦ୍ଧୀଃ ଶ୍ରୁତଂ ତସ୍ୟ ସର୍ବଂ କୁଞ୍ଜରଶୌଚବତ୍ । ୨୬ ।
ଏଷ ବୈ ଭଗବାନ୍ ସାକ୍ଷାତ୍ ପ୍ରଧାନପୁରୁଷେଶ୍ୱରଃ ।
ଯୋଗେଶ୍ୱରୈର୍ବିମୃଗ୍ୟାଙ୍ଘ୍ରିର୍ଲୋକୋ ଯଂ ମନ୍ୟତେ ନରମ୍ । ୨୭ ।
ଷଡ୍ବର୍ଗସଂଯମୈକାନ୍ତାଃ ସର୍ବା ନିୟମଚୋଦନାଃ ।
ତଦନ୍ତା ଯଦି ନୋ ଯୋଗା ନାବହେୟୁଃ ଶ୍ରମାବହାଃ । ୨୮ ।

---

ସମାଧି ଦ୍ୱାରା ଆଧିଦୈବିକ ଦୁଃଖକୁ, ପ୍ରାଣାୟାମାଦି ଦ୍ୱାରା ଆଧ୍ୟାତ୍ମିକ ଦୁଃଖକୁ ସାତ୍ତ୍ୱିକ ଆହାର ଦ୍ୱାରା ନିଦ୍ରାକୁ ସତ୍ତ୍ୱ ଗୁଣଦ୍ୱାରା ରଜଃ ଓ ତମୋଗୁଣକୁ, ଉପଶମ ବା ଔଦାସୀନ୍ୟ ଦ୍ୱାରା ସତ୍ତ୍ୱ ଗୁଣକୁ ଏବଂ ଗୁରୁଭକ୍ତି ଦ୍ୱାରା ଏ ସମସ୍ତଙ୍କୁ ଅକ୍ଳେଶରେ ଜୟ କରାଯାଏ । ୨୪,୨୫ ।

ଗୁରୁ ସାକ୍ଷାତ୍ ଈଶ୍ୱର ସ୍ୱରୂପ ଜ୍ଞାନ ଦାୟକ, ତାଙ୍କୁ ଯେ ମନୁଷ୍ୟ ତୁଲ୍ୟ ମଣେ ତାହାର ସମସ୍ତ ଶାସ୍ତ୍ରଜ୍ଞାନ ହସ୍ତୀ ସ୍ନାନ ତୁଲ୍ୟ ବ୍ୟର୍ଥ ହୁଏ । ୨୬ ।

ଲୋକେ ଯେଉଁ ଗୁରୁଙ୍କୁ ମନୁଷ୍ୟ ବୋଲି ଭାବନ୍ତି, ସେ ଯଥାର୍ଥରେ ପ୍ରକୃତି ଓ ପୁରୁଷ ସ୍ୱରୂପ ସାକ୍ଷାତ୍ ଭଗବାନ୍ । ଯୋଗିଶ୍ରେଷ୍ଠମାନେ ତାହାଙ୍କର ପାଦପଦ୍ମ ଅନ୍ୱେଷଣ କରନ୍ତି । ୨୭ ।

ହେ ରାଜନ୍ ! ଇଷ୍ଟାପୂର୍ତ୍ତାଦି ଶାସ୍ତ୍ରୀୟ ବିଧିର ଉଦ୍ଦେଶ୍ୟ ଷଡ଼୍ବର୍ଗ ଜୟ କରିବା । ଯଦି କୌଣସି ବ୍ୟକ୍ତି ଇନ୍ଦ୍ରିୟ ସଂଯମୀ ହୋଇ ଧ୍ୟାନ ଧାରଣାଦି ସାଧନ କରି ନ ପାରେ ତେବେ ତାହାର ପରିଶ୍ରମ ମାତ୍ର ସାର । ୨୮ । *

---

| | | |
|---|---|---|
| ଦୟା ପ୍ରାଣିଙ୍କ ଭୟ ହରେ | ଯେ ଗୁରୁ ଜ୍ଞାନ ଦାନ ଦେଇ | ତାହାକୁ ନର ପ୍ରାୟ ମଣି |
| ତ୍ରିତାପ ସମାଧି ଫନ୍ଦରେ | ତାଙ୍କୁ ଯେ ମନୁଷ୍ୟ ଗଣଇ | ଅଧୋଗମନେ ଯାନ୍ତି ପ୍ରାଣୀ । ୨୭ । |
| ସଂଯମ ଦେହ ବ୍ୟାଧି ହରେ | ସେ ଯେତେ କର୍ମ କରେ ଦେହେ | ଏକାନ୍ତ ଭକ୍ତ ଯେଉଁ ପ୍ରାଣୀ |
| ନିଦ୍ରାକୁ ସାତ୍ତ୍ୱିକ ଆହାରେ । ୨୪ । | ନିଷ୍ଫଳ ହସ୍ତୀ ସ୍ନାନ ପ୍ରାୟେ । ୨୬ । | ସାଧଇ ଷଡ଼ ରିପୁ ଜିଣି |
| ରଜ ତମକୁ ସତ୍ତ୍ୱ ଗୁଣେ | ଯା ଦେହେ ପ୍ରଭୁ ଚକ୍ରଧର | ସର୍ବ ନିୟମ ସାଧି ଜାଣେ |
| ସତ୍ତ୍ୱକୁ ଉପଶମେ ଜିଣେ | ପ୍ରସନ୍ନ ପୁରୁଷ ଈଶ୍ୱର | ନିଗମ ବଚନ ପ୍ରମାଣେ |
| ଗୁରୁ ସେବନେ ସର୍ବ ଦୁଃଖେ | ତାର ଚରଣ ସେବା ଅର୍ଥେ | ଯେବା ନ ଭଜେ ନରହରି |
| ପ୍ରାଣୀ ତରନ୍ତି ଆତ୍ମା ସୁଖେ । ୨୫ । | ଅଜ୍ଞାନୀ ନୁହନ୍ତି ସମର୍ଥେ | ସେ ଭାର ଶ୍ରମେ ହୋଇ ସରି । ୨୮ । |

* (କାମ, କ୍ରୋଧ, ମୋହ, ଲୋଭ, ମଦ, ମାତ୍ସର୍ଯ୍ୟ ଇତ୍ୟାଦି ଷଡ଼ବର୍ଗ) ।

ଯଥା ବାର୍ତ୍ତାଦୟୋ ହ୍ୟର୍ଥା ଯୋଗସ୍ୟାର୍ଥଂ ନ ବିଭ୍ରତି ।
ଅନର୍ଥାୟ ଭବେୟୁଃ ସ୍ମ ପୂର୍ତ୍ତମିଷ୍ଟଂ ତଥାସତଃ । ୨୯ ।
ଯଶ୍ଚିତ୍ତବିଜୟେ ଯତ୍ତଃ ସ୍ୟାନ୍ନିଃସଙ୍ଗୋଽପରିଗ୍ରହଃ ।
ଏକୋ ବିବିକ୍ତଶରଣୋ ଭିକ୍ଷୁର୍ଭୈକ୍ଷ୍ୟମିତାଶନଃ । ୩୦ ।
ଦେଶେ ଶୁଚୌ ସମେ ରାଜନ୍ ସଂସ୍ଥାପ୍ୟାସନମାତ୍ମନଃ ।
ସ୍ଥିରଂ ସୁଖଂ ସମଂ ତସ୍ମିନ୍ନାସୀତର୍ଜ୍ୱଙ୍ଗ ଓମିତି । ୩୧ ।
ପ୍ରାଣାପାନୌ ସଂନିରୁଦ୍ଧ୍ୟାତ୍ ପୂରକୁମ୍ଭକରେଚକୈଃ ।
ଯାବନ୍ମନସ୍ତ୍ୟଜେତ୍ କାମାନ୍ ସ୍ୱନାସାଗ୍ରନିରୀକ୍ଷଣଃ । ୩୨ ।

---

ଯେପରି କୃଷି ପ୍ରଭୃତି ବ୍ୟାପାର ଓ ତହିଁର ଫଳ ମୋକ୍ଷ ସାଧନ କରି ନ ପାରେ ଅଥଚ ଅନର୍ଥ ଉତ୍ପାଦନ କରେ ସେହିପରି ବହିର୍ମୁଖ ପୁରୁଷ ଇଷ୍ଟପୂର୍ତ୍ତାଦି ଅର୍ଥାତ୍ ଯଜ୍ଞ ଓ କୂପ ବାପୀ ଖନନାଦି କର୍ମ ସ୍ୱର୍ଗାଦି ନଶ୍ୱର ଫଳ ଉତ୍ପାଦନ କରି ଥାନ୍ତି ହିଁ ଏ, ମୁକ୍ତି ସାଧନ କରିବାକୁ ସମର୍ଥ ହୁଏ ନାହିଁ । ୨୯ ।

ଯେ ଚିତ୍ତ ବିଜୟ କରିବାରେ ଉଦ୍ୟୋଗୀ ସେ ସଙ୍ଗହୀନ, ଅପ୍ରତିଗ୍ରାହୀ, ନିର୍ଜନବାସୀ, ଭିକ୍ଷାନ୍ନ ଦ୍ୱାରା ଅଳ୍ପାହାରୀ ଏବଂ ଏକାକୀ ସନ୍ନ୍ୟାସ ଅବଲମ୍ବନ କରିବେ । ୩୦ ।

ହେ ରାଜନ୍ ଯୁଧିଷ୍ଠିର ! ଜ୍ଞାନୀ, ସାଧକ ପବିତ୍ର ଓ ସମତଳ ସ୍ଥାନରେ ନିଜର ଆସନରେ ଉପବେଶନ କରି ସରଳ ଦେହରେ ସ୍ଥିରଭାବରେ ସୁଖାସୀନ ହୋଇ ପ୍ରଣବ ଉଚ୍ଚାରଣ କରୁ କରୁ ନିଜର ନାସିକାଗ୍ରରେ ଦୃଷ୍ଟି ସ୍ଥାପନ କରି ପୂରକ ଓ ରେଚକ ଦ୍ୱାରା ପ୍ରାଣ ଓ ଅପାନ ବାୟୁ ନିରୋଧ କରି ପ୍ରାଣାୟାମ କରିବେ ଏବଂ ଯେ ପର୍ଯ୍ୟନ୍ତ ମନ କାମ୍ୟ ବିଷୟ ପରିତ୍ୟାଗ ନ କରେ ସେ ପର୍ଯ୍ୟନ୍ତ ନାସାଗ୍ରରେ ଦୃଷ୍ଟି ନିବଦ୍ଧ କରି ରଖିବେ । ୩୧,୩୨ ।

---

କୃଷି ବଣିଜେ ଯେତେ ଅର୍ଥ
ଯୋଗେ ନୁହନ୍ତି ସମରଥ
ଏମନ୍ତ ଇଷ୍ଟ ପୂର୍ତ୍ତିମାନେ
ଅନର୍ଥ ହୁଅନ୍ତି ବହୁନେ ।୨୯।
ଚିତ୍ତ ଜିଣନ୍ତେ ଯତ୍ନ ଯାର
ନିଃସଙ୍ଗେ କରଇ ବିହାର
ହୁଏ ଅସଙ୍ଗ ମନ ସୁଖେ
ଯୋଗ ସାଧଇ ଅତିରେକେ
ଏକାନ୍ତେ ଏକସରେ ଥାଇ
ଅଳ୍ପ ଭୋଜନେ ତୋଷହୋଇ ।୩୦।
ଏକାନ୍ତେ ଶୁଚି ସମଦେଶେ
ବସିବ ଆସନ ଉଲ୍ଲାସେ
ପବିତ୍ର ସ୍ଥିର ସୁଖମନେ
ଓଁକାର କରି ଉଚ୍ଚାରଣେ
ବାମ ଚରଣ ମୂଳ ଦ୍ୱାରେ
ଦକ୍ଷିଣ ଜାନୁର ଉପରେ
ଦେଇ ଟେକିବ ଅସ୍ଥିଦଣ୍ଡ
ଭୁଜେ ଆମର୍ଷି ଜାନୁ ଖଣ୍ଡ
ପ୍ରାଣ ଅପାନ ବାୟୁ ବନ୍ଧେ
ରସନା ତୋଳି ତାଳୁ ମୂଳେ
ନିଶ୍ଚଳ ଧ୍ୟାନ ଦୃଷ୍ଟି ଏକେ
ସାଧିବ ପୂରକ କୁମ୍ଭକେ
ରେଚକେ କରି ତାକୁ ସମ
ନାସାଗ୍ରେ ସ୍ଥାପିବ ନୟନ ।୩୧,୩୨

ଯତୋ ଯତୋ ନିଃସରତି ମନଃ କାମହତଂ ଭ୍ରମତ୍ ।
ତତସ୍ତତ ଉପାହୃତ୍ୟ ହୃଦି ରୁନ୍ଧ୍ୟାଚ୍ଛନୈର୍ବୁଧଃ । ୩୩ ।
ଏବମଭ୍ୟସ୍ୟତଶ୍ଚିତ୍ତଂ କାଳେନାଳ୍ପୀୟସା ଯତେଃ ।
ଅନିଶଂ ତସ୍ୟ ନିର୍ବାଣଂ ଯାତ୍ୟନିନ୍ଧନବହ୍ନିବତ୍ । ୩୪ ।
କାମାଦିଭିରନାବିଦ୍ଧଂ ପ୍ରଶାନ୍ତାଖିଳବୃତ୍ତି ଯତ୍ ।
ଚିତ୍ତଂ ବ୍ରହ୍ମସୁଖସ୍ପୃଷ୍ଟଂ ନୈବୋତ୍ତିଷ୍ଠେତ କର୍ହିଚିତ୍ । ୩୫ ।
ଯଃ ପ୍ରବ୍ରଜ୍ୟ ଗୃହାତ୍ ପୂର୍ବଂ ତ୍ରିବର୍ଗାବପନାତ୍ ପୁନଃ ।
ଯଦି ସେବେତ ତାନ୍ ଭିକ୍ଷୁଃ ସ ବୈ ବାନ୍ତାଶ୍ୟପତ୍ରପଃ । ୩୬ ।
ଯୈଃ ସ୍ୱଦେହଃ ସ୍ମୃତୋଽନାତ୍ମା ମର୍ତ୍ତ୍ୟୋ ବିଟ୍‌କୃମିଭସ୍ମବତ୍ ।
ତ ଏନମାତ୍ମସାତ୍ କୃତ୍ୱା ଶ୍ଳାଘୟନ୍ତି ହ୍ୟସତ୍ତମାଃ । ୩୭ ।

---

ମନ କାମନାରେ ଆହତ ହୋଇ ନିଃସରଣ ପୂର୍ବକ ଯେଉଁ ଯେଉଁ ସ୍ଥାନରେ ଭ୍ରମଣ କରିବ, କର୍ତ୍ତବ୍ୟ ଯାଗରୁକ ସାଧକ ମନକୁ ସେହି ସେହି ସ୍ଥାନରୁ ଉପସଂହାର କରି କ୍ରମେ ହୃଦୟ ମଧ୍ୟରେ ଅବରୁଦ୍ଧ କରିବେ । ୩୩ ।

ଏହିପରି ନିରନ୍ତର ଅଭ୍ୟାସ କଲେ ଯତିର ଚିତ୍ତ ଅଳ୍ପକାଳ ମଧ୍ୟରେ ନିର୍ବାଣ ଅର୍ଥାତ୍ ଶାନ୍ତିପ୍ରାପ୍ତ ହୁଏ । ଯେପରି ଅଗ୍ନି କାଷ୍ଠକୁ ଦଗ୍‌ଧ କରି ନିର୍ବାଣ ପ୍ରାପ୍ତ ହୁଏ ମାନସିକ ଅବସ୍ଥା ସେହିପରି ହେବ ।୩୪।

କାମାଦିଦ୍ୱାରା ଅଦୂଷିତ ଚିତ୍ତ ବୃତ୍ତି ସମୂହ ପ୍ରଶମିତ ହୋଇ ବ୍ରହ୍ମସୁଖ ଲାଭ କରିବେ । ସେହି ଚିତ୍ତ ପୁନର୍ବାର ଉତ୍ଥିତ ହୁଏ ନାହିଁ । ୩୫ ।

ଯେଉଁ ସନ୍ନ୍ୟାସୀ ପ୍ରଥମେ ତ୍ରିବର୍ଗ ସାଧନ ଲାଗି ଗୃହ ପରିତ୍ୟାଗ ପୂର୍ବକ ସନ୍ନ୍ୟାସ ଗ୍ରହଣ କରେ ଏବଂ ପରେ ତ୍ରିବର୍ଗ ସାଧନରେ ଯତ୍ନବାନ୍ ହୁଏ ତେବେ ସେ ସନ୍ନ୍ୟାସୀ ନିର୍ଲଜ ଓ ଉଦ୍ଗାର ଭୋଜୀ ଅର୍ଥାତ୍ ବାନ୍ତି ଖାଇଲାପରି । ୩୬ ।

---

ଯାବତ କାମ ମନ ତ୍ୟଜେ
ତାବତ ସଂଯମକୁ ଭଜେ
ଏଣୁ ଯତ୍ନରେ ସ୍ଥାପି ମନ
ଅଳସ ଅଳପ ସଂଯମ
ଏମନ୍ତେ ସାଧି ନିରନ୍ତରେ
ସୁଖେ ମିଳଇ ମୋକ୍ଷ ଘରେ
କାଷ୍ଠ ବହୁନେ ଅଗ୍ନି ପ୍ରାୟେ
ସକଳ କାମ୍ ଲୀନ ହୋଏ ।୩୪,୩୩

ଯେ ଚିତ୍ତ ସର୍ବ ବୃତ୍ତି ତେଜେ
କାମାଦି ରିପୁକୁ ନ ଭଜେ
ସେ ଚିତ୍ତ ମିଶେ ବ୍ରହ୍ମ ସୁଖେ
କେବେହେଁ ନ ପଡ଼ଇ ଦୁଃଖେ
କେବେହେଁ ମାୟା ନ କଳଇ
ଅନ୍ତରେ ରହେ ସ୍ୱଚ୍ଛ ହୋଇ ।୩୫
ଯେ ପ୍ରାଣୀ ପୂର୍ବେ ଗୃହ ତେଜେ
ତ୍ରିବର୍ଗ ଛାଡ଼ି ବନ ଭଜେ

ପୁଣି ମିଳଇ ଗୃହେ ଯାଇ
ନିର୍ଲଜ୍ଜ ସେହୁ ବାନ୍ତି ଖାଇ ।୩୬।
ଏ ଦେହେ ସୁଖ ଯେ ଲୋଡ଼ନ୍ତି
ଅଜରାମର ପ୍ରାୟ ଚିନ୍ତି
ଜୀବନ ଅନ୍ତେ ଏ ଶରୀର
ଭସ୍ମ ପୁରୀଷ କୃମିସାର
ଏହାକୁ ସତ୍ୟ ପ୍ରାୟ ମଣି
ଅଧର୍ମେ ପଶନ୍ତି ଯେ ପ୍ରାଣୀ

ଗୃହସ୍ଥସ୍ୟ କ୍ରିୟାତ୍ୟାଗୋ ବ୍ରତତ୍ୟାଗୋ ବଟୋରପି ।
ତପସ୍ୱିନୋ ଗ୍ରାମସେବା ଭିକ୍ଷୋରିନ୍ଦ୍ରିୟଲୋଲତା । ୩୮ ।
ଆଶ୍ରମାପସଦା ହ୍ୟେତେ ଖଲ୍ୱାଶ୍ରମବିଡ଼ମ୍ବନାଃ ।
ଦେବମାୟାବିମୂଢ଼ାଂସ୍ତାନୁପେକ୍ଷେତାନୁକମ୍ପୟା । ୩୯ ।
ଆତ୍ମାନଂଚେଦ୍ ବିଜାନୀୟାତ୍ ପରଂ ଜ୍ଞାନଧୂତାଶୟଃ ।
କିମିଚ୍ଛନ୍ କସ୍ୟ ବା ହେତୋଃ ଦେହଂ ପୁଷ୍ଣାତି ଲମ୍ପଟଃ । ୪୦ ।
ଆହୁଃ ଶରୀରଂ ରଥମିନ୍ଦ୍ରିୟାଣି ହୟାନଭୀଷୂନ୍ ମନ ଇନ୍ଦ୍ରିୟେଶମ୍ ।
ବର୍ତ୍ମାନି ମାତ୍ରା ଧିଷଣାଞ୍ଚ ସୂତଂ ସତ୍ତ୍ୱଂ ବୃହଦ୍‌ବନ୍ଧୁରମୀଶସୃଷ୍ଟମ୍ । ୪୧ ।

---

ଯେଉଁମାନେ ପ୍ରଥମେ ଦେହକୁ ଅନାତ୍ମା, ମରଣଶୀଳ ଏବଂ ବିଷ୍ଠା, କୃମି ଓ ଭସ୍ମ ତୁଲ୍ୟ ମନେ କରନ୍ତି ସେମାନେ ପୁନର୍ବାର ଏହି ଦେହକୁ ଆତ୍ମା ମନେ କରି ପ୍ରଶଂସା କଲେ ସେମାନଙ୍କୁ ନିଶ୍ଚୟ ଅସାଧୁ ବୋଲି ବୋଲାଯିବ । ୩୭ ।

ଗୃହସ୍ଥ କ୍ରିୟା ତ୍ୟାଗ କଲେ, ବ୍ରହ୍ମଚାରୀ ବ୍ରତ ତ୍ୟାଗ କଲେ, ବାନପ୍ରସ୍ଥ ଗ୍ରାମବାସ କଲେ ଏବଂ ଭିକ୍ଷୁ ଇନ୍ଦ୍ରିୟ ଲୋଭ ପୋଷଣ କଲେ ସେମାନଙ୍କୁ ଆଶ୍ରମାଧମ ବୋଲି ବୋଲାଯିବ । ଏମାନେ ଆଶ୍ରମର ବିଡ଼ମ୍ବନା ଏବଂ ଦେବ ମାୟା ବିମୁଗ୍ଧ । ଏମାନଙ୍କୁ ଉପେକ୍ଷା କରିବ । ୩୮,୩୯ ।

ଯେଉଁମାନଙ୍କର ବାସନା ଜ୍ଞାନଦ୍ୱାରା କ୍ଷୟପ୍ରାପ୍ତ ହୋଇଥାଏ ଏବଂ ଯେଉଁ ବ୍ୟକ୍ତି ପରମାତ୍ମାଙ୍କୁ ଜାଣି ପାରି ଥାଏ ସେ ପୁନର୍ବାର କି ହେତୁ ଲମ୍ପଟ ହୋଇ କି ଅଭିଳାଷରେ ଦେହ ପୋଷଣ କରେ । ୪୦ ।

ପଣ୍ଡିତମାନେ ଶରୀରକୁ ରଥ, ଇନ୍ଦ୍ରିୟମାନଙ୍କ ରଥବାହକ ଘୋଟକ ଓ ମନକୁ ଇନ୍ଦ୍ରିୟ ପରିଚାଳକ ଲଗାମ ବା ବଲ୍‌ଗା, ଶବ୍ଦାଦିକୁ ଗନ୍ତବ୍ୟ ଦେଶ, ବୁଦ୍ଧିକୁ ସାରଥି, ଚିତ୍ତକୁ ଈଶ୍ୱର ସୃଷ୍ଟ ଦେହବ୍ୟାପୀ ବନ୍ଧନ ପ୍ରାଣ, ଅପାନ, ବ୍ୟାନ, ଉଦାନ, ସମାନ, ନାଗ, କୂର୍ମ, କୃକର, ଦେବଦତ୍ତ ଏବଂ ଧନଞ୍ଜୟ ଏହି ଦଶ

---

ତାହାକୁ ବୋଲି ମୂଢ ଜନ
ନିଷ୍ଫଳ ତାହାଙ୍କ ଜୀବନ ।୩୭।
ଗୃହସ୍ଥ ଗୃହ ଧର୍ମ ଛାଡ଼ି
ଅନ୍ୟ ଆଶ୍ରମେ ଲୋଭ ବଢ଼ି
ବ୍ରତକୁ ଛାଡ଼େ ବ୍ରହ୍ମଚାରୀ
ତପସ୍ୱୀ ଗ୍ରାମେ ବାସ କରି
ସନ୍ୟାସୀ ଇନ୍ଦ୍ରି ଲୋଭେ ରସେ
ଗ୍ରାମ ଗହନେ ଯେବେ ପଶେ
ଆଶ୍ରମ ଭ୍ରଷ୍ଟ ଏତେ ପ୍ରାଣୀ
ଏହାଙ୍କୁ ଆଶ୍ରମେ ନ ଗଣି
ଅଧର୍ମେ ବିଡ଼ମ୍ବନ କର୍ମ
ବିଷ୍ଣୁ ମାୟାରେ ହୋଇ ଭ୍ରମ

ବୁଲନ୍ତି ମାୟା ରୂପ ଧରି
ତାହାଙ୍କୁ ସମ୍ଭାଷ ନ କରି ।୩୮,୩୯
ପରମ ଜ୍ଞାନ ପଥେ ଥିନ୍ତି
ଯେ ଆତ୍ମା ତତ୍ତ୍ୱକୁ ଜାଣନ୍ତି
ସେ କି କାରଣେ ଦେହ ଧରି
ବହୁ ଭୋଜନେ ପୁଷ୍ଟ କରି ? ।୪୦।
ଏବେ ହୋ ଶୁଣ ଯୁଧିଷ୍ଠିର
ଏ ନର ଶରୀର ବେଭାର
ଦେହ ବହିଲି ଯେବା ଅର୍ଥ
କେବେହେଁ ନ ଭଜେ ତା ଚିତ୍ତ
ବିଧାତା ନିର୍ମାଣ ବିମାନ
ଏହା ନ ଜାଣେ ମୂର୍ଖଜନ

ଦେହକୁ ରଥ ପ୍ରାୟ ରଚି
ଦଶ ତୁରଙ୍ଗ ତହିଁ ଯୋଚି
ଦଶ ଇନ୍ଦ୍ରିୟ ଦଶ ବାଜୀ
ମନ ରଶ୍ମି ଏ ତହିଁ ଯୋଚି
ଶବ୍ଦ ସ୍ପର୍ଶ ରସ ଗନ୍ଧେ
ରୂପରେ ଚଳେ ଅନୁବନ୍ଧେ
ଯାଇଁ ମାର୍ଗରେ ରଥ ବାହି
ସାରଥିପଣେ ବୁଦ୍ଧି ରହି
ଏ ନର ଦେହ ବନ୍ଧ ଚିତ୍ତେ
ଛିନ୍ନ ବନ୍ଧନ ଇଶ ଯତ୍ନେ ।୪୧।

ଅକ୍ଷଂ ଦଶପ୍ରାଣମଧର୍ମଧର୍ମୌ ଚକ୍ରେଽଭିମାନଂ ରଥିନଂ ଚ ଜୀବମ୍ ।
ଧନୁର୍ହି ତସ୍ୟ ପ୍ରଣବଂ ପଠନ୍ତି ଶରନ୍ତୁ ଜୀବଂ ପରମେବ ଲକ୍ଷ୍ୟମ୍ ।୪୨।
ରାଗୋ ଦ୍ୱେଷଶ୍ଚ ଲୋଭଶ୍ଚ ଶୋକମୋହୌ ଭୟଂ ମଦଃ ।
ମାନୋଽବମାନୋଽସୂୟା ଚ ମାୟା ହିଂସା ଚ ମତ୍ସରଃ ।୪୩।
ରଜଃ ପ୍ରମାଦଃ କ୍ଷୁନ୍ନିଦ୍ରା ଶତ୍ରବସ୍ତ୍ୱେବମାଦୟଃ ।
ରଜସ୍ତମଃ ପ୍ରକୃତୟଃ ସତ୍ତ୍ୱପ୍ରକୃତୟଃ କ୍ୱଚିତ୍ ।୪୪।
ଯାବନ୍ନୃକାୟରଥମାତ୍ମବଶୋପକଳ୍ପଂ ଧତ୍ତେ ଗରିଷ୍ଠଚରଣାର୍ଚ୍ଚନୟା ନିଶାତମ୍ ।
ଜ୍ଞାନାସିମଚ୍ୟୁତବଲୋ ଦଧଦସ୍ତଶତ୍ରୁଃ ସ୍ୱାନନ୍ଦତୁଷ୍ଟ ଉପଶାନ୍ତ ଇଦଂ ଜହ୍ୟାତ୍ ।୪୫।

---

ପ୍ରାଣକୁ ସେହି ରଥର ଦଶୋଟି ଅକ୍ଷଦଣ୍ଡ, ଧର୍ମ ଓ ଅଧର୍ମକୁ ରଥର ଚକ୍ର, ଅହଙ୍କାର ବିଶିଷ୍ଟ ଜୀବକୁ ରଥୀ, ପ୍ରଣବକୁ ତାହାର ଧନୁ, ଶୁଦ୍ଧ ଜୀବକୁ ତାହାର ଶର ଓ ବ୍ରହ୍ମକୁ ତାହାର ଲକ୍ଷ୍ୟରୂପେ ବର୍ଣ୍ଣନା କରିଅଛନ୍ତି । ୪୧,୪୨ ।

ରାଗ, ଦ୍ୱେଷ, ଲୋଭ, ଶୋକ, ମୋହ, ଭୟ, ମଦ, ମାନ, ଅପମାନ, ଅସୂୟା, ମାୟା, ହିଂସା, ମତ୍ସର, ଅଭିନିବେଶ, ଅନବଧାନତା, କ୍ଷୁଧା, ନିଦ୍ରା ଏବଂ ଏହିପରି ଅନ୍ୟାନ୍ୟ କେତେକ ଶତ୍ରୁ ରଜ ଓ ତମୋଗୁଣ ବିଶିଷ୍ଟ ହୁଅନ୍ତି ଏବଂ କେତେକ ସତ୍ତ୍ୱ ଗୁଣ ବିଶିଷ୍ଟ ହୁଅନ୍ତି । ୪୩,୪୪ ।

ଦେହୀ ଯେ ପର୍ଯ୍ୟନ୍ତ ଆତ୍ମ ବଶବର୍ତ୍ତୀ ଏହି ଦେହ ସ୍ୱରୂପ ରଥକୁ ଧାରଣ କରେ ସେ ପର୍ଯ୍ୟନ୍ତ ଶ୍ରୀ ଗୁରୁଙ୍କ ଚରଣ ପୂଜା ଦ୍ୱାରା ଶାଣିତ ଜ୍ଞାନରୂପ ଖଡ୍ଗ ଧାରଣ କରି ଶ୍ରୀହରିଙ୍କର ସହାୟତାରେ ଶତ୍ରୁ ସମୂହକୁ ଦମନ କରି ଆତ୍ମାନୁଭବ ହେତୁ ଆନନ୍ଦରେ ପରିତୁଷ୍ଟ ଓ ନିବୃତ୍ତ ହୋଇ ଦେହରୂପ ରଥକୁ ତ୍ୟାଗ କରିବ । ୪୫ ।

---

ପ୍ରାଣ ବସନ୍ତି ଏ ଶରୀରେ
ଦ୍ୱି ପଞ୍ଚ ବାହ୍ୟ ଅଭ୍ୟନ୍ତରେ
ସେ ପ୍ରାଣ ଅକ୍ଷ ରୂପ ଧରି
ତାହାର ଭିତରେ ସଞ୍ଚରି
ଧର୍ମ ଅଧର୍ମ ଚକ୍ର ଦୁଇ
ଏ ଜୀବ ଅହଂକାର ବହି
ଜୀବ ବସଇ ରଥୀ ରୂପେ
କର୍ମାନୁସାରେ ବଳ ଦର୍ପେ
ପ୍ରଣବ ହସ୍ତେ ଧନୁ ତାର
ଅକାର ଉକାର ମକାର
ଜୀବକୁ ଶର ରୂପେ କରି
ପ୍ରଣବ-ଧନୁ ହସ୍ତେ ଧରି

ପରମ ଆତ୍ମା କରି ଲକ୍ଷ
ନାରାଚ ବିନ୍ଧିବ ପ୍ରତ୍ୟକ୍ଷ । ୪୨ ।
ସମ୍ମୁଖେ ଯେତେ ରିପୁ ଥିବେ
ଯୁଦ୍ଧେ ସକଳ ନାଶ ଯିବେ
ଶୁଣ ରାଜନ ଶୁଦ୍ଧ ଚିତ୍ତେ
ସମ୍ମୁଖେ ରିପୁ ଛନ୍ତି ଯେତେ
ଏ କାମ କ୍ରୋଧ ଶୋକ ମୋହ
ଲୋଭ ଅସୂୟା ମାୟା ଭୟ
ମଦ ମତ୍ସର ଅପମାନ
ପ୍ରମାଦ ହିଂସା ମଧ୍ୟା ମାନ
ରଜ ତାମସ ନିଦ୍ରା କ୍ଷୁଧା
ଏତେ ଶତ୍ରୁର ଯହିଁ ବାଧା

ତ୍ରିଗୁଣମୟୀ ଯେ ପ୍ରକୃତି
ଏଆଦି ଯେତେ ରିପୁ ଥାନ୍ତି ।୪୩,୪୪
ଏହାଙ୍କୁ ସମ୍ମୁଖେ ଆବୋରି
ଯେ ରଥୀ ପାରେ ଯୁଦ୍ଧ କରି
ରଥକୁ ଆତ୍ମବଶ କରି
ଜ୍ଞାନ ଖଡ୍ଗ ହସ୍ତେ ଧରି
ସୁଖେ ଭୁଞ୍ଜାଇ ସ୍ୱର୍ଗରାଜ୍ୟ
ଆନନ୍ଦେ ଅଷ୍ଟ ଅଇଶ୍ୱର୍ଯ୍ୟ
ଯେବେ ଏ ରଥ ତ୍ୟାଗ କରି
ନିଶ୍ଚିନ୍ତେ ରହେ ମୋଦ ଭରି ।୪୫।

ନୋଚେତ୍ ପ୍ରମତ୍ତମସଦନ୍ଦ୍ରିୟବାଜିସୂତା ନୀତ୍ୱୋତ୍ପଥଂ ବିଷୟଦସ୍ୟୁଷୁ ନିଃକ୍ଷିପନ୍ତି ।
ତେ ଦସ୍ୟବଃ ସହୟସୂତମମୁଂ ତମୋଽନ୍ଧେ ସଂସାରକୂପ ଉରୁମୃତ୍ୟୁଭୟେ କ୍ଷିପନ୍ତି ।୪୬।

ପ୍ରବୃତ୍ତଞ୍ଚ ନିବୃତ୍ତଞ୍ଚ ଦ୍ୱିବିଧଂ କର୍ମ ବୈଦିକମ୍ ।
ଆବର୍ତ୍ତତେ ପ୍ରବୃତ୍ତେନ ନିବୃତ୍ତେନାଶ୍ନୁତେଽମୃତମ୍ । ୪୭ ।
ହିଂସ୍ରଂ ଦ୍ରବ୍ୟମୟଂ କାମ୍ୟମଗ୍ନିହୋତ୍ରାଦ୍ୟଶାନ୍ତିଦମ୍ ।
ଦର୍ଶଶ୍ଚ ପୂର୍ଣ୍ଣମାସଶ୍ଚ ଚାତୁର୍ମାସ୍ୟଂ ପଶୁଃ ସୁତଃ । ୪୮ ।
ଏତଦିଷ୍ଟଂ ପ୍ରବୃତ୍ତାଖ୍ୟଂ ହୁତଂ ପ୍ରହୁତମେବ ଚ ।
ପୂର୍ତ୍ତଂ ସୁରାଲୟାରାମକୂପାଜୀବ୍ୟାଦିଲକ୍ଷଣମ୍ । ୪୯ ।

---

ନଚେତ୍ ଦୁଷ୍ଟ ଅଶ୍ୱ ସ୍ୱରୂପ ଇନ୍ଦ୍ରିୟମାନେ ଓ ସାରଥି ସ୍ୱରୂପ ବୁଦ୍ଧି ପ୍ରମତ୍ତ ରଥୀ ସ୍ୱରୂପ ଜୀବକୁ ବିପଥରେ ଚାଳନ କରି ବିଷୟ ସ୍ୱରୂପ ଦସ୍ୟୁମାନଙ୍କ ମଧ୍ୟରେ ପକାଇ ଦେବେ । ସେହି ଦସ୍ୟୁମାନେ ଘୋଟକ ଏବଂ ସାରଥୀ ସହିତ ଏହି ରଥୀ ସ୍ୱରୂପ ଜୀବକୁ ଅତ୍ୟନ୍ତ ମୃତ୍ୟୁଭୟ ବିଶିଷ୍ଟ ତମୋଗୁଣରେ ଅନ୍ଧକାରମୟ ସଂସାର ରୂପ କୂପ ମଧ୍ୟରେ ନିକ୍ଷେପ କରିବେ । ୪୬ ।

ହେ ମହାରାଜ ! ବୈଦିକ କର୍ମ ଦୁଇ ପ୍ରକାର । ପ୍ରବୃତ୍ତିମାର୍ଗ ଓ ନିବୃତ୍ତି ମାର୍ଗ । ପ୍ରବୃତ୍ତି କର୍ମ ଦ୍ୱାରା ଜୀବ ପୁନର୍ଜନ୍ମ ଲାଭ କରେ ଏବଂ ନିବୃତ୍ତି କର୍ମଦ୍ୱାରା ମୋକ୍ଷ ଲାଭ କରେ । ୪୭ ।

ଅଗ୍ନିହୋତ୍ର, ଦର୍ଶ, ପୌର୍ଣ୍ଣମାସ, ଚାତୁର୍ମାସ୍ୟ, ପଶୁଯାଗ, ସୋମଯାଗ, ପ୍ରଭୃତି ଓ ବୈଶ୍ୱଦେବ ଓ ବଳିହରଣ ପ୍ରଭୃତି ପ୍ରବୃତ୍ତ କର୍ମ ମଙ୍ଗଳ ଜନକ ହୋଇନାହିଁ ଏ ସମସ୍ତ ହିଂସା ଯୁକ୍ତ ଓ ଏଥିରେ ପ୍ରଚୁର ଦ୍ରବ୍ୟ ଲୋଡ଼ା ଓ ଅଶାନ୍ତି ପ୍ରଦ ଅର୍ଥାତ୍ ଅତିଶୟ ଆସକ୍ତି ଯୁକ୍ତ । ଦେବାଳୟ, ଉପବନ, କୂପ ଓ ପାନୀୟ ଜଳାଶୟ ପ୍ରଭୃତି ପୂର୍ତ୍ତ କାର୍ଯ୍ୟ ନିର୍ମାତା ବୋଲି ପ୍ରସିଦ୍ଧ । ୪୮,୪୯ ।

---

ଏମନ୍ତ ରିପୁ ଯେ ନ ମାରେ
ସେ କାହିଁ ଆତ୍ମସୁଖେ ତରେ
ଯେବେ ଅଜ୍ଞେ ରହେ ରଥେ
ତାହାଙ୍କୁ ବେଢନ୍ତି ସମସ୍ତେ
ଅସାଧ୍ୟ ଅଶ୍ୱ ଯେତେ ରଥେ
ସାରଥି ବିମାନ ସହିତେ
ଦୁର୍ଗମ ମାର୍ଗେ ରଥନ୍ୟନ୍ତି
ଶତ୍ରୁଙ୍କ ମଧ୍ୟେ ପ୍ରବେଶନ୍ତି

ସେ ଶତ୍ରୁଗଣେ ବନ୍ଦୀ କରି
ଅଶ୍ୱ ସାରଥି ରଥୀ ଧରି
ସଂସାର କୂପେ ଅନ୍ଧକାରେ
ପକାନ୍ତି ମୃତ୍ୟୁ ଭୟ ଘୋରେ ।୪୬।
ପ୍ରବୃତ୍ତି ନିବୃତ୍ତି ଏ କର୍ମ
ସଂସାରେ ବୈଦିକ ଧର୍ମ
ପ୍ରବୃତ୍ତି ପଥେ ସଞ୍ଚରନ୍ତି
ନିବୃତ୍ତେ ଅମୃତ ଭୁଞ୍ଜନ୍ତି । ୪୭ ।

ଯେ ଦ୍ରବ୍ୟମୟ ଯଜ୍ଞ କାମ
ଆବର ଅଗ୍ନିହୋତ୍ର ନାମ
ପୂର୍ଣ୍ଣିମା ଅମାବାସ୍ୟା ଆଦି
ପଶୁ ଯେ ଚାତୁର୍ମାସ୍ୟ ବିଧି
କୂପ ପ୍ରାସାଦ ଉପବନ
ଏ ଆଦି ଇଷ୍ଟପୂର୍ତ୍ତି କର୍ମ
ହୁତ ପ୍ରହୁତ ଆଦି ଯେତେ
ପ୍ରବୃତ୍ତି ପଥ କର୍ମ ଏତେ ।୪୮,୪୯।

ଦ୍ରବ୍ୟସୂକ୍ଷ୍ମବିପାକଶ୍ଚ ଧୂମୋ ରାତ୍ରିରପକ୍ଷୟଃ ।
ଅୟନଂ ଦକ୍ଷିଣଂ ସୋମୋ ଦର୍ଶ ଓଷଧିବୀରୁଧଃ । ୫୦ ।
ଅନ୍ନଂ ରେତ ଇତି କ୍ଷ୍ମେଶ ପିତୃଯାନଂ ପୁନର୍ଭବଃ ।
ଏକୈକଶ୍ୟେନାନୁପୂର୍ବ୍ୟା ଭୂତ୍ୱା ଭୂତ୍ୱେହ ଜାୟତେ । ୫୧ ।
ନିଷେକାଦିଶ୍ମଶାନାନ୍ତୈଃ ସଂସ୍କାରୈଃ ସଂସ୍କୃତୋ ଦ୍ୱିଜଃ ।
ଇନ୍ଦ୍ରିୟେଷୁ କ୍ରିୟାଯଜ୍ଞାନ୍ ଜ୍ଞାନଦୀପେଷୁ ଜୁହ୍ୱତି । ୫୨ ।
ଇନ୍ଦ୍ରିୟାଣି ମନସ୍ୟୂର୍ମୌ ବାଚି ବୈକାରିକଂ ମନଃ-
ବାଚଂ ବର୍ଣ୍ଣସମାମ୍ନାୟେ ତମୋଙ୍କାରେ ସ୍ୱରେ ନ୍ୟସେତ୍ ।
ଓଙ୍କାରଂ ବିନ୍ଦୌ ନାଦେ ତଂ ତନ୍ତୁ ପ୍ରାଣେ ମହତ୍ୟମୁମ୍ । ୫୩ ।

ହେ ରାଜନ୍ ! ଯଜ୍ଞରେ ଚରୁ ଓ ପୁରୋଡ଼ାଶ ଆଦି ଦ୍ରବ୍ୟ ଆହୂତ ପ୍ରଦତ୍ତ ହୋଇଥାଏ । ଏହା ଅତିବାହକ ଦେହ ବୋଲିଯାଏ । ପ୍ରବୃତ୍ତି କର୍ମରେ ନିଯୁକ୍ତ ବ୍ୟକ୍ତି ମୃତ୍ୟୁ ପରେ ପ୍ରଥମତଃ ଏହି ଦେହ ଲାଭ କରେ । ତଦନନ୍ତର ଯଥାକ୍ରମେ ଧୂମ, ରାତ୍ରି, କୃଷ୍ଣପକ୍ଷ ପ୍ରଭୃତିର ଅଭିମାନିନୀ ଦେବତାଙ୍କ କର୍ତ୍ତୃକ ଏହି ଦେହ ଚନ୍ଦ୍ରଲୋକକୁ ନୀତ ହୁଏ । ୫୦ ।

ତଦନନ୍ତର ଅର୍ଥାତ୍ ସେଠାରେ ଭୋଗ ଶେଷ ହୁଅନ୍ତେ ଏ ଦେହ ବୃଷ୍ଟି ଦ୍ୱାରା ଓଷଧି, ଉଦ୍ଭିଦ ଓ ଅନ୍ନରୂପେ ଜନ୍ମେ । ଏହି ଅନ୍ନଭୁକ୍ତ ହୋଇ ଶୁକ୍ରରୂପ ଗ୍ରହଣ କରେ । ପିତୃଯାନ ବା ପ୍ରବୃତ୍ତିମାର୍ଗ ଏହି ପୁନର୍ଜନ୍ମର ହେତୁ ଅଟେ । ୫୧ ।

ଗର୍ଭାଧାନାଦି କର୍ମଠାରୁ ଆରମ୍ଭକରି ମୃତ୍ୟୁ ସଂସ୍କାରାଦି କର୍ମମାନଙ୍କଦ୍ୱାରା ସଂସ୍କୃତ ହୋଇ ଜୀବ ଦ୍ୱିଜତ୍ୱ ପ୍ରାପ୍ତ ହୁଏ । ଯେ ଅନଧିକାରୀ ସେ ଇଷ୍ଟାଦି କର୍ମ କଲେ ମଧ୍ୟ ଏପରି ଜନ୍ମଲାଭ କରେ ନାହିଁ ଅର୍ଥାତ୍ କେହି କେହି ଜ୍ଞାନ ଦୀପିତ ଇନ୍ଦ୍ରିୟ ସମୂହରେ କ୍ରିୟା ସମୂହକୁ ଆହୂତି ପ୍ରଦାନ କରିଥାନ୍ତି । ୫୨ ।

ଇନ୍ଦ୍ରିୟ ସମୂହକୁ ଦର୍ଶନାଦି ସଙ୍କଳ୍ପ ସ୍ୱରୂପ ମନରେ ହୋମକରି ଅର୍ଥାତ୍ ଇନ୍ଦ୍ରିୟଗଣ ଦର୍ଶନାଦି ସଙ୍କଳ୍ପ ଭିନ୍ନ ଅନ୍ୟ କିଛି ନୁହେଁ । ଏହା ଏହିପରି ଭାବନା କରିବ । ବିକାର ଯୁକ୍ତ ମନକୁ ବାକ୍ୟରେ ଆହୂତି ଦେବ ଅର୍ଥାତ୍ ବାଣୀ ପ୍ରଭୃତି ବାକ୍ୟ ଦ୍ୱାରା ମନ ବିକାର ପ୍ରାପ୍ତ ହୁଏ ଅର୍ଥାତ୍ ବାଣୀ ବାକ୍ୟଠାରୁ ତାହାର ପ୍ରଭେଦ ନାହିଁ ଏହିପରି ଚିନ୍ତା କରିବ । ବାକ୍ୟକୁ ବର୍ଣ୍ଣ ସମୂହରେ, ବର୍ଣ୍ଣ ସମୂହକୁ ଅକାର ଉକାର, ମକାର ଅର୍ଥାତ୍ ଓଙ୍କାରରେ, ଓଙ୍କାରକୁ ବିନ୍ଦୁରେ, ବିନ୍ଦୁକୁ ନାଦରେ ଓ ନାଦକୁ ସୂତ୍ରାତ୍ମକ ପ୍ରାଣରେ ଏବଂ ପ୍ରାଣକୁ ବ୍ରହ୍ମରେ ହୋମ କରିବ । ୫୩ ।

ସୂକ୍ଷ୍ମ ଦ୍ରବ୍ୟ ବିପାକମୟ
ଧୂମ ରଜନୀ ଅପକ୍ଷୟ
ଦକ୍ଷିଣାୟନେ ସୋମ ବୁଧ
ଦରଶ ଓଷଧି ବିରୁଦ୍ଧ
ଯେ ଅନ୍ନ ରେତରୁ ସମ୍ଭବ
ଏ ପିତୃଯାନ ପୁନର୍ଭବ । ୫୦ ।

ଏ ଅନୁରୂପେ ଏକେ ଏକେ
ଭବେ ଭ୍ରମନ୍ତି ଜୀବଲୋକେ
ପ୍ରବୃତ୍ତି ମାର୍ଗ ଏ ପ୍ରମାଣ
ଏବେ ହେ ଧର୍ମସୁତ ଶୁଣ
ଦେବଙ୍କ ରାତ୍ରି ଏ ବୋଲାଇ
ଶୁଣ ଦିବସେ ଏବେ କହି—

ସମ୍ଭବୁଁ ମରଣ ପର୍ଯ୍ୟନ୍ତେ
ଦ୍ୱିଜ ସଂସାରେ ବେଦମତେ
ସେ ଦ୍ୱିଜ ଯେବେ ଜ୍ଞାନୀ ହୋଏ
ଯଜ୍ଞ କରଇ ଆତ୍ମ-ଦେହେ
ଇନ୍ଦ୍ର ଇନ୍ଧନ ଅର୍ଥେ କଲେ
ହୋମ କରଇ ଜ୍ଞାନ ଦୀପେ

ଅଗ୍ନିଃ ସୂର୍ଯ୍ୟୋ ଦିବା ପ୍ରାହ୍ନଃ ଶୁକ୍ଳୋ ରାକୋତ୍ତରଂ ସ୍ୱରାଟ୍ ।
ବିଶ୍ୱୋଽଥ ତୈଜସଃ ପ୍ରାଜ୍ଞସ୍ତୁର୍ଯ୍ୟ ଆତ୍ମା ସମନ୍ୱୟାତ୍ । ୫୪ ।
ଦେବଯାନମିଦଂ ପ୍ରାହୁର୍ଭୂତ୍ୱାଭୂତ୍ୱାନୁପୂର୍ବଶଃ ।
ଆତ୍ମଯାଜ୍ୟୁପଶାନ୍ତାତ୍ମା ହ୍ୟାତ୍ମସ୍ଥୋ ନ ନିବର୍ତ୍ତତେ । ୫୫ ।
ଯ ଏତେ ପିତୃଦେବାନାମୟନେ ବେଦନିର୍ମିତେ ।
ଶାସ୍ତ୍ରେଣ ଚକ୍ଷୁଷା ବେଦ ଜନସ୍ଥୋଽପି ନ ମୁହ୍ୟତି । ୫୬ ।
ଆଦାବନ୍ତେ ଜନାନାଂ ସଦ୍ବହିରନ୍ତଃ ପରାବରମ୍ ।
ଜ୍ଞାନଂ ଜ୍ଞେୟଂ ବଚୋ ବାଚ୍ୟଂ ତମୋ ଜ୍ୟୋତିସ୍ତ୍ୱୟଂ ସ୍ୱୟମ୍ ।୫୭।

---

ନିବୃତ୍ତି ମାର୍ଗାବଲମ୍ବୀ ଅଗ୍ନି, ସୂର୍ଯ୍ୟ, ଦିବା, ଦିବଶାନ୍ତ, ଶୁକ୍ଳପକ୍ଷ, ରାକା ବା ଶୁକ୍ଳ ପକ୍ଷାନ୍ତ ପୂର୍ଣ୍ଣିମା ଉତ୍ତରାୟଣ—ଏମାନଙ୍କ ଅଭିମାନୀ ଦେବତା କର୍ତ୍ତୃକ କ୍ରମଶଃ ବ୍ରହ୍ମଲୋକରେ ଉପନୀତ ହୁଅନ୍ତି, ସେଠାରେ ଭୋଗ ଶେଷ ହେଲେ ସ୍ଥୂଳୋପାଧି ପରେ ସ୍ଥୂଳୋପାଧିକୁ ସୂକ୍ଷ୍ମରେ ବିଲୀନ କରି ତୈଜସ ନାମ ଧାରଣ କରନ୍ତି । ତଦନନ୍ତର ତୈଜସ ନିଜର ସୂକ୍ଷ୍ମ ଉପାଧିକୁ କାରଣରେ ବିଲୀନ କରି କାରଣୋପାଧି ପ୍ରାଜ୍ଞ ନାମ ଧାରଣ କରନ୍ତି । ପରେ କାରଣୋପାଧି ପ୍ରାଜ୍ଞ କାରଣକୁ ସର୍ବସାକ୍ଷୀରୂପେ ଅନ୍ୱିତ ସାକ୍ଷୀରୂପେ ଲୟ କରି ତୁରୀୟ ହୁଅନ୍ତି ଅର୍ଥାତ୍ ପରିବର୍ତ୍ତନଶୀଳ ସାକ୍ଷ୍ୟ ସମୂହ ଲୟପ୍ରାପ୍ତ ହେବାରୁ ଶୁଦ୍ଧାତ୍ମା ହୁଅନ୍ତି ଅର୍ଥାତ୍ ମୁକ୍ତିଲାଭ କରନ୍ତି । ଏହାକୁ ଦେବଯାନ ବୋଲଯାଏ । ଆତ୍ମଯାଜୀ ( ଯେ ଆତ୍ମାକୁ ହୋମ କରେ ) ବ୍ୟକ୍ତି କ୍ରମେ କ୍ରମେ ପୂର୍ବୋକ୍ତ ଅର୍ଚ୍ଚିରାଦି ମାର୍ଗରେ ଗମନ କରି ଉପଶାନ୍ତାତ୍ମା ହୋଇ ମୁକ୍ତି ଲାଭ କରନ୍ତି । କର୍ମୀମାନଙ୍କ ତୁଲ୍ୟ ସେମାନେ ପୁଣି ସଂସାରକୁ ଫେରି ଆସନ୍ତି ନାହିଁ । ୫୪,୫୫ ।

(ବେଦ, ପିତୃଯାନ ଓ ଦେବଯାନ ଏହି ଦ୍ୱିମାର୍ଗ ପୃଥକଭାବରେ ନିର୍ଦ୍ଦେଶ କରାଯାଇଅଛି) ଯେଉଁ ବ୍ୟକ୍ତି ଶାସ୍ତ୍ରରୂପ ଚକ୍ଷୁଦ୍ୱାରା ବେଦ ବିହିତ ଏହି ପିତୃଯାନ ଓ ଦେବଯାନ ଅବଗତ ହୁଅନ୍ତି ସେ ଦେହଧାରଣ କଲେ ମଧ୍ୟ ମୁଗ୍ଧ ହୁଅନ୍ତି ନାହିଁ । ୫୬ ।

କାରଣ ଜୀବମାନଙ୍କର ଆଦିରେ କାରଣ ରୂପେ ଏବଂ ଅନ୍ତରେ ଭୋକ୍ତା ଜୀବ ରୂପେ ଏହିପରି ପର ଓ ଅପର ଜ୍ଞାନ ଓ ଜ୍ଞେୟ ରୂପେ, ବାକ୍ ଓ ବାଚ୍ୟ ରୂପେ, ତମ ଓ ଅବିଦ୍ୟାରୂପେ ବର୍ତ୍ତମାନ । ୫୭ ।

---

ମନେ କରିବ ଇନ୍ଦ୍ରି, ଲୀନ
ବଚନେ ସଂହରିବ ମନ
ବଚନେ ସ୍ୱରେ ଲୀନ କରି
ସ୍ୱରକୁ ଓଁକାରେ ସଂହରି
ଓଁକାର ବିନ୍ଦୁ ରେ ଦେଇ
ବିନ୍ଦୁକୁ ପ୍ରାଣ ସଙ୍ଗେ ଥୋଇ
ଜ୍ଞାନୀର ଏମନ୍ତ ଲକ୍ଷଣ
ଯେପରେ ଥିବି ତାହା ଶୁଣ ।୫୧,୫୩
ଅଗ୍ନି ଆଦିତ୍ୟ ପ୍ରାତଃକାଳ
ପୂର୍ଣ୍ଣିମା ପକ୍ଷ ଯେ ଶୁକଳ

ଏ ବନ୍ଧମାର୍ଗ ଅନୁପମ
ଉତ୍ତରାୟଣ ଏହା ନାମ
ବିଶ୍ୱ ତୈଜସ ପ୍ରାଜ୍ଞେ ଲୟ
ତୁରୀୟାତୀତେ ଆତ୍ମ ମୟ
ଏ ଦେବଯାନ ପଥ ଅଟନ୍ତି
ଏ ମାର୍ଗେ ଭବେ ନ ମିଳନ୍ତି ।୫୪।
ଯେ ଆତ୍ମା ଉପଶାନ୍ତ ଜନେ
ନିତ୍ୟେ ରହନ୍ତି ଆତ୍ମଧ୍ୟାନେ
ସେ ନ ପଡ଼ନ୍ତି ନରଲୋକେ
ନିଶ୍ଚିନ୍ତେ ଥାନ୍ତି ଆତ୍ମସୁଖେ ।୫୫।

ଏ ପିତୃ-ଦେବ-ଯାନ ପଥେ
ଯେ ଜନ ଯାନ୍ତି ବେଦମତେ
ଗମନାଗମନ କରନ୍ତି
ଜ୍ଞାନୀ ରହନ୍ତି ଏହା ଜାଣି ।୫୬।
ଯେ ଆଦି ଅନ୍ତ ପ୍ରାଣିଙ୍କର
ଯେ ବ୍ୟାପି ବାହ୍ୟ ଅଭ୍ୟନ୍ତର
ପର ଅପର ଯାହା ଦେହେ
ଯେ ଅବା ଜ୍ଞାନ ଜ୍ଞେୟ ହୋଏ
ବଚନ ବାକ୍ୟ ତମ ଜ୍ୟୋତି
ଦୃଶ୍ୟ ଅଦୃଶ୍ୟ ହୋଇ ଅଛନ୍ତି..

ଅବାଧିତୋଽପି ହ୍ୟାଭାସୋ ଯଥା ବସ୍ତୁତୟା ସ୍ମୃତଃ ।
ଦୁର୍ଘଟତ୍ୱାଦୈନ୍ଦ୍ରିୟକଂ ତଦ୍ୱଦର୍ଥବିକଳ୍ପିତମ୍ । ୫୮ ।
କ୍ଷିତ୍ୟାଦୀନାମିହାର୍ଥାନାଂ ଛାୟା ନ କତମାପି ହି ।
ନ ସଂଘାତୋ ବିକାରୋଽପି ନ ପୃଥଙ୍‌ନାନ୍ୱିତୋ ମୃଷା । ୫୯ ।
ଧାତବୋଽବୟବିତ୍ୱାଚ୍ଚ ତନ୍ମାତ୍ରାବୟବୈର୍ବିନା ।
ନ ସ୍ୟୁର୍ହ୍ୟସତ୍ୟବୟବିନ୍ୟସନ୍ନବୟବୋଽନ୍ତତଃ । ୬୦ ।
ସ୍ୟାତ୍ ସାଦୃଶ୍ୟଭ୍ରମସ୍ତାବଦ୍ୱିକଳ୍ପେ ସତି ବସ୍ତୁନଃ ।
ଜାଗ୍ରତ୍‌ସ୍ୱାପୌ ଯଥା ସ୍ୱପ୍ନେ ତଥା ବିଧିନିଷେଧତା । ୬୧ ।

---

ଯେପରି ବିରୁଦ୍ଧ ତର୍କ ଦ୍ୱାରା ପ୍ରତିବିମ୍ବାଦିର ଯଥାର୍ଥତ୍ୱ ପ୍ରତିପାଦିତ ହୁଏ ଅର୍ଥାତ୍ ଆଭାଷ, ପ୍ରତିବିମ୍ବ ପ୍ରଭୃତି ଯେ ଯଥାର୍ଥ ବସ୍ତୁ ନୁହେଁ ତାହା ତର୍କ ଦ୍ୱାରା ପ୍ରତିପାଦିତ ହେଲେ ମଧ୍ୟ ପ୍ରକୃତ ବସ୍ତୁତୁଲ୍ୟ ଲକ୍ଷିତ ହୁଏ । ସେହିପରି ଏ ଶରୀର ମିଥ୍ୟା ହେଲେ ମଧ୍ୟ ପ୍ରକୃତ ବସ୍ତୁ ତୁଲ୍ୟ ସତ୍ୟ ବୋଲି ପ୍ରତିଭାତ ହୁଏ । ୫୮ ।

କ୍ଷିତି, ଅପ୍, ତେଜ, ମରୁତ୍, ବ୍ୟୋମ ଏହି ପଞ୍ଚଭୂତର ଛାୟାସ୍ୱରୂପ ଦେହାଦି, ସଙ୍ଘାତ, ବିକାର ଓ ପରିଣାମ ମଧ୍ୟରୁ କୌଣସିଟି ଅବୟବଠାରୁ ପୃଥକ୍ ନୁହେଁ କିମ୍ବା ଅବୟବ ସହିତ ସଂଯୁକ୍ତ ନୁହେଁ । ସୁତରାଂ ଏହା ମିଥ୍ୟା ମାତ୍ର । ୫୯ ।

କ୍ଷିତ୍ୟାଦି ମହାଭୂତ ସମୂହ ଅବୟବୀ ବୋଲି ସୂକ୍ଷ୍ମାବୟବ ସ୍ୱୀକାର ବ୍ୟତୀତ ସେମାନଙ୍କର ଉତ୍ପତ୍ତି ହୋଇ ନ ପାରେ । ସୁତରାଂ ଅବୟବୀ ଦେହ ଅସିଦ୍ଧ ଅର୍ଥାତ୍ ମିଥ୍ୟା ପ୍ରତିପନ୍ନ ହେବାରୁ ଅବୟବ କ୍ଷିତ୍ୟାଦି ମଧ୍ୟ ମିଥ୍ୟା କାରଣ ଅବୟବୀ ସିଦ୍ଧ ନ ହେଲେ ଅବୟବର ସତ୍ୟତାର କୌଣସି ପ୍ରମାଣ ନାହିଁ । ୬୦ ।

(ଅବୟବୀ ମିଥ୍ୟା ହେଲେ ବାଲ୍ୟ ଦୃଷ୍ଟ ବ୍ୟକ୍ତିକୁ ପରେ ଏ ସେହି ବ୍ୟକ୍ତି ଏହା ଜଣାଯାଏ କିପରି?) ଅବିଦ୍ୟା ହେତୁ ବିକଳ୍ପ ବଶତଃ ସାଦୃଶ୍ୟ ଭ୍ରମ ହୋଇଥାଏ ଯେପରି ସ୍ୱପ୍ନରେ ଜାଗ୍ରତ ଓ ନିଦ୍ରା ଏହି ଉଭୟ ଅବସ୍ଥା ସମ୍ଭବ ହୁଏ ବେଦୋକ୍ତ ବିଧି ନିଷେଧ ସେହିପରି । ୬୧ ।

---

ଯେ ତାଙ୍କୁ ଯେମନ୍ତେ ଚିନ୍ତଇ
ଆଭାସ ମାତ୍ରେ ସେ ଦେଖଇ
ଭବ ପ୍ରମାଣେ ଦୃଶ୍ୟ ହୋଏ
ଦର୍ପଣେ ପ୍ରତିବିମ୍ବ ପ୍ରାୟେ
ବସ୍ତୁ ନୁହନ୍ତି କଦାଚିତେ
ଏ ଭବ ଘଟିବ କେମନ୍ତେ

ଯେବେ ନିଶ୍ଚଳେ ଦୃଢ ଚିତ୍ତେ
ଯେ ତାଙ୍କୁ ଚିନ୍ତେ ଅବିରତେ
କର୍ମେ ଭଜନ୍ତି ତାର ପଥ
ଏ ଭବ ଜଗତେ ସମ୍ମତ । ୫୭, ୫୮ ।
ଏ ଭୂମି ଆଦି ପଞ୍ଚଭୂତେ
ସେ ରହେ ବାହ୍ୟ ଅନ୍ତର୍ଗତେ

ତାଙ୍କୁ ନ ପାଇ ଏକେ ଏକେ
ସେ ତାରତମ୍ୟ ଅତିରେକେ
ତାହାର ଆଦ୍ୟନ୍ତ ନ ଜାଣି
ଏହି ପ୍ରକାରେ ଭ୍ରମେ ପ୍ରାଣୀ
ନିଦ୍ରା ଜାଗ୍ରତ ସ୍ୱପ୍ନ ମଧ୍ୟେ
ସେରୂପେ ଏ ବିଧି ନିଷେଧେ । ୫୯, ୬୧

ଭାବାଦ୍ୱୈତଂ କ୍ରିୟାଦ୍ୱୈତଂ ଦ୍ରବ୍ୟାଦ୍ୱୈତଂ ତଥାତ୍ମନଃ ।
ବର୍ତ୍ତୟନ୍ ସ୍ୱାନ୍ ଭୁବୈ୍ୟହ ତ୍ରୀନ୍ ସ୍ୱପ୍ନାନ୍ ଧୁନୁତେ ମୁନିଃ ।୬୨।
କାର୍ଯ୍ୟକାରଣବସ୍ତ୍ୱୈକ୍ୟଦର୍ଶନଂ ପଟତନ୍ତୁବତ୍ ।
ଅବସ୍ତୁତ୍ୱାଦ୍ୱିକଳ୍ପସ୍ୟ ଭାବାଦ୍ୱୈତଂ ତଦୁଚ୍ୟତେ ।୬୩।
ଯଦ୍ବ୍ରହ୍ମଣି ପରେ ସାକ୍ଷାତ୍ ସର୍ବକର୍ମସମର୍ପଣମ୍ ।
ମନୋବାକ୍ତନୁଭିଃ ପାର୍ଥ କ୍ରିୟାଦ୍ୱୈତଂ ତଦୁଚ୍ୟତେ ।୬୪।
ଆତ୍ମଜାୟାସୁତାଦୀନାମନ୍ୟେଷାଂ ସର୍ବଦେହିନାମ୍ ।
ଯତ୍ ସ୍ୱାର୍ଥକାମୟୋରୈକ୍ୟଂ ଦ୍ରବ୍ୟାଦ୍ୱୈତଂ ତଦୁଚ୍ୟତେ ।୬୫।

---

ମନନଶୀଳ ସାଧକ ଜୀବରେ ପରମାତ୍ମାଙ୍କର ଭାବାଦ୍ୱୈତ, କ୍ରିୟାଦ୍ୱୈତ ଆଲୋଚନା କରି ଆତ୍ମ ତତ୍ତ୍ୱାନୁଭବ ଦ୍ୱାରା ଜାଗ୍ରତାଦି ଅବସ୍ଥାତ୍ରୟ ନିବାରଣ କରିଥାନ୍ତି । ୬୨ ।

(ଅର୍ଥାତ୍ ମୁନି ଆତ୍ମତତ୍ତ୍ୱାନୁଭବଦ୍ୱାରା ନିଜର ତିନୋଟି ସ୍ୱପ୍ନକୁ ଦୂରୀଭୂତ କରନ୍ତି । ଏହି ଆତ୍ମତତ୍ତ୍ୱ ଅନୁଭବ କରିବାକୁ ହେଲେ ଭାବାଦ୍ୱୈତ, କ୍ରିୟାଦ୍ୱୈତ ଓ ଦ୍ରବ୍ୟାଦ୍ୱୈତ ଏହି ତିନୋଟି ଅଦ୍ୱୈତ ଆଲୋଚନା କରିବା ବିଧେୟ) କୌଣସି ପ୍ରକାର ଭେଦ ନ ଥିବାରୁ ଅର୍ଥାତ୍ ସୂତ୍ର ଓ ବସ୍ତ୍ର ମଧ୍ୟରେ କୌଣସି ଭେଦ ନ ଥିଲା ପରି ଭାବାଦ୍ୱୈତ ବୋଲିଯାଏ ( ତନ୍ତୁ ସମୂହ ବିନ୍ୟାସ ଦ୍ୱାରା ପଟ ଅର୍ଥାତ୍ ବସ୍ତ୍ର ନିର୍ମିତ ହୋଇ ଥାଏ । ତନ୍ତୁ ସମୂହ ପଟର କାରଣ ଓ ପଟ ତନ୍ତୁ ସମୂହର କାର୍ଯ୍ୟ ଏହା ଆଲୋଚନା କଲେ ଜଣାଯାଏ ଯେ ପଟ ତନ୍ତୁ ବ୍ୟତୀତ ଅନ୍ୟ କିଛି ନୁହେଁ । ଏହିପରି କାର୍ଯ୍ୟ କାରଣ ମଧ୍ୟରେ ଐକ୍ୟ ବୁଦ୍ଧି ଭାବାଦ୍ୱୈତ) ଏହି ଭାବାଦ୍ୱୈତ ଦ୍ୱାରା ଏହାହିଁ ସିଦ୍ଧ ହୁଏ ଯେ ( ଯାହା ଭିନ୍ନ ବସ୍ତୁ ଦୃଷ୍ଟିଗୋଚର ହୁଏ ସେମାନଙ୍କର ମୂଳରେ ଏକ ବ୍ରହ୍ମ; ଭେଦ ବୁଦ୍ଧି ଏକାନ୍ତ ମିଥ୍ୟା । ଏହି ଭାବାଦ୍ୱୈତ ଦ୍ୱାରା ବସ୍ତୁ ସମୂହର ଭେଦ ବୁଦ୍ଧି ସ୍ୱରୂପ ପ୍ରଥମ ସ୍ୱପ୍ନ ତିରୋହିତ ହୁଏ) । ୬୩ ।

କାୟ, ମନ ଓ ବାକ୍ୟଦ୍ୱାରା ଯେଉଁ କ୍ରିୟାମାନ ଅନୁଷ୍ଠିତ ହୁଏ, ସେହି କର୍ମମାନ ପରମବ୍ରହ୍ମଙ୍କଠାରେ ସମର୍ପିତ ହେଲେ, ତାହାକୁ କ୍ରିୟାଦ୍ୱୈତ କୁହାଯାଏ । ୬୪ ।

ନିଜର ପତ୍ନୀ ପୁତ୍ରାଦିଙ୍କର ଏବଂ ଅନ୍ୟାନ୍ୟ ପ୍ରାଣୀମାନଙ୍କର ଅଭେଦ ଆଲୋଚନା ଦ୍ୱାରା ଅର୍ଥ ଓ କାମର ଐକ୍ୟ ଦର୍ଶନକୁ କ୍ରିୟାଦ୍ୱୈତ ବୋଲିଯାଏ । ୬୫ ।

---

ଯେ କ୍ରିୟା ଭାବ ଦ୍ରବ୍ୟାଦ୍ୱୈତ
ମୁନି କହନ୍ତି ଶାସ୍ତ୍ରମତ
ଜାଗର ସ୍ୱପ୍ନ ନିଦ୍ରା ଯେତେକ
ନ ଲାଗେ ଶୁଦ୍ଧ ଚଇତନ ।୬୨।
କାର୍ଯ୍ୟ କାରଣ ବସ୍ତୁ ଯେତେ
ଦେଖାଇ ପଟ ତନ୍ତୁ ମତେ

ଦେହରେ ଅବସ୍ତୁ ବିକଳ୍ପ
ଏ ଭାବାଦ୍ୱୈତ କହି ନୃପ ।୬୩।
ଶରୀର ବଚି ଏ ଜଗତେ
ଯେ କର୍ମ କର ବେଦମତେ
ହରି ବିଷୟେ ସମର୍ପିଲେ
ଏ ବିଷ୍ଣୁମାୟା ତରେ ଭଲେ

ଏହାର ନାମ କ୍ରିୟାଦ୍ୱୈତ
ଅପରେ ଶୁଣ ନରନାଥ ।୬୪।
ଶରୀର ଦାରା ସୁତ ଆଦି
ଅନ୍ୟ ବା ପର ଯେ ପ୍ରସିଦ୍ଧି
ଯେ ଅର୍ଥ କର୍ମେ ଏକ ଦେଖି
ଏହାକୁ ଦ୍ରବ୍ୟାଦ୍ୱୈତ ଲେଖି ।୬୫।

ଯଦ୍‌ଯସ୍ୟ ବାନିଷିଦ୍ଧଂ ସ୍ୟାଦ୍‌ଯେନ ଯତ୍ର ଯତୋ ନୃପ ।
ସ ତେନୈବେହ କାର୍ଯ୍ୟାଣି ନରୋ ମାନ୍ୟୈରନାପଦି । ୬୬ ।
ଏତୈରନ୍ୟୈଶ୍ଚ ବେଦୋକ୍ତୈର୍ବର୍ତ୍ତମାନଃ ସ୍ୱକର୍ମଭିଃ ।
ଗୃହେଽପ୍ୟସ୍ୟ ଗତିଂ ଯାୟାଦ୍ରାଜଂସ୍ତଦ୍‌ଭକ୍ତିଭାଙ୍‌ନରଃ । ୬୭ ।
ଯଥା ହି ଯୂୟଂ ନୃପଦେବ ଦୁସ୍ତ୍ୟଜାଦାପଦ୍‌ଗଣାଦୁତ୍ତରତାତ୍ମନଃ ପ୍ରଭୋଃ ।
ଯତ୍‌ପାଦପଙ୍କେରୁହସେବୟା ଭବାନହାର୍ଷୀନ୍ନିର୍ଜିତଦିଗ୍‌ଗଜଃ କ୍ରତୂନ୍ । ୬୮ ।
ଅହଂ ପୁରାଭବଂ କଶ୍ଚିଦ୍‌ଗନ୍ଧର୍ବ ଉପବର୍ହଣଃ ।
ନାମ୍ନାତୀତେ ମହାକଳ୍ପେ ଗନ୍ଧର୍ବାଣାଂ ସୁସମ୍ମତଃ । ୬୯ ।
ରୂପପେଶଲମାଧୁର୍ଯ୍ୟସୌଗନ୍ଧ୍ୟପ୍ରିୟଦର୍ଶନଃ ।
ସ୍ତ୍ରୀଣାଂ ପ୍ରିୟତମୋ ନିତ୍ୟଂ ମତ୍ତଃ ସ୍ୱପୁରଲମ୍ପଟଃ । ୭୦ ।

---

ହେ ରାଜନ ! ଯେଉଁ ଦ୍ରବ୍ୟ, ଯେଉଁ ଉପାୟରେ ଯେଉଁ କାଳରେ ଯାହାଠାରୁ ଯେଉଁ ବ୍ୟକ୍ତି ସମ୍ବନ୍ଧେ ନିଷିଦ୍ଧ, ସେହି ବ୍ୟକ୍ତି, ସେହି ଅନିଷିଦ୍ଧ ଦ୍ରବ୍ୟାଦି ଦ୍ୱାରା କାର୍ଯ୍ୟ ସମୂହପାଇଁ ଚେଷ୍ଟା କରିବ, ଆପଦ୍ ଭିନ୍ନ ଅନ୍ୟ ସମୟରେ ଏହାର ଅନ୍ୟଥା କରିବ ନାହିଁ । ହରିଭକ୍ତ ବ୍ୟକ୍ତି ଏହି ଉପାୟରେ ଏବଂ ଅନ୍ୟାନ୍ୟ ବେଦ ବିହିତ ଉପାୟରେ ଗୃହରେ ଉପସ୍ଥିତ ରହି ନିଜ ନିଜର କର୍ମଦ୍ୱାରା ଭଗବଦ୍ ଗତି ପ୍ରାପ୍ତ ହେବ । ୬୬,୬୭

ହେ ନୃପଶ୍ରେଷ୍ଠ ! ଆପଣମାନେ ପ୍ରଭୁ ଶ୍ରୀକୃଷ୍ଣଙ୍କର ସାହାଯ୍ୟ ହେତୁ ଦୁସ୍ତ୍ୟଜ ବିପଦରୁ ପାରିହେଲେ ଯେପରି ଆପଣ ତାହାଙ୍କର ଶ୍ରୀପାଦପଦ୍ମ ସେବନ କରି ଦିଗ୍‌ଗଜମାନଙ୍କୁ ନିଃଶେଷ କରି ରାଜସୂୟାଦି ଯଜ୍ଞ ସମୂହ ଆହରଣ କରିଥିଲେ । ୬୮ ।

ମୁଁ ପୂର୍ବେ ଅତୀତ ମହାକଳ୍ପରେ ଗନ୍ଧର୍ବମାନଙ୍କ କର୍ତ୍ତୃକ ସମ୍ମାନିତ ରୂପ, ସୁରୁଚି ମାଧୁର୍ଯ୍ୟ, ସୌଗନ୍ଧଯୁକ୍ତ ପ୍ରିୟଦର୍ଶନ, ସ୍ତ୍ରୀମାନଙ୍କର ପ୍ରିୟତମ, ନିତ୍ୟ ପ୍ରମତ୍ତ ଏବଂ ଗୃହସ୍ତ୍ରୀଗାମୀ ଉପବର୍ହଣ ନାମକ ଗନ୍ଧର୍ବ ଥିଲି । ୬୯,୭୦ ।

---

ଯେ କର୍ମ ଯେଉଁ ଉପାୟରେ
ଯାହା ସକାଶୁ ଯେଉଁଠାରେ
ଯାହାର ଯେ ଅବା ନିଷେଧ
ବିନା ଆପଦେ ନ କରିବ ।୬୬।
ଏ ଆଦି ବେଦବାକ୍ୟ ଯେତେ
ଗୃହେ ଯେ ସାଧେ ଅବିରତେ
କୃଷ୍ଣେ ନ କରେ ସମର୍ପଣ
ତାର ଜୀବନ ଅକାରଣ ।୬୭।
ଦେଖ ତୁ ଗୃହଧର୍ମେ ଥାଇ
ସଙ୍ଗତେ ଘେନି ହରିଭାଇ

ରାଜ୍ୟ ବିହୀନେ ବନବାସେ
ଯେତେ ଭ୍ରମିଲୁ ନାନାଦେଶେ
ଯାର ଚରଣେ ଆଶ୍ରେ କରି
ଘୋର ସଙ୍କଟୁ ତୁ ନିସ୍ତରି
ଏବେ ତୋହର ଦେଖ ଭାଗ୍ୟ
କଲୁ ରାଜସୀ ମହାଯଜ୍ଞ
ଲଭିଲୁ ପରମ କାରଣ
ତୋତେ ସୁଲଭ ନାରାୟଣ ।୬୮।
ମୁଁ ପୂର୍ବ ଜନ୍ମେ ଦେହ ବହି
ବିଷ୍ଣୁମାୟାରେ ଭ୍ରମ ହୋଇ

ପୂର୍ବ କଳ୍ପର ନାମ ଶୁଣ
ଗନ୍ଧର୍ବ ଉପବରହଣ
ସେ କଳ୍ପ ଅନ୍ତେ ଦେହ ବହି
ଗନ୍ଧର୍ବଗଣ ମଧ୍ୟେ ରହି
ସ୍ୱଭାବେ ରୂପ ଗୁଣ ମୋରି
ଅତି ସୁନ୍ଦର ମନୋହର
ଗନ୍ଧର୍ବ ନାରୀଗଣ ମଧ୍ୟେ
ଉନ୍ମତ୍ତରୂପେ ମୁଁ ଆନନ୍ଦ
ଯୁବତୀଗଣେ ପ୍ରିୟତମ
ଏମନ୍ତେ ଗଲା କେତେଦିନ ।୬୯,୭୦

ଏକଦା ଦେବସତ୍ରେ ତୁ ଗନ୍ଧର୍ବାପ୍‌ସରସାଂ ଗଣାଃ ।
ଉପହୂତା ବଶ୍ୱସୃଗ୍‌ଭିର୍ହରିଗାଥୋପଚାୟନେ ।୭୧।
ଅହଞ୍ଚ ଗାୟଂସ୍ତଦ୍‌ବଦ୍ୱାନ୍ ସ୍ତ୍ରୀଭିଃ ପରବୃତୋ ଗତଃ ।
ଜ୍ଞାତ୍ୱା ବଶ୍ୱସୃଜସ୍ତନ୍ମେ ହେଳନଂ ଶେପୁରୋଜସା-
ଯାହି ତ୍ୱଂ ଶୂଦ୍ରତାମାଶୁ ନଷ୍ଟଶ୍ରୀଃ କୃତହେଳନଃ ।୭୨।
ତାବଦ୍‌ଦାସ୍ୟାମହଂ ଯଜ୍ଞେ ତତ୍ରାପି ବ୍ରହ୍ମବାଦନାମ୍ ।
ଶୁଶ୍ରୂଷୟାନୁଷଙ୍ଗେଣ ପ୍ରାପ୍ତୋଽହଂ ବ୍ରହ୍ମପୁତ୍ରତାମ୍ ।୭୩।
ଧର୍ମସ୍ତେ ଗୃହମେଧୀୟୋ ବର୍ଣ୍ଣିତଃ ପାପନାଶନଃ ।
ଗୃହସ୍ଥୋ ଯେନ ପଦବୀମଞ୍ଜସା ନ୍ୟାସିନାମିୟାତ୍ ।୭୪।

---

ହେ ରାଜନ ଏକଦା ଦେବଯଜ୍ଞରେ ହରିକୀର୍ତ୍ତନ କରିବାକୁ ବିଶ୍ୱସ୍ରଷ୍ଟାମାନଙ୍କ କର୍ତ୍ତୃକ ଅପ୍‌ସରା ଓ ଗନ୍ଧର୍ବମାନେ ଆହୂତ ହୋଇଥିଲେ । ୭୧ ।

ତାହା ଜାଣି ମୁଁ ମଧ୍ୟ ସ୍ତ୍ରୀ ଜନ ପରିବେଷ୍ଟିତ ହୋଇ ମତ୍ତଭାବଶତଃ ଗାନ କରିବାକୁ ସେଠାରେ ଉପସ୍ଥିତ ହେଲି । ବିଶ୍ୱସ୍ରଷ୍ଟାଗଣ ମୋର ଅପରାଧ ଜାଣି ସତେଜରେ ଏହି ଅଭିଶାପ ଦେଲେ ଯେ ତୁ ଦେବଗଣଙ୍କ ପ୍ରତି ଅବଜ୍ଞା ପ୍ରଦର୍ଶନ କରିଅଛୁ ତେଣୁ ତୁ ଶ୍ରୀ ଭ୍ରଷ୍ଟ ହୋଇ ଶୂଦ୍ର ଯୋନିରେ ଶୀଘ୍ର ଜନ୍ମ ଗ୍ରହଣ କରିବୁ । ୭୨ ।

ତେଣୁ ମୁଁ ଦାସୀ ଗର୍ଭରେ ଜନ୍ମଗ୍ରହଣ କଲି କିନ୍ତୁ ବ୍ରହ୍ମବାଦୀ ମୁନିମାନଙ୍କର ସେବାକରି ଓ ସେମାନଙ୍କର ସଂସର୍ଗ ଲଭି କରି ମୁଁ ବ୍ରହ୍ମାଙ୍କର ପୁତ୍ର ରୂପେ ଜନ୍ମଲାଭ କଲି । ୭୩ ।

ହେ ରାଜନ୍ ! ଯେଉଁ ଧର୍ମ ଅନୁଷ୍ଠାନ କରି ଗୃହସ୍ଥ ଅନାୟାସରେ ସନ୍ନ୍ୟାସୀପଦବୀ ବା ମୋକ୍ଷମାର୍ଗ ପ୍ରାପ୍ତ ହୋଇଥାଏ ଗୃହସ୍ଥ ମାନଙ୍କର ଅନୁଷ୍ଠେୟ ପାପ ନାଶକ ସେହି ଧର୍ମ ତୁମ୍ଭ ନିକଟରେ ବର୍ଣ୍ଣନା କଲି ।୭୪।

---

ଏକ ଦିବସେ ଦେବଗଣେ
ସମସ୍ତେ ମିଳି ପୁଷ୍ପବନେ
ବ୍ରହ୍ମା ଶଙ୍କର ଆଦି ବସି
ହରି ଗାୟନ ରସେ ରସି
ଗନ୍ଧର୍ବଗଣ ଅଣାଇଲେ
ମୁଁ ଥିଲି ତାଙ୍କ ସଙ୍ଗମେଳେ
ଯୁବତୀଗଣ ମଧ୍ୟେ ଥାଇ
ଆନନ୍ଦେ ବୀଣା ବାଦ୍ୟ ବାଇ
ଆବୃତ ଅପସରବୃନ୍ଦେ
ମତ୍ତ ହବେଶି ତାଙ୍କ କନ୍ଧେ

ନୃତ୍ୟ ମୁଁ କଲି ନାନାମତେ
ତା ଦେଖି ବ୍ରହ୍ମା କୋପଚିତ୍ତେ
ଦେବ ହେଳନ କର୍ମ ଦେଖି
ଅରୁଣା କଲେ କୋପେ ଆଖି
ବୋଇଲେ ମୋତେ କୋପ ବହି
ଯା ବେଗେ ଶୂଦ୍ର ହୁଅ ତୁହି
ବ୍ରହ୍ମାର ଶାପ କୋପାନଳେ
ପଡ଼ିଲି ଅବନୀ ମଣ୍ଡଳେ
ଲଭିଲି ଦାସୀ ଗର୍ଭେ ଜନ୍ମ
ଯେଣୁ ମୋ ଥିଲା ଶୁଭକର୍ମ

ତେଣୁ ମୁଁ ସେବି ଦ୍ୱିଜପାଦେ
ତରିଲି ଦୁର୍ଗମ ପ୍ରମାଦେ
ଦ୍ୱିଜଚରଣ ସେବା ଫଳେ
ପୁଣି ଜନ୍ମିଲି ବ୍ରହ୍ମକୁଳେ ।୭୧-୭୩
ତୋର ଅଗ୍ରତେ ଗୃହ-ଧର୍ମ
ବର୍ଣ୍ଣିଲି ଯଥା ବେଦ କର୍ମ
ଏହା ଶୁଣନ୍ତେ ପାପ ହରେ
ଯେ ଧର୍ମେ ଗୃହେଥାଇ ତରେ ।୭୪।

ଯୂୟଂ ନୃଲୋକେ ବତ ଭୂରିଭାଗା ଲୋକଂ ପୁନାନା ମୁନୟୋଽଭିଯନ୍ତି ।
ଯେଷାଂ ଗୃହାନାବସତୀତି ସାକ୍ଷାଦ୍‌ଗୂଢ଼ଂ ପରଂ ବ୍ରହ୍ମ ମନୁଷ୍ୟଲିଙ୍ଗମ୍ । ୭୫ ।
ସ ବା ଅୟଂ ବ୍ରହ୍ମ ମହଦ୍‌ବିମୃଗ୍ୟକୈବଲ୍ୟନିର୍ବାଣସୁଖାନୁଭୂତିଃ ।
ପ୍ରିୟଃ ସୁହୃଦ୍‌ବଃ ଖଲୁ ମାତୁଲେୟ ଆତ୍ମାର୍ହଣୀୟୋ ବିଧିକୃଦ୍‌ଗୁରୁଶ୍ଚ । ୭୬ ।
ନ ଯସ୍ୟ ସାକ୍ଷାଦ୍‌ଭବପଦ୍ମଜାଦିଭିରୂପଂ ଧିୟା ବସ୍ତୁତୟୋପବର୍ଣ୍ଣିତମ୍ ।
ମୌନେନ ଭକ୍ତ୍ୟୋପଶମେନ ପୂଜିତଃ ପ୍ରସୀଦତାମେଷ ସ ସାତ୍ୱତାଂ ପତିଃ ।୭୭।

ଶ୍ରୀଶୁକଉବାଚ ।

ଇତି ଦେବର୍ଷିଣା ପ୍ରୋକ୍ତଂ ନିଶମ୍ୟ ଭରତର୍ଷଭଃ ।
ପୂଜୟାମାସ ସୁପ୍ରୀତଃ କୃଷ୍ଣଞ୍ଚ ପ୍ରେମବିହ୍ୱଳଃ । ୭୮ ।

---

ଅହୋ ! ଭୁବନ ପାବନ ମୁନିମାନେ ତୁମ୍ଭମାନଙ୍କ ଗୃହକୁ ଆଗମନ କରନ୍ତି ଏବଂ ସ୍ୱୟଂ ପରଂ ବ୍ରହ୍ମ ଗୁପ୍ତଭାବରେ ମନୁଷ୍ୟ ଦେହରେ ତୁମ୍ଭ ଗୃହରେ ବାସ କରନ୍ତି । ସୁତରାଂ ମନୁଷ୍ୟ ଲୋକରେ ତୁମ୍ଭେମାନେ ଭାଗ୍ୟବାନ୍ । ୭୫ ।

ଅଥବା ମହତ୍ ବ୍ୟକ୍ତିମାନେ ଯେଉଁ ମୋକ୍ଷସୁଖ ଅନ୍ୱେଷଣ କରନ୍ତି ସେହି ମୋକ୍ଷ ସୁଖର ଆଧାର ସ୍ୱରୂପ ପରଂବ୍ରହ୍ମ ( ଶ୍ରୀକୃଷ୍ଣ ) ତୁମ୍ଭମାନଙ୍କର ପ୍ରିୟ, ସୁହୃତ୍, ମାତୁଳପୁତ୍ର, ପୂଜନୀୟ, ବିଧିଦାତା ଏବଂ ଉପଦେଷ୍ଟା । ସୁତରାଂ ତୁମ୍ଭେମାନେ ଭଗବାନ୍ । ୭୬ ।

ସାକ୍ଷାତ୍ ଶିବ ଓ ବ୍ରହ୍ମାଦି ଦେବଗଣ ଜ୍ଞାନ ବଳରେ ଯାହାଙ୍କର ସ୍ୱରୂପ ବର୍ଣ୍ଣନା କରି ନ ପାରନ୍ତି ସେହି ଶ୍ରୀକୃଷ୍ଣ ମୌନ, ଭକ୍ତି ଓ ଉପଶମ ଇନ୍ଦ୍ରିୟ ନିଗ୍ରହ ଦ୍ୱାରା ଅର୍ଚ୍ଚିତ ହେଲେ ତୁଷ୍ଟ ହୁଅନ୍ତି । ୭୭ ।

ଶ୍ରୀଶୁକଦେବ କହିଲେ—

ହେ ପରୀକ୍ଷିତ ! ରାଜା ଯୁଧିଷ୍ଠିର ନାରଦଙ୍କ ନିକଟରୁ ଏହି ସମସ୍ତ ବୃତ୍ତାନ୍ତ ଶ୍ରବଣ କରି ପରମପ୍ରୀତ ହେଲେ ଏବଂ ପ୍ରେମ ବିହ୍ୱଳ ଚିତ୍ତରେ ଶ୍ରୀକୃଷ୍ଣ ଓ ନାରଦ ଉଭୟଙ୍କୁ ପୂଜା କରିଥିଲେ । ୭୮ ।

---

ତୁ ନରଲୋକେ ଭାଗ୍ୟବନ୍ତ
ଯେଣୁ ତୋ ବାନ୍ଧବ ଅନନ୍ତ
ତୋହର ଘରେ ନରହରି
ବସଇ ନର ରୂପ ଧରି
ସେ ହରି ବ୍ରହ୍ମ ନିରଞ୍ଜନ
ଧ୍ୟାନେ ନ ପାନ୍ତି ମୁନି ଜନ
କୈବଲ୍ୟ ମୁକ୍ତି ଅନୁଭୂତ
ପରମ ସୁଖେ ତାର ସ୍ଥିତ
ସେ ତୋର ପ୍ରିୟ ଭଗବାନ
ଅଟଇ ମାତୁଳ ନନ୍ଦନ

ଜଗତ ଆତ୍ମା ମହାଗୁରୁ
କେବା ମହିମା ବର୍ଣ୍ଣିପାରୁ
ବ୍ରହ୍ମା ଶଙ୍କର ଆଦି ଦେବେ
ଯାର ମହିମା ନ ଜାଣିବେ
ମଉନ ବ୍ରତ ତପ ଆଦି
ନିଷ୍ଠାଜ ଧାରଣା ସମାଧି
ନିର୍ମଳ ଭକ୍ତି ଉପଶମେ
ନିର୍ବାଣ ଲଭେ ଯାର ନାମେ
ସାତ୍ୱତ ଜନଙ୍କର ପତି
ସେ ହରି ହେଉ ଅନୁଗତି ।୭୫-୭୭

ଶ୍ରୀଶୁକ ଉବାଚ—

ଏମନ୍ତେ ଦେବଋଷି ବାକ୍ୟେ
ପଥି ପାଣ୍ଡବେ ଏକେ ଏକେ
କୃଷ୍ଣଚରଣେ ପୂଜା କଲେ
ନାରଦ ପାଦେ ପ୍ରଣମିଲେ ।୭୮।

କୃଷ୍ଣପାର୍ଥାବୁପାମନ୍ତ୍ର୍ୟ ପୂଜିତଃ ପ୍ରଯଯୌ ମୁନିଃ ।
ଶ୍ରୁତ୍ୱା କୃଷ୍ଣଂ ପରଂବ୍ରହ୍ମ ପାର୍ଥଃ ପରମବିସ୍ମିତଃ । ୭୯ ।
ଇତି ଦାକ୍ଷାୟଣୀନାଂ ତେ ପୃଥଗ୍‌ବଂଶାଃ ପ୍ରକୀର୍ତ୍ତିତାଃ ।
ଦେବାସୁରମନୁଷ୍ୟାଦ୍ୟା ଲୋକା ଯତ୍ର ଚରାଚରାଃ । ୮୦ ।

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ
ଯୁଧିଷ୍ଠିରନାରଦସମ୍ବାଦେ ନାମ ପଞ୍ଚଦଶୋଽଧ୍ୟାୟଃ । ୧୫ ।

---

ନାରଦ ପୂଜାପାଇ ଶ୍ରୀକୃଷ୍ଣ ଓ ପାର୍ଥଙ୍କୁ ସମ୍ଭାଷଣ କରି ପ୍ରସ୍ଥାନ କରିଥିଲେ । ଶ୍ରୀକୃଷ୍ଣ ସ୍ୱୟଂ ପରଂବ୍ରହ୍ମ ଏହା ଶ୍ରବଣ କରି ପାର୍ଥ (ଅର୍ଜୁନ) ଅତ୍ୟନ୍ତ ବିସ୍ମିତ ହୋଇଥିଲେ । ୭୯ ।

ମୁଁ ଦକ୍ଷପୁତ୍ରୀ ମାନଙ୍କର ବଂଶ ପୃଥକ୍ ଭାବରେ ବର୍ଣ୍ଣନା କଲି । ଯେଉଁ ବଂଶରେ ଦେବ, ଅସୁର, ସମସ୍ତ ଚରାଚର ପ୍ରଭୃତି ଜାତ ହୋଇଥିଲେ ତାହା ମଧ୍ୟ ବର୍ଣ୍ଣନା କଲି । ୮୦ ।

---

ନାରଦ ଉଠିଣ ତକ୍ଷଣେ
ନମିଲେ ଶ୍ରୀକୃଷ୍ଣଚରଣେ
ଶ୍ରୀକୃଷ୍ଣ ଆଜ୍ଞା ଘେନି ଶିରେ
ତକ୍ଷଣେ ଅନ୍ତର୍ଦ୍ଧାନ ହେଲେ ।୭୯।
ଏମନ୍ତେ ଦକ୍ଷ କନ୍ୟା ଗର୍ଭେ
ଯେତେ ଉପୁଜିଲେ ଦାନବେ
ଦେବ ମାନବ ଆଦି ଯେତେ
ପୂର୍ବେ ମୁଁ କହିଅଛି ତୋତେ

ଏବେ କହିଲି ତୋତେ ଭାବେ
ଯେ ଯହିଁ ଦେବତା ଦାନବେ
ସର୍ବ କହିଲି ତୋ ଅଗ୍ରତେ
ସୁଜନେ ଶୁଣ ଦୃଢ଼ ଚିତ୍ତେ ।୮୦।
ହରିଚରିତ ଭାଗବତ
ନୃସିଂହଚରିତ ଅମୃତ
ସପ୍ତମ ସ୍କନ୍ଧେ ଯାହା କହି
ଶୁଣନ୍ତେ ପାପ ଭୟ ନାହିଁ

ଏ ବିପ୍ର ଜଗନ୍ନାଥ ବାଣୀ
ଅମୃତ ସୁଧା ତରଙ୍ଗିଣୀ
ଶୁଣି ସଂସାରୁ ତର ପ୍ରାଣୀ
ସୁଜନ ହିତେ ମୁହିଁ ଭଣି
ସଂସାର ସୁଖ-ଦୁଃଖେ ଥାଇ
ମୂଢେ ତରିବେ ଏହା ଗାଇ

**ଇତି ସପ୍ତମସ୍କନ୍ଧ ସମାପ୍ତ ।**



**–ଭାବାର୍ଥ—**

ପୂର୍ବ ଅଧ୍ୟାୟରେ ଶ୍ରୀ ଶୁକଦେବ ମୋକ୍ଷକାମୀ ରାଜା ପରୀକ୍ଷିତଙ୍କ ନିକଟରେ ଗୃହସ୍ଥଧର୍ମ ସଂକ୍ଷେପରେ ବର୍ଣ୍ଣନା କରିଥିଲେ । କାଳେ ରାଜା ପରୀକ୍ଷିତଙ୍କ ମନରେ ଏପରି ଧାରଣା ଜନ୍ମିଥିବ ଯେ କେବଳ ସଂସାର ତ୍ୟାଗୀ ସନ୍ନ୍ୟାସୀ ମୋକ୍ଷମାର୍ଗର ଅଧିକାରୀ, ଗୃହସ୍ଥ ପକ୍ଷରେ ତାହା ବିଡ଼ମ୍ବନା—ଏହି ସନ୍ଦେହ ଦୂର କରିବା ନିମନ୍ତେ ଶୁକ ଦେବ ପୂର୍ବ ଅଧ୍ୟାୟରେ ଗୃହସ୍ଥ ଧର୍ମର ଅବତାରଣା କରି ଏହି ଅଧ୍ୟାୟରେ ସର୍ବ ପ୍ରକାର ବର୍ଣ୍ଣାଶ୍ରମର ଆଲୋଚନା କରିଥିଲେ ଏବଂ ଏହି ଅଧ୍ୟାୟରେ ସର୍ବ ଧର୍ମର ସାର ସଂଗ୍ରହ ସଂକ୍ଷେପରେ କହିଥିଲେ ।

ଶାସ୍ତ୍ର ନିର୍ଦ୍ଦିଷ୍ଟ ବିଧିମାନ ପାଳନ କରିବା ଗୃହସ୍ଥ ଓ ବାନପ୍ରସ୍ଥ ଉଭୟଙ୍କର କର୍ତ୍ତବ୍ୟ । ଇନ୍ଦ୍ରିୟ ନିଗ୍ରହ ସମସ୍ତଙ୍କର ଶ୍ରେଷ୍ଠଧର୍ମ । ମନୁଷ୍ୟର ଜିହ୍ୱା ଓ ଜନନେନ୍ଦ୍ରିୟ ତାହାକୁ ସମସ୍ତ ପାପ କାର୍ଯ୍ୟରେ ପ୍ରବର୍ତ୍ତାଇ ଥାଏ । ସେହି ଇନ୍ଦ୍ରିୟ ଦ୍ୱୟକୁ ସଂଯମ କରି ପାରିଲେ ମନୁଷ୍ୟ ଶ୍ରେୟମାର୍ଗ ଅବଲମ୍ବନ କରିପାରେ । କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ଏହି ଷଡ଼ରିପୁ ନିଗ୍ରହ ପ୍ରତ୍ୟେକ ମାନବର କର୍ତ୍ତବ୍ୟ । ଅଭ୍ୟାସ ଦ୍ୱାରା ସଂକଳ୍ପ ପରିତ୍ୟାଗୀ ହେଲେ ମନୁଷ୍ୟ ମୋକ୍ଷମାର୍ଗର ପଥିକ ହୋଇ ପାରେ ।

ଏହିଠାରେ ମନୁଷ୍ୟ ଯୋଗମାର୍ଗ ଅବଲମ୍ବନ କରିବା ଲାଗି, ଶ୍ରୀହରିଙ୍କଠାରେ ଭକ୍ତି ପ୍ରବଣ ହେବା ଲାଗି, ଗୁରୁଙ୍କଠାରୁ କିପରି ସାହାଯ୍ୟ ଓ ଶିକ୍ଷା ଲାଭ କରିପାରେ ତହିଁର ଆଭାସ ଦିଆଯାଇ ଅଛି । ଶ୍ରୀମଦ୍ଭାଗବତ ଧର୍ମ ଗୁରୁବାଦ ନୀତି ଉପରେ କିପରି ପ୍ରତିଷ୍ଠିତ, ତାହା ପ୍ରଥମ ଅଧ୍ୟାୟରେ ସୂତ ପ୍ରସଙ୍ଗରେ ବର୍ଣ୍ଣିତ ହୋଇଅଛି । ହିନ୍ଦୁର ଶିକ୍ଷା, ଦୀକ୍ଷା ସମସ୍ତ ସେହି ଗୁରୁବାଦ ଉପରେ ପ୍ରତିଷ୍ଠିତ । ଶ୍ରୀମଦ୍ ଭଗବତ ଗୀତାର ଶିଷ୍ୟ ଅର୍ଜୁନ ଓ ଗୁରୁ ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣ । ଆଧୁନିକ ଯୁଗପରି ପୂର୍ବକାଳରେ ପାଠ୍ୟ ନିର୍ଦ୍ଧାରଣ ବା ସିଲବସ୍ ପ୍ରସ୍ତୁତ ହେଉ ନ ଥିଲା କିମ୍ବା ଗୁରୁ ଶିଷ୍ୟର ଶକ୍ତି ଓ ବୁଦ୍ଧିର କ୍ରମ ବିକାଶ ପ୍ରତି ଆଦୌ ଲକ୍ଷ ନ ରଖି ସେହି ସିଲବସ୍ ଅନୁସାରେ ଗଡ଼ ଗଡ଼ କରି ଶିକ୍ଷା ଦେଉ ନ ଥିଲେ । ଗୁରୁ ଶିକ୍ଷା ଦେଲା ବେଳେ ଶିଷ୍ୟ କିପରି ଗୋଟିଏ ଗୋଟିଏ ବିଷୟ ବୁଝି ପାରିଲା ତାହା ପ୍ରତି ଲକ୍ଷ୍ୟ ରଖୁଥିଲେ । ତାହା ହିନ୍ଦୁ ଶାସ୍ତ୍ରର ବିଭିନ୍ନ ଗ୍ରନ୍ଥର ପ୍ରଶ୍ନୋତ୍ତରରୁ ଉତ୍ତମରୂପେ ଜଣାଯାଏ । ସ୍ଥଳ ବିଶେଷରେ ଶିଷ୍ୟ ପ୍ରଶ୍ନ ନ କଲେ ମଧ୍ୟ ଗୁରୁ ଜାଣି ପାରନ୍ତି ଶିଷ୍ୟ ହୃଦୟରେ କି ସନ୍ଦେହ ଜାତ ହୋଇ ପାରେ, ତାହା ଆଶଙ୍କା କରି ସେହି ପ୍ରଶ୍ନ ନିଜେ ଉତ୍ଥାପନ କରୁଥିଲେ ଏବଂ ତହିଁର ଉତ୍ତର ଦେଉଥିଲେ । ଗୁରୁ ମନୁଷ୍ୟ ପକ୍ଷରେ ସ୍ୱୟଂ ଭଗବାନ୍ ସ୍ୱରୂପ ଏହାହିଁ ହିନ୍ଦୁଧର୍ମରେ ଶିଷ୍ୟର ଗୁରୁପ୍ରତି ଭାବ ।

ଏହି ଅଧ୍ୟାୟରେ ପ୍ରବୃତ୍ତି ମାର୍ଗ ଓ ନିବୃତ୍ତିମାର୍ଗ ଏହି ଦୁଇ ପ୍ରକାର ବେଦବିଧି ପ୍ରଦର୍ଶିତ ହୋଇଅଛି । ମନୁଷ୍ୟ ପ୍ରବୃତ୍ତିମାର୍ଗରେ ଗମନ କଲେ ପୁନଃ ପୁନଃ ଜନ୍ମଗ୍ରହଣ କରୁଥାଏ । କିନ୍ତୁ ନିବୃତ୍ତି ମାର୍ଗାବଲମ୍ବୀ ନିର୍ବାଣ ପ୍ରାପ୍ତ ହୁଏ । ଯାଗ ଯଜ୍ଞ ପ୍ରଭୃତି କାମନାତ୍ମକ କର୍ମ ପ୍ରବୃତ୍ତି ମାର୍ଗ । କିନ୍ତୁ ଜ୍ଞାନାଗ୍ନିରେ ସର୍ବ ପ୍ରକାର କର୍ମକୁ ଆହୂତି ପ୍ରଦାନ କରି ଯୋଗାବଲମ୍ବନ କରିବା ନିବୃତ୍ତି ମାର୍ଗ । ଜ୍ଞାନୀ, ସାଧକ କିପରି ବିଭିନ୍ନ ସ୍ତରରେ ଉପନୀତ ହୋଇ ଅବଶେଷରେ ବ୍ରହ୍ମସୁଖ ଲାଭ କରେ ତାହା ଏହି ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି । ପ୍ରବୃତ୍ତି ମାର୍ଗ ସମ୍ବନ୍ଧେ ଶ୍ରୀମଦ୍ ଭଗବତ୍ ଗୀତାରେ ଭଗବାନ୍ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହି ଅଛନ୍ତି ।—

"ବହୂନି ମେ ବ୍ୟତୀତାନି ଜନ୍ମାନି ତବଚାର୍ଜ୍ଜୁନ"

ଅନ୍ୟତ୍ର କହି ଅଛନ୍ତି —

"ବହୂନାଂ ଜନ୍ମନାମନ୍ତେ ଜ୍ଞାନବାନ୍ ମାଂ ପ୍ରପଦ୍ୟତେ ।"

ପ୍ରବୃତ୍ତିମାର୍ଗରେ ମନୁଷ୍ୟ ଯେ ମୁକ୍ତିଲଭ ନ କରେ ଏହା ନୁହେଁ । ମାତ୍ର ପ୍ରବୃତ୍ତି ମାର୍ଗାବଲମ୍ବୀ ମନୁଷ୍ୟ କ୍ରମଶଃ ଉନ୍ନତ ହୋଇ କର୍ମାନୁସାରେ ନାନା ଜନ୍ମ ଲଭ କରି ଭୋଗାବସାନରେ ନିର୍ବାଣ ସୁଖର ଅଧିକାରୀ ହୁଏ । ହେଲେହେଁ ସେହି ପ୍ରବୃତ୍ତି ମାର୍ଗ କାମନା ଶୂନ୍ୟ ହେବା ଆବଶ୍ୟକ । କାମନା ଜଡ଼ିତ ପ୍ରବୃତ୍ତି ମାର୍ଗ ନିନ୍ଦନୀୟ ।

ରାଜା ଯୁଧିଷ୍ଠିରଙ୍କ ନିକଟରେ ଏହି ତତ୍ତ୍ୱ ପ୍ରକାଶ କରି ଶ୍ରୀ ନାରଦ ସ୍ୱଧାମକୁ ପ୍ରସ୍ଥାନ କରିଥିଲେ ।



